

# ଭଗବାନ ବୁଦ୍ଧ

ଧର୍ମାନନ୍ଦ କୋସମ୍ବୀ

ଏହି ପୁସ୍ତକର ଅନ୍ତଃପ୍ରଚ୍ଛଦରେ ଆନୁମାନିକ ଖ୍ରୀଷ୍ଟୀୟ ଦ୍ୱିତୀୟ ଶତକରେ ରଚିତ ଭାସ୍କର୍ଯ୍ୟର ପ୍ରତିଲିପି ମୁଦ୍ରିତ ହୋଇଛି। ନାଗାର୍ଜୁନ କୋଣ୍ଡାର ଏହି ଧ୍ୱଂସାବଶେଷ ବର୍ତ୍ତମାନ ନୂଆଦିଲ୍ଲୀର ନ୍ୟାଶନାଲ ମ୍ୟୁଜିୟମରେ ରକ୍ଷିତ। ଏହି ଭାସ୍କର୍ଯ୍ୟର ବିଷୟ : ରାଜା ଶୁଦ୍ଧୋଦନଙ୍କ ରାଜସଭାରେ ତିନି ଜଣ ଜ୍ୟୋତିଷ ଭଗବାନବୁଦ୍ଧଙ୍କ ଜନନୀ ମାୟାଦେବୀଙ୍କ ସ୍ୱପ୍ନର ତାତ୍ପର୍ଯ୍ୟ ବ୍ୟାଖ୍ୟା କରୁଛନ୍ତି। ଜ୍ୟୋତିଷମାନଙ୍କ ଆସନ ନିକଟରେ ଲିପିକାର ବସି ସେମାନଙ୍କ ବକ୍ତବ୍ୟ ଲେଖି ଚାଲିଛନ୍ତି। ଅନୁମାନ, ଏହା ଭାରତର ଲିଖନ କଳାର ପ୍ରାଚୀନତମ ଚିତ୍ରରୂପ।

# ଭଗବାନ ବୁଦ୍ଧ

ଧର୍ମାନନ୍ଦ କୋସମ୍ବୀ

ଅନୁବାଦ

ଗୌରୀକୁମାର ବ୍ରହ୍ମା



ସାହିତ୍ୟ ଅକାଦେମି

*Bhagaban Buddha:* Oriya translation by Gaurikumar Brahma of the same title in Hindi by Dharmananda Kosambi.Sahitya Akademi, New Delhi (Second printing) 1993. Price: Rs 75.00


ISBN 81-7201-453-8

ପ୍ରଥମ ପ୍ରକାଶ : ୧୯୫୮
ଦ୍ୱିତୀୟ ମୁଦ୍ରଣ : ୧୯୯୩

ସାହିତ୍ୟ ଅକାଦେମି
ରବୀନ୍ଦ୍ର ଭବନ, ୩୫, ଫିରୋଜ ସା ରୋଡ, ନୂଆଦିଲ୍ଲୀ ୧୧୦୦୦୧
ବିକ୍ରୟ କେନ୍ଦ୍ର :
'ସ୍ୱାତୀ', ମନ୍ଦିର ମାର୍ଗ, ନୂଆଦିଲ୍ଲୀ ୧୧୦ ୦୦୧

ଶାଖା ଅଫିସ :
ଜୀବନତାରା ଭବନ, ୨୩ ଏ/୪୪ ଏକ୍ସ, ଡାଇମଣ୍ଡ ହାରବର ରୋଡ,
କଲିକତା ୭୦୦୦୫୩
'ଗୁନା ବିଲଡିଂ', ଦ୍ୱିତୀୟ ମହଲା, ୩୦୪-୩୦୫, ଆନା ସାଲାଇ,
ଟେନାମ୍‌ପେଟ୍, ମାନ୍ଦ୍ରାଜ ୬୦୦ ୦୧୮
୧୭୨ ମୁମ୍ବାଇ ମାରାଠୀ ଗ୍ରନ୍ଥ ସଂଗ୍ରହାଳୟ ମାର୍ଗ, ଦାଦାର, ବମ୍ବେ ୪୦୦ ୦୧୪
ଏଡିଏ ରଙ୍ଗମନ୍ଦିର, ୧୦୯, ଜେ, ସି, ରୋଡ, ବାଙ୍ଗାଲୋର ୫୬୦ ୦୦୨

ମୂଲ୍ୟ : ୭୫ ଟଙ୍କା

ମୁଦ୍ରଣ :
ସେବା ମୁଦ୍ରଣ
କୈଳାସ ବୋଷ ଷ୍ଟ୍ରୀଟ
କଲିକତା ୭୦୦ ୦୦୬

# ଭକ୍ତ ପଣ୍ଡିତ ଧର୍ମାନନ୍ଦ କୋସମ୍ବୀ

ଏହି (ଭଗବାନ୍ ବୁଦ୍ଧ) ଗ୍ରନ୍ଥର ଲେଖକ ଧର୍ମାନନ୍ଦ କୋସମ୍ବୀ ଥିଲେ ପାଲିଭାଷା ଓ ସାହିତ୍ୟରେ ପ୍ରବୀଣ ପଣ୍ଡିତ। ବୌଦ୍ଧଧର୍ମ ସମ୍ବନ୍ଧୀୟ ସମସ୍ତ ମୌଳିକ ସାହିତ୍ୟର ଗଭୀର ଆଲୋଚନା କରି ସେ ଆନ୍ତର୍-ରାଷ୍ଟ୍ରୀୟ ଖ୍ୟାତି ଅର୍ଜନ କରିଥିଲେ। କିନ୍ତୁ ତାଙ୍କର ସମସ୍ତ ସାଧନା କେବଳ ବିଦ୍ୱତ୍ତା ଅର୍ଜନରେ ପର୍ଯ୍ୟବସିତ ନଥିଲା। ସେ ଥିଲେ ବୁଦ୍ଧଦେବଙ୍କର ଅସାଧାରଣ ଭକ୍ତ। ତେଣୁ ସେ ଯାହା କିଛି ତତ୍ତ୍ୱଲାଭ କଲେ, ଯାହା କିଛି କାର୍ଯ୍ୟ କଲେ ଏବଂ ସାହିତ୍ୟ ସୃଷ୍ଟି ମାଧ୍ୟମରେ ଯାହା କିଛି ଦାନ କଲେ, ସେସବୁ 'ବହୁଜନହିତାୟ', 'ବହୁଜନସୁଖାୟ'।

ତାଙ୍କ ଲିଖିତ ଭଗବାନ୍ ବୁଦ୍ଧଙ୍କର ଏହି ଚରିତ ଅନେକ ଦୃଷ୍ଟିରୁ ଏକ ମୌଳିକ ସୃଷ୍ଟି। ଏହା ଅଧ୍ୟୟନ କଲେ ଭଗବାନ୍ ବୁଦ୍ଧଙ୍କ ବିଷୟରେ ଆମର ସତ୍ୟମୂଳକ, ଆଧାରଭୂତ ଓ ପ୍ରାମାଣିକ ଜ୍ଞାନ ଲାଭ ହୁଏ।

ଆଜିକାଲି ଆମେ ଭଗବାନ୍ ବୁଦ୍ଧଙ୍କ ବିଷୟରେ ଯାହା କିଛି ପଢ଼ିବାକୁ ପାଉ, ସେସବୁ ହେଉଛି ମୋଟାମୋଟି ଇଂରାଜୀ-ଲେଖକମାନଙ୍କ ଲିଖିତ ବିଷୟର ସାର ସଙ୍କଳନ ମାତ୍ର। ସାର୍ ଏଡ୍‌ୱିନ୍ ଅର୍‌ନୋଲ୍‌ଡ୍ "ଲାଇଟ୍ ଅଫ୍ ଏସିଆ" ନାମକ କାବ୍ୟ ପ୍ରଣୟନ କରିଛନ୍ତି ଓ ତହିଁରେ ବୁଦ୍ଧଦେବଙ୍କ ସମ୍ପର୍କୀୟ ପୌରାଣିକ କଥା ବିଶ୍ୱପାଠକମଣ୍ଡଳୀ ସମକ୍ଷରେ ଉପସ୍ଥାପନ କରିଛନ୍ତି। ତାହା ଏଡ଼େ ରୁଚିସମ୍ପନ୍ନ ହୋଇଅଛି ଯେ ତାହାର ପ୍ରଭାବ ପ୍ରାଚ୍ୟ ଓ

ପାଶ୍ଚାତ୍ୟ ଉଭୟ ଦେଶର ପାଠକଙ୍କ ଉପରେ ପଡ଼ିଅଛି । "ଲାଇଟ୍ ଅଫ୍ ଏସିଆ"ରେ ପ୍ରଦତ୍ତ ବୁଦ୍ଧଙ୍କ ଜୀବନ ଚରିତ ଲାଗି ସାରା ପୃଥିବୀ ଲେଖକଙ୍କ ନିକଟରେ ଚିର କୃତଜ୍ଞ ରହିବ । କିନ୍ତୁ ସେ କାବ୍ୟରେ ଦେଖିବାକୁ ମିଳେ ଏକ 'କାବ୍ୟମୟ' ଚରିତ । ପାଲକର୍ସ ମଧ୍ୟ ଗଦ୍ୟରେ ଇଂରାଜୀରେ ଏଭଳି ଏକ ରୋଚକ ଗ୍ରନ୍ଥ ରଚନା କରିଛନ୍ତି । ଏହା ବ୍ୟତୀତ କେତେ ଜଣ ବିଦ୍ୱାନ୍ ବୁଦ୍ଧ ବିଷୟକ ଗବେଷଣାତ୍ମକ ଗ୍ରନ୍ଥ ଲେଖିଛନ୍ତି । ଯେଉଁ କେତେଜଣ ଭାରତୀୟ ମୂଳ ବୌଦ୍ଧ ପାଲିଗ୍ରନ୍ଥ "ତ୍ରିପିଟକ" ତଥା ଅନ୍ୟ ଆଧାର ଗ୍ରନ୍ଥମାନଙ୍କର ତାତ୍ତ୍ୱିକ ଆଲୋଚନା ପୂର୍ବକ ତହିଁର ସାର ସଙ୍କଳନ ଭିତ୍ତିରେ ଲେଖିଛନ୍ତି ସେମାନଙ୍କ ମଧ୍ୟରେ ଧର୍ମାନନ୍ଦ କୋସମ୍ବୀଙ୍କ ଦ୍ୱାରା ଲିଖିତ ଏହି ଗ୍ରନ୍ଥ ପ୍ରଥମ ଚରିତ-ଗ୍ରନ୍ଥ ଭଳି ମନେ ହୁଏ । ସେହି ପ୍ରାଚୀନ ଉପାଦାନରେ ମଧ୍ୟ ଯାହା କିଛି ବୁଦ୍ଧିଗ୍ରାହ୍ୟ ଥିଲା ତାହା ମଧ୍ୟ ଗୃହୀତ ହୋଇଅଛି । ପୌରାଣିକ ଚମତ୍କୃତି ପୂର୍ଣ୍ଣ ବିବରଣୀ ଓ ଅସମ୍ଭାବ୍ୟ ଚରିତ ସବୁ ପରିତ୍ୟକ୍ତ ହୋଇଛି । ପୁଣି ଯାହାକିଛି ସ୍ପଷ୍ଟ ମତ ବ୍ୟକ୍ତ କରାଯାଇଛି ସେସବୁ ଲାଗି ସ୍ଥାନେ ସ୍ଥାନେ ମୂଳ ପ୍ରମାଣ ମଧ୍ୟ ଉଦ୍ଧାର କରାଯାଇଛି । ବୌଦ୍ଧ ସାହିତ୍ୟ ଓ ଜୈନ ସାହିତ୍ୟରୁ ସେ ସମୟର ସାମାଜିକ, ଧାର୍ମିକ ଓ ରାଜନୀତିକ ସ୍ଥିତି ସମ୍ପର୍କରେ ଯେଉଁ ଜ୍ଞାନ ଉପଲଭ୍ୟ ତାହାର ସଦ୍‌ବ୍ୟବହାର କରାଯାଇ ଏହି ଗ୍ରନ୍ଥରେ ଭଗବାନ୍ ବୁଦ୍ଧଙ୍କର ସମକାଳୀନ ପରିସ୍ଥିତି ସମ୍ପର୍କରେ ନୂତନ ଆଲୋକ ପାତ କରାଯାଇଛି ।

ଭଗବାନ୍ ବୁଦ୍ଧଙ୍କଠାରେ ଯଦିଓ ଧର୍ମାନନ୍ଦଙ୍କର ଅସାଧାରଣ ନିଷ୍ଠା ଥିଲା ତଥାପି ସେ ଏକାନ୍ତ ଭାବରେ ସତ୍ୟ ନିଷ୍ଠ ହୋଇ, ନିର୍ଭୀକ ଭାବରେ, ଯାହା କିଛି ନିରାଟ ସତ୍ୟ ବୋଲି ବୁଝିଛନ୍ତି ତାହାହିଁ ଲେଖିଛନ୍ତି । ପୁଣି ବହୁ ଜନକଲ୍ୟାଣ ଲାଗି ସେ ଲେଖମା

ତୁଳନା କରିଥିଲେ । ସୁତରାଂ ଧର୍ମାନନ୍ଦ ମହୋଦୟ ବୁଦ୍ଧ ବିଷୟକ ଏହି ଗ୍ରନ୍ଥ ଏବଂ ନିଜର ଅନ୍ୟାନ୍ୟ ପୁସ୍ତକ ଗୁଡ଼ିକୁ ମଧ୍ୟ ସାଧାରଣ ପାଠକଙ୍କର ସୁଖବୋଧ ହେବାଭଳି ସରଳ ଭାଷାରେ ଲେଖି ଅଛନ୍ତି ।

ପାଲିଭାଷା ଉପରେ ତାଙ୍କର ଏପରି ଆଧିପତ୍ୟ ଥିଲା ଯେ ସେ ଅତି ସରଳ ଭାବରେ ତହିଁରେ ଲେଖି ପାରୁଥିଲେ—ଯେପରିକି ତାହା ଥିଲା ତାଙ୍କର ମାତୃଭାଷା । ବୌଦ୍ଧଗ୍ରନ୍ଥ ଉପରେ ଯେଉଁ ପାଲିଟୀକା ସେ ଲେଖିଛନ୍ତି, ତହିଁରେ ନିଜର ବିଦ୍‌ବତ୍ତା ଦ୍ୱାରା ସହଜ କଥାକୁ ଜଟିଳ କରି ନାହାନ୍ତି କିମ୍ବା ଜଟିଳ କଥାକୁ ଜଟିଳତର କରି ନାହାନ୍ତି ।

ଭାରତବର୍ଷରେ ଲୋକେ ଭଗବାନ୍ ବୁଦ୍ଧଙ୍କୁ ଭୁଲି ଗଲେଣି । ତାଙ୍କର କଲ୍ୟାଣମୟ ଧର୍ମ ବିଷୟରେ ପଣ୍ଡିତଙ୍କର ଧାରଣା ମଧ୍ୟ ବିକୃତ ହୋଇଗଲାଣି । ଏସବୁ ଦେଖି ଧର୍ମାନନ୍ଦ ମହୋଦୟ ନିଜର ସମସ୍ତ ଅଧ୍ୟୟନର ନିର୍ଯ୍ୟାସକୁ ସୁବୋଧ ଶୈଳୀରେ ମରାଠୀ ଭାଷାରେ ପ୍ରକାଶ କରିଛନ୍ତି । ମହାତ୍ମାଜୀଙ୍କର ଗୁଜୁରାଟ ବିଦ୍ୟାପୀଠ ତହିଁର ଗୁଜୁରାଟି ଅନୁବାଦ ପ୍ରକାଶିତ କରାଇଥିଲେ ।

ଧର୍ମାନନ୍ଦ କୋସମ୍ବୀ ୧୮୭୬ ସାଲରେ ଗୋଆର ଏକ କ୍ଷୁଦ୍ର ଗ୍ରାମରେ ଭୂମିଷ୍ଠ ହୋଇଥିଲେ । ଗୋଆ ସରକାରଙ୍କ ପକ୍ଷରୁ ଶିକ୍ଷାର କୌଣସି ବ୍ୟବସ୍ଥା ହୋଇ ନଥିଲା । ସେହି ହେତୁରୁ ଘରୋଇ ଭାବରେ ସେ ସାମାନ୍ୟ ଭାବରେ ମରାଠୀ ଓ ସଂସ୍କୃତ ଶିକ୍ଷା କରିଥିଲେ । ଅଧିକାଂଶ ସମୟ ସେ ନିଜର ନଡ଼ିଆ ବଗିଚାରେ ଗଛରେ ପାଣି ଦେବାରେ ଅତିବାହିତ କରୁଥିଲେ । ସେହି ସମୟରେ

।

ସେ 'ବାଲବୋଧ' ନାମକ ଏକ ମରାଠୀ ଶିଶୁ-ମାସିକ-ପତ୍ରିକାରେ ବୁଦ୍ଧଦେବଙ୍କର ଜୀବନ ଚରିତ ପଢ଼ିବାର ସୁଯୋଗ ଲାଭ କରିଥିଲେ । ତଦ୍ଦ୍ୱାରା ସେ ଏତେଦୂର ପ୍ରଭାବିତ ହେଲେ ଯେ, ଅନ୍ୟ ସବୁକଥା ଛାଡ଼ି ବୌଦ୍ଧଧର୍ମ ବିଷୟରେ ଜ୍ଞାନ ଲାଭ କରିବା ପାଇଁ କୃତ ସଙ୍କଳ୍ପ ହେଲେ । ନିଜର ଆତ୍ମକଥାରେ ସେ ଲେଖିଛନ୍ତି "ମତେ ଲାଗିଲା, ଯେତେ ବାଧା ବିଘ୍ନ ଆସୁ ପଛେ, ମୁଁ ଯଦି ବୁଦ୍ଧଦେବଙ୍କର ଉପଦେଶ ପ୍ରକୃତ ଭାବରେ ବୁଝି ପାରିବି ତେବେ ମୋର ଜୀବନ ସାର୍ଥକ ହେଲା ବୋଲି ବୁଝିବି ।"

ପାରିବାରିକ ଅସୁବିଧା ହେତୁ ଧର୍ମାନନ୍ଦଙ୍କର ମନରେ ଗାର୍ହସ୍ଥ୍ୟ ଧର୍ମ ପ୍ରତି ବିରକ୍ତି ଜାତ ହେଲା । ୨୨ ବର୍ଷ ବୟସରେ ସେ ଗୃହତ୍ୟାଗ କଲେ । ବମ୍ବେର ପ୍ରାର୍ଥନା ସମାଜର କାର୍ଯ୍ୟାଳୟରେ ରହି ସେ କିଛି କିଛି ଅଧ୍ୟୟନ କଲେ । ତାପରେ ପୂନାକୁ ଯାଇ ମହା ପଣ୍ଡିତ ଡକ୍ଟର ଭଣ୍ଡାରକରଙ୍କ ସାକ୍ଷାତ କଲେ । ପୁଣି ଗ୍ୱାଲିୟର ଓ ବାରଣସୀ ଯାଇ ଗଭୀର ଭାବରେ ସଂସ୍କୃତ ଅଧ୍ୟୟନ କଲେ । ଏସବୁ ପରେ ମୂଳ ସଙ୍କଳ୍ପ ଅନୁଯାୟୀ ବୌଦ୍ଧଧର୍ମ ବିଷୟରେ ଜ୍ଞାନ ଲାଭ କରିବା ପାଇଁ ନେପାଳ ଗଲେ । କାରଣ ତାହା ହେଉଛି ବୁଦ୍ଧଦେବଙ୍କ ଜନ୍ମଭୂମି । ସେଠାରୁ ସେ ବୋଧି ଗୟା ଯାତ୍ରାକଲେ । ସେଠାରେ ସେ ବୁଝିଲେ ଯେ ବୌଦ୍ଧ ଶାସ୍ତ୍ର, ତ୍ରିପିଟକ ଗ୍ରନ୍ଥମାନଙ୍କର ଅଧ୍ୟୟନ କେବଳ ଲଙ୍କାରେ ଉତ୍ତମ ରୂପେ ହୋଇ ପାରିବ ।

ଯୁବକ ଧର୍ମାନନ୍ଦ ସର୍ବଦା ସବୁଦିଗରୁ ନିଃସହାୟ ଥିଲେ ତଥାପି ବହୁ କଷ୍ଟ ସହ୍ୟକରି ଲଙ୍କାରେ ଉପସ୍ଥିତ ହେଲେ । ସେଠାରେ ଦୀକ୍ଷା ଗ୍ରହଣ କରି ମହାସ୍ଥବିର ସୁମଙ୍ଗଳାଚାର୍ଯ୍ୟଙ୍କ

ପାଖରେ ରହି ଗମ୍ଭୀର ଭାବରେ ପାଲି ଗ୍ରନ୍ଥମାନଙ୍କର ଅଧ୍ୟୟନ କଲେ । ସେଠାରୁ ବ୍ରହ୍ମ ଦେଶକୁ ଯାଇ ଧ୍ୟାନମାର୍ଗ ବିଷୟରେ ଜ୍ଞାନ ଲାଭ କରି ଭାରତକୁ ପ୍ରତ୍ୟାବର୍ତ୍ତନ କଲେ । ଧର୍ମ ଜିଜ୍ଞାସା ଦ୍ୱାରା ଅନୁପ୍ରେରିତ ହୋଇ ସେ ଯେଉଁ ଦେଶବିଦେଶ ଭ୍ରମଣ କଲେ, ତାହାର ଇତିହାସ ବଡ଼ ରୋମାଞ୍ଚକର । ସନାତନ ଧର୍ମ ଓ ବୌଦ୍ଧଧର୍ମ ମଧ୍ୟରେ ଗୋଟାଏ ବଡ଼ ପ୍ରଭେଦ ହେଉଛି, ସନାତନ ଧର୍ମରେ ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ ବାନପ୍ରସ୍ଥ ଓ ସନ୍ନ୍ୟାସ ନିୟମ କ୍ରମଶଃ ରଖା ଯାଇଛି । ଗୋଟିଏ ଆଶ୍ରମ ଅତିକ୍ରମ କରି ପରବର୍ତ୍ତୀ ଆଶ୍ରମରେ ପ୍ରବେଶ କରିବାକୁ ହୁଏ । ଏଥିରେ ପଛକୁ ଫେରି ଆସିବାର ବ୍ୟବସ୍ଥା ନାହିଁ । ଏହି କାରଣରୁ, ଗୁରୁ କାହାରିକୁ ଯେ ପର୍ଯ୍ୟନ୍ତ ସନ୍ନ୍ୟାସ ଦୀକ୍ଷା ଦେବାର କଥା, ଦେଇ ପାରନ୍ତି ନାହିଁ ।

କିନ୍ତୁ ବୌଦ୍ଧଧର୍ମର ଦୃଷ୍ଟି ପୃଥକ୍ । ତହିଁରେ ପିତା ମାତାମାନେ ମନେ କରନ୍ତି ଯେ, ପୁତ୍ର ଚତୁର ହେବା ମାତ୍ରେ ତାକୁ ସର୍ବଶ୍ରେଷ୍ଠ ଭିକ୍ଷୁ-ଧର୍ମର ଦୀକ୍ଷା ଦେବା ସେମାନଙ୍କର କର୍ତ୍ତବ୍ୟ । ପରେ ପୁତ୍ର ଯଦି ଅନୁଭବ କରେ ଯେ, ଏହା ଏକ ମହାନ୍ ପଦାର୍ଥ, ସୁତରାଂ ଏହା ତା ପକ୍ଷରେ ଅନୁକୂଳ ନୁହେଁ, ତେବେ ସେ ସ୍ୱେଚ୍ଛାରେ ନିମ୍ନକୁ ଓହ୍ଲାଇ ଆସିପାରେ । ବୌଦ୍ଧଧର୍ମର ନିୟମ ଅଛି ଯେ, ଭିକ୍ଷୁବ୍ରତ ଗ୍ରହଣ କରିବା ପରେ ଗୃହସ୍ଥାଶ୍ରମରେ ପ୍ରବେଶ କରିବାକୁ ଯଦି କାହାର ଇଚ୍ଛା ହୁଏ, ତେବେ ସେ ନିଜ ଗୁରୁଙ୍କ ଆଦେଶାନୁଯାୟୀ ତାହା କରିପାରେ । ଧର୍ମାନନ୍ଦଜୀ ସେପରି କରିଥିଲେ ।

ଭାରତକୁ ଫେରିବା ପରେ ଧର୍ମାନନ୍ଦ ବୌଦ୍ଧଧର୍ମର ଜ୍ଞାନ ନିଜ ଲୋକମାନଙ୍କ ମଧ୍ୟରେ ପ୍ରଚାର କରିବା ପାଇଁ କଲିକତା ଇଉନିଭର୍ସିଟିରେ ପ୍ରବେଶ କଲେ । ସେଠାରେ କେତେକ କାମ କରିବା ପରେ ମହାରାଷ୍ଟ୍ର ଯାଇ ସେ ବଡ଼ୋଦା ମହାରାଜା

ଶ୍ରୀ ସୟାଜୀ ରାଓ ଗାୟକୋଓ୍ୱାଡ଼ଙ୍କ ସହିତ ସାକ୍ଷାତ କଲେ । ସେ ଧର୍ମାନନ୍ଦ କୋସମ୍ବୀଙ୍କର, ଖାଇବା ପିଇବା ବିଷୟରେ ନିଶ୍ଚିନ୍ତ ହୋଇ ତାଙ୍କର ଇଚ୍ଛାନୁରୂପ କାମ କରିବା ଲାଗି ବ୍ୟବସ୍ଥା କରି ଦେଲେ । ପୂନା ଆସିବା ମାତ୍ରେ ଧର୍ମାନନ୍ଦ ଡକ୍ଟର ଭଣ୍ଡାରକରଙ୍କ ସାହାଯ୍ୟରେ ବୋମ୍ବାଇ ଇଉନିଭର୍ସିଟିରେ ପାଲିଭାଷା, ଅଧ୍ୟୟନ କରିବା ପାଇଁ ବ୍ୟବସ୍ଥା କରାଇଲେ । ଏହି ସମୟରେ ଆମେରିକାର ହାରଓ୍ୱାର୍ଡ଼ ଇଉନିଭର୍ସିଟିର ଡ଼କ୍ଟର ଜେମ୍‌ସ ଉଡ୍‌ସ୍ ଭାରତକୁ ଆସିଥିଲେ । କୌଣସି ସୁଯୋଗ୍ୟ ପାଲି ପଣ୍ଡିତଙ୍କ ଦ୍ୱାରା 'ବିଶୁଦ୍ଧି ମଗ୍‌ଗ' ପରି ଜଟିଳ ଗ୍ରନ୍ଥର ସମ୍ପାଦନ ହାର୍ଭର୍ଡ଼ରେ କରିବାକୁ ତାଙ୍କର ଇଚ୍ଛାଥିଲା । ପ୍ରଫେସର ଉଡ୍‌ସ୍‌ଙ୍କ ଆଗ୍ରହରୁ ଧର୍ମାନନ୍ଦ ଆମେରିକା ଗଲେ । ସେଠାରେ କେତେକ ଅସୁବିଧା ହେତୁ ସେ କାର୍ଯ୍ୟ ତ୍ୟାଗ କଲେ ଓ ଆତ୍ମ ସମ୍ମାନ ବଜାୟ ରଖି ସ୍ୱଦେଶକୁ ପ୍ରତ୍ୟାଗମନ କଲେ । ଭାରତକୁ ଆସି ସେ ଫରଗ୍ୟୁସନ୍ କଲେଜରେ ପାଲି ଅଧ୍ୟାପନା ଭାର ଗ୍ରହଣ କଲେ ଓ ଭଲ ଭଲ ବିଦ୍ୟାର୍ଥୀମାନଙ୍କୁ ପାଲି ସାହିତ୍ୟରେ ପ୍ରବୀଣ କରି ଗଢ଼ିଲେ । ଛଅ ବର୍ଷ ପରେ ସେ ପୁଣି ଥରେ ଆମେରିକା ଯାତ୍ରା କଲେ ଓ 'ବିଶୁଦ୍ଧି ମଗ୍‌ଗ'ର କାର୍ଯ୍ୟ ସମ୍ପୂର୍ଣ୍ଣ କଲେ ।

ଭାରତରେ କଲିକତା, ବଡ଼ୋଦା, ଅହମଦାବାଦ, ପୂନା, ବନାରସ ଆଦି ସ୍ଥାନମାନଙ୍କରେ ରହି ସେ ଅନେକ ବିଦ୍ୟାର୍ଥୀଙ୍କୁ ଗଢ଼ିଛନ୍ତି ଓ ସେମାନେ ଆଜ ପାଲି ସାହିତ୍ୟରେ ବିଦ୍ୱାନ୍ ସ୍ୱରୂପେ ପ୍ରଖ୍ୟାତ ହୋଇ ଅଛନ୍ତି । ମହାତ୍ମାଗାନ୍ଧି ଗୁଜୁରାଟ ବିଦ୍ୟାପୀଠରୁ ତାଙ୍କୁ ଡ଼ାକାଇବାରୁ ସେ ସେଠାକୁ ଯାଇ କେତେକ ଗ୍ରନ୍ଥ ଲେଖିଲେ ଓ ପଣ୍ଡିତ ସୁଖଲାଲ, ମୁନି ଜିନବିଜୟ, ଶ୍ରୀ ବେଚରଦାସ ଓ ରସିକ

ଲାଲ ପରିଖଙ୍କ ଭଳି ବୈଦିକ ବିଦ୍ୱାନମାନଙ୍କ ସହିତ ଜୈନ ଓ ବୌଦ୍ଧ ସାହିତ୍ୟର ତୁଳନାତ୍ମକ ଆଲୋଚନା କଲେ ।

ଖ୍ରୀ: ୧୯୨୯ ରେ ପାଲି ଭାଷାରେ ରୁଷୀୟ ପଣ୍ଡିତ ପ୍ର: ଶେରବେଟସ୍କୀଙ୍କ ଆମନ୍ତ୍ରଣରେ ସେ ରୁଷିଆ ଯାଇଥିଲେ । ଧର୍ମାନନ୍ଦଜୀ ଆମେରିକାରେ ଥିବାବେଳେ ପଞ୍ଜାବର ବିପ୍ଳବୀ ନେତା ଲାଲ୍ ହରଦୟାଲଙ୍କ ସହିତ ତାଙ୍କର ବିଶେଷ ପରିଚୟ ହୋଇଥିଲା ଓ ତାଙ୍କର ଚିନ୍ତାଧାରା କ୍ରମେ ସମାଜବାଦ ଆଡ଼କୁ ଢଳିଲା । ରୁଷିଆରେ ସାମ୍ୟବାଦର ପ୍ରୟୋଗ ସେ ପ୍ରତ୍ୟକ୍ଷ ଭାବେ ଦେଖିଥିଲେ । ନିଜ ତତ୍ତ୍ୱନିଷ୍ଠ ଦୃଷ୍ଟିବଳରେ ସେ ସାମ୍ୟବାଦର ଗୁଣ-ଦୋଷ ଦେଖି ପାରିଥିଲେ ।

'ବହୁଜନ ହିତାୟ, ବହୁଜନ ସୁଖାୟ' ଯାହାଙ୍କର ଅବତାର ଗ୍ରହଣର ଲକ୍ଷ୍ୟ ଥିଲା, ସେହି ଭଗବାନ୍ ବୁଦ୍ଧଙ୍କ ଭକ୍ତ ପକ୍ଷରେ ସ୍ୱରାଜ୍ୟ ଆନ୍ଦୋଳନରେ ଯୋଗ ନଦେଇ ରହିବା ଅସମ୍ଭବ । ଖ୍ରୀ: ୧୯୩୦ ରେ ସେ ଯେତେବେଳେ ରୁଷିଆରୁ ଫେରିଲେ ସେତେବେଳେ ଭାରତରେ ସ୍ୱାଧୀନତା ଆନ୍ଦୋଳନ ପ୍ରବଳ ଭାବରେ ଚାଲୁଥିଲା । ଧର୍ମାନନ୍ଦଜୀ ସେଥିରେ ପୂର୍ଣ୍ଣ ଉତ୍ସାହରେ ଯୋଗ ଦେଲେ । ଲବଣ ସତ୍ୟାଗ୍ରହରେ ଅଗ୍ରଣୀ ହୋଇ, ସ୍ୱେଚ୍ଛା ସେବକ ପ୍ରସ୍ତୁତ କରିବାର ଭାର ନିଜେ ବହନ କଲେ ଓ କାରାବରଣ ମଧ୍ୟ କଲେ । ଏହାପରେ ସେ ଚତୁର୍ଥଥର ପାଇଁ ଆମେରିକା ଗଲେ । ସେଠାରୁ ଫେରି, ବାରାଣସୀରେ ଅବସ୍ଥାନ କରି ସେ ହିନ୍ଦୀ ସଂସ୍କୃତି ଆଣି 'ଅହିଂସା' ନାମକ ପୁସ୍ତକ ପ୍ରଣୟନ କଲେ । ଧର୍ମବିଦ୍ରୋହ ଓ ଧର୍ମଚର୍ଚ୍ଚାର ଫଳ ସ୍ୱରୂପ ଭାରତୀୟ ଇତିହାସ ଓ ସଂସ୍କୃତି ବିଷୟରେ ସେ ଯେଉଁ ତଥ୍ୟରେ ଉପନୀତ ହେଲେ, ତାହାର ସାର ସେ ଏହି ଗ୍ରନ୍ଥରେ ନିର୍ଭୀକ ଓ ସ୍ପଷ୍ଟ ଭାବରେ ଲିପିବଦ୍ଧ କରିଛନ୍ତି । ସ୍ୱାଭାବିକ

ଖିତ୍ତରେ ଏହାଙ୍କ ନିରୂପିତ ତଥ୍ୟଗୁଡ଼ିକ ବିଶେଷ ବାଦ ବିବାଦର ସ୍ଥଳ ।

ଏହା ପରେ ବୋମ୍ବାଇକୁ ଯାଇ ସେ ଶ୍ରମିକମାନଙ୍କ ମଧ୍ୟରେ ଏକ ଆଶ୍ରମ ଖୋଲି ରହିଲେ । ତାଙ୍କର ସେହି 'ବିହାର' ଆଜି ଅନେକ ବିଦେଶୀ ବୌଦ୍ଧ-ସାଧୁଙ୍କୁ ପ୍ରଶ୍ରୟ ଦେଉଅଛି ।

ବୋମ୍ବାଇର କାମ ଛାଡ଼ି, ଧର୍ମାନନ୍ଦଜୀ ସାରନାଥରେ ଯାଇ ଅବସ୍ଥାନ କଲେ ଓ ସେଠାରେ ଜଗଦୀଶ କାଶ୍ୟପଙ୍କ ପରି ପ୍ରବୀଣ ପାଲି ପଣ୍ଡିତମାନଙ୍କୁ ଆବଶ୍ୟକୀୟ ସାହାଯ୍ୟ ଦେଲେ ।

ଜୈନଧର୍ମର ୨୩ଶ ତୀର୍ଥଙ୍କର ପାର୍ଶ୍ୱନାଥଙ୍କ "ଚତୁର୍ଯ୍ୟାମ-ଧର୍ମ" ତାଙ୍କୁ ବିଶେଷ ପ୍ରଭାବିତ କରିଥିଲା । ତହିଁରେ ସେ ଆଧ୍ୟାତ୍ମିକ ସମାଜବାଦର ଅସ୍ତିତ୍ୱ ଅନୁଭବ କରି ପାରିଥିଲେ । ପାର୍ଶ୍ୱନାଥଙ୍କ 'ଚତୁର୍ଯ୍ୟାମ' ଧର୍ମ ସମ୍ପର୍କରେ ସେ ଏହି ଦୃଷ୍ଟିରୁ ଏକ ପୁସ୍ତିକା ମଧ୍ୟ ଲେଖିଥିଲେ । ତାଙ୍କ ଦେହାନ୍ତ ପରେ 'ଧର୍ମାନନ୍ଦ-ସ୍ମାରକ-ଟ୍ରଷ୍ଟ' ପୁସ୍ତିକାଟି ପ୍ରକାଶ କରିଥିଲେ ।

ତାଙ୍କ ଉପରେ ପାର୍ଶ୍ୱନାଥଙ୍କ ଧର୍ମୋପଦେଶର ଗଭୀର ପ୍ରଭାବ ପଡ଼ିଥିଲା । ଫଳରେ ସେ ଏକଥା ମଧ୍ୟ ମାନିଗଲେ ଯେ, ଶରୀର କ୍ଷୀଣ ହୋଇ ସ୍ୱତଃ ବିନଷ୍ଟ ହେବା ପର୍ଯ୍ୟନ୍ତ ମୃତ୍ୟୁକୁ ଅପେକ୍ଷା କରି ରହିବା ଶୋଭନୀୟ ନୁହେଁ । ଯେ ପର୍ଯ୍ୟନ୍ତ ଶରୀରର ଉପଯୋଗିତା ଅଛି, ସେ ପର୍ଯ୍ୟନ୍ତ ତାହା ରକ୍ଷଣୀୟ । କିନ୍ତୁ ତାହା ଦ୍ୱାରା ବିଶେଷ କାର୍ଯ୍ୟ ସାଧିତ ହେବାର ସମ୍ଭାବନା ନରହିଲେ, ଖାଦ୍ୟପେୟ ବର୍ଜନ କରି ତାକୁ ନଷ୍ଟ କରିଦେବା ଉଚିତ ।

ପାର୍ଶ୍ୱନାଥଙ୍କର ଏହି ଜୀବନ ଦର୍ଶନ କୋସମ୍ବୀ ମହୋଦୟଙ୍କୁ ଏପରି ଭାବରେ ଅନୁପ୍ରାଣିତ କରିଥିଲା ଯେ, ସେ ଦେହତ୍ୟାଗ ପାଇଁ ପ୍ରାୟୋପବେଶନ ଆରମ୍ଭ କରିଦେଲେ । ମହାତ୍ମାଗାନ୍ଧି ଏହି ସଂବାଦ ପାଇବା ପରେ କୋସମ୍ବୀଙ୍କୁ ତହିଁରୁ କ୍ଷାନ୍ତ ହେବାକୁ ପରାମର୍ଶ ଦେଲେ । ତାହା ଫଳରେ, ସେ ମହାତ୍ମାଜୀଙ୍କର ଆଜ୍ଞା ଶିରୋଧାର୍ଯ୍ୟ କରି ଉପବାସରୁ ନିବୃତ୍ତ ହେଲେ, କିନ୍ତୁ ପ୍ରାଣୀମାତ୍ର-ସୁଲଭ ବଞ୍ଚି ରହିବାର ଯେଉଁ ବାସନା ସେ ମନରୁ ଦୂର କରିଦେଇଥିଲେ, ତାହାର ପୁନଃ ପ୍ରତିଷ୍ଠା ହୋଇ ପାରିଲା ନାହିଁ । ସେ କିଛୁକାଳ ବାରାଣସୀରେ ଅବସ୍ଥାନ କଲେ, ତାପରେ ବୋମ୍ବାଇରେ ରହିଲେ ଓ ଶେଷରେ ଗାନ୍ଧିଜୀଙ୍କର ସେବା ଗ୍ରାମ ଆଶ୍ରମରେ ରହିବାକୁ ଆଗ୍ରହ ପ୍ରକାଶ କଲେ । ପରେ, ଖ୍ରୀ: ୧୯୪୭, ଜୁନମାସ ୫ ତାରିଖରେ ତାଙ୍କର ଦେହ କ୍ଷୀଣ ହୋଇ ଆସିଲା ଓ ତାଙ୍କର ମହାପ୍ରୟାଣ ହୋଇଗଲା ।

ତାଙ୍କର ମୃତ୍ୟୁ ସମ୍ବାଦ ପାଇ ଗାନ୍ଧିଜୀ ଦିଲ୍ଲୀର ଏକ ପ୍ରାର୍ଥନା ସଭାରେ କହିଥିଲେ, "ଆମ୍ଭେମାନେ ଏପରି ହୋଇ ଗଲୁଣିଯେ, ନିଜେ ନିଜ କାର୍ଯ୍ୟର ଢେଙ୍ଗୁରା ପିଟି ବୁଲୁଛୁ ଓ ରାଜ ସଂପୃକ୍ତ ବ୍ୟକ୍ତିଙ୍କୁ ନେଇ ସାତ ସ୍ୱର୍ଗରେ ଥୋଇ ଦେଉଛୁ, କିନ୍ତୁ ନୀରବ-ସାଧକଙ୍କୁ ପଚାରୁ ନାହୁଁ ; କୋସମ୍ବୀ ଏହିପରି ଜଣେ ନୀରବ ସାଧକ ଥିଲେ ।"

ଗାନ୍ଧିଜୀ ଧର୍ମାନନ୍ଦଙ୍କର ସ୍ମୃତି ଉଦ୍ଦେଶ୍ୟରେ ଏକ ଯୋଜନା ପ୍ରସ୍ତୁତ କରିବାକୁ ଆଦେଶ ଦେଲେ ଓ ବୌଦ୍ଧଧର୍ମ ତଥା ସାହିତ୍ୟର ସମ୍ବନ୍ଧ ଅଧ୍ୟୟନ କରାଇବା ପାଇଁ କେତେ ଜଣ ବିଦ୍ୟାର୍ଥୀଙ୍କୁ ଲଙ୍କା ପଠାଇବାର ବ୍ୟବସ୍ଥା କଲେ । ଧର୍ମାନନ୍ଦଙ୍କର ସମସ୍ତ ଗ୍ରନ୍ଥ

ଯେପରି ସହଜରେ ପ୍ରକାଶିତ ହୋଇ ପାରିବ, ତାର ମଧ୍ୟ ବ୍ୟବସ୍ଥା କରାଇଲେ ।

ସନାତନ ଧର୍ମ ହେଉ, ଜୈନ ଧର୍ମ ହେଉ ବା ବୌଦ୍ଧ ଧର୍ମ, କୌଣସି ଧର୍ମ ପ୍ରତି ତାଙ୍କ ମନରେ ଆଁସକ୍ତି ନଥିଲା । ତାଙ୍କର ମିତ୍ରମାନେ କହନ୍ତି, ଜନ୍ମଠାରୁ ବ୍ରାହ୍ମଣ ଧର୍ମରେ ପାଳିତ ହେବା ହେତୁ ସେହି ଧର୍ମର ରୀତି ଚଳନ ପ୍ରତି ଓ ବ୍ରାହ୍ମଣମାନଙ୍କର ସାମାଜିକ ଦୃଷ୍ଟିକୋଣ ପ୍ରତି ତାଙ୍କର ତିକ୍ତତା ଜନ୍ମି ଥିଲା । ଯାହାହେଉ, ସେ ନିଜର ଗ୍ରନ୍ଥମାନଙ୍କ ଦ୍ୱାରା, ଉପଦେଶ ଦ୍ୱାରା ଓ ନିଜର ପ୍ରକାଣ୍ଡ ଶିଷ୍ୟ ମଣ୍ଡଳୀ ଦ୍ୱାରା ଭଗବାନ୍ ବୁଦ୍ଧଙ୍କର ଜୀବନ, ବ୍ୟକ୍ତିତ୍ୱ ଓ ତାଙ୍କ ଉପଦେଶ ବିଷୟରେ ଯଥାର୍ଥ ଜ୍ଞାନ ବିତରଣ କରିବାକୁ ଚେଷ୍ଟା କରିଥିଲେ । ବୁଦ୍ଧଙ୍କର ଉପଦେଶ ଏ ଯୁଗର ସମାଜବାଦ ଦ୍ୱାରା କିପରି ଚରିତାର୍ଥ କରାଯାଇ ପାରେ, ତାହା ମଧ୍ୟ ସେ ବୁଝାଇ ଦେଇ ଥିଲେ ।

ମହାତ୍ମାଜୀଙ୍କ ପ୍ରତି ତାଙ୍କର ଅସୀମ ଆଦର ଓ ଶ୍ରଦ୍ଧା ଥିଲେ ମଧ୍ୟ ଯେଉଁଠାରେ ସେ ତାହାଙ୍କର କଥା ଗ୍ରହଣ କରି ପାରୁ ନଥିଲେ, ସେଠାରେ ନିଜର ସ୍ୱାଧୀନ ମତ ପ୍ରକାଶ କରିବାକୁ କଦାପି ସଙ୍କୁଚିତ ହେଉ ନଥିଲେ ।

ଧର୍ମାନନ୍ଦଜୀ ଏହି ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ଯେ, ପାର୍ଶ୍ୱନାଥଙ୍କର ଚାତୁର୍ଯ୍ୟାମ ଧର୍ମରୁହିଁ, ବୌଦ୍ଧ ଓ ଜୈନ, ଏହି ଦୁଇଟି ଧାରା ବାହାରିଥିଲା । ତାଙ୍କର ଏହା ମଧ୍ୟ ଅଭିପ୍ରାୟ ଥିଲା ଯେ, ବୌଦ୍ଧ ଓ ଜୈନ-ବିହାର-ପଦ୍ଧତିର ପରଂପରାରେ ଜୀବନପ୍ରତି ଯେଉଁ ଦାର୍ଶନିକ ଦୃଷ୍ଟି ଅଛି ତାହା ସ୍ୱୀକାର କଲେ ହିଁ ସମାଜବାଦ

ଓ ସାମ୍ୟବାଦ ଚରିତାର୍ଥ ହୋଇ ପାରିବ ଏବଂ ମାନବ ଜାତିର କଲ୍ୟାଣ ସାଧନ ଆଧୁନିକ ମାନବର କରଗତ ହେବ ।

ଧର୍ମାନନ୍ଦଙ୍କ ହୃଦୟରେ ମହାତ୍ମାଙ୍କ ବିଚାରର ଗଭୀର ପ୍ରଭାବ ପଡ଼ିଥିଲା ଓ ତାଙ୍କ ହୃଦୟରେ ଏପରି ଶ୍ରଦ୍ଧା ଦୃଢ଼ୀଭୂତ ହୋଇଥିଲା ଯେ, ଗାନ୍ଧିଙ୍କ ପାଇଁ ନିଜର ଜୀବନ ନିଃଯୋଜିତ ହୋଇ ପାରିଲେ, ତାକୁ ସାର୍ଥକ ମନେ କରିବେ ବୋଲି ଭାବୁଥିଲେ ।

ସେ ଗୋଆରେ ଜନ୍ମ ହୋଇଥିଲେ; ଏଣୁ ଶେଷ ସମୟରେ ସେ କହୁଥିଲେ, "ଆଜି ଶରୀର ସୁସ୍ଥ ଥିଲେ ଗୋଆର ସ୍ୱାଧୀନତା ସଂଗ୍ରାମରେ ନିଶ୍ଚୟ କିଛି ନା କିଛି ଅଂଶ ଗ୍ରହଣ କରିଥାନ୍ତି ।" ଶରୀର ଦୁର୍ବଳ ହେଲେ ମଧ୍ୟ ଯେତେବେଳେ ସେ ମହାତ୍ମାଜୀଙ୍କୁ ନୁଆଖାଲିରେ କାର୍ଯ୍ୟ କରୁଥିବାର ଦେଖିଲେ, ସେତେବେଳେ ଅତ୍ୟନ୍ତ ବିଷାଦରେ କହିଲେ" ମୁଁ ମଧ୍ୟ ଗୋଆକୁ ଯାଇ ନିଜ ଜନ୍ମଭୂମିର ସ୍ୱାଧୀନତା ପାଇଁ ଲଢ଼ି ଦେହତ୍ୟାଗ କରିପାରେ ।"

ଧର୍ମାନନ୍ଦଙ୍କର ବୁଦ୍ଧ-ଭକ୍ତିର ପ୍ରକୃତ ସ୍ଫୂର୍ତ୍ତି ପାଣ୍ଡିତ୍ୟରେ ହୋଇ ନଥିଲା, ହୋଇଥିଲା ଶୀଳ ଓ ଚରିତ୍ରରେ । ସେ ସବୁ ପ୍ରକାରର ଅତ୍ୟନ୍ତ କଠିନ ଓ ଏକାନ୍ତ ପ୍ରତିକୂଳ ପରିସ୍ଥିତିରେ ରହିଥିଲେ ଓ ବୁଲିଥିଲେ । ପୁଣି, ସର୍ବଥା ନିଷ୍ପାପ ଓ ଧୂଆ ଉଜ୍ଜ୍ୱଳ ପରି ନିର୍ମଳ ରହିଥିଲେ । ଶୀଳପ୍ରତି ଏତେ ଗଭୀର ଆଗ୍ରହ ହେତୁ ଶାନ୍ତି-ଦେବାଚାର୍ଯ୍ୟଙ୍କ 'ବୋଧିଚର୍ଯ୍ୟାବତାର' ତାଙ୍କୁ ଭାରି ଭଲ ଲାଗିଲା ଓ ସେ ତାକୁ ଗୁଜୁରାଟୀ ଓ ମରାଠୀ ଭାଷାରେ ଅନୁବାଦ କଲେ । କେବଳ ନିଜେ ମନକୁ 'ସୁବାସିତ' କରିବା ପାଇଁ ଶାନ୍ତିଦେବାଚାର୍ଯ୍ୟ ଏ

ଯେଉଁ ପୁସ୍ତକ ଲେଖିଥିଲେ, ତହିଁରେ ସବସ ଶୀଳର ସୁଗନ୍ଧ ଭରିରହିଛି, ତେଣୁ ଧର୍ମାନନ୍ଦଜୀ ଏଥିରେ ମୁଗ୍ଧ ହୋଇଥିଲେ ।

ଏହାଙ୍କ ନିର୍ଭୀକତାର ଏକ ସୁନ୍ଦର ଦୃଷ୍ଟାନ୍ତ ମନେ ପଡ଼ୁଛି । ଥରେ ଧର୍ମାନନ୍ଦ ବଡ଼ୋଦାରେ ସମ୍ରାଟ ଅଶୋକଙ୍କ ସମ୍ବନ୍ଧରେ ଭାଷଣ ଦେଉଥିଲେ ଓ ସଭାପତିଥିଲେ, ସ୍ୱୟଂ ବଡ଼ୋଦା ମହାରାଜା ଶ୍ରୀ ସୟାଜୀ ରାଓ । ଭାଷଣ ପୂର୍ବରୁ ଧର୍ମାନନ୍ଦ ଜାଣି ପାରିଲେ, ରାଜ୍ୟର କୌଣସି ଅଞ୍ଚଳର ଲୋକେ ମହାରାଜାଙ୍କୁ ଅନୁରୋଧ କରିଥିଲେ ଯେ 'ମଦ ଦୋକାନଗୁଡ଼ିକ ବନ୍ଦ କରାଯାଉ' । ଏହାର ଉତ୍ତରରେ ମହାରାଜା କହିଥିଲେ, 'ଏହି ଦୋକାନରୁ ସରକାରଙ୍କର ଯାହା ଆୟ ହେଉଅଛି,ତାହା ଯଦି ଅନ୍ୟ ଉପାୟରେ ପୂର୍ତ୍ତି କରାଯାଏ ତେବେ ଦୋକାନଗୁଡ଼ିକ ବନ୍ଦ କରି ଦିଆଯିବ ।' ଧର୍ମାନନ୍ଦ ନିଜ ଭାଷଣରେ କହିଥିଲେ, 'ଅଶୋକ ନିଜ ରାଜ୍ୟରେ ମଦ ବନ୍ଦ କରି ଦେଇଥିଲେ । ସେ ଏହା କହି ନଥିଲେ ଯେ ମଦ ବନ୍ଦ ହେଲେ ହେଉଥିବା ଆୟର ଅଭାବକୁ ଅନ୍ୟ ଜରିଆରେ ଯଦି ପୂର୍ତ୍ତି କରି ଦିଆଯାଏ, ତେବେ ମୁଁ ମଦ ବନ୍ଦ କରିଦେବି ।' ମହାରାଜା ଭାଷଣ ଶେଷରେ କହିଲେ, "ଧର୍ମାନନ୍ଦ ଆଜି ଆମକୁ ଭଲ ପାଠଟିଏ ଶିଖାଇଲେ ।"

ପୁଣି ସମସ୍ତେ ଭାବିଲେ, ମହାରାଜାଙ୍କର ମସ୍ତିଷ୍କ ବିଗିଡ଼ି ଗଲା ଓ ସେ ଧର୍ମାନନ୍ଦଙ୍କୁ ଦିଆଯାଉଥିବା ସାହାଯ୍ୟ ବନ୍ଦ କରିଦେବେ । କିନ୍ତୁ ପରିଣାମ ଅନ୍ୟ ପ୍ରକାର ହେଲା । ପରଦିନ ଘୋଷଣା ହେଲା ଯେ, ସମସ୍ତ ମଦ ଦୋକାନ ବନ୍ଦ କରି ଦିଆଯିବ ।

# କୋସମ୍ବୀଙ୍କ ସାହିତ୍ୟକ ଦାନ

ବୌଦ୍ଧମାନେ ନିଜର ଦୀକ୍ଷା ଆରମ୍ଭରେ 'ଶରଣତ୍ରୟ'ର ଉଚ୍ଚାରଣ କରନ୍ତି । ଧର୍ମାନନ୍ଦଜୀ ସର୍ବ ପ୍ରଥମେ ବୁଦ୍ଧ, ଧର୍ମ ଓ ସଙ୍ଘ-ତିନୋଟି ବିଷୟରେ କେତେକ ବକ୍ତୃତା ଦେଲେ ଓ ଗୋଟିଏ କ୍ଷୁଦ୍ର ପୁସ୍ତକ ପ୍ରଥମେ ପ୍ରକାଶ କଲେ ।

ଏହା ପରେ ପାଲି-ପରମ୍ପରା ଅନୁଯାୟୀ ସେ ଭଗବାନ୍ ବୁଦ୍ଧଙ୍କର ପୂର୍ବଜନ୍ମର କେତେକ କଥା, ଗୌତମ ବୁଦ୍ଧଙ୍କର ବିସ୍ତୃତ ଜୀବନୀ ଓ ତାଙ୍କ ଧର୍ମୋପଦେଶର ସାର, ତିନୋଟିକୁ ଏକତ୍ର କରି 'ବୁଦ୍ଧଲୀଳା ସାର ସଂଗ୍ରହ' ନାମକ ଅତିରୋଚକ ଓ ସୁବୋଧ ଗ୍ରନ୍ଥ ରଚନା କଲେ । ଏହି ଗ୍ରନ୍ଥ ଘରେ ଘରେ ପ୍ରଚୁର ଲାଭ କରି ଲୋକମାନଙ୍କୁ ବୌଦ୍ଧଧର୍ମ ବିଷୟରେ ଉତ୍ସାହ ଓ ସମଧିକ ଜ୍ଞାନ ବିତରଣ କଲା ।

ଭଗବାନ୍ ବୁଦ୍ଧ ନିଜର ସହସ୍ର ସଂଖ୍ୟକ ଅନୁଗାମୀ ଭିକ୍ଷୁ-ମାନଙ୍କୁ ସଂଗଠନ କରିବାପାଇଁ ଓ ସେମାନଙ୍କ ଜୀବନକୁ ସାଧନା-ପୂତ କରିବା ପାଇଁ ଯେଉଁ ନିୟମ ପ୍ରସ୍ତୁତ କରିଥିଲେ, ତାହା 'ବିନୟ ପିଟକ'ରେ ଉପଲବ୍ଧ । ତାହାର ସାରାଂଶ ମରାଠୀରେ ଜଣାଇ ଦେବାକୁ ମୁଁ ଧର୍ମାନନ୍ଦଙ୍କୁ କହିଲି, ଫଳରେ ସେ 'ବୌଦ୍ଧସଙ୍ଘାଚ୍ଛ ପରିଚୟ' ନାମକ ଗ୍ରନ୍ଥ ରଚନା କଲେ ।

ପାଲି-ସାହିତ୍ୟରେ ଭଗବାନ୍ ବୁଦ୍ଧଙ୍କର ଉପଦେଶ 'ଧର୍ମପଦ' ଓ 'ସୁତ୍ତନିପାତ' ଏହି ଦୁଇଟି ଗ୍ରନ୍ଥରେ ସୁନ୍ଦର ଭାବେ ସଂକଳିତ ହୋଇଛି । ଏଣୁ ଧର୍ମାନନ୍ଦଜୀ ଏ ଦୁଇଟି ଗ୍ରନ୍ଥର ଅନୁବାଦ କଲେ ଓ ନିତ୍ୟପାଠ ପାଇଁ ମରାଠୀ ଭାଷାନ୍ତର ସହିତ ଏକ ପାଲି 'ଲଘୁପାଠ'

ମଧ୍ୟ ପ୍ରସ୍ତୁତ କରିଦେଲେ । ମହାଯାନ ପନ୍ଥାର ସନ୍ଥମାନଙ୍କ ମଧ୍ୟରେ ଶାନ୍ତିଦେବାଚାର୍ଯ୍ୟଙ୍କର ସ୍ଥାନ ବହୁତ ଉଚ୍ଚରେ; ତାଙ୍କ ଗ୍ରନ୍ଥ ମଧ୍ୟରେ 'ବୋଧିଚର୍ଯ୍ୟାବତାର' ସର୍ବଶ୍ରେଷ୍ଠ ରୂପେ ଗୃହୀତ । ଧର୍ମାନନ୍ଦ ତାହା ମଧ୍ୟ ଅନୁବାଦ କରିଛନ୍ତି ।

ବୌଦ୍ଧସାଧନା ପ୍ରତିପାଦକ ସର୍ବାପେକ୍ଷା ମହତ୍ତ୍ୱପୂର୍ଣ୍ଣ ଗ୍ରନ୍ଥ ହେଉଛି, 'ବିସୁଦ୍ଧିମଗ୍‌ଗ' । ତାହାର ସଂଶୋଧନ କରିବା ପାଇଁ ଧର୍ମାନନ୍ଦଙ୍କୁ ଚାରିଥର ଆମେରିକା ଡକା ଯାଇଥିଲା । ଏହି ଗ୍ରନ୍ଥ ଉପରେ ସେ ପାଲିଭାଷାରେ 'ଦୀପିକା' ଟୀକା ଲେଖିଅଛନ୍ତି ଓ ତାହାର ସାରାଂଶ ମରାଠୀ ଓ ଗୁଜୁରାଟି ଭାଷାରେ 'ସମାଧି ମାର୍ଗ' ନାମକ ଗ୍ରନ୍ଥରେ ଲିପିବଦ୍ଧ କରିଛନ୍ତି ।

ଜାତକ କଥାଗୁଡ଼ିକ ବୌଦ୍ଧ ସାହିତ୍ୟରେ ଅତ୍ୟନ୍ତ ରୋଚକ, ତହିଁରେ ବୁଦ୍ଧଙ୍କର ପୂର୍ବଜନ୍ମ କଥା ବର୍ଣ୍ଣିତ । ସେଗୁଡ଼ିକ ସଂଗୃହୀତ ହୋଇ ଗୁଜରାଟି ଅନୁବାଦ ସହ କେବଠାରୁ ପ୍ରକାଶିତ ହୋଇ ଗଲାଣି ।

ବୁଦ୍ଧଙ୍କ ଗୃହତ୍ୟାଗର କାବ୍ୟିକ ବିବରଣୀ ଲୋକମାନଙ୍କ ମଧ୍ୟରେ ପ୍ରଚଳିତ ଅଛି, ଯଥା :—ବ୍ୟାଧି, ଜରା ଓ ମୃତ୍ୟୁ ଦର୍ଶନ କରି "ଆଶ୍ଚର୍ଯ୍ୟ ଚକିତ" ରାଜପୁତ୍ର ସିଦ୍ଧାର୍ଥ ଗୋପନରେ ଗୃହତ୍ୟାଗ କରି ଚାଲିଯାଇ ଥିଲେ । ତାହା କେବଳ କାଳ୍ପନିକ କଥା । ଭଗବାନ୍ ବୁଦ୍ଧ କାହିଁକି ଗୃହତ୍ୟାଗ କଲେ ତାହାର ଯୁକ୍ତି ସଙ୍ଗତ କାରଣ ପ୍ରାମାଣିକ ଭାବେ ଲୋକ ସମକ୍ଷରେ ଉପସ୍ଥାପନ କରିବା ପାଇଁ ଧର୍ମାନନ୍ଦଜୀ ଏକ କ୍ଷୁଦ୍ର ନାଟକ ଲେଖି ଅଛନ୍ତି । ତାହା 'ବୋଧିସତ୍ତ୍ୱ ନାଟକ' ନାମରେ ମରାଠୀ ଭାଷାରେ ପ୍ରକାଶିତ ହୋଇଛି । ଅଭିଧର୍ମ ଉପରେ ମଧ୍ୟ ସେ 'ନବନୀତଟୀକା' ଲେଖିଅଛନ୍ତି ଓ ସେହି ବିଷୟରେ ଗୁଜରାଟି ଭାଷାରେ ଲେଖାଇଛନ୍ତି ।

ଗୁଜୁରାଟ ବିଦ୍ୟାପୀଠରେ ରହି ଯେପରି ସେ ଅଧ୍ୟାପନ କାର୍ଯ୍ୟ କରୁଥିଲେ, ସେହିପରି ଜୈନଧର୍ମ ଓ ସାହିତ୍ୟର ଅଧ୍ୟୟନ ମଧ୍ୟ କରୁଥିଲେ । ଆମେରିକାରେ ରହିବା ବେଳେ ଓ ଲାଲା ହରଦୟାଲଙ୍କ ସହଯୋଗ ହେତୁ ସେ 'ସମାଜ-ବାଦ' ମଧ୍ୟ ଅଧ୍ୟୟନ କରିଥିଲେ । ଏହି ସମସ୍ତ ଅଧ୍ୟୟନ ଫଳରେ ସେ ଦୁଇଟି ଗ୍ରନ୍ଥ ଲେଖିଲେ—(୧) 'ହିନ୍ଦୀ ସଂସ୍କୃତି ଆଣି ଅହିଂସା' ଓ (୨) 'ପାର୍ଶ୍ୱନାଥଙ୍କ ଚାତୁର୍ଯ୍ୟାମ ଧର୍ମ ।'

ଆତ୍ମଚରିତ ଉପରେ ସେ 'ନିବେଦନ' ଓ 'ଖୁଲସା' ନାମକ ଦୁଇଟି ଗ୍ରନ୍ଥ ଲେଖିଛନ୍ତି । 'ନିବେଦନ' ମରାଠୀ ଓ ଗୁଜୁରାଟୀରେ ପ୍ରକାଶିତ ହୋଇ ଯାଇଅଛି କିନ୍ତୁ 'ଖୁଲସା' ପ୍ରକାଶିତ ହୋଇନାହିଁ ।

**କାକାସାହେବ୍ କାଲେଲକର**



# ଭୂମିକା

ପାଲି ଭାଷାରେ ତ୍ରିପିଟକ ନାମକ ଯେଉଁ ପ୍ରସିଦ୍ଧ ଗ୍ରନ୍ଥ ସମୂହ ଦେଖାଯାଏ, ତାହା ତିନି ଭାଗରେ ବିଭକ୍ତ —'ସୁତ୍ତପିଟକ', 'ବିନୟ-ପିଟକ' ଓ 'ଅଭିଧମ୍ମ ପିଟକ'। ସୁତ୍ତପିଟକରେ ମୁଖ୍ୟତଃ ବୁଦ୍ଧଦେବ ଏବଂ ତାହାଙ୍କର ପ୍ରଧାନ ଶିଷ୍ୟମାନଙ୍କର ଉପଦେଶାବଳୀ ସଂଗୃହୀତ ହୋଇଛି। ବିନୟ ପିଟକରେ, ଭିକ୍ଷୁମାନଙ୍କ ଆଚରଣ ସମ୍ପର୍କରେ ବୁଦ୍ଧଦେବଙ୍କ ପ୍ରଣୀତ ନିୟମାବଳୀ ଓ ସମୟ ସମୟରେ ସେଗୁଡ଼ିକର ହୋଇଥିବା ପରିବର୍ତ୍ତନ ଓ ତହିଁର ଟୀକାମାନ ସଙ୍କଳିତ ହୋଇଛି। ଅଭିଧମ୍ମପିଟକ ୭ଟି ଅଧ୍ୟାୟରେ ସମ୍ପୂର୍ଣ୍ଣ। ତହିଁରେ ବୁଦ୍ଧଦେବଙ୍କ ଉପଦେଶ ଅନ୍ତର୍ଗତ ଅନେକ କଥାର ବିସ୍ତୃତ ସମ୍ୟକ୍ ଭାବରେ କରାଯାଇଛି।

'ଦୀଘନିକାୟ', 'ମଜ୍‌ଝିମନିକାୟ', 'ସଂଯୁତ୍ତନିକାୟ', 'ଅଙ୍ଗୁ-ତ୍ତର ନିକାୟ' ଓ 'ଖୁଦ୍ଦକନିକାୟ', ସୁତ୍ତପିଟକର ଏହି ପାଞ୍ଚଟି ମୁଖ୍ୟ ବିଭାଗ ଦେଖାଯାଏ। ଦୀଘନିକାୟରେ ୩୪ଟି ବଡ଼ ବଡ଼ ସୁତ୍ତର ସଂଗ୍ରହ କରାଯାଇଛି। ଦୀଘର ଅର୍ଥ ହେଉଛି ବୃହତ୍ (ସୁତ୍ତ); ସୁତରାଂ, ସେଗୁଡ଼ିକର ସଂଗ୍ରହ ତହିଁରେ ହୋଇଥିବାରୁ ତାହାର ନାମ ହେଉଛି 'ଦୀଘନିକାୟ'।

ମଧ୍ୟମ (ମଜ୍‌ଝିମ) ଆକାରର ସୁତ୍ତମାନଙ୍କର ସଂଗ୍ରହ ଯେଉଁ ଗ୍ରନ୍ଥରେ କରାଯାଇଛି, ତାହାର ନାମ ଦିଆ ଯାଇଛି 'ମଜ୍‌ଝିମ-ନିକାୟ'। 'ସଂଯୁତ୍ତନିକାୟର' ପ୍ରଥମ ବିଭାଗରେ "ଗାଥା" ମିଶ୍ରିତ ସୁତ୍ତ ସମାବିଷ୍ଟ ହୋଇଅଛି। ପରବର୍ତ୍ତୀ ବିଭାଗମାନଙ୍କରେ ବିଭିନ୍ନ

ବିଷୟ ସହିତ ସମ୍ବନ୍ଧ ସୂତ୍ରମାନ ସଂଗୃହୀତ ହୋଇଅଛି । ତେଣୁ ତାହାକୁ 'ସଂଯୁତ୍ତନିକାୟ' ବା 'ମିଶ୍ର ନିକାୟ' କୁହାଯାଇଛି । 'ଅଙ୍ଗୁତ୍ତର'ର ଅର୍ଥ ହେଉଛି, ଗୋଟିଏ ଗୋଟିଏ ଅଙ୍ଗର ବିକାଶ ଘଟିଥିବା ବିଭାଗ । ତହିଁରେ ଏକକ ନିପାତଠାରୁ ଆରମ୍ଭ କରି ଏକାଦଶକ ନିପାତ ପର୍ଯ୍ୟନ୍ତ ୧୧ଟି 'ନିପାତର' ସଂଗ୍ରହ ହୋଇଅଛି । ପ୍ରଥମ 'ନିପାତ'ରେ ଗୋଟିଏ ମାତ୍ର ବସ୍ତୁ ସମ୍ପର୍କରେ ବୁଦ୍ଧଦେବଙ୍କ ଦ୍ୱାରା କଥିତ ହୋଇଥିବା 'ସୂତ୍ର' ସଂଗୃହୀତ ହୋଇଛି । ଏହି କ୍ରମରେ, ଅନ୍ୟାନ୍ୟ ନିପାତର ନାମ ପ୍ରବର୍ତ୍ତନର ଅର୍ଥ ବୁଝିବା ଆବଶ୍ୟକ । 'ଖୁଦ୍ଦକନିକାୟ'ର ଅର୍ଥ କ୍ଷୁଦ୍ର କ୍ଷୁଦ୍ର ପ୍ରକରଣମାନଙ୍କର ସଂଗ୍ରହ । ତହିଁରେ ନିମ୍ନଲିଖିତ ପନ୍ଦର ଗୋଟି ପ୍ରକରଣ ଅଛି ।

ଖୁଦ୍ଦକ ପାଠ, ଧମ୍ମପଦ, ଉଦାନ, ଇତିବୁତ୍ତକ, ସୁତ୍ତନିପାତ, ବିମାନବତ୍ଥୁ, ପେତବତ୍ଥୁ, ଥେରଗାଥା, ଥେରୀଗାଥା, ଜାତକ, ନିଦ୍ଦେସ, ପଟିସମ୍ଭିଦାମଗ୍‌ଗ, ଅପଦାନ, ବୁଦ୍ଧବଂସ ଓ ଚରିୟାପିଟକ । ଏସବୁ ହେଉଛି ସୂତ୍ରପିଟକର ଅନ୍ତର୍ଗତ । ବିନୟ-ପିଟକର 'ପାରାଜିକା', 'ପାଚିତ୍ତିୟାଦି', 'ମହାବଗ୍‌ଗ', 'ଚୂଲ୍ଲବଗ୍‌ଗ', ଓ 'ପରିବାର ପାଠ' ନାମକ ପାଞ୍ଚୋଟି ବିଭାଗ ଅଛି ।

ତୃତୀୟରେ 'ଅଭିଧମ୍ମପିଟକ' । ଏହାର ସାତୋଟି ପ୍ରକରଣ ଅଛି; ଯଥା, 'ଧମ୍ମସଙ୍ଗଣି', 'ବିଭଂଗ', 'ଧାତୁକଥା', 'ପୁଗ୍‌ଗଲ-ପଞ୍ଞତ୍ତି', 'କଥାବତ୍ଥୁ', 'ଯମକ' ଓ 'ପଟ୍‌ଠାନ' ।

ବୁଦ୍ଧଘୋଷଙ୍କ ସମୟରେ ଅର୍ଥାତ୍ ପ୍ରାୟ ଖ୍ରୀଷ୍ଟୀୟ ଚତୁର୍ଥ ଶତକରେ ଏହି ଗ୍ରନ୍ଥ ସମୁଦାୟର ବାକ୍ୟ ବା ଅଂଶମାନଙ୍କୁ 'ପାଲି' କୁହାଯାଉ ଥିଲା । ବୁଦ୍ଧଘୋଷଙ୍କର ଗ୍ରନ୍ଥରେ ତ୍ରିପିଟକ ବଚନର

ନିର୍ଦ୍ଦେଶ ଏହିଭଳି ଶବ୍ଦରେ କରାଯାଇଛି ଯଥା,—"ଅୟମେତ୍ଥ ପାଳି" (ଏହା ଏଠାରେ ପାଳି ଅଟେ) ଅଥବା "ପାଳିୟଂ ବୁତ୍ତଂ" (ପାଳିରେ କୁହାଯାଇଛି) । ଯେଉଁପରି ପାଣିନି 'ଛନ୍ଦସି' ଶବ୍ଦରେ ବେଦକୁ ଓ 'ଭାଷାୟାମ୍' ଶବ୍ଦରେ ସେ ସମୟର ସଂସ୍କୃତ ଭାଷାକୁ ଅଭିହିତ ବା ଉଲ୍ଲେଖ କରିଛନ୍ତି, ସେହିପରି ବୁଦ୍ଧଘୋଷାଚାର୍ଯ୍ୟ, "ପାଳିୟଂ" ଶବ୍ଦରେ ତ୍ରିପିଟକର ବାକ୍ୟମାନଙ୍କର ଓ "ଅଟ୍ଠ କଥାୟଂ" ଶବ୍ଦରେ ସେହି ସମୟର ସିଂହଳୀ ଭାଷାରେ ପ୍ରଚଳିତ 'ଅଟ୍ଠ କଥା'ମାନଙ୍କର ବାକ୍ୟାବଳୀର ଉଲ୍ଲେଖ ବା ନିର୍ଦ୍ଦେଶ କରିଅଛନ୍ତି ।

'ଅଟ୍ଠ କଥା'ର ଅର୍ଥ ହେଉଛି, ଅର୍ଥ ସହିତ କଥା । ସିଂହଳରେ ପ୍ରଥମେ ତ୍ରିପିଟକର ବାକ୍ୟମାନଙ୍କର ଅର୍ଥ ବୁଝାଇ ଦିଆଯାଉ ଥିଲା । ଆବଶ୍ୟକ ସ୍ଥଳରେ କୌଣସି ଏକ କଥାର ଅବତାରଣା ବା ଉଲ୍ଲେଖ କରାଯାଉ ଥିଲା । ପରେ ସେହି ଅଟ୍ଠ କଥା ଗୁଡ଼ିକୁ ଲିପିବଦ୍ଧ କରାଗଲା । କିନ୍ତୁ ଅତ୍ୟଧିକ ପରିମାଣରେ ତହିଁରେ ପୁନରୁକ୍ତି ଦୋଷ ରହିବାରୁ, ସିଂହଳ ଦ୍ୱୀପ ଛଡ଼ା, ବାହାରର ଲୋକଙ୍କ ପକ୍ଷରେ ସେ ସବୁ ବିଶେଷ ଉପଯୋଗୀ ହେଲାନାହିଁ । ଏହା ଅନୁଭବ କରି ବୁଦ୍ଧଘୋଷାଚାର୍ଯ୍ୟ ସେ ମଧ୍ୟରୁ ପ୍ରଧାନ ପ୍ରଧାନ 'ଅଟ୍ଠକଥା'ମାନଙ୍କୁ ସଂକ୍ଷିପ୍ତ ଭାବରେ ତ୍ରିପିଟକୀୟ ଭାଷାରେ ଭାଷାନ୍ତରିତ କରିଦେଲେ । ଏହା ଏତେ ସୁନ୍ଦର ଭାବରେ ସେ କରିଦେଲେ ଯେ, ତ୍ରିପିଟକ ଗ୍ରନ୍ଥମାନଙ୍କ ପରି ତାହାର ସମ୍ମାନ ମଧ୍ୟ ବଢ଼ିଗଲା, ଅର୍ଥାତ୍ ସେହି କଥା ଗୁଡ଼ିକୁ ତ୍ରିପିଟକ ଗ୍ରନ୍ଥତୁଲ୍ୟ ଗୁରୁତ୍ୱ ଦିଆଗଲା । ("ପାଳିଂ ବିୟ ତମଗ୍‌ଗହୁଂ") ଏଣୁ, ଏହି 'ଅଟ୍ଠ କଥା' ଗୁଡ଼ିକ ମଧ୍ୟ ପାଳି ରୂପେ କ୍ରମେ ଅଭିହିତ ହେଲା । ପ୍ରକୃତରେ କହିବାକୁ ଗଲେ 'ପାଳି' ଶବ୍ଦଟି କୌଣସି ଭାଷାର ନାମ ନୁହେ ।

ଏ ଭାଷାର ମୂଳ ନାମ ହେଉଛି ମାଗଧୀ, କିନ୍ତୁ ଏହିପରି ଭାବରେ ମାଗଧୀଭାଷା 'ପାଳି' ଭାଷାରୂପେ କଥିତ ହେଲା ।

ବୁଦ୍ଧଘୋଷାଚାର୍ଯ୍ୟଙ୍କ ମତରେ ରାଜଗୃହରେ ଅନୁଷ୍ଠିତ ପ୍ରଥମ ସଭାରେ ତ୍ରିପିଟକର ଉପରୋକ୍ତ ବିଭାଗ କରାଯାଇ ଥିଲା । ଭଗବାନ୍ ବୁଦ୍ଧଙ୍କ ପରିନିର୍ବାଣ ପରେ ଭିକ୍ଷୁମାନେ ଅତ୍ୟନ୍ତ ଶୋକାକୁଳ ହୋଇଗଲେ । ସେତେବେଳେ ସୁଭଦ୍ର ନାମକ ଜଣେ ବୃଦ୍ଧ ଭିକ୍ଷୁ କହିଲେ, "ଆମର ଶାସକଙ୍କର ପରିନିର୍ବାଣ ହୋଇଯାଇ ଭଲ ହୋଇଛି । କଣ କରିବାକୁ ହେବ ଓ କଣ ନ କରିବାକୁ ହେବ; ଏସବୁ କଥାରେ ସେ ଆମକୁ ବାନ୍ଧି ରଖିଥିଲେ । ବର୍ତ୍ତମାନ ଆମେ ସ୍ୱାଧୀନ ଭାବରେ, ଯେପରି ଚାହିଁବା, ସେପରି କାର୍ଯ୍ୟ କରିପାରିବା ।" ଏହା ଶୁଣି ମହାକାଶ୍ୟପଙ୍କ ମନରେ ପ୍ରତିକ୍ରିୟା ଜାତ ହେଲା । ସେ ଭାବିଲେ, ଯଦି ଆଚରଣରେ 'ବିନୟ' ପ୍ରକାଶ ନପାଏ ତାହାହେଲେ ସୁଭଦ୍ରଙ୍କ ପରି ଭିକ୍ଷୁମାନେ ସ୍ୱେଚ୍ଛାଚାରୀ ହୋଇପିବେ । ଅତଏବ ଅତିଶୀଘ୍ର ଭିକ୍ଷୁ ସଂଘର ସଭା ଡକାଇ ଧର୍ମ ଏବଂ ବିନୟର ସଂଗ୍ରହ କରିରଖିବା ଉଚିତ । ଏହି ଅଭିପ୍ରାୟରେ ମହାକାଶ୍ୟପ ସେହି ଗ୍ରୀଷ୍ମର୍ମାସ୍ୟାରେ ୫୦୦ ଭିକ୍ଷୁଙ୍କୁ ରାଜଗୃହରେ ଏକତ୍ରିତ କରାଇଲେ । ସେହି ସଭାରେ ପ୍ରଥମେ ଉପାଲିଙ୍କ ପରାମର୍ଶ ଅନୁସାରେ 'ବିନୟ'ର ସଂଗ୍ରହ କରାଗଲା । ପୁଣି ଆନନ୍ଦଙ୍କର ପରାମର୍ଶ ଅନୁସାରେ 'ସୁତ୍ତ' ଏବଂ 'ଅଭିଧର୍ମ' ଏ ଦୁଇ ପିଟକର ସଂଗ୍ରହ କରାଗଲା । କେତେକଙ୍କ ମତରେ,ଅଭିଧମ୍ମ ପିଟକରେ ହିଁ ଖୁଦ୍ଦକନିକାୟର ଅନ୍ତର୍ଭାବ କରାଯାଇ ଥିଲା । କିନ୍ତୁ ଅନ୍ୟ କେତେକଙ୍କ ମତରେ ଖୁଦ୍ଦକନିକାୟ 'ସୁତ୍ତପିଟକ'ର ଅନ୍ତର୍ଭୁକ୍ତ ହେବା ଉଚିତ ।

ଏହା ହେଉଛି, 'ସୁମଙ୍ଗଳବିଳାସିନୀର' ନିଦାନ କଥାରେ ଥିବା ବିଷୟର ସଂକ୍ଷିପ୍ତ ସାର । ଏ ସବୁ 'ସମନ୍ତ ପାସାଦିକା' ନାମକ

ବିନୟ-ଅଟ୍ଠ କଥାର ନିଦାନ କଥାରେ ମଧ୍ୟ ଉଲ୍ଲିଖିତ ହୋଇଛି । କିନ୍ତୁ ତ୍ରିପିଟକ ଗ୍ରନ୍ଥମାନଙ୍କରେ ଏ କଥାର ଉଲ୍ଲେଖ କେଉଁଠାରେ ଦେଖିବାକୁ ମିଳେ ନାହିଁ । ବୁଦ୍ଧଦେବଙ୍କର ପରିନିର୍ବାଣ ପରେ ପରେ; ରାଜଗୃହରେ ଭିକ୍ଷୁ ସଂଘର ପ୍ରଥମ ସଭା ଆହୂତ ହୋଇଥାଇ ପାରେ । କିନ୍ତୁ ସେହି ସଭାରେ ବର୍ତ୍ତମାନର ପିଟକ ବିଭାଗ କିମ୍ବା ପିଟକର ନାମ ସୁଦ୍ଧା ଉଚ୍ଚାରିତ ହୋଇଥିଲି ବୋଲି ମନେ ହୁଏ ନାହିଁ । ଅଶୋକଙ୍କର ସମୟ ପର୍ଯ୍ୟନ୍ତ ଧର୍ମ୍ମ ଏବଂ ବିନୟ ନାମରେ ବୁଦ୍ଧଦେବଙ୍କ ଉପଦେଶାବଳୀର ଦୁଇଟି ମାତ୍ର ବିଭାଗ କରାଯାଇଥିଲା । ଏ ମଧ୍ୟରେ ଧର୍ମ୍ମର ୯ ଗୋଟି ଅଙ୍ଗ ଗୃହୀତ ହୋଇଥିଲି ଯଥା, ସୁତ୍ତ, ଗେୟ୍ୟ, ବେୟ୍ୟାକରଣ, ଗାଥା, ଉଦାନ, ଇତିବୁତ୍ତକ, ଜାତକ, ଅବ୍ଭୁତ ଧମ୍ମ ଓ ବେଦଲ୍ଲ । ଏହି ଅଙ୍ଗଗୁଡ଼ିକର ଉଲ୍ଲେଖ 'ମଜ୍ଝିମ ନିକାୟ'ର 'ଅଲଗଦ୍ଦୂପମସୁତ୍ତ'ରେ ଓ ଅଙ୍ଗୁତ୍ତର ନିକାୟରେ ୭ଟି ସ୍ଥଳରେ ଉଲ୍ଲେଖ କରାଯାଇଛି ।

'ସୁତ୍ତ', ଏହା ପାଲି ଭାଷାର ଏକଶବ୍ଦ । ସଂସ୍କୃତ ଭାଷାରେ ସୂକ୍ତ ବା ସୂତ୍ର ଅର୍ଥରେ ବୋଧହୁଏ ପାଳିରେ 'ସୁତ୍ତ'ର ପ୍ରୟୋଗ ହୋଇଛି । କେତେକ କହନ୍ତି, ବେଦରେ ଯେପରି 'ସୂକ୍ତ' ଅଛି, ସେହିପରି ଏଗୁଡ଼ିକ ହେଉଛି 'ପାଲିସୂକ୍ତ' କିନ୍ତୁ ମହାଯାନ ସଂପ୍ରଦାୟର ଗ୍ରନ୍ଥମାନଙ୍କରେ ଏଗୁଡ଼ିକୁ 'ସୂତ୍ର' ବୋଲି କୁହାଯାଇଛି । ଏହାହିଁ ଯଥାର୍ଥ ଅର୍ଥ ପରି ମନେ ହୁଏ । ଆଜକାଲି ମଧ୍ୟ 'ସୂତ୍ର' ଶବ୍ଦର ସେହିପରି ଅର୍ଥ କରାଯାଏ ଏବଂ ପାଣିନିଙ୍କ ସୂତ୍ର ବା ସେ ପ୍ରକାର ଅନ୍ୟସୂତ୍ରମାନଙ୍କରୁ ଏ ଶବ୍ଦର ପ୍ରୟୋଗ ପ୍ରଚଳିତ ହୋଇ ଆସିଛି । କିନ୍ତୁ "ଆଶ୍ୱଲାୟନ ଗୃହ୍ୟସୂତ୍ର" ପ୍ରଭୃତି ସୂତ୍ର ଏହି ସଂକ୍ଷିପ୍ତ ସୂତ୍ରଠାରୁ ଅପେକ୍ଷାକୃତ ବ୍ୟାପକ ଓ ବିସ୍ତୃତ । ଠିକ୍ ସେହି ଅର୍ଥରେ ପାଳି ଭାଷାରେ ସୂତ୍ର ଗୁଡ଼ିକ ପ୍ରଥମେ ପ୍ରଥମେ ରଚିତ

ହୋଇଥାଇ ପାରେ । ଏ ସମ୍ପର୍କରେ, ଆଶ୍ୱଲାୟନ ପ୍ରଭୃତି ମନୀଷୀ-ମାନେ ନିଜ ନିଜର ସୂତ୍ରଗୁଡ଼ିକୁ ପାଳନ୍ଦୃତ୍ରମାନଙ୍କ ଅନୁସାରେ ରଚନା କରିଥିଲେ କି ବୌଦ୍ଧମାନେ ସେମାନଙ୍କ ସୂତ୍ରର ଆଦର୍ଶରେ ନିଜ ନିଜର ସୂତ୍ର ରଚନା କରି ଥିଲେ, ଏସବୁ ଚର୍ଚ୍ଚାର ବିଶେଷ ଆବଶ୍ୟକତା ନାହିଁ । କେବଳ ଏତିକି ସ୍ପଷ୍ଟ ରୂପେ ଜଣାଯାଉଛି ଯେ, ଅଶୋକଙ୍କ ସମୟ ପୂର୍ବରୁ ବୁଦ୍ଧଦେବଙ୍କର ଉପଦେଶାତ୍ମକ ବଚନ ଗୁଡ଼ିକୁ 'ସୁତ୍ତ' କୁହାଯାଉଥିଲା ଓ ସେଗୁଡ଼ିକ ଆକାରରେ ବିଶେଷ ବଡ଼ ନ ଥିଲା ।

'ଅଲଗଦ୍ଦ ସୁତ୍ତ'ର 'ଅଟ୍ଠ କଥାରେ' କୁହାଯାଇଛି ଯେ, ଗାଥାଯୁକ୍ତ ସୂତ୍ର ଗୁଡ଼ିକର ନାମ ହେଉଛି ଗେୟ୍ୟ । ତାହାର ଉଦାହରଣ ରୂପେ 'ସଂଯୁତ୍ତ ନିକାୟ'ର ପ୍ରଥମ ବିଭାଗର ଉଲ୍ଲେଖ କରାଯାଇଅଛି । କିନ୍ତୁ ଗେୟ୍ୟରେ ସମସ୍ତ ଗାଥା ସଂଗୃହୀତ ହୋଇଥାଏ । ଅତଏବ 'ଗାଥା' ନାମକ ଗୋଟିଏ ସ୍ୱତନ୍ତ୍ର ବିଭାଗ ଯେ କାହିଁକି କରାଯାଇଛି ତାହାର କାରଣ ନିର୍ଦ୍ଦେଶ କରିବା କଠିନ । ଗେୟ୍ୟରେ ଗୋଟାଏ ନିର୍ଦ୍ଦିଷ୍ଟ ପ୍ରକାରର ଗାଥାର ସମାବେଶ ହେବା ଉଚିତ, ହୁଏତ ଏପରି ମନେ କରାଯାଇଥାଇ-ପାରେ ।

ବେୟ୍ୟାକରଣର ଅର୍ଥ ହେଉଛି ବ୍ୟାଖ୍ୟା । କୌଣସି ସୂତ୍ରକୁ ନେଇ ତାହାର ଅର୍ଥ ସଂକ୍ଷିପ୍ତ ଭାବରେ ବା ବିସ୍ତୃତ ରୂପେ ବୁଝାଇବା ହେଉଛି ବେୟ୍ୟାକରଣ । (୧)

ବୁଦ୍ଧଘୋଷାଚାର୍ଯ୍ୟ କହି ଅଛନ୍ତି ଯେ, ଗାଥା ବିଭାଗରେ, 'ଧମ୍ମପଦ', 'ଥେର ଗାଥା' ଓ 'ଥେରୀ ଗାଥା' ଏହି ତିନୋଟି ଗ୍ରନ୍ଥର ସମାବେଶ ହୋଇଛି । କିନ୍ତୁ ଥେର ଏବଂ ଥେରୀ ଗାଥାମାନ

(୧) ସଂସ୍କୃତ 'ବ୍ୟାକରଣ' ସହିତ ଏହାର କିଛି ସମ୍ପର୍କ ନାହିଁ ।

ବୁଦ୍ଧଙ୍କ ପରିନିର୍ବାଣର ପ୍ରାୟ ତିନି ଶହ ଶତାବ୍ଦୀ ପର୍ଯ୍ୟନ୍ତ ରଚିତ ହୋଇ ନ ଥିବାର ଅନୁମିତ ହୁଏ । ଆକାରରେ ଧମ୍ମପଦ ନିତାନ୍ତ କ୍ଷୁଦ୍ର, ତେଣୁ ଗାଥା ବର୍ଗରେ ଏହି ଗୋଟିକ ଗ୍ରନ୍ଥ ଥିଲା କି ଅନ୍ୟ କେତେକ ଗାଥାର ସମାବେଶ ହୋଇଥିଲା କହିବା ସହଜ ନୁହେ ।

ଉପରେ ଦିଆଯାଇଥିବା ଖୁଦ୍ଦକ ନିକାୟର ବିଷୟ ସୂଚୀରେ 'ଉଦାନ'ର ଉଲ୍ଲେଖ ଅଛି । ସେହି 'ଉଦାନ' ମାନଙ୍କରେ କିମ୍ବା ସେହି ପ୍ରକାରର ସୁତ୍ତପିଟକ ବା ଅନ୍ୟସ୍ଥାନମାନଙ୍କରେ ଥିବା ବାକ୍ୟମାନଙ୍କୁ ଉଦାନ କୁହା ଯାଉଥିଲା । ଏହା ବୁଦ୍ଧଘୋଷାଚାର୍ଯ୍ୟ କହି ଅଛନ୍ତି । କିନ୍ତୁ ଉଦାନ ମାନଙ୍କର କେତେ ଅଂଶ ଅଶୋକଙ୍କ ସମୟରେ ବିଦ୍ୟମାନ ଥିଲା, ତାହା କହିବା ଅସମ୍ଭବ । ପରବର୍ତ୍ତୀ କାଳରେ ସେମାନଙ୍କର କଳେବର ଯେ ବୃଦ୍ଧି ପାଇଥିଲା, ଏଥିରେ କୌଣସି ସନ୍ଦେହ ନାହିଁ ।

'ଇତିବୁତ୍ତକ' ପ୍ରକରଣରେ ୧୧୨ଟି ଇତିବୁତ୍ତକର ସଂଗ୍ରହ ହୋଇଛି । ସେମାନଙ୍କ ମଧ୍ୟରୁ କେତେକ ଇତିବୃତ୍ତକ ଅଶୋକଙ୍କ ସମୟରେ କିମ୍ବା ତାଙ୍କର ପ୍ରାୟ ଦେଢ଼ ଶତାବ୍ଦୀପରେ ବିଦ୍ୟମାନ ଥିଲା । ପରେ, ସମ୍ଭବତଃ ସେମାନଙ୍କର ସଂଖ୍ୟା ବଢ଼ିଗଲା ।

'ଜାତକ' କଥାଗୁଡ଼ିକ ସୁପ୍ରସିଦ୍ଧ । ସେମାନଙ୍କ ମଧ୍ୟରୁ କେତେ କଥାର ଦୃଶ୍ୟ ସାଞ୍ଚି ଓ ଭରହୁତ ସ୍ତୂପମାନଙ୍କ ନିକଟରେ ଖୋଦିତ ହୋଇଥିବାର ଦେଖାଯାଏ । ଏଥିରୁ ଅନୁମାନ କରିହୁଏ ଯେ, ଅଶୋକଙ୍କ ସମୟରେ ଜାତକର ବହୁକଥା ବୌଦ୍ଧ ସାହିତ୍ୟରେ ପ୍ରବେଶ ଲାଭ କରିଥିଲା ।

'ଅବ୍ଭୁତ ଧମ୍ମ'ର ଅର୍ଥ ହେଉଛି ଅଦ୍ଭୁତ – ଚମତ୍କାର କର୍ମ । ମନେହୁଏ, ସେ ସମୟରେ ଏପରି କୌଣସି ଗ୍ରନ୍ଥ ଥିଲା ଯହିଁରେ ଭଗବାନ୍ ବୁଦ୍ଧ ଓ ତାଙ୍କର ପ୍ରଧାନ ଶ୍ରାବକ ମାନଙ୍କ ଦ୍ୱାରା ଘଟିଥିବା ଅଦ୍ଭୁତ ଘଟଣା ମାନଙ୍କର ବର୍ଣ୍ଣନା କରାଯାଇଥିଲା କିନ୍ତୁ ବର୍ତ୍ତମାନ ସେ ସବୁର ଚିହ୍ନବର୍ଣ୍ଣ ସୁଦ୍ଧା ନାହିଁ । ତାହାର ସମସ୍ତ ଅଂଶ ବର୍ତ୍ତମାନ ସୁତ୍ତ ପିଟକରେ ସମାବେଶିତ ହୋଇ ଯାଇଛି ବୋଲି ମନେ ହେଉଛି । ବୁଦ୍ଧଘୋଷାଚାର୍ଯ୍ୟ ମଧ୍ୟ ସେହି ଅଦ୍ଭୁତ ଘଟଣା ସମ୍ପର୍କରେ ବିଶେଷ କିଛି କହିପାରି ନାହାନ୍ତି । ସେ କହିଛନ୍ତି, "ଚତ୍ତାରୋ ମେ ଭିକ୍ଖବେ ଅଚ୍ଛରିୟା ଅବ୍ଭୁତା ଧମ୍ମା ଆନନ୍ଦେ ତି ଆଦିନୟପ୍ପବତ୍ତା ସବ୍ବେପି ଅଚ୍ଛରିୟବ୍ଭୁତ ଧମ୍ମ ପଟିସଂଯୁତ୍ତସୁତ୍ତନ୍ତା ଅବ୍ଭୁତଧମ୍ମଂତି ବେଦିତବ୍ବା ଅର୍ଥାତ୍ "ହେ ଭିକ୍ଷୁମାନେ ! ଏହି ଚାରୋଟି ଆଶ୍ଚର୍ଯ୍ୟ ଅଦ୍ଭୁତ ଧର୍ମ-ଆନନ୍ଦଙ୍କ ଠାରେ ଦେଖାଯାଏ । ଆଦି ପ୍ରକାରରୁ, ଅଦ୍ଭୁତ ଧର୍ମରୁ ଆରମ୍ଭ ହେବା ଆଶ୍ଚର୍ଯ୍ୟ—ଅଦ୍ଭୁତ ଧର୍ମ—ଯୁକ୍ତ ସମଗ୍ର ସୁତ୍ତ "ଅବ୍ଭୁତ ଧର୍ମ" ବୋଲି ବୁଝାଯାଉ । କିନ୍ତୁ ଏହି ଅଦ୍ଭୁତ ଧର୍ମ ସହିତ ମୂଳର ଅଦ୍ଭୁତ ଧର୍ମ ଗ୍ରନ୍ଥର କିଛି ହେଲେ ସମ୍ବନ୍ଧ ଦେଖା ଯାଇନାହିଁ ।

'ମହାବେଦଲ୍ଲ' ଏବଂ 'ଚୂଳବେଦଲ୍ଲ' ନାମକ ଦୁଇଟି ସୂତ୍ର ମଜ୍ଝିମ ନିକାୟରେ ଅଛି । ବେଦଲ୍ଲ ପ୍ରକରଣଟି କିପରି ହୋଇଥିବ ତାହା ତହିଁରୁ ଅନୁମାନ କରି ହେବ । ସେ ମଧ୍ୟରୁ ପ୍ରଥମ ସୁତ୍ତ 'ମହାକୋଟ୍ଠିତ' ସାରିପୁତ୍ତଙ୍କୁ ପଚାରୁଛନ୍ତି ଏବଂ ସାରିପୁତ୍ତ ସେ ପ୍ରଶ୍ନ ଗୁଡ଼ିକର ଯଥାର୍ଥ ଉତ୍ତର ଦେଉଛନ୍ତି । ଦ୍ୱିତୀୟଟିରେ 'ଧମ୍ମଦିନ୍ନା-ଭିକ୍ଷୁଣୀ' ଓ ତାଙ୍କର ପୂର୍ବାଶ୍ରମର ପତି ବିଶାଖଙ୍କର ସମ୍ବାଦ ପ୍ରଶ୍ନୋତ୍ତର ରୂପରେ ଅଛି । ଏଥିରୁ କୌଣସି ସୁତ୍ତଟି ବୁଦ୍ଧଙ୍କର

ମୁଖ ନିଃସୃତ ନୁହେ । କିନ୍ତୁ ସେପରି ସମ୍ବାଦକୁ ବେଦଲ୍ଲ ବୋଲି କୁହାଯାଇଛି । ମନେ ହୁଏ, ଶ୍ରମଣ, ବ୍ରାହ୍ମଣ ଓ ଅନ୍ୟ ଲୋକଙ୍କ ସହିତ ବୁଦ୍ଧ ଦେବଙ୍କର ଯେଉଁ କଥୋପକଥନ ହୋଇଥିଲା, ସେଗୁଡ଼ିକର ଏକ ସ୍ୱତନ୍ତ୍ର ସଂଗ୍ରହ କରାଯାଇଥିଲା ଓ ତାକୁହିଁ ବେଦଲ୍ଲ ନାମ ଦିଆ ଯାଇଥିଲା ।

'ମହାସୁଞ୍ଞତା ସୁତ୍ତ'ର ଏକ ଉଦ୍ଧୃତିରୁ ଏହା ସ୍ପଷ୍ଟ ହୋଇ ଯିବ ଯେ ଏହି ୯ ଗୋଟି ବିଭାଗ ରଚିତ ହେବା ପୂର୍ବରୁ, ସୁତ୍ତ ଓ ଗେଯ୍ୟ, ଏହି ଦୁଇଟି ବିଭାଗରେ ହିଁ ଶେଷ ବିଭାଗ ଗୁଡ଼ିକର ସମାବେଶ କରାଯାଇଥିଲା ।

ଭଗବାନ୍ ବୁଦ୍ଧ ଆନନ୍ଦଙ୍କ କହୁଛନ୍ତି—"ନ ଖୋ ଆନନ୍ଦ ଅରହତି ସାବକୋ ସତ୍ଥାରଂ ଅନୁବନ୍ଧିତୁଂ ଯଦିଦଂସୁତ୍ତଂ ଗେଯ୍ୟଂ ବେଯ୍ୟାକରଣସ୍ସ ହେତୁ । ତଂ କିସ୍ସ ହେତୁ । ଦିଘରତ୍ତଂ ହି ବୋ ଆନନ୍ଦ ଧମ୍ମା ସୁତା ଧାତା ବଚସା ପରିଚିତା···"

ଅର୍ଥାତ୍, ହେ ଆନନ୍ଦ ! 'ସୁତ୍ତ' ଏବଂ 'ଗେଯ୍ୟ' ମାନଙ୍କର ବେଯ୍ୟାକରଣ ବା ସ୍ପଷ୍ଟୀକରଣ ପାଇଁ ତୁମେ ଶ୍ରାବକଙ୍କ ଗୁରୁଙ୍କ ସହିତ ବୁଲିବା ଉଚିତ ନୁହେ । କାହିଁକି ନା, ତୁମେ ଏହି କଥା-ଗୁଡ଼ିକ ଶୁଣିଛ ଓ ତୁମ ପକ୍ଷରେ ସେ ସବୁ କିଛି ନୂଆ ନୁହେ ।

ଅର୍ଥାତ୍, 'ସୁତ୍ତ' ଏବଂ 'ଗେଯ୍ୟ' ଗୁଡ଼ିକରେ ଥିବା ବୁଦ୍ଧଦେବ-ଙ୍କର ଉପଦେଶ ଓ ଅନ୍ୟ 'ସ୍ପଷ୍ଟୀକରଣ' ହିଁ ଶ୍ରାବକମାନଙ୍କୁ ଦିଆ-ଯାଇଥିଲା । ପରେ ପରେ ସେଗୁଡ଼ିକର ଆହୁରି ଛ ଗୋଟି ବିଭାଗ ବଢ଼ିଗଲା । ପୁଣି ସେମାନଙ୍କ ମଧ୍ୟରୁ କେତେକ

ବିଭାଗର ବହୁ ସୂତ୍ର ରଚନା କରାଗଲା । ଏବେ ମଧ୍ୟ ସେଗୁଡ଼ିକ ବିଦ୍ୟମାନ । ଅତଏବ ସେ ମଧ୍ୟରୁ ପ୍ରକୃତରେ କେଉଁଗୁଡ଼ିକ ବୁଦ୍ଧଦେବଙ୍କର ଉପଦେଶ କହିବା ଏକାନ୍ତ କଷ୍ଟକର । ପୁଣି ଅଶୋକଙ୍କର "ଭାବରୁ" ଶିଳାଲେଖରୁ, ପିଟକମାନଙ୍କର ପ୍ରାଚୀନ ଅଂଶ କିପରି ହୋଇଥିବ, ଅନୁମାନ କରାଯାଇପାରେ ।

ଅଶୋକଙ୍କର ଭାବରୁ ଶିଳାଲେଖରେ କୁହାଯାଇଛି ଯେ, ବୁଦ୍ଧ ଦେବଙ୍କର ନିମ୍ନଲିଖିତ ୭ଟି ଉପଦେଶ ଭିକ୍ଷୁ, ଭିକ୍ଷୁଣୀ, ଉପାସକ ଓ ଉପାସିକାମାନେ ବାରମ୍ବାର ଶୁଣିବା ଓ କଣ୍ଠସ୍ଥ କରିବା ଉଚିତ ।

୧ ବିନୟ ସମୁକସେ, ୨ ଅଲିୟ ବସାନି, ୩ ଅନାଗତ ଭୟାନି, ୪ ମୁନିଗାଥା, ୫ ମୋନେୟସୂତେ, ୬ ଉପତିସ ପସିନେ, ୭ ଲାଘୁଲୋବାଦେ, ମୁସାବାଦଂ ଅଧିଗିଚ୍ୟ ଭଗବତା ବୁଦ୍ଧେନ ଭାସିତଂ ।

ଓଲ୍ଡେନ୍‌ବର୍ଗ ଓ ସେନାର ନାମକ ଦୁଇଜଣ ପାଶ୍ଚାତ୍ୟ ପଣ୍ଡିତ ଦେଖାଇ ଦେଇଛନ୍ତି ଯେ, ଏଥିର ସପ୍ତମ ଉପଦେଶ ମଜ୍‌ଝିମ ନିକାୟର ରାହୁଲୋବାଦସୂତ୍ର (ସଂ-୬୧) ଅଟେ । ଶେଷ ଉପଦେଶ ଗୁଡ଼ିକର ପରିଚୟ ଦେବାକୁ ଅଧ୍ୟାପକ ରାଇସ ଡେଭିଡ଼ସ୍ ଚେଷ୍ଟା କରିଛନ୍ତି । କିନ୍ତୁ, ସୁତ୍ତନିପାତର ମୁନିସୁତ୍ର ବ୍ୟତୀତ ସେ କହିଥିବା ଅନ୍ୟ ସମସ୍ତ ସୂତ୍ରର ପ୍ରମାଣ ଭ୍ରମପୂର୍ଣ୍ଣ ଅଟେ । ସଂ ୨, ୩, ୫ ଓ ୬ ସୂତ୍ରମାନଙ୍କ ସମ୍ବନ୍ଧରେ, ଇଣ୍ଡିୟାନ ଏଣ୍ଟିକ୍ୱେରି ପତ୍ରିକାରେ (ଫେବୃଆରୀ, ୧୯୧୨) ମୁଁ ବିସ୍ତୃତ ରୂପେ ଆଲୋଚନା କରିଥିଲି । ତହିଁରେ ଉଲ୍ଲିଖିତ ଥିବା ସୂତ୍ରର ବିବରଣୀ ବର୍ତ୍ତମାନ ସର୍ବତ୍ର ଗୃହୀତ

ହୋଇଅଛି ! କେବଳ ପ୍ରଥମେ ସୂତ୍ରର ପ୍ରମାଣ ସେ ସମ୍ବନ୍ଧରେ ମୁଁ ପାଇ ନ ଥିଲି । 'ବିନୟ ସମୁକସେ' (ବିନୟସମୁତ୍କର୍ଷ)ର, ବିନୟ ଗ୍ରନ୍ଥ ସହିତ କୌଣସିନା କୌଣସି ସମ୍ପର୍କ ନିଶ୍ଚୟ ଥିବ, ସେତେବେଳେ ମୁଁ ଏପରି ଭାବିଥିଲି । କିନ୍ତୁ ସେହିପ୍ରକାର ଉପଦେଶ ମୋତେ କେଉଁଠାରେ ହେଲେ ମିଳିଲା ନାହିଁ । ତେଣୁ, ସେହି ସୂତ୍ର ସମ୍ପର୍କରେ ମୁଁ କିଛି କହିପାରି ନ ଥିଲି ।

'ବିନୟ" ଶବ୍ଦର ଅର୍ଥ, "ବିନୟ-ଗ୍ରନ୍ଥ" ବୋଲି ଗ୍ରହଣ କରିବା କୌଣସି କାରଣ ନାହିଁ । ' ଅହଂ ଖୋ କେସି ପୁରିସଦମ୍ମଂ ସହ୍ନେପି ବିନେମି ଫରୁସେନ ପି ବିନେମି (ଅଙ୍ଗୁତ୍ତର, ଚତୁକ୍କ ନିପାତ ସୁତ୍ତ ସଂ୧୧୧) ତମେନଂ ତଥାଗତୋ ଉତ୍ତରିଂ ବିନେତି (ମଜ୍‌ଝିମ ସୁତ୍ତ ସଂ୧୪୭) ଯନ୍ନୂନ ନାହଂ ରାହୁଲଂ ଉତ୍ତରିଂ ଆସବାନଂ ଖୟେ ବିନେୟ୍ୟଂ ତି" (ମଜ୍‌ଝିମ ସୁତ୍ତ, ସଂଖ୍ୟା ୧୦୭) ପ୍ରଭୃତି ସ୍ଥାନମାନଙ୍କରେ 'ବି' ପୂର୍ବକ 'ନୀ' ଧାତୁର ଅର୍ଥ ହେଉଛି ଶିଖାଇବା । ପରେ 'ବିନୟ'ର ନିୟମଗୁଡ଼ିକୁ ବିନୟ ପିଟକ ବୋଲି କୁହାଗଲା । ଯେତେବେଳେ ବୁଦ୍ଧଦେବ ଭିକ୍ଷୁ ସଂଗ୍ରହ କରିବାକୁ ଆରମ୍ଭ କଲେ, ସେତେବେଳେ ବିନୟ ଗ୍ରନ୍ଥର ଅସ୍ତିତ୍ୱ ପର୍ଯ୍ୟନ୍ତ ନ ଥିଲା । ଯାହାକିଛି ଥିଲା ତାହା ସୁତ୍ତ ରୂପେ ହିଁ ଥିଲା । ସର୍ବ ପ୍ରଥମେ "ଧମ୍ମ ଚକ୍କ ପବତ୍ତନ ସୁତ୍ତ" କହି ବୁଦ୍ଧଦେବ ପଞ୍ଚ ବର୍ଗୀୟ ଭିକ୍ଷୁମାନଙ୍କୁ ନିଜର ଶିଷ୍ୟ କରି ଥିଲେ । ବିନୟ ଶବ୍ଦର ମୂଳ ଅର୍ଥ ଶିକ୍ଷା ବା ଶିଖାଇବା ବୋଲି ବୁଝିବା ଉଚିତ । ସେହି ବିନୟର ସମୁତ୍କର୍ଷ ମଧ୍ୟରେ ବୁଦ୍ଧଦେବଙ୍କର ଉତ୍କୃଷ୍ଟ ଧର୍ମ-ଉପଦେଶ ପ୍ରକଟିତ ହୋଇଅଛି । ଯଦିଓ ପାଲି ଭାଷାରେ 'ସମୁକ୍କଂସ' ଶବ୍ଦ ବୁଦ୍ଧୋପଦେଶ ଅର୍ଥରେ ମିଳେ ନାହିଁ, ତଥାପି ' ସାମୁକ୍କଂସିକା ଧମ୍ମ ଦେସନା" ଏହି ବାକ୍ୟ ଅନେକ ସ୍ଥାନରେ ଅଛି । ଦୃଷ୍ଟାନ୍ତ

ସ୍ୱରୂପ ଦୀଘନିକାୟର ଅମ୍ବଟ୍‌ଠ ସୂତ୍ତର ଶେଷଭାଗରେ ଅଛି "ଯଦା ଭଗବା ଅଞ୍ଞାସି ବ୍ରାହ୍ମଣଂ ପୋକ୍‌ଖରସାତିଂ କଲ୍ଲଚିତ୍ତଂ, ମୁଦୁଚିତ୍ତଂ, ବିନୀବରଣ ଚିତ୍ତଂ, ଉଦଗ୍‌ଗ ଚିତ୍ତଂ, ପସନ୍ନ ଚିତ୍ତଂ, ଅଥ ଯା ବୁଦ୍ଧାନଂ ସାମୁକ୍‌କଂସିକା ଧମ୍ମଦେସନା ତଂ ପକାସେସି ଦୁକ୍‌ଖଂ ସମୁଦୟଂ ନିରୋଧଂ ମଗ୍‌ଗଂ" ଅର୍ଥାତ୍, ଯେତେବେଳେ ଭଗବାନ୍ ବୁଦ୍ଧ ଜାଣିଲେ ଯେ, ପୌଷ୍କରସାଦଙ୍କର ଚିତ୍ତ ପ୍ରସଙ୍ଗୋଚିତ ମୃଦୁ ଆବରଣରୁ ବିମୁକ୍ତ, ଉଦଗ୍ର ଓ ପ୍ରସନ୍ନ ହୋଇଅଛି, ସେତେ-ବେଳେ ତାଙ୍କର ସାମୁତ୍କର୍ଷିକ ଧର୍ମ ଦେଶନା ( ଧର୍ମ-ଉପଦେଶ ) ପ୍ରକଟିତ ହେଲା । ତାହା ହେଉଛି ଦୁଃଖ, ଓ ଦୁଃଖସମୁଦୟ, ଦୁଃଖ-ନିରୋଧ ଏବଂ ଦୁଃଖ-ନିରୋଧ-ମାର୍ଗ ସମ୍ପର୍କରେ ଉପଦେଶ ।

କେବଳ ଏହି ସୂତ୍ତରେ ନୁହେ, 'ମଜ୍‌ଝିମନିକାୟ'ର 'ଉପାଳି' ସୂତ୍ତରେ, ଅନ୍ୟ କେତେକ ସୂତ୍ତରେ ତଥା ବିନୟ ପିଟକର ଅନେକ ସ୍ଥଳରେ ସେ ବାକ୍ୟଟିର ପ୍ରୟୋଗ ହୋଇଛି । ଏଠାରେ ବ୍ରାହ୍ମଣ ପୋକ୍‌ଖରସାତିଙ୍କୁ ସମ୍ବୋଧନ କରି ଧର୍ମ ଉପଦେଶ ଦିଆଯାଇଛି, ସେଠାରେ ଉପାଳି ପ୍ରଭୃତି ଗୃହସ୍ଥଙ୍କୁ ତାହା କୁହାଯାଇଛି । ତେଣୁ 'ବିନୟ ସମୁତ୍କର୍ଷ'ର ଅର୍ଥ ହେଉଛି—ବିନୟ ଅର୍ଥାତ୍ ଉପଦେଶ ଏବଂ ତାହାର ସମୁତ୍କର୍ଷ ଅର୍ଥାତ୍ ସାମୁତ୍କର୍ଷିକା ଧର୍ମୋପଦେଶନା । ଅତଏବ, କୌଣସି ସମୟରେ ଏହି ଚାରୋଟି ଆର୍ଯ୍ୟ ସତ୍ୟ (ଦୁଃଖ ଓ ତା'ର ନିରୋଧ ପ୍ରଭୃତି) ର ଉପଦେଶକୁ 'ବିନୟସମୁକ୍‌କସ' କୁହାଯାଉ ଥିଲା ବୋଲି ସନ୍ଦେହ କରିବାର କିଛି କାରଣ ନାହିଁ । ଯଥା ସମ୍ଭବ "ଧମ୍ମଚକ୍‌କ ପବତ୍ତନସୁତ୍ତ"ର ନାମ ଅଶୋକଙ୍କ ବହୁକାଳପରେ ପ୍ରବର୍ତ୍ତିତ ହୋଇଥିବ । ରାଜ ଚକ୍ରବର୍ତ୍ତୀମାନଙ୍କର ଚରିତ ଯେତେବେଳେ ଲୋକପ୍ରିୟ ହୋଇଗଲା, ସେତେବେଳେ

ବୁଦ୍ଧଙ୍କ ଉପଦେଶ ଗୁଡ଼ିକୁ ଏହି ଗୌରବ ପୂର୍ଣ୍ଣ ନାମରେ ଅଭିହିତ କରାଗଲା ।

"ବିନୟ ସମୁକସେ"ହିଁ "ଧମ୍ମଚକ୍କ ପବତ୍ତନ ସୁତ୍ତ" ବୋଲି ଯଦି ଧରିନିଆ ଯାଏ ତେବେ "ଭାବରୁ" ଶିଳାଲେଖରେ ନିର୍ଦ୍ଦେଶିତ ୭ଟି ଉପଦେଶ ବୌଦ୍ଧ ସାହିତ୍ୟରେ ଏହି ପ୍ରକାରରେ ଦେଖିବାକୁ ମିଳେ ।

(୧) ବିନୟ ସମୁକସେ = ଧମ୍ମଚକ୍କ ପବତ୍ତନ ସୁତ୍ତ
(୨) ଅଳିୟ ବସାନି = ଅରିୟବଂସା ( ଅଙ୍ଗୁତ୍ତର ଚତୁକ୍କନିପାତ )
(୩) ଅନାଗତଭୟାନି = ଅନାଗତଭୟାନି (ଅଙ୍ଗୁତ୍ତର ପଞ୍ଚକନିପାତ)
(୪) ମୁନିଗାଥା = ମୁନିସୁତ୍ତ ( ସୁତ୍ତ ନିପାତ )
(୫) ମୋନେୟ ସୂତେ = ନାଲ୍କ ସୁତ୍ତ ( ସୁତ୍ତ ନିପାତ )
(୬) ଉପତିସପସିନେ = ସାରିପୁତ୍ତସୁତ୍ତ ( ସୁତ୍ତ ନିପାତ )
(୭) ଲାଘୁଲୋ ବାଦ = ରାହୁଲୋବାଦ ( ମଜ୍‌ଝିମସୁତ୍ତ ଫ୬୧ )

ଏହି ୭ଟି ମଧ୍ୟରୁ "ଧମ୍ମଚକ୍କ ପବତ୍ତନ ସୁତ୍ତ" ସର୍ବତ୍ର ପ୍ରାପ୍ତ ହୁଏ । ଏ ସୁତ୍ତର ଯେ ବିଶେଷ ମହତ୍ତ୍ୱ ଅଛି, ଏ କଥା ବୁଝାଇ କହିବାର ଆବଶ୍ୟକତା ନାହିଁ । ଏହି କାରଣରୁ ଅଶୋକ ଏହାକୁ ସର୍ବ ପ୍ରଥମ ସ୍ଥାନ ଦେଇଥିଲେ । ଶେଷ ଛ'ଟିରୁ ତିନୋଟି ଏକ ଗ୍ରନ୍ଥ ସୁତ୍ତନିପାତରେ ଅଛି । ପୁଣି ଏଥିରୁ ସୁତ୍ତନିପାତର ପ୍ରାଚୀନତା ପ୍ରମାଣିତ ହେଉଛି । ତାହାର ଶେଷ ଦୁଇ 'ବଗ୍ଗ' ଓ 'ଖଗ୍ଗବିସାଣ ସୁତ୍ତ' ଉପରେ 'ନିଦ୍ଦେସ' ନାମକ ବିସ୍ତୃତ ଟୀକା ଅଛି । ଖୁଦ୍ଦକ ନିକାୟରେ ସେହି ଟୀକା ସମାବେଶିତ ହୋଇଅଛି । ନିଦ୍ଦେସର ଅନ୍ତତଃ ୧୦୦-୨୦୦ ବର୍ଷ ପୂର୍ବରୁ ସୁତ୍ତ ନିପାତର ଏହି ଅଂଶ ବିଦ୍ୟମାନ ଥିଲା । ଏଥିରୁ ମଧ୍ୟ ସୁତ୍ତ ନିପାତର ପ୍ରାଚୀନତ୍ୱ ପ୍ରମାଣିତ ହେଉଅଛି । ଅବଶ୍ୟ ତହିଁର ସମସ୍ତ ଅଂଶ ଯେ ପ୍ରାଚୀନ ଏକଥା

କହି ହେବ ନାହିଁ । କିନ୍ତୁ ଅଧିକାଂଶ ସୂତ୍ର ଯେ ବହୁ ପ୍ରାଚୀନ, ତହିଁରେ ସନ୍ଦେହ କରିବାର କିଛି ନାହିଁ । ଏହି ଗ୍ରନ୍ଥରେ ବୁଦ୍ଧଙ୍କର ଚରିତ ବା ଉପଦେଶ ସମ୍ପର୍କରେ ଯେଉଁ ଆଲୋଚନା କରାଯାଇଛି ତାହା ସେହିପରି ପ୍ରାଚୀନ ସୂତ୍ର ମାନଙ୍କର ପ୍ରମାଣ ଉପରେ ପ୍ରତିଷ୍ଠିତ ।

ବର୍ତ୍ତମାନ କେବଳ ବୁଦ୍ଧଙ୍କର ଚରିତ ଏଠାରେ ବିଚାର କରାଯାଉଛି । ତ୍ରିପିଟକରେ ବୁଦ୍ଧଙ୍କ ସମ୍ପୂର୍ଣ୍ଣ ଚରିତ କୌଣସି ଗୋଟିଏ ସ୍ଥାନରେ ମିଳେ ନାହିଁ । ତାହା କିନ୍ତୁ 'ଜାତକ-ଅଟ୍ଠକଥା'ର ନିଦାନ କଥାରେ କଥିତ ହୋଇଅଛି । ଏହା ବୋଧହୁଏ ବୁଦ୍ଧଘୋଷଙ୍କ ସମକାଳରେ, ପ୍ରାୟ ପଞ୍ଚମ ଶତାବ୍ଦୀରେ ଲିଖିତ ହୋଇଥିଲା । ସିଂହଳର 'ଅଟ୍ଠକଥା'ର ଅନେକ ଅଂଶ ଏଥିରେ ଗୃହୀତ ହୋଇଅଛି । ଏ ବୁଦ୍ଧ ଚରିତର ଆଲୋଚନାରେ ବହୁ ତଥ୍ୟ 'ଲଳିତ ବିସ୍ତର'ରୁ ସଂଗୃହୀତ ହୋଇଅଛି । ଯଥାସମ୍ଭବ ଖ୍ରୀଷ୍ଟୀୟ ପ୍ରଥମ ଶତକରେ ବା ତାହାର ଅଳ୍ପ ସମୟ ପୂର୍ବରୁ ଲଳିତ ବିସ୍ତର ରଚିତ ହୋଇଥିଲା । ଏହା ହେଉଛି "ମହାଯାନ"ର ଗ୍ରନ୍ଥ ଏବଂ ତାହା ଅନୁସାରେ ଜାତକଅଟ୍ଠ କଥାକାର ବୁଦ୍ଧ ଚରିତର ବର୍ଣ୍ଣନା କରିଛନ୍ତି । ଦୀଘ ନିକାୟର ମହାପଦାନ ସୂତ୍ରକୁ ଭିତ୍ତି କରି 'ଲଳିତ ବିସ୍ତର' ପ୍ରଣୀତ ହୋଇଅଛି । ଉକ୍ତ ସୂତ୍ରରେ ବିପସ୍ସୀ ବୁଦ୍ଧଙ୍କ ଜୀବନୀ ଅତି ପ୍ରାଞ୍ଜଳ ଭାବରେ ବର୍ଣ୍ଣିତ ହୋଇଅଛି ଏବଂ ଲଳିତ ବିସ୍ତର ତଦ୍ଦ୍ୱାରା ପ୍ରଭାବିତ ହୋଇଅଛି । ଏହିପରି ଭାବରେ ଗୌତମ ବୁଦ୍ଧଙ୍କ ଜୀବନୀରେ ବହୁ ଅସଙ୍ଗତ ଓ ଅତିରଞ୍ଜିତ କଥା ଅନୁପ୍ରବିଷ୍ଟ ହୋଇଯାଇଛି ।

ମହାପଦାନସୂତ୍ରର କେତେକ ଅଂଶ 'ସୁତ୍ତ ପିଟକରେ' ଗୌତମ ବୁଦ୍ଧଙ୍କ ଜୀବନ-ଚରିତ ସଙ୍ଗେ ଯୋଡ଼ି ଦିଆଯାଇଛି ।

ଉଦାହରଣ ସ୍ୱରୂପ, "ତିନୋଟି ପ୍ରାସାଦ ନିର୍ମିତ ହେବା" କଥା ବିଚାର କରାଯାଉ । ବିପସ୍‌ସୀ ରାଜକୁମାରଙ୍କ ନିମନ୍ତେ ତିନୋଟି ପ୍ରାସାଦ ନିର୍ମିତ ହୋଇଥିଲା । ଏହି କଥାରୁ, ଗୌତମ ବୁଦ୍ଧଙ୍କ ସକାଶେ ପ୍ରାସାଦ ନିର୍ମିତ ହୋଇଥିବାର ଗଳ୍ପ ବାହାର ପଡ଼ୁଛି । ଖାଲି ସେତିକି ନୁହେ, ଗୌତମ ବୁଦ୍ଧଙ୍କ ମୁହଁରେ ମଧ୍ୟ ଏହି କଥା ପ୍ରକାଶ କରାଯାଇଛି । ଏହା ଯେ ଆଦୌ ସତ୍ୟ ନୁହେ, ଏ ଗ୍ରନ୍ଥର ଚତୁର୍ଥ ଅଧ୍ୟାୟରେ ତାହା ନିର୍ମଳ ଭାବରେ ପ୍ରତିପାଦନ କରାଯାଇଛି । ଅଙ୍ଗୁତ୍ତର ନିକାୟରେ ମଧ୍ୟ ଏହିକଥା ବର୍ଣ୍ଣିତ ହୋଇଛି । ତହିଁରେ, ଅଶୋକଙ୍କ ଭାବ୍ରୂ ଶିଳାଲେଖର ଦୁଇଟି ସୂତ୍ର ମଧ୍ୟ ଅଛି । ତାହା ଦେଖି ତହିଁରେ ଐତିହାସିକ ସତ୍ୟତା ଅଛି ବୋଲି ମୁଁ ଭାବୁଥିଲି । କିନ୍ତୁ ପରବର୍ତ୍ତୀ କାଳରେ ବହୁକଥା ଯେ ଅଙ୍ଗୁତ୍ତର ନିକାୟରେ ଯୋଡ଼ି ଦିଆଯାଇଛି, ଏହା ଏବେ ତନ୍ନ ତନ୍ନ ଆଲୋଚନା କରିବାରୁ ସ୍ପଷ୍ଟ ଜାଣି ହେଉଛି । ତିନୋଟି ବସ୍ତୁ ସହିତ ସମ୍ବନ୍ଧଯୁକ୍ତ କଥାମାନଙ୍କର ସଂଗ୍ରହ "ତିକ ନିପାତରେ" କରାଯାଇଛି । ତହିଁରେ ଅର୍ବାଚୀନତା ବା ପ୍ରାଚୀନତା ପ୍ରତି ଦୃଷ୍ଟି ଯାଇଥିବା ପରି ପ୍ରତୀତ ହୁଏ ନାହିଁ । (୧)

ଏପରି ଅସତ୍ୟ ଓ ଅତିରଞ୍ଜିତ କଥାମାନଙ୍କରୁ ବୁଦ୍ଧଦେବଙ୍କର ଜୀବନୀ ସମ୍ପର୍କରେ କିପରି ତଥ୍ୟ ସଂଗ୍ରହ କରାଯାଇପାରିବ, ତାହା ଦେଖାଇ ଦେବା ପାଇଁ ମୁଁ ଏ ଗ୍ରନ୍ଥ ପ୍ରଣୟନ କଲି । ହୁଏତ ମୁଁ କେତେକ ଉପାଦେୟ ତଥ୍ୟ ଜାଣି ନ ଥିବି କିମ୍ବା କେତେକ

---

(୧) ମହାପଦାନ ସୁତ୍ତରେ ପ୍ରଦତ୍ତ ବିପସ୍‌ସୀବୁଦ୍ଧଙ୍କ କିମ୍ବଦନ୍ତୀ ଗୁଡ଼ିକ କିପରି କ୍ରମଶଃ ଗୌତମବୁଦ୍ଧଙ୍କ ଚରିତରେ ପ୍ରବେଶ କଲା ଏବଂ ସେମାନଙ୍କ ମଧ୍ୟରୁ କେଉଁ ଗୁଡ଼ିକ ସୁତ୍ତପିଟକରେ ମିଳେ, ତାହା ଏ ଗ୍ରନ୍ଥର ୧ମ ପରିଶିଷ୍ଟରେ ବିଶଦୀକୃତ ହୋଇଛି

କଥା ଉପରେ ଏଭଳି ଗୁରୁତ୍ୱ ଆରୋପ କରିଥିବ ଯାହା ନ କରିଥିଲେ ଭଲ ହୋଇ ଥା'ଆନ୍ତା । କିନ୍ତୁ ମୋର ତଥ୍ୟାନୁସନ୍ଧାନ ପଦ୍ଧତି ଭ୍ରମାତ୍ମକ ପରି ମତେ ଜଣା ଯାଉନାହିଁ । ମୋର ଦୃଢ଼ ବିଶ୍ୱାସ ଯେ, ଏହି ପଦ୍ଧତିର ପ୍ରୟୋଗ ଫଳରେ ବୁଦ୍ଧଦେବଙ୍କ ଚରିତ ତଥା ସେ ଯୁଗର ଇତିହାସ ଉପରେ ଯଥେଷ୍ଟ ଆଲୋକପାତ ହୋଇପାରିବ । ଏ ଲକ୍ଷ୍ୟରେ ମଧ୍ୟ ଏ ଗ୍ରନ୍ଥ ରଚନା କଲି । ଅନେକ ବର୍ଷତଳେ 'ପୁରାତତ୍ତ୍ୱ ନାମକ ଗୁଜୁରାଟି ତ୍ରୈମାସିକ ପତ୍ରିକାରେ ଓ 'ବିବିଧ ଜ୍ଞାନ ବିସ୍ତାର' ନାମକ ମରାଠୀ ପତ୍ରିକାରେ ଏଥିର କେତେକ ଅଂଶ ପ୍ରକାଶ ପାଇଥିଲି । ସେହି ଲେଖାଗୁଡ଼ିକ କେତେକ ପରିବର୍ତ୍ତନ ପରେ ଏହି ଗ୍ରନ୍ଥରେ ସମାବେଶିତ ହୋଇଛି । ଏହି ପୁସ୍ତକଟିକୁ ଏକ ମୌଳିକ ଗ୍ରନ୍ଥ କହିବାରେ ବୋଧହୁଏ ବିଶେଷ ଆପତ୍ତି ରହିବ ନାହିଁ ।

'ନବଭାରତ-ଗ୍ରନ୍ଥମାଳା'ର ସମ୍ପାଦକ ମହୋଦୟ ଏହି ଗ୍ରନ୍ଥର ମରାଠୀ ପାଣ୍ଡୁଲିପି ପାଠକରି ଗ୍ରନ୍ଥ-ଗତ କେତୋଟି କଥା ପ୍ରତି ମୋର ଦୃଷ୍ଟି ଆକର୍ଷଣ କରିଥିଲେ । ସେଗୁଡ଼ିକର ସମାଲୋଚନା ଏ ଗ୍ରନ୍ଥରେ ବିଶେଷ ଭାବରେ ହୋଇ ପାରି ନାହିଁ । ତେଣୁ ଏଠାରେ ସେଗୁଡ଼ିକର ସଂକ୍ଷିପ୍ତ ଆଲୋଚନା କରାଯିବା ଉଚିତ ବୋଲି ମୁଁ ଅନୁଭବ କରୁଚି ।

୧ । ବୁଦ୍ଧଦେବଙ୍କ ଜନ୍ମଦିନ ସମ୍ପର୍କରେ ବିଭିନ୍ନ ମତ, ଯୁକ୍ତି ଯୁକ୍ତ ଭାବରେ ( ଏ ଗ୍ରନ୍ଥରେ ) ଉପସ୍ଥାପନ କରିବା କ'ଣ ଉଚିତ ନଥିଲି ? ଆମର ପ୍ରାଚୀନ ଅଥବା ମଧ୍ୟ ଯୁଗର ଇତିହାସର ରାଜ୍ୟଶାସକ, ଧର୍ମଗୁରୁ, ଗ୍ରନ୍ଥକାର ପ୍ରଭୃତିଙ୍କର ଜୀବନୀ

ଲେଖିବା ପୂର୍ବେ ସେମାନଙ୍କର କାଳ ନିରୂପଣ କରିବାପାଇଁ ପଣ୍ଡିତମାନଙ୍କୁ ବହୁପୃଷ୍ଠା ବ୍ୟାପୀ ଆଲୋଚନା କରିବାକୁ ପଡ଼େ । ଏ ଗ୍ରନ୍ଥରେ ସେପରି କିଛି ହୋଇନାହିଁ ।

**ଉତ୍ତର:**—ଏ ସ୍ଥଳରେ ମୋର ଏତିକିମାତ୍ର କହିବାର ଅଛି ଯେ, ଯଦି ମଧ୍ୟଯୁଗର କୌଣସି କବି ବା ଗ୍ରନ୍ଥକାର ନିଜର "ସମ୍ବତ୍" ପ୍ରବର୍ତ୍ତନ କରି ନ ଥାନ୍ତି (ବା ସ୍ପଷ୍ଟରୂପେ ଜଣାଇ ନ ଥାନ୍ତି), ତାଙ୍କର ଜନ୍ମତିଥି ସମ୍ପର୍କରେ ଯେତେ ବାଦବିବାଦ ହେଲେ ମଧ୍ୟ, ପ୍ରକୃତ ସିଦ୍ଧାନ୍ତ କଦାପି କରିହେବ ନାହିଁ । କିନ୍ତୁ ବୁଦ୍ଧଦେବଙ୍କ କଥା ଏପରି ନୁହେ । ତାଙ୍କର ପରିନିର୍ବାଣଠାରୁ ଆଜ ପର୍ଯ୍ୟନ୍ତ ତାଙ୍କ ନାମର 'ସମ୍ବତ୍' ଚାଲି ଆସୁଛି । ଅଳ୍ପକେତେ ବର୍ଷତଳେ, ପାଶ୍ଚାତ୍ୟ ପଣ୍ଡିତମାନେ ଯୁକ୍ତି ତର୍କ କରି, ତାଙ୍କ ଜନ୍ମ ତିଥିକୁ ୫୭ ଠାରୁ ୭୫ ବର୍ଷ ବ୍ୟବଧାନରେ (ପ୍ରକୃତ କାଳଠାରୁ) ସ୍ଥିର କରୁଥିଲେ । କିନ୍ତୁ ସିଂହଳରେ ଯେଉଁ ପରମ୍ପରା ପ୍ରଚଳିତ ହେଉଛି, ତାହାହିଁ ଯଥାର୍ଥ ବୋଲି ଶେଷରେ ପ୍ରମାଣିତ ହେଲା । ଧରି ନିଆଯାଉ, ବୁଦ୍ଧଦେବଙ୍କ ଜନ୍ମ ସମୟ ସ୍ଥିର କରିବାରେ ଠିକ୍ଏ ଏପଟ ସେପଟ ହୋଇ-ଯାଇଛି । ତଥାପି, ତଦ୍ଦ୍ୱାରା ତାଙ୍କ ଜୀବନ-ଚରିତର କୌଣସି ନ୍ୟୂନତା ପ୍ରତିପାଦିତ ହେବ ନାହିଁ । ବୁଦ୍ଧ ଠିକ୍ କେତେବେଳେ ଜନ୍ମ ହୋଇଥିଲେ, ତାହା ଜାଣିବା ସବୁଠାରୁ ବଡ଼ କଥା ନୁହେ । ବଡ଼କଥା ହେଉଛି, ତାଙ୍କର ଜନ୍ମ ସମୟକୁ ଦେଶର ପରିସ୍ଥିତି କିପରି ଥିଲା ଓ ସେ ମଧ୍ୟରେ ସେ କିପରି ନୂତନ ଧର୍ମମାର୍ଗ ଫିଟାଇ-ଥିଲେ, ଏ ସବୁର ସ୍ପଷ୍ଟ ଧାରଣା ଓ ଆଲୋଚନା । ଯଦି ଯଥାର୍ଥ-ଭାବରେ ସେହି ପରିସ୍ଥିତିର ବିଶ୍ଳେଷଣ କରାଯାଇପାରେ, ତାହା-ହେଲେ ବୁଦ୍ଧଙ୍କ ସମ୍ପର୍କରେ ଅନେକ ଭ୍ରାନ୍ତ ଧାରଣା ଦୂର ହୋଇ-ଯିବ । ଏହି ହେତୁରୁ ଜନ୍ମକାଳ ନିରୂପଣ ଉପରେ ବହୁ ପୃଷ୍ଠା

ବ୍ୟସ୍ତ ନ କରି, ବୁଦ୍ଧଦେବଙ୍କର ଜୀବନୀ ଉପରେ ଆଲୋକପାତ କରିବାକୁ ବିଶେଷ ଚେଷ୍ଟା କଲି ।

୨ । ଅନେକ ଲୋକ ଏହି ମତପୋଷଣ କରୁଛନ୍ତି ଯେ, ବୁଦ୍ଧଙ୍କ "ଅହିଂସା" ପ୍ରଚାରର ଫଳରେ ଭାରତୀୟ ସମାଜ ନାସ୍ତିକ ହୋଇଗଲା ଓ ସେହି ହେତୁରୁ ବିଦେଶୀମାନଙ୍କ ଦ୍ୱାରା ପରାଜିତ ହୋଇଗଲା । ଏହି ମତ ସମ୍ପର୍କରେ ଏ ଗ୍ରନ୍ଥରେ କିଛି ଆଲୋଚନା ହେବା ଉଚିତ ଥିଲା ।

**ଉତ୍ତରଃ**—ବୁଦ୍ଧଦେବଙ୍କ ଚରିତ ସଙ୍ଗେ ଏ ମତର କିଛି ସମ୍ପର୍କ ଅଛି ବୋଲି ମୁଁ ଭାବି ନଥିଲି । ଖ୍ରୀ: ପୂର୍ବ ୫୪୩ରେ ବୁଦ୍ଧଦେବଙ୍କର ପରିନିର୍ବାଣ ହୋଇଥିଲା । ତାହାର ଦୁଇ ଶତାବ୍ଦୀ ପରେ ଚନ୍ଦ୍ରଗୁପ୍ତ ସାମ୍ରାଜ୍ୟ ସ୍ଥାପନ କରିଥିଲେ । କଥିତ ଅଛି, ସେ ଥିଲେ ଜୈନଧର୍ମାବଲମ୍ବୀ । କିନ୍ତୁ ଗ୍ରୀକ୍‌ମାନଙ୍କୁ ଏ ଦେଶରୁ ତଡ଼ି ଦେବାରେ ତାଙ୍କର ଅହିଂସା-ଧର୍ମ ତହିଁରେ ଆଦୌ ପ୍ରତିବନ୍ଧକ ହୋଇ ନଥିଲା । ତାଙ୍କ ନାତି ଅଶୋକ ସମ୍ପୂର୍ଣ୍ଣ ଭାବରେ ବୌଦ୍ଧ ହୋଇ ଯାଇଥିଲେ, ତଥାପି ସେ ଏକ ବିଶାଳ ସାମ୍ରାଜ୍ୟ ଚଳାଇ ଥିଲେ ।

ମହମ୍ମଦ ବିନ୍‌କାଶିମ୍ ୭୧୨ ଖ୍ରୀଷ୍ଟାବ୍ଦରେ ସିନ୍ଧୁଦେଶକୁ ଆକ୍ରମଣ କରିଥିଲେ । ସେତେବେଳକୁ ପଶ୍ଚିମ ଭାରତରୁ ବୌଦ୍ଧଧର୍ମ ଲୁପ୍ତ ହୋଇ ଯାଇଥିଲା ଓ ସେଠାରେ ବ୍ରାହ୍ମଣଧର୍ମର ମହତ୍ତ୍ୱ ବଢ଼ିଯାଇ-ଥିଲା । ଏହା ହୋଇଥିବା ସତ୍ତ୍ୱେ ଖଲିଫାଙ୍କର ସେହି ଅଳ୍ପ ବୟସ୍କ ସର୍ଦ୍ଦାର ଗୁହ୍ନିଁ ଗୁହ୍ନିଁ ସିନ୍ଧୁଦେଶକୁ ପଦାନତ କରି ଦେଇଥିଲେ । ସେ ସେଠାରେ ହିନ୍ଦୁ ରାଜାଙ୍କୁ ଖଣ୍ଡ ଖଣ୍ଡ କରି, ତାଙ୍କର କନ୍ୟା-ମାନଙ୍କୁ ନେଇ, ନିଜ ଖଲିଫା'ଙ୍କୁ ଉପହାର ସ୍ୱରୂପ ଦେଇଥିଲେ ।

ମୁସଲମାନମାନଙ୍କ ଦ୍ୱାରା ସିନ୍ଧୁ ଓ ପଞ୍ଜାବର କେତେକ ଅଞ୍ଚଳ ଆକ୍ରାନ୍ତ ହେବାର ଶହେ ବର୍ଷପରେ ଶଙ୍କରାଚାର୍ଯ୍ୟ ଆବିର୍ଭୂତ ହେଲେ । ତାଙ୍କର "ବେଦାନ୍ତ"ର ପ୍ରଧାନ ଲକ୍ଷ୍ୟ ଥିଲା ଏହି ଯେ, ଶୂଦ୍ରମାନେ ବେଦାଧ୍ୟୟନ ନ କରନ୍ତୁ । ଯଦି କୌଣସି ଶୂଦ୍ର ବେଦ ବାକ୍ୟ ଶୁଣେ, ତାହାର କାନକୁ ତାତଲା ସୀସା ବା ଜଉରେ ମୁଦି ଦେବାକୁ, ବେଦବାକ୍ୟ ଉଚ୍ଚାରଣ କଲେ ଜିଭକୁ କାଟି ଦେବାକୁ ଓ ବେଦବାକ୍ୟ ଧାରଣ କଲେ ପ୍ରାଣରେ ମାରିଦେବାକୁ ହେବ । ଏହାହିଁ ଥିଲା ତାଙ୍କର ବେଦାନ୍ତ । ବିଜୟୀ ମୁସଲମାନମାନଙ୍କଠାରୁ ଆମର ଏହି ସନାତନୀ ବନ୍ଧୁମାନେ କିଛି ଶିଖି ନଥିଲେ । ବୁଦ୍ଧଦେବ ତ ସେମାନଙ୍କର ଶତ୍ରୁରୂପେ ବିବେଚିତ ହେଉଥିଲେ, ତେଣୁ ତାଙ୍କଠାରୁ ବା ସେମାନେ କ'ଣ ଶିଖି ଥାଆନ୍ତେ ?

ରାଜପୁତମାନେ ବଡ଼ ଝାଣୁଆ ସନାତନୀ ଥିଲେ । 'ଅହିଂସା'ରେ ସେମାନଙ୍କର ତିଳେ ସୁଦ୍ଧା ଆସ୍ଥା ନଥିଲା । ବେଳେବେଳେ ସେମାନେ ନିଜ ନିଜ ମଧ୍ୟରେ ଯୁଦ୍ଧ କରି ମରୁଥିଲେ । ତଥାପି ହିଂସା (ମାଡ଼)ର ଏହି ବୀର-ଭକ୍ତମାନଙ୍କୁ, ମହମ୍ମଦ ଗଜନୀ, ଘୋଡ଼ାଝାପୁ ତଳର ଧୂଳି ପରି ଦଳି ଦେଇଥିଲେ କିପରି ? କ'ଣ, ଏହି କାରଣରୁ ସେମାନେ ବୁଦ୍ଧଦେବଙ୍କ ଅହିଂସା' ମାନୁଥିଲେ ବୋଲି କୁହାଯିବ ?

ଆମ ମହାରାଷ୍ଟ୍ରର ନେତୃତ୍ୱ ତ କେବଳ ବ୍ରାହ୍ମଣଙ୍କ ହାତରେ ଥିଲା । ଶେଷ ବାଜୀରାଓ ନିଜର କର୍ମଠତା ଲାଗି ବେଶ୍ ଜଣାଶୁଣା ଥିଲେ । ନେତାମାନଙ୍କଠାରେ ତ ହିଂସା ଶେଷ ସୀମାରେ ପହଞ୍ଚି ଥିଲା । ସେମାନଙ୍କର ଅନ୍ୟଙ୍କ ସଙ୍ଗରେ ତ ଯୁଦ୍ଧ ହୋଇଥିଲା, କିନ୍ତୁ ନିଜର ଗୃହ-ଯୁଦ୍ଧ ମଧ୍ୟ କମ୍ ହୋଇ ନଥିଲା । ଥରେ, ଦୌଲତ ରାଓ

ସିନ୍ଧିଆ ପୂନା ସହରକୁ ଲୁଣ୍ଠନ କରି ନେଲେ । ପୁଣି ଆଉଥରେ, 'ଯଶବନ୍ତ ରାଓ ହୋଲକର୍' ମଧ୍ୟ ଲୁଟି କରି ଥିଲେ । ଏହି ସୀମାଭିତରେ ହିଂସା-ଭକ୍ତମାନଙ୍କ ସାମ୍ରାଜ୍ୟ ସମଗ୍ର ଭାରତବର୍ଷରେ ବ୍ୟାପିଯିବାର-ଥିଲା । ସେମାନେ ନିଜ ଅପେକ୍ଷା ଶହେ ଗୁଣରେ ଅହିଂସ-ଇଂରେଜ-ମାନଙ୍କର ଶରଣାପନ୍ନ ହୋଇଥିଲେ କାହିଁକି ? ମରାଠୀ ସର୍ଦ୍ଦାର-ମାନେ ଜଣକ ପରେ ଜଣେ ଯାଇ ଇଂରାଜମାନଙ୍କର ଆନୁଗତ୍ୟ ସ୍ୱୀକାର କଲେ କାହିଁକି ? କ'ଣ ଏଥିପାଇଁ ସେମାନେ ବୁଦ୍ଧଦେବ-ଙ୍କର ଉପଦେଶ ମାନୁଥିଲେ ?

ଗତ ହଜାରେ-ବାରଶହ ବର୍ଷ ଧରି ଜାପାନର ଲୋକେ ବୌଦ୍ଧଧର୍ମାବଲମ୍ବୀ ଅଟନ୍ତି । ୧୮୫୩ ଖ୍ରୀଷ୍ଟାବ୍ଦରେ, କମୋଡୋର ପେରୀ ଯେତେବେଳେ ସେମାନଙ୍କ ଲକ୍ଷ୍ୟରେ ବନ୍ଧୁକ ଉତ୍ତୋଳନ କଲେ, ସେମାନଙ୍କର ହଠାତ୍ ଜାଗରଣ ଆସି ଏକତା ଜନ୍ମିଲା କିପରି ? ବୌଦ୍ଧଧର୍ମ ସେମାନଙ୍କୁ କ୍ଳୀବ କରି ନଦେଲା କାହିଁକି ?

ଏ ପ୍ରଶ୍ନର ଉତ୍ତର ସେହି ଲବ୍ଧ ପ୍ରତିଷ୍ଠ ସମାଲୋଚକହିଁ ଦେବା ଉଚିତ । ମହାରାଷ୍ଟ୍ରର କବି "ମୋରୋ ପନ୍ତ"ଙ୍କ କାବ୍ୟର ଏ ପଂକ୍ତି କ'ଣ ସେପରି ଲବ୍ଧ ପ୍ରତିଷ୍ଠ ସମାଲୋଚକମାନଙ୍କ ଉଦ୍ଦେଶ୍ୟରେ ଲେଖାଯାଇଥିଲା—"ମିରବସି ସୁଜ୍ଞତ୍ୱ ବୃଥା ଅନ୍ୟାଲା ସ୍ୱକୃତ ତାପ ଲବୂନ" ( ଅର୍ଥାତ୍ ନିଜେ କରିଥିବା ଦୋଷକୁ ଅନ୍ୟ ଉପରେ ଲଦି ତୁମେ ତୁମ୍ଭଠାରୁ କାହିଁକି ସାଧୁପଣିଆ ଦେଖାଇ ହେଉଚ ? ) ସେମାନେ ଓ ସେମାନଙ୍କ ପୂର୍ବପୁରୁଷମାନେ ଯେଉଁ ଦୋଷ କରିଛନ୍ତି, ବୁଦ୍ଧଙ୍କ ଉପରେ ତାଙ୍କୁ ଲଦିଦେଇ ନିଜର "ମହା ସିହାଣିଆ ପଣିଆ" ଦେଖାଉଛନ୍ତି ।

୩ । ବୁଦ୍ଧଦେବ "ସଂବୋଧିଜ୍ଞାନ" ପାଇବା ଠାରୁ ସମସ୍ତ ଅନୁକ୍ରମେ ତାଙ୍କ ଚରିତର ଅବତାରଣ କରା ନ ଯାଇଛି କାହିଁକି ?

**ଉତ୍ତର**:—ମିଳିଥିବା "ପ୍ରାଚୀନ ସାହିତ୍ୟ" ଉପରେ ନିର୍ଭର କରି ସେହିପରି ଭାବରେ ଚରିତର ଉପସ୍ଥାପନ କରି ହେବନାହିଁ । ତହିଁରେ କେବଳ ଯେ କାଳକ୍ରମରେ ବୁଦ୍ଧଙ୍କ 'ଉପଦେଶ' ଦିଆ-ଯାଇ ନାହିଁ, ତାହାନୁହେ; ବରଂ ଯେଉଁ 'ଉପଦେଶ' ଥିଲା, ତାହା ମଧ୍ୟ ଅନେକ ପରିମାଣରେ ବଢ଼ିଯାଇଛି । ସେ ମଧ୍ୟରୁ ଖୋଜା-ଖୋଜି କରି 'ସତ୍ୟ' ବାହାର କରିବା ବଡ଼ କଠିନ । ଏଥିରେ ମୁଁ ସେହି ଚେଷ୍ଟା କରିଚି । କିନ୍ତୁ ସମୟର ଅନୁକ୍ରମରେ ବୁଦ୍ଧଙ୍କ ଜୀବନୀ ଉପସ୍ଥାପିତ ହୋଇ ପାରିଲି ନାହିଁ ।

୪ । ଆର୍ଯ୍ୟମାନଙ୍କର ଭାରତ ଆଗମନ ପରେ ହିଁ "ବୈଦିକ ସଂସ୍କୃତି" (ଭାରତକୁ) ଆସିଲା । ତାହା ଆଗରୁ, 'ଦାସ' ମାନଙ୍କର, ଅର୍ଥାତ୍ ବ୍ରାହ୍ମଣମାନଙ୍କର ସଂସ୍କୃତି ଥିଲା । ଏ ବିଷୟରେ କି ପ୍ରମାଣ ଅଛି ?

**ଉତ୍ତର**:—ଏହାର ବିଚାର ମୁଁ ମୋର "ହିନ୍ଦୀ ସଂସ୍କୃତି ଆଣି ଅହିଂସା" ଗ୍ରନ୍ଥର ପ୍ରଥମ ଅଧ୍ୟାୟରେ କରିଛି । ଯଦି ଏହି ପୁସ୍ତକ ତାହା ସହିତ ପଢ଼ାଯାଏ, ତେବେ ବହୁତ କଥା ଭଲଭାବେ ଜଣା ପଡ଼ିଯିବ । ମୋର ମତକୁ ସମସ୍ତେ ମାନି ଯା'ନ୍ତୁ ବୋଲି ମୁଁ ଇଚ୍ଛା କରୁନାହିଁ । ସେ ସବୁ ଆଲୋଚନାର କଥା । ପାଠକଙ୍କ ଆଗରେ ତାହା ମୁଁ ଉପସ୍ଥାପନ କଲି । ବୁଦ୍ଧ-ଚରିତ ସହିତ ଦାସ ଏବଂ ଆର୍ଯ୍ୟଙ୍କ ସଂସ୍କୃତିର ବିଶେଷ ସମ୍ବନ୍ଧ ନାହିଁ । ସେହି ଦୁଇ ସଂସ୍କୃତିର ସଂଘର୍ଷରୁ ଉତ୍ପନ୍ନ ବୈଦିକ ସଂସ୍କୃତି ବୁଦ୍ଧଙ୍କ ସମୟରେ ପ୍ରତିଷ୍ଠିତ ହୋଇ ସାରିଥିଲା । ସେହିତକ ଦେଖାଇବା ପାଇଁ ଏହି ଗ୍ରନ୍ଥର ପ୍ରଥମ ଅଧ୍ୟାୟ ଲେଖା ଯାଇଛି ।

୫ । ବୁଦ୍ଧଙ୍କ ପରେ ଉପନିଷଦ ଓ ଗୀତା ରଚିତ ହୋଇଥିଲା ବୋଲି କି ପ୍ରମାଣ ମିଳେ ?

ଉତ୍ତର:—"ହିନ୍ଦୀ ସଂସ୍କୃତି ଆଣି ଅହିଂସା"ରେ ଏହାର ମଧ୍ୟ ବସ୍ତୁତ ବିଚାର କରାଯାଇଛି । (୧) ତେଣୁ ଏ ଗ୍ରନ୍ଥରେ ତାହାର ଆଲୋଚନା କରାଗଲା ନାହିଁ । କେବଳ ଉପନିଷଦ ନୁହେଁ, ଆରଣ୍ୟକ ମଧ୍ୟ ବୁଦ୍ଧଙ୍କ ପରେ ରଚିତ ହୋଇଥିବାର ବଳିଷ୍ଠ ପ୍ରମାଣ ମୁଁ ପାଇଛି । ଶତପଥବ୍ରାହ୍ମଣରେ ଏବଂ ବୃହଦାରଣ୍ୟକ ଉପନିଷଦରେ ଯେଉଁ ବଂଶାବଳୀ ଦିଆଯାଇଛି, ତହିଁରୁ ଜଣା-ଯାଉଛି, ବୁଦ୍ଧଙ୍କପରେ ୩୫ ପୁରୁଷ ପର୍ଯ୍ୟନ୍ତ ତାହାର ପରମ୍ପରା ଚାଲିଥିଲା । ଶ୍ରୀ ହେମଚନ୍ଦ୍ର ରାୟଚଉଧୁରୀ ପ୍ରତି 'ପୁରୁଷ' ପାଇଁ ୩୦ ବର୍ଷ ସ୍ଥିର କରିଛନ୍ତି । ଅନ୍ତତଃ ୨୫ ବର୍ଷ ଧରାଗଲେ ମଧ୍ୟ ବୁଦ୍ଧଙ୍କ ପରେ ଅନ୍ତତଃ ୮୭୫ ବର୍ଷ ପର୍ଯ୍ୟନ୍ତ ପରମ୍ପରା ଚାଲିଥିଲା ବୋଲି କହିହେବ; ଅର୍ଥାତ୍ ସମୁଦ୍ରଗୁପ୍ତଙ୍କ ପର୍ଯ୍ୟନ୍ତ ପରମ୍ପରା ଚାଲିଥିଲା ଏବଂ ସେତେବେଳକୁ ବ୍ରାହ୍ମଣ ଏବଂ ଉପନିଷଦ ସ୍ଥିର ହୋଇ ଯାଇ-ଥିଲା । ତାଙ୍କ ପୂର୍ବରୁ, ସେମାନଙ୍କରେ, ଆବଶ୍ୟକ ସ୍ଥାନରେ ଅଦଳବଦଳ କରାଯାଇ ଥାଇପାରେ । ପାଲିଭାଷା ମଧ୍ୟ ଏପରି ଭାବରେ ଗତି କରିଥିଲା । ବୁଦ୍ଧଘୋଷଙ୍କର ପ୍ରାୟ ଦୁଇଶହ ବର୍ଷ ପୂର୍ବେ ପାଳିଭାଷା ସ୍ଥିର ହୋଇ ଯାଇଥିଲା ଏବଂ ସେ 'ଅଟ୍ଠକଥା' ଲେଖିସାରିବା ପରେ ତା ଉପରେ ଶେଷ ମୋହର ବସିଗଲା । ନବମ ଶତାବ୍ଦୀରେ ଶଙ୍କରାଚାର୍ଯ୍ୟ ଉପନିଷଦ ଉପରେ ଟୀକା ଲେଖିଲେ । ତାଙ୍କ ପୂର୍ବରୁ ଗୌଡ଼ପାଦ, ମାଣ୍ଡୂକ୍ୟ କାରିକା ଲେଖି-ଥିଲେ । ତହିଁରେ ସର୍ବତ୍ର ବୁଦ୍ଧଙ୍କୁ ସ୍ତୁତି କରାଯାଇଛି । ଅଧିକ ଦୂର ଯିବା ନିଷ୍ପ୍ରୟୋଜନ—ଆକବରଙ୍କ ସମୟରେ ଲିଖିତ 'ଅଲ୍ଲୋ-ପନିଷଦ' ମଧ୍ୟ ଉପନିଷଦର ଅନ୍ତର୍ଭୁକ୍ତ ହୋଇଯାଇଛି ।

---

(୧) ଦେଖନ୍ତୁ, ପୃଷ୍ଠା ୪୮—୫୦ ଓ ୧୭୦—୧୭୨

ଉପନିଷଦମାନଙ୍କର "ଆତ୍ମବାଦ ଓ ତପଶ୍ଚର୍ଯ୍ୟା" ଯେ ଶ୍ରମଣ—ସମ୍ପ୍ରଦାୟମାନଙ୍କଠାରୁ ନିଆଯାଇଥିଲ, ଏଥିରେ ସନ୍ଦେହ କରିବାର କୌଣସି କାରଣ ନାହିଁ । ଯାଗଯଜ୍ଞ—ସଂସ୍କୃତି ସହିତ ଏ ଦୁଇଟିର କୌଣସି ସମ୍ବନ୍ଧ ନାହିଁ । ଆଜିକାଲି ଆର୍ଯ୍ୟସମାଜ ଓ ବ୍ରାହ୍ମସମାଜ ଯେଉଁପରି 'ବାଇବେଲ'ର ଏକେଶ୍ୱରବାଦକୁ ବେଦ ଓ ଉପନିଷଦ ଉପରେ ଆରୋପ କରୁଛନ୍ତି, ସେହିପରି ଉପନିଷଦମାନେ ଆତ୍ମବାଦ ଓ ତପସ୍ୟାକୁ ନେଇ ବେଦ ଉପରେ ଆରୋପ କରିବାକୁ ଚେଷ୍ଟା କରିଥିଲେ ଓ ଶ୍ରମଣମାନଙ୍କର ଅହିଂସାକୁ ସ୍ୱୀକାର କରି ନଥିଲେ । ଫଳରେ ସେମାନେ ବୈଦିକ (ବା ବେଦ-ମୂଳକ) ହୋଇ ରହିଲେ । କିନ୍ତୁ ଏହାସତ୍ତ୍ୱେ, କର୍ମଠ ମୀମାଂସକ ଆଜିମଧ୍ୟ ଉପନିଷଦ ଗୁଡ଼ିକୁ "ବୈଦିକ" ବୋଲି ଗ୍ରହଣ କରିବାକୁ ପ୍ରସ୍ତୁତ ନୁହେଁ ।

ଯେଉଁମାନେ ପାଲିସାହିତ୍ୟ ବା ତାହାର ଇଂରାଜୀ ଅନୁବାଦ ପଢ଼ନ୍ତି, ସେମାନେ, ବୁଦ୍ଧଙ୍କର ସମକାଳୀନ ଇତିହାସ ଜାଣିବାକୁ ଇଚ୍ଛାକଲେ, ଏହି ଗ୍ରନ୍ଥରୁ ସାହାଯ୍ୟ ପାଇ ପାରିବେ ବୋଲି ମୋର ଆଶା । ଯାହାର ସମୟ ସ୍ୱଳ୍ପ, ସେ ଅନ୍ତତଃ ଏହି ପାଞ୍ଚୋଟି ପୁସ୍ତକ ପଢ଼ିବା ଆବଶ୍ୟକ—

୧ । ବୁଦ୍ଧଧର୍ମ ଆଣି ସଂଘ । ୨ । ବୁଦ୍ଧଲୀଳା ସାରସଂଗ୍ରହ ୩ । ବୌଦ୍ଧସଂଘାଚ୍ଚ ପରିଚୟ । ୪ । ସମାଧି ମାର୍ଗ । ୫ । ହିନ୍ଦୀ ସଂସ୍କୃତି ଆଣି ଅହିଂସା ।

ଏ ଗ୍ରନ୍ଥ, ଜନପ୍ରିୟତା ପାଇବା ଦୃଷ୍ଟିରୁ ଲେଖାଯାଇ ନାହିଁ । ଏହାର ମୂଳରେ ସତ୍ୟାନୁସନ୍ଧାନ—ଲକ୍ଷ୍ୟ ବିଦ୍ୟମାନ । ଏ ଗ୍ରନ୍ଥ

କେତେଦୂର ଜନପ୍ରିୟ ହୋଇପାରିବ, କହିହେଉ ନାହିଁ । ପ୍ରକାଶକ ମହୋଦୟ ଏହାକୁ ପ୍ରକାଶ କରିଥିବାରୁ ମୁଁ ତାଙ୍କଠାରେ କୃତଜ୍ଞ ରହିଲି ।

ଧର୍ମାନନ୍ଦ କୋସମ୍ବୀ

ରାଜବୈଦ୍ୟ ଜୀବକ ସେଠାରେ ନୀରବ ଭାବରେ ବସିଥିଲେ। ରାଜା, ତାଙ୍କୁ ସେ ସମ୍ପର୍କରେ ପଚାରିବାରୁ ସେ, ଭଗବାନ୍ ବୁଦ୍ଧଙ୍କର ପ୍ରଶସ୍ତି ପ୍ରଖ୍ୟାପନ କଲେ। ତାଙ୍କୁ ଦର୍ଶନ କରିବାକୁ ଅନୁରୋଧ କରି, ରାଜାଙ୍କୁ ସ୍ୱୀକୃତ କରାଇ ନେଲେ। ଯଦ୍ୟପି ବୟସ ଦୃଷ୍ଟିରୁ ଶ୍ରମଣ-ସଂଘର ନେତାମାନଙ୍କ ମଧ୍ୟରେ ବୁଦ୍ଧ ଏବଂ କନିଷ୍ଠ ଥିଲେ ତାଙ୍କର ସଂଘ ସ୍ଥାପିତ ହେବାର ବହୁଦିନ ହୋଇ ନଥିଲା, ତଥାପି ଅଜାତଶତ୍ରୁ, ତାଙ୍କର ସାକ୍ଷାତ ଲାଭ କରିବାକୁ ସ୍ଥିର କଲେ ଏବଂ ସପରିବାରେ ସେହି ଉଦ୍ଦେଶ୍ୟରେ ଜୀବକଙ୍କର ଆମ୍ରକାନନକୁ ଗମନ କଲେ।

ଅଜାତଶତ୍ରୁ ନିଜ ପିତାଙ୍କୁ ବନ୍ଦୀକରି (ତାଙ୍କୁ) ବଧ କରିଥିଲେ ଏବଂ ନିଜେ ସିଂହାସନ ଅଧିକାର କରିଥିଲେ। କିନ୍ତୁ ତାଙ୍କର ପିତା, ଶ୍ରମଣମାନଙ୍କ ପ୍ରତି ଯେଉଁ ଆଦର ପ୍ରଦର୍ଶନ କରୁଥିଲେ, ତାହା ସେ ଅକ୍ଷୁଣ୍ଣ ରଖିଥିଲେ। ରାଜା ବିମ୍ବିସାରଙ୍କ ମୃତ୍ୟୁପରେ ବୁଦ୍ଧଦେବ, ପ୍ରାୟ ରାଜଗୃହ ଯାଉ ନଥିଲେ। ରାଜା ହେବା ପୂର୍ବରୁ ଅଜାତ-ଶତ୍ରୁଙ୍କୁ, ଦେବଦତ୍ତ ନିଜର ଦଳଭୁକ୍ତ କରି, ବୁଦ୍ଧଦେବଙ୍କୁ ମାରିବା ଲକ୍ଷ୍ୟରେ 'ନାଳଗିରି' ନାମକ ଗୋଟିଏ ପାଗଳ ହସ୍ତୀକୁ ଛାଡ଼ିଦେବାର ଷଡ଼ଯନ୍ତ୍ର କରିଥିଲା,—ଇତ୍ୟାଦି ଇତ୍ୟାଦି କଥା ବିନୟପିଟକରେ କୁହାଯାଇଛି। କିନ୍ତୁ ଏଥିରେ କେତେଦୂର ସତ୍ୟତା ଅଛି, କହିବା କଷ୍ଟକର। ତେବେ ଏତିକ ହୋଇଥାଇପାରେ ଯେ, ଦେବଦତ୍ତଙ୍କୁ ଅଜାତଶତ୍ରୁ ସମର୍ଥନ କରୁଥିଲେ। ଯଥାସମ୍ଭବ ଏହି କାରଣରୁ ବୁଦ୍ଧଦେବ, ରାଜଗୃହରୁ ଦୂରରେ ରହୁଥିଲେ। ଯଦି ବା କୌଣସି ସମୟରେ ସେ ରାଜଗୃହରେ ଉପସ୍ଥିତ ହେଉଥିଲେ, ତାଙ୍କ ସହିତ ସାକ୍ଷାତ କରିବା ପାଇଁ ଅଜାତଶତ୍ରୁ ଉତ୍କଣ୍ଠିତ ହେଉ ନଥିଲେ। ସେହି ସମୟରେ ରାଜଗୃହର ଆଖପାଖରେ ବଡ଼ ବଡ଼ ଶ୍ରମ-

ସଂଘର ଛଅ ଜଣ ନେତା ଅବସ୍ଥାନ କରୁଥିଲେ । ଏହି କଥାରୁ ସ୍ପଷ୍ଟ ଜଣାଯାଏ, ଅଜାତଶତ୍ରୁ ନିଜ ପିତାଙ୍କ ଅପେକ୍ଷା ଶ୍ରମଣମାନଙ୍କୁ ଅଧିକତର ଆଦର କରୁଥିଲେ । କେବଳ ସେତିକି ନୁହେଁ, ଅଜାତଶତ୍ରୁଙ୍କ ଶାସନକାଳରେ ମଗଧ ଦେଶରେ ଯାଗଯଜ୍ଞ ଲୁପ୍ତପ୍ରାୟ ହୋଇଗଲା ଏବଂ ଧୀରେ ଧୀରେ ଶ୍ରମଣସଂଘର ଉନ୍ନତି ସଂଘଠିତ ହେଲା ।

ରାଜଗୃହ ମଗଧର ରାଜଧାନୀ ଥିଲା । ଏହି ସ୍ଥାନଟି ବିହାରର ତିଲୟ୍ୟା ଷ୍ଟେସନଠାରୁ ଷୋହଳ ମାଇଲ୍ ଦୂରବର୍ତ୍ତୀ । ଏହାର ଚତୁର୍ଦ୍ଦିଗରେ ପର୍ବତମାଳା ଏବଂ ମଧ୍ୟଭାଗରେ ନଗର ଅବସ୍ଥିତ । ଗମନାଗମନ ପାଇଁ ପର୍ବତ ଘାଟିରେ ଦୁଇଟି ମାତ୍ର ମାର୍ଗଥିବାରୁ, ଶତ୍ରୁଙ୍କ କବଳରୁ ନଗର ରକ୍ଷା କରିବା କଷ୍ଟକର ନଥିଲା । ବୋଧହୁଏ ଏହି କାରଣରୁ ସେଠାରେ ରାଜଧାନୀ ନିର୍ମିତ ହୋଇଥିଲା । କିନ୍ତୁ ଅଜାତଶତ୍ରୁଙ୍କ ଶକ୍ତି ଏତେଦୂର ବଢ଼ିଯାଇଥିଲା ଯେ, ଆତ୍ମରକ୍ଷା କରିବାପାଇଁ ତାଙ୍କ ପକ୍ଷରେ ଏହି ଗିରିଦୁର୍ଗର କୌଣସି ଆବଶ୍ୟକତା ନଥିଲା । ବୁଦ୍ଧଙ୍କର ପରିନିର୍ବାଣ ପୂର୍ବରୁ, ଅଜାତଶତ୍ରୁ ଗୋଟିଏ ନୂତନ ନଗର ନିର୍ମାଣ କରି ଥିଲେ । ପରେ, ସେଠାରେ ସେ ନିଜ ଦୁର୍ଗ ନିର୍ମାଣ କରି ଥାଇପାରନ୍ତି ।

ଅଜାତଶତ୍ରୁଙ୍କୁ 'ବୈଦେହୀ-ପୁତ୍ର' ବୋଲି ମଧ୍ୟ କୁହା ଯାଉଥିଲା । ମନେହୁଏ, ଅଜାତଶତ୍ରୁଙ୍କ ମାତା ବିଦେହ ରାଜ୍ୟର କନ୍ୟା ଥିଲେ । ଜୈନମାନଙ୍କର "ଆଗୃରାଙ୍ଗ ସୂତ୍ର" ପ୍ରଭୃତିରେ ମଧ୍ୟ ଅଜାତଶତ୍ରୁଙ୍କ ମାତା ବଜ୍ଜି-ରାଜା ମାନଙ୍କ ମଧ୍ୟରୁ ଜଣେ ରାଜାଙ୍କ କନ୍ୟାଥିଲେ ବୋଲି ଉଲ୍ଲିଖିତ ହୋଇଛି । କିନ୍ତୁ "କୋସଲ ସଂଯୁତ୍ତ"ର ଦ୍ୱିତୀୟ ବର୍ଗର ଚତୁର୍ଥ 'ସୁତ୍ତ'ର 'ଅଟ୍ଠକଥା'ରେ ତାଙ୍କୁ

ପ୍ରସେନଜିତ୍‌ଙ୍କର ଭଣଜା ବୋଲି କୁହାଯାଇଛି ଏବଂ ବୈଦେହୀ ଶବ୍ଦର ଅର୍ଥ **"ପଣ୍ଡିତାଧିବଚନ ମେତଂ, ପଣ୍ଡିତତ୍ଥିସ୍ସା ପୁତ୍ତୋତି ଅତ୍ଥେ"** ବୋଲି କରାଯାଇଛି । ଲଳିତବିସ୍ତରରେ, ମଗଧରାଜବଂଶକୁ ବୈଦେହୀକୁଳ ବୋଲି ମଧ୍ୟ କୁହାଯାଇଛି । ଏଥିରୁ ଜଣାଯାଏ, ଏହି ବଂଶ ପୈତୃକ ପରଂପରାର ଗୌରବ ହରାଇ ବସିଲା ଏବଂ ପରେ ସେଠାର କୌଣସି ରାଜା ବିଦେହ ଦେଶର ରାଜକନ୍ୟାଙ୍କ ସହିତ ବିବାହ ସମ୍ବନ୍ଧ ସ୍ଥାପନ କରିବାରୁ ବଂଶର ଗୌରବ ବୃଦ୍ଧି ହେଲା ଓ କେତେକ ରାଜପୁତ୍ର ନିଜନିଜକୁ ବୈଦେହୀ ପୁତ୍ର ବୋଲି ଅଭିହିତ କଲେ ।

ଅଜାତଶତ୍ରୁ, ବିମ୍ବିସାରଙ୍କୁ ହତ୍ୟାକଲେ—ଏ ସମ୍ବାଦ ଶୁଣିବା ମାତ୍ରେ ଅବନ୍ତୀର ରାଜା ଚଣ୍ଡ ପ୍ରଦ୍ୟୋତ ଅତିଶୟ କ୍ରୁଦ୍ଧ ହୋଇ ଉଠିଲେ । ଅଜାତଶତ୍ରୁଙ୍କୁ ଆକ୍ରମଣ କରିବା ପାଇଁ ସେ ଆୟୋଜନ ଆରମ୍ଭ କରିଦେଲେ । ସେହି ଭୟରେ ଅଜାତଶତ୍ରୁ, ରାଜଗୃହର ବାହାର ପ୍ରାଚୀରର ମରାମତି କରାଇଲେ (୧) । ତା ପରେ ବୋଧହୁଏ ଚଣ୍ଡ ପ୍ରଦ୍ୟୋତ, ତାଙ୍କୁ ଆକ୍ରମଣ କରିବାର ଅଭିପ୍ରାୟ ପରିତ୍ୟାଗ କଲେ । ଏଠାରେ ଦେଖାଯାଏ, ଚଣ୍ଡ ପ୍ରଦ୍ୟୋତଙ୍କ ପରି ଅନ୍ୟ ରାଜ୍ୟର ରାଜା ଅଜାତଶତ୍ରୁଙ୍କ ପ୍ରତି କ୍ରୋଧାନ୍ୱିତ ହେଲେ କିନ୍ତୁ ମଗଧର ପ୍ରଜାମାନେ, ନିଜର ରାଜାଙ୍କ ହତ୍ୟାରେ ଆଦୌ ବିଚଳିତ ହୋଇ ନଥିଲେ । ସେଠାରେ ଏକଛତ୍ର ଶାସନ ଯେ ଦୃଢ଼ଭାବରେ ପ୍ରତିଷ୍ଠିତ ଥିଲା, ଏହାହିଁ ତା'ର ପ୍ରମାଣ ।

( ୩ ) **କାସୀ**—'କାସୀ' ବା କାଶୀର ରାଜଧାନୀ ଥିଲା ବାରାଣସୀ । 'ଜାତକ-ଅଟ୍ଠ କଥା'ରୁ ଜଣାଯାଏ ଯେ, କାସୀର

(୧) ଦେଖନ୍ତୁ, ମଜ୍‌ଝିମନିକାୟରେ, ଗୋପକମୋଗ୍‌ଗଲ୍ଲାନ ସୁତ୍ତର ଅଟ୍ଠ କଥା

ଅଧିକାଂଶ ରାଜାଙ୍କୁ 'ବ୍ରହ୍ମଦତ୍ତ' କୁହାଯାଉଥିଲା । ସେଠାର ଶାସନ ପ୍ରଣାଳୀ ବିଷୟରେ ବିଶେଷ କିଛି ଜାଣି ନ ହେଉଥିଲେ ମଧ୍ୟ, କାଶୀର ରାଜା ବା ମହାଜନ, ବଡ଼ ଉଦାର ଥିବାର ଜଣାଯାଏ । ତାଙ୍କ ରାଜ୍ୟରେ କଳାକୌଶଳର ଭୂୟୋ ବିକାଶ ସାଧିତ ହୋଇଥିଲା । ବୁଦ୍ଧଦେବଙ୍କ ସମୟରେ ମଧ୍ୟ ଉତ୍କୃଷ୍ଟ ପଦାର୍ଥମାନଙ୍କୁ 'କାଶିକ' (କାଶୀରେ ନିର୍ମିତ) ବୋଲି କୁହାଯାଉ ଥିଲା । କାଶିକ ବସ୍ତ୍ର, କାଶିକ ଚନ୍ଦନ, ପ୍ରଭୃତି ଶବ୍ଦ ତ୍ରିପିଟକ ସାହିତ୍ୟରେ ପରିଦୃଷ୍ଟ ହୁଏ । ବାରାଣସୀର ରାଜା ଅଶ୍ୱସେନଙ୍କ ରାଣୀଙ୍କ ଗର୍ଭରୁ ଜୈନମାନଙ୍କର ତ୍ରୟୋବିଂଶ ତୀର୍ଥଙ୍କର ପାର୍ଶ୍ୱନାଥ ଜନ୍ମ ଗ୍ରହଣ କରିଥିଲେ । ଏହି ପାର୍ଶ୍ୱନାଥ, ଗୌତମ ବୁଦ୍ଧଙ୍କ ଜନ୍ମର ପ୍ରାୟ ଦୁଇ ଶହ ତେପୁାଳିଶ ବର୍ଷ ପୂର୍ବେ ନିଜ ମତ ପ୍ରଚାର କରିଥିଲେ । ସୁତରାଂ ଏ କଥା ସ୍ପଷ୍ଟ କହିହେବ ଯେ, କେବଳ ଶିଳ୍ପ କଳାରେ ନୁହେ, ଧାର୍ମିକ ବିଚାରରେ ମଧ୍ୟ କାଶୀର ରାଜା ଅଗ୍ରଣୀ ଥିଲେ । ବୁଦ୍ଧଦେବଙ୍କ ସମୟରେ କାଶୀର ସ୍ୱାଧୀନତା ପୂର୍ଣ୍ଣତଃ ଲୁପ୍ତ ହୋଇଯାଇଥିଲା ଓ କୋସଳ ଦେଶ ସଙ୍ଗେ 'କାଶୀ' ସଂଯୋଜିତ ହୋଇଯାଇଥିଲା । "ଅଙ୍ଗ ମଗଧ"ର ସମାସ ଭଳି "କାସୀ କୋସଳ", ଏହି ସମାସ ଘଟିତ ଶବ୍ଦ ବ୍ୟବହୃତ ହେଉଥିଲା ।

( ୪ ) **କୋସଳ**— କୋସଳ ଦେଶର ରାଜଧାନୀ ଶ୍ରାବସ୍ତୀ, ଅଚିରବତୀ ( ଆଧୁନିକ ନାମ, ରପ୍ତି ) ନଦୀକୂଳରେ ଥିଲା । ପସେନଦି (ପ୍ରସେନଜିତ୍) ସେଠାରେ ରାଜତ୍ୱ କରୁଥିଲେ । କୋସଳ ସୂତ୍ରର ଏକ ସୂତ୍ରରୁ ପ୍ରମାଣିତ ହେଉଛି ଯେ, ପସେନଦି ବୈଦିକ ଧର୍ମର ପୂର୍ଣ୍ଣ ଅନୁସରଣ କରୁଥିଲେ ଓ ବଡ଼ ବଡ଼ ଯଜ୍ଞ ଅନୁଷ୍ଠାନ କରୁଥିଲେ । ତଥାପି ତାଙ୍କ ରାଜ୍ୟରେ ଶ୍ରମଣମାନଙ୍କୁ ଯଥୋପଯୁକ୍ତ

ସମ୍ମାନ ପ୍ରଦର୍ଶିତ ହେଉଥିଲା । 'ଅନାଥ ପିଣ୍ଡିକ' (୧) ନାମକ ଜଣେ ବିଖ୍ୟାତ ଶେଠ, ବୁଦ୍ଧଦେବଙ୍କର ଭିକ୍ଷୁ ସଂଘ ଉଦ୍ଦେଶ୍ୟରେ ଶ୍ରାବସ୍ତୀରେ ଜେତବନ ବୋଲି ଏକ ବିହାର ନିର୍ମାଣ କରାଇଥିଲେ । ବିଶାଖା ନାମ୍ନୀ ଜଣେ ପ୍ରସିଦ୍ଧ ଉପାସିକା ମଧ୍ୟ 'ପୂର୍ବାରାମ' ନାମରେ ଗୋଟିଏ ବିଶାଳ ପ୍ରାସାଦ, ଭିକ୍ଷୁମାନଙ୍କ ପାଇଁ ନିର୍ମାଣ କରାଇଥିଲେ । ଏହି ଦୁଇସ୍ଥାନରେ ବୁଦ୍ଧଦେବ, ଭିକ୍ଷୁସଂଘ ସହିତ ବେଳେବେଳେ ଅବସ୍ଥାନ କରୁଥିଲେ । ତାଙ୍କର ଅଧିକାଂଶ ଗ୍ରୀଷ୍ମମାସ୍ୟା ଏଠାରେ ଯାପିତ ହେଉଥିବା ଅନୁମାନର କାରଣ ହେଉଛି ଏହି ଯେ, ସେ ସବୁଠାରୁ ବେଶୀ ଉପଦେଶ ଅନାଥପିଣ୍ଡିକର ଉଦ୍ୟାନରେ ଦେଇଥିବାର ଉଲ୍ଲେଖ, ତ୍ରିପିଟକ ସାହିତ୍ୟରେ ଦେଖିବାକୁ ମିଳେ । ଯଦିଓ ରାଜା ପସେନଦି ଯାଗଯଜ୍ଞ ପ୍ରଭୃତିର ପୃଷ୍ଠପୋଷକ ଥିଲେ, ତଥାପି କୌଣସି ସମୟରେ ବୁଦ୍ଧଦେବଙ୍କର ଦର୍ଶନ ନିମନ୍ତେ ସେ ଅନାଥପିଣ୍ଡିକର ଉଦ୍ୟାନକୁ ଯାଉଥିଲେ । ବୁଦ୍ଧଦେବ, ପସେନଦିଙ୍କୁ ଦେଇଥିବା ଉପଦେଶ ଗୁଡ଼ିକର ସଂଗ୍ରହ 'କୋସଲ ସୁତ୍ତ'ରେ ଉପଲଭ୍ୟ । ( ୨ )

'ଲଳିତ ବିସ୍ତର'ରୁ ଏହି ରାଜବଂଶ ସମ୍ପର୍କରେ ଜଣାଯାଏ ଯେ, ଏ ବଂଶର ରାଜାମାନେ 'ମାତଙ୍ଗ'ର ହୀନ ଜାତିରୁ ଜନ୍ମ ହୋଇଥିଲେ । ଧମ୍ମପଦ 'ଅଟ୍ଠ କଥା'ରେ. ବର୍ଣ୍ଣିତ ବିଡ଼ୂଡ଼ଭ ( ବିଦୁର୍ଦଭ )

---

( ୧ ) ଏହାଙ୍କର ପ୍ରକୃତ ନାମ ସୁଦତ୍ତ । ଅନାଥଙ୍କୁ ପିଣ୍ଡ ( ଭୋଜନ ) ଦେଉଥିଲେ ବୋଲି "ଅନାଥ ପିଣ୍ଡିକ" ବୋଲି କୁହାଗଲେ ।

(୨) ଏ ସଂଯୁତ୍ତର ପ୍ରଥମ ସୁତ୍ତରୁ ପସେନଦିଙ୍କ ବୁଦ୍ଧ-ଉପାସନା ଓ ନବମ ସୁତ୍ତରୁ ତାଙ୍କର ମହାଯଜ୍ଞ କଥା ମିଳୁଥିବାରୁ, ସେ ଖାଣ୍ଟି ବୌଦ୍ଧ ଥିବା ବିଷୟରେ ସନ୍ଦେହ ହୁଏ ।

ଚରିତରୁ ମଧ୍ୟ ଲଳିତବିସ୍ତରରେ ଏହି ବିବରଣୀ ସମର୍ଥିତ ହେଉଅଛି ।

ରାଜା ପ୍ରସେନଜିତ, ବୁଦ୍ଧଦେବଙ୍କୁ ବହୁ ସମ୍ମାନ ଦେଖାଉଥିଲେ । ତାଙ୍କ ଶାକ୍ୟ ବଂଶର କୌଣସି ରାଜକନ୍ୟା ସହିତ ବିବାହ କରିବାକୁ, ପ୍ରସେନଜିତ ଇଚ୍ଛୁକ ଥିଲେ । କିନ୍ତୁ ଶାକ୍ୟରାଜା, କୋସଳ ରାଜବଂଶକୁ ହୀନ ଦୃଷ୍ଟିରେ ଦେଖୁଥିଲେ । ଏହି ହେତୁରୁ ନିଜ କନ୍ୟାକୁ, କୋସଳ ରାଜାଙ୍କୁ ଦେବାପାଇଁ ସେ ସମୁଚିତ ମନେ କରୁ ନଥିଲେ । ପୁଣି ଅନ୍ୟଦିଗରେ, ଶାକ୍ୟଙ୍କ ଉପରେ କୋସଳ ରାଜବଂଶର ଆଧିପତ୍ୟ ଥିଲା । ଏହି ଦୃଷ୍ଟିରୁ, ତାଙ୍କର ପାର୍ଥିବ ପ୍ରତି ଅନାସ୍ଥାଭାବ ପ୍ରଦର୍ଶନ କରିବା ମଧ୍ୟ ଶାକ୍ୟଙ୍କ ପକ୍ଷରେ ସମ୍ଭବପର ନଥିଲା । ଶେଷରେ ନିଜର ଦାସୀକନ୍ୟା 'ବାସଭର-ଖତ୍ତିୟା'କୁ ସ୍ୱକୀୟ କନ୍ୟାରୂପେ ସଂପ୍ରଦାନ କରିବାକୁ ସେ ସ୍ଥିର କଲେ । କୋସଳରାଜାଙ୍କ ମନ୍ତ୍ରୀମାନେ, କନ୍ୟାଟିକୁ ମନୋନୀତ କଲେ । ସେହି କନ୍ୟା ସହିତ ବସି, ରାଜା ଭୋଜନ କରୁଥିବା-ବେଳେ କୋସଳ ରାଜାଙ୍କ ମନ୍ତ୍ରୀମାନେ ତାଙ୍କୁ ଦେଖି (କନ୍ୟାଟିକୁ) ତାଙ୍କର ପୁତ୍ରୀ ବୋଲି ବିଶ୍ୱାସ କଲେ । ଶୁଭ ମୁହୂର୍ତ୍ତରେ କୋସଳ ରାଜା 'ବାସଭର ଖତ୍ତିୟା'ଙ୍କର ପାଣିଗ୍ରହଣ କଲେ । ସେ ହେଲେ ତାଙ୍କର ପଟ୍ଟମହିଷୀ । ତାଙ୍କର ପୁତ୍ର ବିଡ଼ୂଡ଼ଭ ଷୋଡ଼ଶ ବର୍ଷ ବୟଃପ୍ରାପ୍ତ ହେବାପରେ ନିଜର ଅଜା (ଶାକ୍ୟଙ୍କ ଘରକୁ) ଘରକୁ ଗଲେ । ଶାକ୍ୟ, ନିଜର ସଂସ୍ଥାଗାର (ନଗର ମନ୍ଦିର)ରେ ତାଙ୍କର ଯଥୋଚିତ ସମ୍ବର୍ଦ୍ଧନା କଲେ । କିନ୍ତୁ ସେ ସେଠାରୁ ଚାଲିଯିବାପରେ, ସେ ବସିଥିବା ଆସନକୁ ଜଳରେ ଧୌତ କରାଇଲେ । ବିଡ଼ୂଡ଼ଭ ଏସବୁ କଥା ପରେ ଶୁଣି ପାରିଲେ । ସେ ଯେ ଦାସୀପୁତ୍ର, ଏହାର ପରିଚୟ ମଧ୍ୟ ମିଳିଗଲା । ବିଡ଼ୂଡ଼ଭ ବଡ଼ ହେବାପରେ, କୋସଳ

ସିଂହାସନକୁ ବଳପୂର୍ବକ ଅଧିକାର କଲେ ଏବଂ ନିଜର ବୃଦ୍ଧପିତାଙ୍କୁ ଶ୍ରାବସ୍ତୀରୁ ବିତାଡ଼ିତ କରିଦେଲେ । ପ୍ରସେନଜିତ୍ ନିଜର ଭଣଜା ଅଜାତଶତ୍ରୁଙ୍କ ଆଶ୍ରୟ ଲାଭ ଆଶାରେ, ଛଦ୍ମ-ବେଶରେ ରାଜଗୃହ ଅଭିମୁଖରେ ଯାତ୍ରା କଲେ । କିନ୍ତୁ ମାର୍ଗରେ ବହୁ କଷ୍ଟପାଇ ରାଜ-ଗୃହର ବାହାରେ ଥିବା ଏକ ଧର୍ମଶାଳାରେ ପ୍ରାଣତ୍ୟାଗ କଲେ ।

ନିଜ ପିତାଙ୍କର ମୃତ୍ୟୁପରେ ବିଡ଼ୂଢ଼ଭ ଶାକ୍ୟଙ୍କ ବିରୁଦ୍ଧରେ ଅଭିଯାନ କରିବାକୁ ସିଦ୍ଧାନ୍ତ କଲେ । କିନ୍ତୁ ବୁଦ୍ଧଦେବ ତାଙ୍କୁ ଉପଦେଶ ଦେଇ ଦୁଇଥର ତାହାଁରୁ ନିବୃତ୍ତ କରାଇଲେ । ତୃତୀୟଥର ବେଳକୁ କିଛି କହିବାର ସୁଯୋଗ ବୁଦ୍ଧଦେବଙ୍କୁ ମିଳିଲାନାହିଁ । ବିଡ଼ୂଢ଼ଭ ନିଜର ପୂର୍ବ ସିଦ୍ଧାନ୍ତକୁ କାର୍ଯ୍ୟକାରୀ କରିବାକୁ ସମର୍ଥ ହୋଇଥିଲେ । ସେ ଶାକ୍ୟଙ୍କୁ ଆକ୍ରମଣ କରି ତାଙ୍କୁ ପରାଜିତ କଲେ । ଯେଉଁମାନେ ତାଙ୍କର ଶରଣାର୍ଥୀ ହୋଇଥିଲେ ଏବଂ ଯେଉଁମାନେ ଆତ୍ମରକ୍ଷା କରି ଦୂରକୁ ପଳାଇଯାଇଥିଲେ ,ସେମାନଙ୍କ ଛଡ଼ା ଅନ୍ୟ ସମସ୍ତଙ୍କୁ ସେମାନଙ୍କର ଶିଶୁସନ୍ତାନଙ୍କ ସହିତ ନିର୍ମମଭାବରେ ହତ୍ୟା କଲେ— ସେମାନଙ୍କର ରକ୍ତରେ ନିଜର ଆସନ ପ୍ରକ୍ଷାଳିତ କଲେ । ଶାକ୍ୟଙ୍କୁ ଧ୍ୱଂସ କରିସାରି ବିଡ଼ୂଢ଼ଭ ଶ୍ରାବସ୍ତୀ ପ୍ରତ୍ୟାଗମନ କଲେ ଓ ଅଚିରବତୀ ନଦୀକୂଳରେ ସୈନ୍ୟମାନଙ୍କ ସହିତ ବିଶ୍ରାମ ନେଲେ । ହଠାତ୍ ଅକାଳମେଘଉଦିତ ହୋଇ ଭୟଙ୍କର ବୃଷ୍ଟି ହେଲା । ଅଚିରବତୀ ନଦୀରେ ଭୀଷଣ ବନ୍ୟା ମାଡ଼ିଆସିଲା ଓ ତାହାଁରେ ସୈନ୍ୟସହିତ ବିଡ଼ୂଢ଼ଭ ନିର୍ମୂଳ ହୋଇଗଲେ । ବିଡ଼ୂଢ଼ଭଙ୍କର ଏହି ଚରିତରୁ ସ୍ପଷ୍ଟ ଜଣାଯାଉଛି ଯେ, ମଗଧ ଦେଶପରି କୋସଳରେ ମଧ୍ୟ ଏକଛତ୍ର ଶାସନ ପ୍ରତିଷ୍ଠିତ ହୋଇ ଯାଇଥିଲା । ବିଡ଼ୂଢ଼ଭ ନିଜର ଜନପ୍ରିୟ ପିତାଙ୍କୁ

ସିଂହାସନରୁ ବିତାଡ଼ିତ କଲେ ଅଥଚ କୋସଳରେ ତାଙ୍କ ବିରୁଦ୍ଧରେ ପଦେସୁଦ୍ଧା କେହି କହିଲେ ନାହିଁ ।

**(୪) ବଜ୍ଜୀ**—ମହାଜନ ବା ରାଜା-ଶାସିତ ଦେଶମାନଙ୍କ ମଧ୍ୟରେ କେବଳ ତିନୋଟି ରାଜ୍ୟ ସ୍ୱାଧୀନ ହୋଇ ରହି ଯାଇଥିଲା । ତହିଁରୁ ଗୋଟିଏ ବଜ୍ଜୀମାନଙ୍କର ଓ ଅନ୍ୟ ଦୁଇଟିଥିଲା 'ପାବା" ଏବଂ କୁଶିନାରାର ମଲ୍ଲମାନଙ୍କର । ଏହି ତିନୋଟି ମଧ୍ୟରେ ବଜ୍ଜୀମାନଙ୍କର ରାଜ୍ୟଥିଲା ବଳଶାଳୀ ଓ ସମୃଦ୍ଧ । ତଥାପି ରାଜ୍ୟଟି ଅଚିରେ ଧ୍ୱଂସ ହେବା ଅବସ୍ଥାରେ ଥିଲା । ସେଭଳି ପରିସ୍ଥିତିରେ ମଧ୍ୟ ପ୍ରାତଃକାଳୀନ ଶୁକ୍ର ତାରାପରି ରାଜ୍ୟଟି ଗୌରବରେ ଉଜ୍ଜ୍ୱଳ ଦିଶୁଥିଲା । ବୁଦ୍ଧଦେବ ଏପରି ଏକ ରାଜଶାସିତ ଦେଶରେ ଜନ୍ମଗ୍ରହଣ କରିଥିଲେ ସତ, କିନ୍ତୁ 'ଶାକ୍ୟ'ଙ୍କର ସ୍ୱତନ୍ତ୍ରତା ବିନଷ୍ଟ ହୋଇଯାଇଥିଲା । ବଜ୍ଜୀର ପ୍ରଜାମାନେ, ନିଜର ଏକତା ଏବଂ ପରାକ୍ରମ ବଳରେ ବୁଦ୍ଧଙ୍କ ଜୀବଦ୍ଦଶାରେ ମଧ୍ୟ ନିଜର ସ୍ୱାଧୀନତା ଅକ୍ଷୁଣ୍ଣ ରଖି ପାରିଥିଲେ । ଏହି ହେତୁରୁ ତାଙ୍କର ମନରେ ବଜ୍ଜୀମାନଙ୍କ ପ୍ରତି ଅନୁରାଗ ଜନ୍ମି ଥିବା ସ୍ୱାଭାବିକ । "ମହାପରି-ନିବ୍‌ବାନ ସୁତ୍ତ"ରେ ଅଛି, 'ଭଗବାନ୍ ବୁଦ୍ଧ ଦୂରରୁ ଆସୁଥିବା ଲିଚ୍ଛବି ମାନଙ୍କୁ ଦେଖି ଭିକ୍ଷୁମାନଙ୍କୁ କହୁଥିଲେ; "ହେ ଭିକ୍ଷୁମାନେ ! ଯେଉଁମାନେ ତେତିଶ ଦେବତାଙ୍କୁ ଦେଖି ନାହାନ୍ତି, ସେମାନେ ଲିଚ୍ଛବିମାନଙ୍କୁ ଦେଖିବା ଉଚିତ" ।

ବୈଶାଳୀ ନଗରୀ ଥିଲା ବଜ୍ଜୀମାନଙ୍କର ରାଜଧାନୀ । ତାହା ନିକଟରେ ବାସ କରୁଥିବା ବଜ୍ଜୀମାନଙ୍କୁ ଲିଚ୍ଛବି କୁହାଯାଉଥିଲା । ତାହାର ପୂର୍ବରେ, ଆଗେ, ବିଦେହମାନଙ୍କର ରାଜ୍ୟଥିଲା; ଯହିଁରେ ଜନକଙ୍କ ଭଳି ଉଦାର ରାଜାଥିଲେ । 'ଲଳିତ ବିସ୍ତର'ରୁ

ପ୍ରମାଣମିଳେ, ବିଦେହମାନଙ୍କର ଶେଷରାଜା 'ସୁମିତ୍ରା' ମିଥିଳା ନଗରୀରେ ରାଜତ୍ୱ କରୁଥିଲେ । ତାଙ୍କପରେ ବିଦେହମାନଙ୍କ ରାଜ୍ୟ ବଜ୍ଜୀମାନଙ୍କ ରାଜ୍ୟ ସହିତ ମିଶାଇ ଦିଆଗଲା ।

ବଜ୍ଜୀମାନଙ୍କର ଉନ୍ନତି ନିମନ୍ତେ ବୁଦ୍ଧଦେବଙ୍କ ପ୍ରଦତ୍ତ ସାତୋଟି ଉପଦେଶର ବିବରଣୀ 'ମହାପରିନିବ୍‌ବାନସୁତ୍ତ'ର ପ୍ରାରମ୍ଭରେ ଏବଂ 'ଅଙ୍ଗୁତ୍ତର ନିକାୟ'ର 'ସତ୍ତକନିପାତ'ରେ ଦେଖିବାକୁ ମିଳେ । ମହାପରିନିବ୍‌ବାନ ସୁତ୍ତର 'ଅଟ୍‌ଠ କଥା'ରେ ଏହି ନିୟମଗୁଡ଼ିକର ବିସ୍ତୃତ ବ୍ୟାଖ୍ୟାନ ଦିଆଯାଇଛି । ତହିଁରୁ ଅନୁମିତ ହୁଏ, ବଜ୍ଜୀମାନଙ୍କ ରାଜ୍ୟରେ ଏକ ପ୍ରକାର ପଞ୍ଚାୟତ ପ୍ରଥା ଥିଲା ଏବଂ ନିରପରାଧ ବ୍ୟକ୍ତିଙ୍କୁ ପ୍ରାୟ ଦଣ୍ଡ ଦିଆ ଯାଉ ନଥିଲା । ତହିଁର ନିୟମାବଳୀ ଲିପିବଦ୍ଧ ହୋଇଥିଲା ଏବଂ ସେହି ଅନୁସାରେ ଚଳିବାପାଇଁ ସେମାନେ ପୂର୍ଣ୍ଣପ୍ରାଣରେ ଚେଷ୍ଟା କରୁଥିଲେ ।

**(୭) ମଲ୍ଲ**— ମଲ୍ଲମାନଙ୍କର ରାଜ୍ୟ, ବଜ୍ଜୀମାନଙ୍କର ପୂର୍ବରେ ଏବଂ କୋଶଳ ଦେଶର ପଶ୍ଚିମରେ ଥିଲା । ସେଠାରେ ବଜ୍ଜୀମାନଙ୍କ ପରି ଗଣ ଅଧିକାର-ଗୁଳିତ ଶାସନ ପ୍ରତିଷ୍ଠିତ ହୋଇଥିଲା । କିନ୍ତୁ ମଲ୍ଲମାନଙ୍କ ମଧ୍ୟରେ ବାଦ ବିବାଦ ଉପସ୍ଥିତ ହେବାରୁ ରାଜ୍ୟଟି "ପାବା" ଓ କୁଶିନାରାର ମଲ୍ଲମାନଙ୍କ ମଧ୍ୟରେ ଦୁଇ ଭାଗରେ ବିଭକ୍ତ ହୋଇଗଲା ।

ମଗଧ ଦେଶରୁ କୋସଲ ଦେଶକୁ ଯାଇଥିବା ମାର୍ଗ ମଲ୍ଲ ରାଜ୍ୟ ବାଟେ ଯାଇଥିଲା । ଏଣୁ ଭଗବାନ୍ ବୁଦ୍ଧ ସେବାଟେ ବାରମ୍ବାର ଯିବା ଆସିବା କରୁଥିଲେ । ଥରେ ସେ ପାବାରେ ରହିଥିବା ଚୂନ୍ଦ ନାମକ ଜଣେ ଲୋହାର ଘରେ ଅନ୍ନ ଗ୍ରହଣ କଲେ

ଏବଂ ଅସୁସ୍ଥ ହୋଇ ପଡ଼ିଲେ । ସେଠାରୁ କୁଶିନାରା ଯିବାପରେ ସେହି ରାତିରେ ସେ ପରିନିର୍ବାଣ ପ୍ରାପ୍ତ ହେଲେ । ଆଜିକାଲି ସେଠାରେ ଗୋଟିଏ ସ୍ତୂପ ଏବଂ ଗୋଟିଏ ମନ୍ଦିର ଅଛି । ଦର୍ଶନା-ଭିଳାଷୀ ହୋଇ ବହୁ ବୌଦ୍ଧ ଯାତ୍ରୀ ସେଠାକୁ ଯାଉଛନ୍ତି । ପାବା କିମ୍ବା ପଡ଼ରଣା ଗ୍ରାମ ମଧ୍ୟ ସେଠାରୁ ଅଦୂରବର୍ତ୍ତୀ । ଏଥିରୁ ମନେ ହୁଏ ପାବାର ମଲ୍ଲ ଏବଂ କୁଶିନାରାର ମଲ୍ଲମାନେ ପରସ୍ପରର ନିକଟରେ ରହୁଥିଲେ । ଏ ଦୁଇ ରାଜ୍ୟରେ ବୁଦ୍ଧଦେବଙ୍କର ବହୁତ ଶିଷ୍ୟ ଥିଲେ । ଏ ରାଜ୍ୟଗୁଡ଼ିକ ଅବଶ୍ୟ ସ୍ୱାଧୀନ ଥିଲା । କିନ୍ତୁ ଏ ଗୁଡ଼ିକର ପ୍ରତିପତ୍ତି, ବଜ୍ଜୀମାନଙ୍କର ଗଣଅଧିକାରଭୁକ୍ତ ରାଜ୍ୟପରି ନ ଥିଲା । ଆହୁରି ମଧ୍ୟ, ବଜ୍ଜୀମାନଙ୍କର ଶକ୍ତିଶାଳୀ ରାଜ୍ୟ ହେତୁହିଁ ସେମାନଙ୍କର ଆଧିପତ୍ୟ ଦୃଢ଼ଭାବରେ ରହି ପାରିଥିଲା ।

(୭) **ଚେତୀ**—ଏହି ରାଜ୍ୟ ବିଷୟରେ 'ଚେତିୟ' ଏବଂ 'ବେସ୍‌ସନ୍ତ'ର ନାମକ ଜାତକମାନଙ୍କରେ କେତେକ ତଥ୍ୟ ମିଳେ । ଏହାର ରାଜଧାନୀ ଥିଲା 'ସୋତ୍ଥିବତୀ' (ସ୍ୱସ୍ତିବତୀ) । ଚେତିୟ ଜାତକରେ (ସଂ-୪୨୨) ଏହା କୁହା ଯାଇଛି ଏବଂ ସେଠାର ରାଜାମାନଙ୍କର ତାଲିକା ମଧ୍ୟ ଦିଆଯାଇଛି । ଶେଷ ରାଜା ଉପଚର ବା ଅପଚର ମିଥ୍ୟା କହିଲେ ଏବଂ ସେ ନିଜ ପୁରୋହିତଙ୍କ ଶାପରେ ନରକଗାମୀ ହେଲେ । ତାଙ୍କର ପାଞ୍ଚଜଣ ପୁତ୍ର ପୁରୋହିତଙ୍କର ଶରଣାପନ୍ନ ହେବାରୁ ସେ ସେମାନଙ୍କୁ ରାଜ୍ୟ ଛାଡ଼ି ଅନ୍ୟତ୍ର ଚାଲିଯିବାକୁ ନିର୍ଦ୍ଦେଶ ଦେଲେ । ତାଙ୍କର ଆଦେଶ ଶିରୋଧାର୍ଯ୍ୟ କରି ସେମାନେ ଅନ୍ୟତ୍ର ଚାଲିଗଲେ ଓ ଭିନ୍ନ ଭିନ୍ନ ପାଞ୍ଚୋଟି ରାଜ୍ୟ ସ୍ଥାପନ କଲେ । ଉକ୍ତ ଜାତକରୁ ଏ ବିବରଣୀ ମିଳେ ।

ବେସ୍ସନ୍ତରର ପତ୍ନୀ ମଦ୍ରୀ, (ମାଦ୍ରୀ) ମଦ୍ର (ମଦ୍ର) ଦେଶ ରାଜାଙ୍କର କନ୍ୟା ଥିଲେ । ବେସ୍ସନ୍ତର ଜାତକରୁ ଜଣାଯାଏ ଏହି ରାଜ୍ୟକୁ ଚେତପୁରାଜ୍ୟ କୁହାଯାଉଥିଲା । ବେସ୍ସନ୍ତରର ନିଜ ଦେଶ 'ଶିବ' ଏହି ଚେତପୁ ରାଜ୍ୟ ନିକଟରେ ଥିଲା । ସେଠାର ଶିବ ରାଜା ନିଜର ଦୁଇଟି ଚକ୍ଷୁ ବ୍ରାହ୍ମଣଙ୍କୁ ଦାନ କରିଥିବା କଥା ଏ ଜାତକର ଏକ ପ୍ରସିଦ୍ଧ କଥା (୧) 'ବେସ୍ସନ୍ତର ଜାତକ ଅନୁସାରେ, ବେସସନ୍ତର ନିଜର ହସ୍ତୀ, ସ୍ତ୍ରୀ ଏବଂ ଦୁଇଟି ଶିଶୁ ସନ୍ତାନଙ୍କୁ ଦାନ ସ୍ୱରୂପ ବ୍ରାହ୍ମଣଙ୍କୁ ଦେଇଥିଲେ । ଏହା ମଧ୍ୟ ଉକ୍ତ ଜାତକରେ ଅଛି । ଏଥିରୁ କେବଳ ଏତିକି ପ୍ରମାଣିତ ହେଉଛି, ଶିବ ଏବଂ ଚେତ (ଚୈଦ୍ୟ) ମାନଙ୍କ ରାଜ୍ୟରେ ବ୍ରାହ୍ମଣମାନଙ୍କର ଅତ୍ୟଧିକ ପ୍ରତିପତ୍ତି ଥିଲା । ସୁତରାଂ ଏହି ରାଜ୍ୟର ଅବସ୍ଥିତି ପଶ୍ଚିମ ଅଞ୍ଚଳରେ ଥିବା ସମ୍ଭବପର । ବୁଦ୍ଧଙ୍କ ସମୟରେ ଶିବ ଏବଂ ଚେତଙ୍କ ନାମ ଲୁପ୍ତ ହୋଇ ନ ଥିଲା । ଏଥିରୁ କିନ୍ତୁ ପ୍ରମାଣିତ ହେଉ ନାହିଁ ଯେ, ଭଗବାନ୍ ବୁଦ୍ଧ ସେମାନଙ୍କ ରାଜ୍ୟକୁ ଯାଇଥିଲେ କମ୍ବା ଯେପରି ମଗଧ ରାଜ୍ୟରେ ଅଙ୍ଗର ସମିଶ୍ରଣ ହୋଇ ଯାଇଥିଲା ସେହିପରି ଅନ୍ୟ କୌଣସି ରାଜ୍ୟରେ ଏହା ମିଶି ଯାଇଥିଲା । ସେ ଯାହାହେଉ ଭଗବାନ୍ ବୁଦ୍ଧଙ୍କ ଜୀବନୀ ସହିତ ଏହି ରାଜ୍ୟର କୌଣସି ପ୍ରକାର ସମ୍ପର୍କ ଯେ ନ ଥିଲା ଏହା ନିଶ୍ଚିତ ଭାବରେ କୁହା ଯାଇପାରିବ ।

(୮) **ବଂସ** (ବତ୍ସ)—ବଂସର ରାଜଧାନୀ ଥିଲା କୋସମ୍ବୀ (କୌଶାମ୍ବୀ) । ବୁଦ୍ଧଙ୍କ ସମୟରେ ସେଠାରେ ଗଣଅଧିକାର-ମୂଳକ ଶାସନ ପଦ୍ଧତି ନଷ୍ଟ ହୋଇ ଯାଇଥିଲା । ଯଥା ସମ୍ଭବ, ସେଠାରେ ଉଦୟନ ନାମରେ ଜଣେ ବଳଶାଳୀ ରାଜା ଏକଛତ୍ର

(୧) ଦେଖନ୍ତୁ, 'ଶିବଜାତକ' ପୃଃ ୪୧୯ ।

ଶାସନ ପ୍ରତିଷ୍ଠା କରିଥିଲେ ! 'ଧମ୍ମପଦ—ଅଟ୍‌ଠ କଥା'ରେ ଏହି ମର୍ମରେ ଏକ ଚରିତ ବର୍ଣ୍ଣିତ ହୋଇଛି ।

ଉଦୟନ ଏବଂ ଉଜ୍ଜୟିନୀର ରାଜା ଚଣ୍ଡପ୍ରଦ୍ୟୋତଙ୍କ ମଧ୍ୟରେ ଉଭୟଙ୍କର ଶତ୍ରୁତା ଥିଲା । ଯୁଦ୍ଧରେ ଉଦୟନଙ୍କୁ ଜିଣିବା ଅସମ୍ଭବ, ଏହା ଜାଣି, ପ୍ରଦ୍ୟୋତ ତାହାର କୌଣସି ଏକ ଉପାୟ ଚିନ୍ତା କଲେ, ତାଙ୍କୁ କରଗତ କରିବା ପାଇଁ ଷଡ଼ଯନ୍ତ୍ର କଲେ । ଉଦୟନ ବଣୁଆ ହାତୀମାନଙ୍କୁ ବଶୀଭୂତ କରିବା ମନ୍ତ୍ର ଜାଣିଥିଲେ । ବଣରେ ହାତୀ ଦେଖିବା ମାତ୍ରେ ଶିକାରୀମାନଙ୍କ ସହିତ ତାହାର ଅନୁଧାବନ କରୁଥିଲେ । ଚଣ୍ଡ-ପ୍ରଦ୍ୟୋତ ଗୋଟାଏ କୃତ୍ରିମ ହାତୀ ତିଆରି କଲେ ଓ ତାକୁ ନେଇ ବତ୍ସ ଦେଶର ସୀମାରେ ଛାଡ଼ି ଦେଲେ । ନିଜ ରାଜ୍ୟର ସୀମାରେ ଗୋଟିଏ ନୂଆ ହାତୀ ଥିବାର ସମ୍ବାଦ ପାଇବା ମାତ୍ରେ ଉଦୟନ ତାକୁ ଧରିବା ଚେଷ୍ଟାରେ ସେଠାକୁ ଗଲେ । ହାତୀଟି ଭିତରେ ଲୁଚିଥିବା ଚଣ୍ଡପ୍ରଦ୍ୟୋତଙ୍କ ଲୋକମାନେ ତାକୁ ଦଉଡ଼ାଇବାକୁ ଲାଗିଲେ ଓ ପ୍ରଦ୍ୟୋତଙ୍କ ରାଜ୍ୟ ଭିତରକୁ ନେଇ ଆସିଲେ । ଉଦୟନ ତାହାର ପଛେ ପଛେ ଧାବିତ ହେଉଥିବା ସମୟରେ ଲୁଚି ରହିଥିବା ପ୍ରଦ୍ୟୋତଙ୍କ ସୈନ୍ୟମାନେ ତାଙ୍କୁ ଧରି ପକାଇଲେ ଏବଂ ଉଜ୍ଜୟିନୀକୁ ନେଇ ଗଲେ ।

ଚଣ୍ଡପ୍ରଦ୍ୟୋତଙ୍କ ସମକ୍ଷକୁ ଆନୀତ ହେବା ପରେ ସେ ତାଙ୍କୁ କହିଲେ—"ଯଦି ତୁମେ ହାତୀ ଧରିବା ମନ୍ତ୍ର ମୋତେ ଶିଖାଇଦେବ ତାହାହେଲେ ତୁମକୁ ଛାଡ଼ି ଦେବି । ତା ନ ହେଲେ ଏଠାରେ ତୁମକୁ ହତ୍ୟା କରିବି ।" କିନ୍ତୁ ଉଦୟନ ଭୟରେ ବିଚଳିତ ହିଲେ ନାହିଁ କିମ୍ବା ସେହି ପ୍ରଲୋଭନରେ ପଡ଼ିଲେ ନାହିଁ । ସେ

କହିଲେ—"ମୋତେ ନମସ୍କାର କର ଜଣେ ଶିଷ୍ୟ ପରି ତୁମେ ଯଦି ମନ୍ତ୍ରାଧ୍ୟୟନ କରିବ ତାହାହେଲେ ମୁଁ ତୁମକୁ ମନ୍ତ୍ର ଶିଖାଇ ଦେବି, ନ ହେଲେ ତୁମର ଯାହା କିଛି କରିବାର ଅଛି କରି ଯାଅ ।"

ପ୍ରଦ୍ୟୋତ ବଡ଼ ଅଭିମାନୀ ରାଜା ଥିଲେ । ଏକଥା ତାଙ୍କୁ ବଡ଼ ଅସହ୍ୟ ବୋଧ ହେଲା । ତଥାପି ଉଦୟନଙ୍କୁ ହତ୍ୟା କରି, ମନ୍ତ୍ରଟିକୁ ନଷ୍ଟ କରି ଦେବାକୁ ମଧ୍ୟ ଯୁକ୍ତି ସଙ୍ଗତ ମନେ କଲେ ନାହିଁ । ତେଣୁ ସେ ଉଦୟନଙ୍କୁ କହିଲେ—ତୁମେ କଣ ଅନ୍ୟ କୌଣସି ଲୋକକୁ ମନ୍ତ୍ରଟି ଶିଖାଇ ଦେବ ? ମୋର ଇଚ୍ଛା ଅନ୍ୟ କୌଣସି ଲୋକକୁ ତୁମେ ଯଦି ମନ୍ତ୍ରଟି ଶିଖାଇ ଦିଅ ତାହାହେଲେ ମୁଁ ତୁମକୁ ମୁକ୍ତ କରିଦେବି ।" ଉଦୟନ କହିଲେ—"ଯେଉଁ ସ୍ତ୍ରୀ ବା ପୁରୁଷ ମୋତେ ପ୍ରଣାମ କରି ଶିଷ୍ୟ ଭାବରେ ମନ୍ତ୍ରଶିକ୍ଷା କରିବ, କେବଳ ତାହାକୁ ମୁଁ ଶିଖାଇ ଦେବି ।"

ଚଣ୍ଡପ୍ରଦ୍ୟୋତଙ୍କ କନ୍ୟା ବାସୁଳଦତ୍ତା (ବାସବଦତ୍ତା) ବଡ଼ ବୁଦ୍ଧିମତୀ ଥିଲେ । ମନ୍ତ୍ରକୁ ଆୟତ୍ତ କରିବା ପାଇଁ ସେ ଅବଶ୍ୟ ସମର୍ଥ ଥିଲେ, କିନ୍ତୁ ଉଦୟନଙ୍କ ସମ୍ପର୍କରେ ତାଙ୍କୁ ଆଣିବାକୁ ପ୍ରଦ୍ୟୋତଙ୍କୁ ଭଲ ଲାଗିଲା ନାହିଁ । ତେଣୁ ସେ ଉଦୟନଙ୍କୁ କହିଲେ—"ମୋର ଗୋଟିଏ କୁଜା ଦାସୀ ଅଛି । ସେ ପରଦାର ଅନ୍ତରାଳରେ ରହି ତୁମକୁ ପ୍ରଣାମ କରିବ ଓ ତୁମର ଶିଷ୍ୟତ୍ୱ ଗ୍ରହଣ କରି ମନ୍ତ୍ରଶିକ୍ଷା କରିବ । ଯଦି ତାକୁ ମନ୍ତ୍ର ସିଦ୍ଧି ମିଳେ ତେବେ ମୁଁ ତୁମକୁ ମୁକ୍ତ ଦେଇ ତୁମ ରାଜ୍ୟରେ ପହଞ୍ଚାଇ ଦେବି ।"

ଉଦୟନ ଏ କଥାରେ ସମ୍ମତ ହେଲେ । ଏଣେ ରାଜା ପ୍ରଦ୍ୟୋତ ବାସବଦତ୍ତାଙ୍କୁ କହିଲେ—"ଜଣେ ଧବଳକୁଷ୍ଠ ରୋଗୀ

ହାତୀ ଧରିବା ମନ୍ତ୍ର ଜାଣେ । ତାହାର ମୁଖାବଲୋକନ ନ କରି ତୁମେ ତାକୁ ପ୍ରଣାମ କର ଓ ତାଠାରୁ ସେହି ମନ୍ତ୍ର ଶିଖି ଯାଅ ।”

ଏହା ପରେ ବାସବଦତ୍ତା ପରଦାର ଅପର ପାର୍ଶ୍ୱରେ ରହି ଉଦୟନଙ୍କୁ ନମସ୍କାର କଲେ ଓ ମନ୍ତ୍ର ଶିକ୍ଷା ଆରମ୍ଭ କଲେ । ମନ୍ତ୍ର ଶିଖିବା ସମୟରେ କେତୋଟି ଅକ୍ଷର ତାଙ୍କ ତୁଣ୍ଡରେ ଠିକ୍ ଭାବରେ ଉଚ୍ଚାରିତ ହୋଇ ପାରିଲା ନାହିଁ । ତହୁଁ ଉଦୟନ ବଡ଼ ବିରକ୍ତ ହୋଇ କହିଲେ—“ଆଲୋ କୁଜ ! ତୋର ଓଠ ଭାରି ମୋଟା ହୋଇଥିଲା ପରି ମୋତେ ଲାଗୁଛି ।” ଏହା ଶୁଣି ବାସବଦତ୍ତା ବଡ଼ କ୍ରୋଧରେ କହିଲେ—“ଆରେ ଏ କୁଷ୍ଠରୋଗୀ ! ରାଜ କନ୍ୟାଙ୍କୁ ତୁ କ’ଣ କୁଜୀ କହୁଛୁ ?” ପ୍ରକୃତ ଘଟଣା କଣ, ଉଦୟନ କିଛି ବୁଝି ପାରିଲେ ନାହିଁ । ତେଣୁ ସେ ମଝିର ପରଦାଟିକୁ ଆଡ଼େଇ ଦେଲେ । ଅବିଳମ୍ବେ ପ୍ରଦ୍ୟୋତଙ୍କର କୌଶଳ ସେ ଦୁହିଁଙ୍କୁ ଜଣା ପଡ଼ିଗଲା ଓ ଦୁହେଁ ପରସ୍ପର ପ୍ରତି ପ୍ରେମାସକ୍ତ ହୋଇ ପଡ଼ିଲେ । ପୁଣି ଅବନ୍ତୀରୁ ଅନ୍ୟତ୍ର ଚାଲିଯିବା ପାଇଁ ମନ୍ତ୍ରଣା କଲେ । ବାସବଦତ୍ତା ମନ୍ତ୍ର ସିଦ୍ଧିଲାଗି କୌଣସି ଏକ ଔଷଧ ଆଣିବା ଛଳରେ ପିତାଙ୍କୁ କହି ଭଦ୍ରବତୀ ବୋଲି ଗୋଟିଏ ହାତୁଣୀକୁ ଅଣାଇଲେ । ପ୍ରଦ୍ୟୋତ ଉଦ୍ୟାନ କ୍ରୀଡ଼ା ପାଇଁ ଚାଲିଯିବା ପରେ ବାସବଦତ୍ତା ଓ ଉଦୟନ ଭଦ୍ରବତୀ ଉପରେ ବସି ପଳାୟନ କଲେ । ଉଦୟନ ହାତୀ ଚଳାଇବାରେ ଯଦିଓ ଅତ୍ୟନ୍ତ ପ୍ରବୀଣ ଥିଲେ ତଥାପି ତାଙ୍କ ପଛରେ ପଠା ଯାଇଥିବା ସୈନ୍ୟମାନେ ସେ ଦୁହିଁଙ୍କୁ ମାର୍ଗମଧ୍ୟରେ ଘେରି ଗଲେ । ଆଗରୁ ବାସବଦତ୍ତା ଏହା ଆଶଙ୍କା କରି ପ୍ରତିକାର ସ୍ଥିର କରିଥିଲେ । ପିତାଙ୍କର ରାଜକୋଷରୁ ସ୍ୱର୍ଣ୍ଣମୁଦ୍ରାପୂର୍ଣ୍ଣ ବହୁତ ଥଳୀ ନେଇ ଆସିଥିଲେ । ସେ ଭିତରୁ ଗୋଟିଏ ଥଳୀ ବାହାର କରି ସ୍ୱର୍ଣ୍ଣମୁଦ୍ରା-

ଗୁଡ଼ିକୁ ମାର୍ଗରେ ବିଛୁରିତ କରିଦେଲେ । ସେହି ମୁଦ୍ରାଗୁଡ଼ିକୁ ସୈନ୍ୟମାନେ ସଂଗ୍ରହ କରିବାରେ ବ୍ୟସ୍ତ ଥିବାବେଳେ ଉଦୟନ ହାତୀକୁ ଶୀଘ୍ର ଆଗକୁ ଚଳାଇନେଲେ । କିଛି ସମୟ ପରେ ସୈନ୍ୟମାନେ ଯାଇ ପୁଣି ଥରେ ସେ ଦୁହିଁଙ୍କୁ ଘେରିଗଲେ । ବାସବଦତ୍ତା ଅନ୍ୟ ଏକ ଥଳୀ ବାହାର କରି ପୂର୍ବପରି ବହୁ ମୁଦ୍ରା ଚତୁର୍ଦ୍ଦିଗରେ ବାଣ୍ଟିଦେଲେ । ଏଭଳି ଭାବରେ ବାଟରେ ଟଙ୍କା ବାଣ୍ଟି ବାଣ୍ଟି କୌଶାମ୍ବୀରେ ପହଞ୍ଚିଗଲେ ।

ଉଦୟନଙ୍କ ସମ୍ପର୍କରେ ଆଉ ଏକ କଥା ମଧ୍ୟ ପ୍ରସିଦ୍ଧି ଲାଭ କରିଛି । ଥରେ ସେ ବିହାରଉଦ୍ୟାନକୁ ଯାଇଥିଲେ । ସେଠାରେ ସେ ଶୋଇ ପଡ଼ିଲେ । ଅନତି ଦୂରରେ ଏକ ବୃକ୍ଷତଳେ 'ପିଣ୍ଡୋଲ ଭରଦ୍ୱାଜଭିକ୍ଷୁ' ବସିଥିଲେ । ରାଜା ଶୋଇଥିବାର ଦେଖି ରାଣୀମାନେ ସେହି ଭିକ୍ଷୁଙ୍କ ନିକଟକୁ ଗଲେ ଓ ତାଙ୍କଠାରୁ ଉପଦେଶ ଶ୍ରବଣ କଲେ । ଏପରି ସମୟରେ ଉଦୟନଙ୍କର ନିଦ୍ରା ଭଙ୍ଗ ହେଲା । ସେ ଭିକ୍ଷୁଙ୍କ ଉପରେ କ୍ରୁଦ୍ଧ ହୋଇ ଗୁଡ଼ାଏ ନାଲି ପିମ୍ପୁଡ଼ି ତାଙ୍କ ଉପରେ ଛାଡ଼ିଦେବାକୁ ଭାବିଲେ । ସଂଯୁକ୍ତ ନିକାୟରେ ଏ କଥାର ଉଲ୍ଲେଖ ଅଛି । କିନ୍ତୁ ପରେ ପିଣ୍ଡୋଲ ଭରଦ୍ୱାଜଙ୍କ ଉପଦେଶ ଶୁଣି ସେ ବୁଦ୍ଧଙ୍କର ଉପାସକ ହୋଇ ପଡ଼ିଲେ ।

ଅଙ୍ଗୁତ୍ତର ନିକାୟର 'ଅଟ୍ଠ କଥା' ଏବଂ ଧମ୍ମପଦ 'ଅଟ୍ଠ କଥା'ରେ ବର୍ଣ୍ଣିତ ଅଛି ଯେ, କୌଶାମ୍ବୀରେ ଘୋଷିତ, କୁକ୍‌କୁଟ ଏବଂ ପାବାରିକ ନାମରେ ତିନିଜଣ ଶେଠ ବୁଦ୍ଧଦେବଙ୍କର ଭିକ୍ଷୁସଂଘ ରହିବା ପାଇଁ ତିନୋଟି ବିହାର ନିର୍ମାଣ କରି ଦେଇଥିଲେ (୧) । ସେ ଗୁଡ଼ିକର ନାମ - ଘୋଷିତା ରାମ, କୁକ୍‌କୁଟା ରାମ ଏବଂ

(୧) ଦେଖନ୍ତୁ— ବୌଦ୍ଧସଂଘର ପରିଚୟ ପୃ ୧୩୭-୧୫୫

ପାବାରକା ରାମ । ଉଦୟନଙ୍କର ଜଣେ ପାଟରାଣୀ ଶ୍ୟାମାବତୀ ଏବଂ ତାଙ୍କର ଦାସୀ 'ଖୁଜୁତ୍ତରା' ( କୁବ୍‌ଜା ଉତ୍ତରା ) ବୁଦ୍ଧଦେବଙ୍କର ପ୍ରଧାନ ଶିଷ୍ୟା ଥିଲେ । ଏହି ସବୁ କଥାରୁ ଜଣାଯାଏ, ରାଜା ଉଦୟନ ବିଶେଷ ଶ୍ରଦ୍ଧାଳୁ ନ ଥିଲେ ମଧ୍ୟ କୌଶାମ୍ବୀର ଲୋକେ, ବହୁ ସଂଖ୍ୟାରେ ବୁଦ୍ଧଙ୍କର ଭକ୍ତଥିଲେ । ଭିକ୍ଷୁମାନେ ଉତ୍ତମରୂପେ ଜୀବନ ନିର୍ବାହ କରନ୍ତୁ ଏହାହିଁ ସେମାନଙ୍କର ପରମକାମ୍ୟ ଥିଲା ।

**୪-କୁରୁ—**କୁରୁ ଦେଶର ରାଜଧାନୀ ଥିଲା ଇନ୍ଦ୍ରପ୍ରସ୍ଥ । ବୁଦ୍ଧଙ୍କ ସମୟରେ ସେଠାରେ 'କୌରବ୍ୟ' ନାମକ ଜଣେ ରାଜା ରାଜତ୍ୱ କରୁଥିଲେ, ଏତିକ ମାତ୍ର ଜାଣି ହୁଏ । କିନ୍ତୁ ସେଠାରେ କି ପ୍ରକାର ଶାସନ ପଦ୍ଧତି ପ୍ରଚଳିତ ଥିଲା, ଜାଣିବାର ଉପାୟ ନାହିଁ । ସେ ଦେଶରେ ବୁଦ୍ଧ ଦେବଙ୍କର ଭିକ୍ଷୁସଂଘ ପାଇଁ ଗୋଟିଏ ମୁଖ୍ୟ ବିହାର ନ ଥିଲା । ଲୋକଙ୍କୁ ଉପଦେଶ ଦେଇ ଭଗବାନ୍ ବୁଦ୍ଧ କୁରୁ ଦେଶକୁ ଯିବା ସମୟରେ କୌଣସି ବୃକ୍ଷତଳେ ବା ସେପରି ଅନ୍ୟ କୌଣସି ସ୍ଥାନରେ ଆଶ୍ରୟ ନେଉଥିଲେ । ଅଥଚ ସେ ଦେଶରେ ତାଙ୍କର ଉପଦେଶ ଶୁଣିବାକୁ ଇଚ୍ଛୁକ ଥିବା ବହୁଲୋକ ଥିଲେ ବୋଲି ଅନୁମିତ ହୁଏ । ରାଷ୍ଟ୍ରପାଳ ନାମକ ସେଠାର ଜଣେ ଧନୀ ଯୁବକ ଭିକ୍ଷୁ ହୋଇ ଯାଇଥିବା କଥା ମଜ୍‌ଝିମ୍‌ନିକାୟରେ ବିସ୍ତୃତ ଭାବେ ବର୍ଣ୍ଣିତ ହୋଇଛି । କୁରୁ ଦେଶର କମ୍ମା ସଦମ୍ମ (କଲ୍ମଷ ଦମ୍ୟ) ନାମକ ନଗରୀ ନିକଟରେ "ସତି ପଟ୍‌ଠାନ" ଭଳି କେତେକ ଉତ୍ତମ ସୂତ୍ରର ଉପଦେଶ ଦେଇଥିବାର ଉଲ୍ଲେଖ ସୂତ୍ର ପିଟକରେ ମିଳେ । ଏଥିରୁ ଜଣାଯାଏ ସେଠାର ଜନସାଧାରଣ ବୁଦ୍ଧଦେବଙ୍କୁ ସମ୍ମାନ କରୁଥିଲେ । କିନ୍ତୁ ଶାସକଙ୍କ ମଧ୍ୟରେ ବୁଦ୍ଧଙ୍କର କୌଣସି ଭକ୍ତ ନ ଥିଲେ । ପୁଣି ସେଠାରେ ବୈଦିକ ଧର୍ମର ପ୍ରାଧାନ୍ୟ ଥିଲା ।

**୧୦—୧୧—ପଂଚାଲ ( ପଂଚାଲ ) ଏବଂ ମଚ୍ଛ** ( ମତ୍ସ୍ୟ )—ଉତ୍ତର ପାଞ୍ଚାଳର ରାଜଧାନୀ କଂପିଲ୍ଲ ( କଂପିଲ୍ଲ ) ଥିଲି ବୋଲି ଜାତକ-ଅଟ୍‌ଠକଥାର ଅନେକ ସ୍ଥଳରୁ ଜଣା ଯାଉଛି । କିନ୍ତୁ ମତ୍ସ୍ୟ ଦେଶର ରାଜଧାନୀ କେଉଁଠାରେ ଥିଲି ଜାଣି ହୁଏ ନାହିଁ । ଏଥିରୁ ଅନୁମାନ କରି ଯାଇ ପାରେ, ବୁଦ୍ଧଦେବଙ୍କ ସମୟରେ ଏ ଦୁଇ ଦେଶର ବିଶେଷ ପ୍ରତିଷ୍ଠା ନଥିଲି । ଏହି ଦେଶକୁ ବୁଦ୍ଧଦେବ ଯାଉ ନଥିବା ମଧ୍ୟ ଅନୁମିତ ହୁଏ । ତେଣୁ ସେଠାର ଲୋକ କିମ୍ବା ନଗରମାନଙ୍କ ବିଷୟରେ ବୌଦ୍ଧଗ୍ରନ୍ଥମାନଙ୍କରେ କୌଣସି ବିଶେଷ କଥା ଉଲ୍ଲିଖିତ ହୋଇନାହିଁ ।

**୧୨—ସୂରସେନ** ( ଶୂରସେନ ) ସୂରସେନର ରାଜଧାନୀ, ମଧୁରା ( ମଥୁରା ) । ସେଠାରେ ଅବନ୍ତୀ ପୁତ୍ର ନାମକ ରାଜା ରାଜତ୍ୱ କରୁଥିଲେ । ବର୍ଣ୍ଣାଶ୍ରମ ଧର୍ମ ବିଷୟରେ ଅବନ୍ତୀ ପୁତ୍ର ଏବଂ ମହା କାତ୍ୟାୟନଙ୍କ ମଧ୍ୟରେ ଯେଉଁ କଥୋପକଥନ ହୋଇଥିଲି ତାହା ମଜ୍‌ଝିମନିକାୟର 'ମଧୁର ସୁତ୍ତ'ରେ ବର୍ଣ୍ଣିତ ହୋଇଛି । ଭଗବାନ୍ ବୁଦ୍ଧ ଏ ଦେଶକୁ ବୋଧହୁଏ ଯାଉଥିଲେ । ଅଙ୍ଗୁତ୍ତର ନିକାୟର ପଞ୍ଚକ ନିପାତର ନିମ୍ନୋଦ୍ଧୃତ ସୁତ୍ତରୁ ଜଣାଯାଏ ଯେ, ମଥୁରା ତାଙ୍କୁ ବିଶେଷ ଭଲ ଲାଗୁ ନଥିଲି ।

**"ପଂଚମେ ଭିକ୍‌ଖବେ ଆଦୀନବା ମଧୁରାୟଂ । କତମେ ପଂଚ ? ବିସମା, ବହୁରଜା, ଚଣ୍ଡ ସୁନଖା, ବାଲୟକ୍‌ଖା, ଦୁଲ୍ଲଭପିଣ୍ଡା । ଇମେ ଖୋ ଭିକ୍‌ଖବେ ପଂଚ ଆଦୀନବା ମଧୁରାୟଂ ତି ।"**

ଅର୍ଥାତ୍ ହେ ଭିକ୍ଷୁଗଣ ! ମଥୁରାରେ ଏହି ପାଞ୍ଚଟି ଦୋଷ ଅଛି । ସେହି ପଞ୍ଚୋଟି କଣ ? ସେଠାର ରାସ୍ତା ଖାଲ ଢିପ ପୂର୍ଣ୍ଣ

ତହିଁରେ ପୁଣି ବହୁତ ଧୂଳି । କୁକୁର ଗୁଡ଼ାକ ବଡ଼ ଦୁଷ୍ଟ । ଯକ୍ଷ ଏବଂ ନିଷ୍ଠୁର ଲୋକ ମଧ୍ୟ ଅଛନ୍ତି ଏବଂ ସେଠାରେ ଭିକ୍ଷା ମିଳିବା ମଧ୍ୟ ବଡ଼ କଷ୍ଟକର । ଭିକ୍ଷୁଗଣ ! ମଥୁରାରେ ଏ ପାଞ୍ଚୋଟି ଦୋଷ ଅଛି ।

**୧୩—ଅସ୍ସକ** ( ଅଶ୍ମକ )— ସୁତ୍ତ ନିପାତର "ପାରାୟଣ ବଗ୍ଗ"ର ପ୍ରାରମ୍ଭରେ ଯେଉଁ କଥାଗୁଡ଼ିକ ଅଛି ତହିଁରୁ ଜଣାଯାଏ, ଅସ୍ସକ ରାଜ୍ୟ ଗୋଦାବରୀ ନଦୀର ନିକଟବର୍ତ୍ତୀ କୌଣସି ଅଞ୍ଚଳରେ ଥିଲା । ଶ୍ରାବସ୍ତୀ ନିବାସୀ 'ବାବରୀ' ନାମକ ଜଣେ ବ୍ରାହ୍ମଣ ନିଜର ଷୋହଳ ଜଣ ଶିଷ୍ୟଙ୍କ ସହିତ ଅଶ୍ମକ ରାଜ୍ୟରେ ବାସ କରୁଥିଲେ ।

**ସୋ ଅସ୍ସକସ୍ସ ବିସୟେ ଅଳକସ୍ସ ସମାସନେ ।**
**ବସୀ ଗୋଦାବରୀକୂଲେ ଉଞ୍ଛେନଚ ଫଲେନଚ ॥**

ଅର୍ଥାତ୍, ସେ ( ବାବରୀ ) ଅଶ୍ମକଙ୍କ ରାଜ୍ୟରେ ଏବଂ ଅଳକଙ୍କ ରାଜ୍ୟ ନିକଟରେ ଗୋଦାବରୀ କୂଳରେ ଭିକ୍ଷା ଓ ଫଳମୂଳ ଉପରେ ନିର୍ଭର କରି ବାସ କରୁଥିଲେ ।

ଏ ଅନୁସାରେ ଅସ୍ସକ ଏବଂ ଅଳକ ଦୁହେଁ ଆନ୍ଧ୍ର ( ଅନ୍ଧକ ) ରାଜାଥିଲେ ଏବଂ ଏମାନଙ୍କ ରାଜ୍ୟ ମଝିରେ ବାବରୀ ନିଜର ଶିଷ୍ୟମାନଙ୍କ ସହ ଏକ ଉପନିବେଶ ସ୍ଥାପନ କରିଥିଲେ । କ୍ରମେ ତାହା ବୃଦ୍ଧି ଲାଭ କଲା । ଦକ୍ଷିଣରେ ଏହାହିଁ ପ୍ରଥମ ଉପନିବେଶ ବୋଲି ସ୍ପଷ୍ଟ କୁହାଯାଇପାରିବ । ବୁଦ୍ଧ ବା ତାଙ୍କ ସମୟର ଭିକ୍ଷୁମାନେ ସେଠା ପର୍ଯ୍ୟନ୍ତ ଯାଇ ପାରି ନ ଥିଲେ । ତେଣୁ ବୌଦ୍ଧସାହିତ୍ୟରେ ଏହି ରାଜ୍ୟ ବିଷୟରେ ବିଶେଷ କିଛି ଉଲ୍ଲେଖ ହୋଇ ନାହିଁ । ତେବେ ବୁଦ୍ଧଦେବଙ୍କର ଯଶ ସେ ପର୍ଯ୍ୟନ୍ତ

ପରିବ୍ୟାପ୍ତ ହୋଇଥିଲା । ଫଳରେ ବାବରୀ ନିଜର ସମସ୍ତ ଶିଷ୍ୟଙ୍କୁ ବୁଦ୍ଧଙ୍କ ଦର୍ଶନ ପାଇଁ ପଠାଇ ଦେଇଥିଲେ । ସେମାନେ ଯାଇ ଯାଇ ଶେଷରେ ରାଜଗୃହରେ ତାଙ୍କର ଦର୍ଶନ ଲାଭ କରି, ଶିଷ୍ୟତ୍ୱ ଗ୍ରହଣ କଲେ । ଏ ସବୁ କଥା ଉଲ୍ଲିଖିତ ହୋଇଛି, 'ପାରାୟଣ ବଗ୍‌ଗରେ' । ଶିଷ୍ୟମାନେ କିନ୍ତୁ ସେଠାରୁ ପ୍ରତ୍ୟାବର୍ତ୍ତନ କରି ଗୋଦାବରୀ ଅଞ୍ଚଳରେ ଉପଦେଶ ପ୍ରଚାର କରିଥିବା କଥା କୌଣସି ଠାରେ ଉଲ୍ଲିଖିତ ହୋଇ ନାହିଁ ।

**୧୪ – ଅବନ୍ତୀ**– ଅବନ୍ତୀର ରାଜଧାନୀ ଥିଲା ଉଜ୍ଜୈନ । ସେଠାର ରାଜା ଚଣ୍ଡ ପ୍ରଦ୍ୟୋତଙ୍କ ସମ୍ପର୍କରେ ବିଶେଷ ବିବରଣୀ ମିଳେ ନାହିଁ । ଚଣ୍ଡ ପ୍ରଦ୍ୟୋତ ଅସୁସ୍ଥ ହୋଇ ପଡ଼ିବାରୁ ତାଙ୍କର ଅନୁରୋଧକ୍ରମେ ମଗଧର ପ୍ରସିଦ୍ଧ ଚିକିତ୍ସକ 'ଜୀବକ କୌମାର ଭୃତ୍ୟ' ଉଜ୍ଜୟିନୀ ଆଗମନ କଲେ । ରାଜା ଅତ୍ୟନ୍ତ କ୍ରୂର ପ୍ରକୃତିକ ଥିବାରୁ ତାଙ୍କୁ 'ଚଣ୍ଡ ପ୍ରଦ୍ୟୋତ' କୁହା ଯାଉଥିଲା । ଏ କଥା ଭଲ ଭାବରେ ଜୀବକ ଜାଣିଥିଲେ । ତାଙ୍କୁ ଔଷଧ ଦେବା ପୂର୍ବରୁ, ଅରଣ୍ୟରୁ ଔଷଧ ଆଣିବା ଛଳରେ 'ଭଦ୍ଦବତୀ' ନାମକ ହାତୁଣୀକୁ, ରାଜାଙ୍କୁ କହି, ଅଣାଇଲେ ଏବଂ ଔଷଧ ଦେଇ ସାରିବା ପରେ, କାଳକ୍ଷେପ ନ କରି ତା ଉପରେ ବସି ସେଠାରୁ ଚାଲିଗଲେ । ଏଣେ ଔଷଧ ସେବନ ସଙ୍ଗେ ସଙ୍ଗେ ପ୍ରଦ୍ୟୋତଙ୍କର ରୋଗ ପ୍ରବଳ ହୋଇ ଉଠିଲା । ଜୀବକଙ୍କ ଉପରେ ସେ ଅତ୍ୟନ୍ତ କ୍ରୁଦ୍ଧ ହେଲେ ଓ ତାଙ୍କୁ ଧରି ଆଣିବାକୁ ଆଦେଶ ଦେଲେ । ଜୀବକ ସେହି ସ୍ଥାନ ତ୍ୟାଗ କରି ଚାଲିଯାଇଥିବାରୁ ତାଙ୍କର ଅନୁଧାବନ କରିବାକୁ କାକ ନାମକ ନିଜର ଜଣେ ଭୃତ୍ୟକୁ ପଠାଇଲେ । କୌଶାମ୍ବୀ ପର୍ଯ୍ୟନ୍ତ ଯାଇ ସେହି ଭୃତ୍ୟ ଜୀବକଙ୍କୁ ଧରି ପକାଇଲା । ତହିଁ

ଜୀବକ ଗୋଟିଏ ଔଷଧଯୁକ୍ତ ଅଳା କୋଳି ତାକୁ ଖାଇବାକୁ ଦେଲେ । ଯାହା ଫଳରେ ସେ ହତଜ୍ଞାନ ହୋଇ ପଡ଼ିଲା । ଜୀବକ ଭଦ୍ରବତୀ ଆରୋହଣ କରି କୁଶଳରେ ରାଜଗୃହରେ ପହଞ୍ଚିଲେ । ତେଣେ ପ୍ରଦ୍ୟୋତ କିଛି ସମୟପରେ ପୂରାପୂରି ସୁସ୍ଥ ହୋଇଗଲେ । ତାଙ୍କର ଭୃତ୍ୟ, 'କାକ' ମଧ୍ୟ ସୁସ୍ଥ ହୋଇ ଉଜ୍ଜୟିନୀକୁ ଫେରିଗଲା । ରୋଗ ମୁକ୍ତ ହେବାରୁ ଏବଂ ପୂର୍ବପରି ସୁସ୍ଥ ସବଳ ହୋଇ ଯିବାରୁ ରାଜା ଜୀବକଙ୍କ ପ୍ରତି ଅତ୍ୟନ୍ତ ଅନୁରକ୍ତ ହେଲେ ଏବଂ ସିବେୟ୍ୟକ ନାମକ ହଳେ ଯଥା ତାଙ୍କ ଉପହାର ରୂପେ ରାଜଗୃହକୁ ପଠାଇ ଦେଇଥିଲେ (୧)

ଏହି ବିବରଣୀ ଏବଂ ଧମ୍ମପଦ ଅଟ୍ଠକଥାର ବିବରଣୀ ମଧ୍ୟରେ ବିଶେଷ ସାମ୍ୟ ଅଛି । ଏଥିରୁ କିନ୍ତୁ ବୁଝିବା ଉଚିତ ନୁହେ ଯେ, ଗୋଟିକ ଉପରେ ନିର୍ଭର କରି ଅନ୍ୟଟିର ସୃଷ୍ଟି ହୋଇଥିଲା କିମ୍ବା ଦୁଇଟିଯାକ କଥା ଭିନ୍ନ ଭିନ୍ନ ସମୟରେ ଲିଖିତ ହୋଇଥିଲା । ଏ ଦୁଇଟି କଥାରୁ ନିଶ୍ଚିତ ରୂପେ ଜଣାଯାଏ ଯେ ପ୍ରଦ୍ୟୋତ ଅତ୍ୟନ୍ତ କ୍ରୋଧୀ ଓ ସର୍ବକ୍ଷମତାଶାଳୀ ରାଜା ଥିଲେ ।

ଭଗବାନ୍ ବୁଦ୍ଧ ପ୍ରଦ୍ୟୋତଙ୍କ ରାଜ୍ୟକୁ କେବେ ହେଲେ ଯାଇ ନ ଥିଲେ । ତାଙ୍କର ପ୍ରଧାନ ଶିଷ୍ୟମାନଙ୍କ ମଧ୍ୟରୁ ଜଣେ ଥିଲେ ମହାକାତ୍ୟାୟନ । ତାଙ୍କର ପିତା ପ୍ରଦ୍ୟୋତଙ୍କର ପୁରୋହିତ ଥିଲେ । ପିତାଙ୍କ ମୃତ୍ୟୁପରେ ସେ ହେଲେ ରାଜ ପୁରୋହିତ । କିନ୍ତୁ ତହିଁରେ ସେ ସନ୍ତୁଷ୍ଟ ହେଲେ ନାହିଁ । ତେଣୁ ମଧ୍ୟ-ଭାରତକୁ ଯାଇ ବୁଦ୍ଧଙ୍କର 'ଭିକ୍ଷୁ-ଶିଷ୍ୟ' ହୋଇ ଯାଇଥିଲେ । ମହାକାତ୍ୟାୟନ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିବା ପରେ ରାଜା ପ୍ରଦ୍ୟୋତ

(୧) ବିନୟପିଟକ, ମହାବଗ୍ଗ, ୮ମ ଭାଗ ।

ଏବଂ ଅନ୍ୟାନ୍ୟ ଲୋକେ ମଧ୍ୟ ତାଙ୍କୁ ଆଦର ଓ ସମ୍ମାନ ଦେଖାଇ ଥିଲେ । (୧) ମଥୁରାର ରାଜା 'ଅବନ୍ତୀ ପୁତ୍ରଙ୍କ' ସହିତ ଜାତିଭେଦ ବିଷୟରେ ତାଙ୍କର ଯେଉଁ ଆଲୋଚନା ହୋଇଥିଲା ତାହା ମଜ୍‌ଝିମ ନିକାୟର 'ମଧୁର' ବା 'ମଧୁରିୟ ସୁତ୍ତ'ରେ ବର୍ଣ୍ଣିତ ହୋଇଛି । ଯଦିଓ ମଥୁରା ଏବଂ ଉଜ୍ଜୟିନୀରେ ମହାକାତ୍ୟାୟନ ପ୍ରତିଷ୍ଠା ଲାଭ କରିଥିଲେ ତଥାପି ବୁଦ୍ଧଦେବଙ୍କ ଜୀବଦ୍ଦଶାରେ ସେଠାରେ ବୌଦ୍ଧ ମତ ପ୍ରସାର ଲାଭ କରିଥିଲା ବୋଲି କହିବା ଠିକ୍ ହେବ ନାହିଁ । ବୁଦ୍ଧଦେବଙ୍କର ଅଳ୍ପ ସଂଖ୍ୟକ ଭିକ୍ଷୁଶିଷ୍ୟ ଥିଲେ । ତେଣୁ ପାଞ୍ଚ ଜଣ ଭିକ୍ଷୁ ଅନ୍ୟ ଜଣେ ଭିକ୍ଷୁକୁ ଉପସମ୍ପଦା ଦେଇ ସଂଘରେ ପ୍ରବେଶ କରାଇବାକୁ ବୁଦ୍ଧଦେବ ଅନୁମତି ଦେଇଥିଲେ । ଏହି କାର୍ଯ୍ୟ ପାଇଁ ମଧ୍ୟ ଭାରତରେ ଅନ୍ତତଃ କୋଡ଼ିଏ ଜଣ ଭିକ୍ଷୁଙ୍କର ଆବଶ୍ୟକତା ଥିଲା । (୨)

୧୫—**ଗଂଧାର (ଗାଂଧାର)**—ଏହାର ରାଜଧାନୀ ଥିଲା ତକ୍‌କସିଲା (ତକ୍ଷଶିଳା) । ସେଠାରେ ପୁକ୍‌କୁସାତି ନାମକ ରାଜା ରାଜତ୍ୱ କରୁଥିଲେ । ଶେଷ ବୟସରେ ସେ ନିଜ ରାଜ୍ୟ ତ୍ୟାଗ କରି ରାଜଗୃହ ପର୍ଯ୍ୟନ୍ତ ପଦବ୍ରଜରେ ଯାତ୍ରା କରି ଭିକ୍ଷୁ ସଙ୍ଘରେ ପ୍ରବେଶ କରିଥିଲେ । ତା ପରେ ଭିକ୍ଷା ପାତ୍ର ଏବଂ କୌପୀନ ସଂଗ୍ରହ କରିବା ପାଇଁ ଯାଉଥିବାବେଳେ ଗୋଟିଏ ଉନ୍ମତ୍ତ ଗାଈ ଦ୍ୱାରା ତାଙ୍କର ପ୍ରାଣନାଶ ଘଟିଲା । ଏହି ଘଟଣା ମଜ୍‌ଝିମ ନିକାୟର 'ଧାତୁ ବିଭଙ୍ଗ ସୁତ୍ତ'ରେ ବର୍ଣ୍ଣିତ ହୋଇଛି । ସେ ତକ୍ଷଶିଳାର ରାଜାଥିଲେ ମଧ୍ୟ ବହୁ ଦୂରବର୍ତ୍ତୀ ରାଜା ବିମ୍ବିସାରଙ୍କ ସହିତ ତାଙ୍କର ମିତ୍ରତା

(୧) ବେଶୀ ଜାଣିବାକୁ ଦେଖନ୍ତୁ— "ବୌଦ୍ଧସଙ୍ଘର ପରିଚୟ" ପୃ ୧୬୫-୧୬୮ ।

(୨) ମହାବଗ୍‌ଗ ୮ମ ଭାଗ, ବୌଦ୍ଧସଂଘର ପରିଚୟ ପୃ ୩୦—୩୧ ।

କପର ଜନ୍ମିଥିଲା ଉକ୍ତ ସୂତ୍ରରେ ତାହା ବର୍ଣ୍ଣିତ ହୋଇଛି । ତାଁର ସାରକଥା ଏଠାରେ ଦିଆ ଯାଉଛି ।

ତକ୍ଷଶିଳାର କେତେଜଣ ବଣିକ ରାଜଗୃହ ଯାଇଥିଲେ । ରାଜା ବିମ୍ବିସାର ନିଜର ସ୍ୱାଭାବିକ ରୀତିରେ ସେମାନଙ୍କ ଆଦର—ସତ୍କାର କରି ସେମାନଙ୍କ ନିଜ ରାଜାଙ୍କର ସ୍ୱଭାବ ତଥା ଅଭିରୁଚି ସମ୍ପର୍କରେ ନାନାକଥା ପଚାରିଲେ । 'ତକ୍ଷଶିଳାର ରାଜା ଅତ୍ୟନ୍ତ ସଜ୍ଜନ ପ୍ରକୃତିକ ଏବଂ ପ୍ରାୟ ତାଙ୍କର ସମବୟସ୍କ', ବିମ୍ବିସାର ଏହା ଶୁଣିବାପରେ ତାଙ୍କ ପ୍ରତି ଗଭୀର ସୌହାର୍ଦ୍ଦ ଜାତ ହେଲା । ସେହି ବଣିକମାନଙ୍କୁ ନିଜର ପ୍ରାପ୍ୟ ଶୁଳ୍କରୁ ସେ ଅବ୍ୟାହତି ଦେଲେ । ପୁକ୍କୁସାତିଙ୍କ ନିକଟକୁ ମିତ୍ରତାର ସନ୍ଦେଶ ପ୍ରେରଣ କଲେ । ତାହାପରେ ପୁକ୍କୁସାତି ମଧ୍ୟ ବିମ୍ବିସାରଙ୍କ ପ୍ରତି ବଡ଼ ପ୍ରସନ୍ନ ହେଲେ । ମଗଧରୁ ଆସିଥିବା ବଣିକମାନଙ୍କୁ ମଧ୍ୟ ସେମାନଙ୍କର ଦେୟ ଶୁଳ୍କରୁ ସେମାନଙ୍କୁ ଅବ୍ୟାହତି ଦେଲେ । ପୁଣି ନିଜର ଭୃତ୍ୟ ହାତରେ ସେହି ବଣିକମାନଙ୍କ ସହିତ ବିମ୍ବିସାରଙ୍କ ପାଇଁ ଆଠଗୋଟି ମୂଲ୍ୟବାନ୍ ରେଶମବସ୍ତ୍ର ପଠାଇଲେ । ବିମ୍ବିସାର ଏହି ଉପହାରର ପ୍ରତିଦାନରେ ଅତିସୁନ୍ଦର ପେଟିକାରେ ଗୋଟିଏ ସ୍ୱର୍ଣ୍ଣପଟ୍ଟ ପଠାଇଲେ । ସେହି ସ୍ୱର୍ଣ୍ଣପଟ୍ଟରେ ବୌଦ୍ଧଧର୍ମ ଏବଂ ସଂଘର ଗୁଣ ଗରିମା ଉତ୍କୃଷ୍ଟ ଢଙ୍ଗରେ ଅଙ୍କିତ ହୋଇଥିଲା । ତାହା ପାଠ କରି ପୁକ୍କୁସାତି ବୁଦ୍ଧଙ୍କ ପ୍ରତି ଏକାନ୍ତ ଆକୃଷ୍ଟ ହେଲେ । ଶେଷରେ ରାଜ୍ୟ ତ୍ୟାଗ କରି ରାଜଗୃହକୁ ଯାତ୍ରା କଲେ । ସେଠାରେ ଜଣେ କୁମ୍ଭକାର ଗୃହରେ ବୁଦ୍ଧଙ୍କ ସହିତ ତାଙ୍କର କପରି ସାକ୍ଷାତ ହେଲା, ବୁଦ୍ଧ ତାଙ୍କୁ କି ଉପଦେଶ ଦେଲେ ଏବଂ ଶେଷରେ ଗାଈ ଦ୍ୱାରା ତାଙ୍କର କପରି ପ୍ରାଣ ନାଶ ଘଟିଲା ଇତ୍ୟାଦି ଇତ୍ୟାଦି କଥା ଧାତୁ ବିଭଙ୍ଗ ସୂତ୍ରରୁ ଜଣାଯାଏ ।

ଗାନ୍ଧାର ଏବଂ ତାହାର ରାଜଧାନୀ ତକ୍ଷଶିଳାର ଉଲ୍ଲେଖ ଜାତକ ଅଟ୍‌ଠ କଥାର ଅନେକ ସ୍ଥଳରେ ଦେଖାଯାଏ । କଳା—କୌଶଳ ଓ ବିଦ୍‌ବତ୍ତ୍ୱ—ଏ ଉଭୟ କ୍ଷେତ୍ରରେ ତକ୍ଷଶିଳାର ଉନ୍ନତି ଘଟିଥିଲା । ଦୂର ଦୂର ପ୍ରଦେଶମାନଙ୍କରୁ ବ୍ରାହ୍ମଣ ସନ୍ତାନମାନେ ବେଦାଧ୍ୟୟନ ପାଇଁ, କ୍ଷତ୍ରିୟ ସନ୍ତାନମାନେ ଧନୁର୍ବିଦ୍ୟା ଓ ଶାସନ ପଦ୍ଧତି ଶିକ୍ଷା କରିବାକୁ ଏବଂ ବୈଶ୍ୟ ଯୁବକମାନେ ଶିଳ୍ପକଳା ଓ ଅନ୍ୟାନ୍ୟ ବ୍ୟବସାୟ ଶିଖିବା ନିମନ୍ତେ ତକ୍ଷଶିଳା ଯାଉଥିଲେ । ରାଜଗୃହର ଖ୍ୟାତନାମା ବୈଦ୍ୟ 'ଜୀବକ ସେହିଠାରେହିଁ ଆୟୁର୍ବେଦ ଅଧ୍ୟୟନ କରିଥିଲେ । ତକ୍ଷଶିଳାରେ ଭାରତର ସର୍ବାଧିକ ପ୍ରାଚୀନ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା ।

**୧୬—କମ୍ବୋଜ ( କାମ୍ବୋଜ )**— ଅଧ୍ୟାପକ ରାଇସ୍‌ ଡେଭିସ୍‌ଙ୍କ ମତରେ କମ୍ବୋଜ ରାଜ୍ୟ ଭାରତର ଉତ୍ତର ପଶ୍ଚିମରେ ଅବସ୍ଥିତ ଥିଲା ଏବଂ ତାହାର ରାଜଧାନୀ ଥିଲା ଦ୍ୱାରକା (୧) କିନ୍ତୁ ମଜ୍‌ଝିମ ନିକାୟର 'ଅସ୍‌ସଲାୟନ ସୁତ୍ତ'ରେ "ଯୋନ କମ୍ବୋଜେସୁ" ଏହି ପ୍ରୟୋଗରେ ଯବନମାନଙ୍କ ସହିତ ଏ ଦେଶର ଉଲ୍ଲେଖ କରାଯାଇଛି । ଏଥିରୁ ଜଣା ଯାଉଛି ଯେ ଏହି ଦେଶ ଗାନ୍ଧାର ଦେଶର ଅପର ପାର୍ଶ୍ୱରେ ଥିଲା । ଏହି ସୁତ୍ତରେ ପୁଣି କୁହାଯାଇଛି, ଯବନ କମ୍ବୋଜ ଦେଶରେ ଆର୍ଯ୍ୟ ଓ ଦାସ ଏ ଦୁଇଟି ମାତ୍ର ଜାତିଥିଲେ । ପୁଣି କେବେ କେବେ 'ଆର୍ଯ୍ୟ' 'ଦାସ' ହେଉଥିଲେ ଓ 'ଦାସ' ମଧ୍ୟ 'ଆର୍ଯ୍ୟ' ହେଉଥିଲେ । ଗାନ୍ଧାରରେ ବର୍ଣ୍ଣାଶ୍ରମ ଧର୍ମ ବଦ୍ଧମୂଳ ହୋଇଥିଲା ବୋଲି ମଧ୍ୟ କେତେକ ଜାତକରୁ ପ୍ରମାଣିତ ହୁଏ । ତକ୍ଷଶିଳାର ବହୁତ ଅଧ୍ୟାପକ ଜାତିରେ ବ୍ରାହ୍ମଣ ଥିଲେ, କିନ୍ତୁ

(୧) Buddhist India P. 28

କାମ୍ବୋଜରେ ଚାତୁର୍ବର୍ଣ୍ୟ ବ୍ୟବସ୍ଥା ପ୍ରବେଶ କରି ପାରି ନଥିଲା । ସୁତରାଂ କମ୍ବୋଜ ଦେଶ ଗାନ୍ଧାର ଦେଶର ଅପର ପାର୍ଶ୍ୱରେ ଥିଲାବୋଲି କୁହା ଯାଇପାରେ ।

'କୁଣାଳ ଜାତକ'ର ଅଟ୍ଠକଥାରୁ ଜଣାଯାଏ, ସେ କମ୍ବୋଜ ଦେଶର ଲୋକେ ବଣୁଆ ଘୋଡ଼ାମାନଙ୍କୁ ଧରିବାରେ ପ୍ରବୀଣ ଥିଲେ । ଘୋଡ଼ାମାନେ ପାଣି ପିଇବାକୁ ଯେଉଁ ସ୍ଥାନକୁ ଯାଉଥିଲେ, ସେଠାରେ ଅତ୍ୟନ୍ତ କୌଶଳରେ ପାଣିରେ ଏବଂ ପାର୍ଶ୍ୱବର୍ତ୍ତୀ ସ୍ଥାନରେ ସେମାନେ ମହୁ ଛିଞ୍ଚିଦେଇ ଆସୁଥିଲେ । ମଧୁର ପାଣି ପିଇ ଓ ମଧୁସିକ୍ତ ଘାସ ଖାଇ ଖାଇ ଘୋଡ଼ାମାନେ ଲୋକଙ୍କ ଦ୍ୱାରା ନିର୍ମିତ ଏକ ବେଷ୍ଟନୀ ଭିତରକୁ ଚାଲି ଯାଉଥିଲେ । ତା ପରେ, ସେ ବେଷ୍ଟନୀର ଦ୍ୱାର ବନ୍ଦ କରିଦେଇ ଲୋକେ ଧୀରେ ଧୀରେ ସେମାନଙ୍କୁ ବଶୀଭୂତ କରୁଥିଲେ । ( ଆଜିକାଲି ମଧ୍ୟ ମହୀଶୂରରେ ଏ ଉପାୟରେ ହାତୀ ଧରା ଯାଉଛି ) । ଏହି ଘୋଡ଼ାମାନଙ୍କୁ କମ୍ବୋଜର ବଣିକମାନଙ୍କୁ ବିକ୍ରୟ କରାଯାଉଥିଲା ଏବଂ ସେମାନେ ମଧ୍ୟ-ଭାରତର ବେନାରସ ପ୍ରଭୃତି ସହରମାନଙ୍କୁ ଯାଇ ସେଗୁଡ଼ିକ ବିକ୍ରୟ କରୁଥିଲେ । (୧)

କମ୍ବୋଜ ଦେଶର ବହୁଲୋକ, କୀଟ ପତଙ୍ଗ ପ୍ରଭୃତି କ୍ଷୁଦ୍ର ପ୍ରାଣୀମାନଙ୍କୁ ମାରିବା ଫଳରେ ଆତ୍ମଶୁଦ୍ଧି ହୁଏ ବୋଲି ଭାବୁଥିଲେ ।

**କୀଟା ପତଙ୍ଗା ଉରଗା ଚ ଭେକା**
**ହନ୍ତ୍ୱା କିମିଂ ସୁଜ୍ଝତି ମକ୍ଖିକା ଚ**
**ଏତେ ହି ଧମ୍ମା ଅନରୀୟ ରୂପା**
**କମ୍ବୋଜକାନଂ ବିତଥା ବହୁନ୍ନଂ (୨)**

---

(୧) ଉଦାହରଣ ପାଇଁ 'ତଣ୍ଡୁଲନାଳି ଜାତକ' ଦେଖନ୍ତୁ ।
(୨) ଭୂରିଦତ୍ତ ଜାତକ, ଶ୍ଳୋକ ୯୦୩ ।

ଅର୍ଥାତ୍, କୀଟ ପତଙ୍ଗ, ସାପ, ବେଙ୍ଗ, କୃମି ଓ ମାଛି ମାରିବା ଦ୍ୱାରା ମନୁଷ୍ୟ ଶୁଦ୍ଧ ହୁଏ । ଏପରି ଅନାର୍ଯ୍ୟ ଓ ଅମୂଳକ ଧର୍ମକୁ କମ୍ବୋଜର ଲୋକେ ସ୍ୱୀକାର କରୁଥିବାରୁ ମନେ କରାଯାଇପାରେ, ଆଜକାଲର ସୀମାନ୍ତ ପ୍ରଦେଶର ଲୋକଙ୍କ ପରି ସେମାନେ ବଡ଼ ଅନୁନ୍ନତ ଥିଲେ ।

'ମନୋରଥ ପୂରଣୀ ଅଟ୍‌ଠ କଥା'ରେ ମହାକପ୍‌ପିନଙ୍କ ଚରିତ ଦେଖାଯାଏ । ଏହି ମହାକପ୍‌ପିନ ସୀମାନ୍ତ ପ୍ରଦେଶର କୁକ୍‌କୁଟବତୀ ନାମକ ରାଜଧାନୀରେ ରାଜତ୍ୱ କରୁଥିଲେ । ବୁଦ୍ଧଦେବଙ୍କର ମହିମା ଶୁଣି ସେ ମଧ୍ୟ-ଭାରତକୁ ଗଲେ । ଚନ୍ଦ୍ରଭାଗା ନଦୀକୂଳରେ ଭଗବାନ୍ ବୁଦ୍ଧଙ୍କୁ ସେ ସାକ୍ଷାତ୍ କରିଥିଲେ । ବୁଦ୍ଧଦେବ ତାଙ୍କର ମନ୍ତ୍ରୀମାନଙ୍କ ସହିତ ତାଙ୍କୁ ଭିକ୍ଷୁ ସଂଘରେ ଭର୍ତ୍ତି କରି ଦେଇଥିଲେ (୧)

ମହାକପ୍‌ପିନ କୁକ୍‌କୁଟବତୀରେ ରାଜତ୍ୱ କରୁଥିଲେ—ଏହା ସଂଯୁକ୍ତ ନିକାୟର ଅଟ୍‌ଠ କଥାରୁ ଜଣାଯାଏ । କିନ୍ତୁ କୁକ୍‌କୁଟବତୀ ରାଜଧାନୀ କମ୍ବୋଜରେ ଥିଲା କି ତାହାର ନିକଟବର୍ତ୍ତୀ କୌଣସି ପାର୍ବତ୍ୟ ଅଞ୍ଚଳରେ ଥିଲା, ଜଣା ଯାଉନାହିଁ । ଏତିକି ମାତ୍ର କହି ହେବ ଯେ, ବୁଦ୍ଧଙ୍କର ଜୀବଦ୍ଦଶାରେ ତାଙ୍କର ପ୍ରଭାବ ଓ ପ୍ରତିଷ୍ଠା ସୀମାନ୍ତ ଅଞ୍ଚଳର ଜଙ୍ଗଲି ଲୋକଙ୍କ ମଧ୍ୟରେ ଅନୁଭୂତ ହୋଇଥିଲା । ଏ ସମ୍ପର୍କରେ ଆଧୁନିକ ଯୁଗର ଏକ ଉଦାହରଣ ଦିଆଯାଇପାରେ । ପଞ୍ଜାବର ସାମ୍ପ୍ରଦାୟିକ ଲୋକଙ୍କ ଉପରେ ଗାନ୍ଧିଜୀଙ୍କର ପ୍ରଭାବ ଯେତେ, ତାହାର ଅନେକ ଗୁଣ ପ୍ରଭାବ

(୧) 'ବୌଦ୍ଧ ସଂଘର ପରିଚୟ' ପୃ. ୨୦୩ ।

ସୀମାନ୍ତ ପ୍ରଦେଶର ପଠାଣମାନଙ୍କ ଉପରେ ପଡ଼ିଥିବା ଦେଖାଯାଏ । ବୁଦ୍ଧଦେବଙ୍କ ସମୟରେ ମଧ୍ୟ ଏହି କଥା ଘଟିଥିବା ସମ୍ଭବପର ।

## ଲଳିତ ବିସ୍ତରରେ ଷୋହଳଟି ରାଜ୍ୟର ଉଲ୍ଲେଖ

ପ୍ରଥମରୁ କୁହାଯାଇଛି, ଲଳିତ ବିସ୍ତରରେ ଷୋହଳଟି ରାଜ୍ୟର ଉଲ୍ଲେଖ ଦେଖିବାକୁ ମିଳେ । କଥିତ ହୋଇଛି, ଯେତେବେଳେ ବୋଧିସତ୍ତ୍ୱ ତୁଷିତ ଦେବ ଭବନରେ ଥିଲେ, ସେତେବେଳେ ସେ କେଉଁ ଦେଶରେ ଜନ୍ମଗ୍ରହଣ କରି ଲୋକୋଦ୍ଧାର କରିପାରିବେ, ଏ ବିଷୟରେ ବିଚାର ହେଲା । କେତେକ ଦେବପୁତ୍ର ବିଭିନ୍ନ ରାଜବଂଶର ଗୁଣ ପ୍ରଖ୍ୟାପନ କଲେ ଏବଂ ଅନ୍ୟ କେତେକ ଦେବପୁତ୍ର ସେହି ରାଜବଂଶମାନଙ୍କର ଦୋଷ ଦର୍ଶାଇଲେ ।

**୧— ମଗଧ ରାଜବଂଶ**— କୌଣସି କୌଣସି ଦେବପୁତ୍ର କହିଲେ, 'ମଗଧ ଦେଶର ବୈଦେହୀବଂଶ ବଡ଼ ସଙ୍ଗତି ସମ୍ପନ୍ନ । ତେଣୁ ବୋଧିସତ୍ତ୍ୱ ଜନ୍ମ ଗ୍ରହଣ କରିବା ପାଇଁ ସେ ବଂଶ ଉପଯୁକ୍ତ' । ଅନ୍ୟ କେତେକ ଦେବପୁତ୍ର କହିଲେ, 'ସେହି ବଂଶ ଉପଯୁକ୍ତ ନୁହେ । କାରଣ, ସେ ବଂଶର ମାତୃଶୁଦ୍ଧ ଅଛି କିନ୍ତୁ ପିତୃଶୁଦ୍ଧି ନାହିଁ । ଆହୁରି ମଧ୍ୟ ସେ ବଂଶ ବିପୁଳ ଭାବରେ ପୁଣ୍ୟବନ୍ତ ନୁହେ । ମଗଧର ରାଜଧାନୀ, ଉଦ୍ୟାନ ଏବଂ ପୁଷ୍କରିଣୀ ମାନଙ୍କରେ ସୁଶୋଭିତ ନୁହେ । ସେ କେବଳ ବନ୍ୟ ଲୋକଙ୍କର ମନୋରଞ୍ଜକ ହୋଇପାରେ' ।

**୨— କୋସଳ ରାଜବଂଶ** —କେତେକ ଦେବପୁତ୍ର କହିଲେ, 'କୋଶଳ ରାଜବଂଶ ସୈନ୍ୟ, ଯାନ ବାହନ ଓ ଧନରେ ସମୃଦ୍ଧ ହୋଇଥିବା ହେତୁ ବୋଧିସତ୍ତ୍ୱଙ୍କ ପାଇଁ ସେ ଏକ ଉପଯୁକ୍ତ ସ୍ଥାନ' । ଅନ୍ୟ ଦେବପୁତ୍ରମାନେ କହିଲେ, 'ସେ ବଂଶ ମାତଙ୍ଗଠାରୁ

ଉତ୍ପନ୍ନ ହୋଇଅଛି । ପୁଣି ସେ ବଂଶର ପିତୃ ମାତୃ ଶୁଦ୍ଧି ନାହିଁ । ତହିଁରେ ପୁଣି ମାତ ଧର୍ମରେ ଏ ରାଜକୁଳ ଶ୍ରଦ୍ଧାବନ୍ତ ହୋଇଥାଏ । ତେଣୁ ଉପଯୁକ୍ତ ସ୍ଥାନ ନୁହେ' ।

**୩—ବଂଶ ରାଜବଂଶ**—ପୁଣି କେତେକ ଦେବପୁତ୍ର କହିଲେ, 'ଏହି ବଂଶ ରାଜବଂଶ ସମୃଦ୍ଧ ଏବଂ ସୁରକ୍ଷିତ ଅଟେ । ସୁତରାଂ ବୋଧିସତ୍ତ୍ୱଙ୍କ ପାଇଁ ଯୋଗ୍ୟ ସ୍ଥାନ' । ଅନ୍ୟ ଦେବପୁତ୍ର-ମାନେ କହିଲେ, 'ସେ ବଂଶ ଅନୁନ୍ନତ ଏବଂ କ୍ରୋଧପ୍ରକୃତିକ । ସେ ବଂଶର ବହୁ ରାଜା ପର ପୁରୁଷଙ୍କ ଆତ୍ମଜ ଜନ୍ମ ହୋଇଛନ୍ତି, ପୁଣି ସେଠାରେ ବର୍ତ୍ତମାନ ଯେ ରାଜା ହୋଇଛନ୍ତି ସେ ବଡ଼ ନାସ୍ତିକ । ସୁତରାଂ ବୋଧିସତ୍ତ୍ୱଙ୍କ ପାଇଁ ସେ ସ୍ଥାନ ଅନୁପଯୁକ୍ତ' ।

**୪—ବୈଶାଲୀର ରାଜା**—କେତେକ ଦେବପୁତ୍ର କହିଲେ, 'ବୈଶାଳୀ ମହାନଗରୀ ସମୃଦ୍ଧ, ସୁଭିକ୍ଷ, ରମଣୀୟ ଓ ଜନପୂର୍ଣ୍ଣ ସୌଧମାଳାରେ ଅଳଂକୃତ—ପୁଷ୍ପବାଟିକା ଏବଂ ଉଦ୍ୟାନରେ ପ୍ରଫୁଲ୍ଲ ଦେଖାଯାଏ, ସତେ ଯେପରିକି ଦେବତାମାନଙ୍କର ରାଜଧାନୀକୁ ଅନୁକରଣ କରିଛି । ଏ ସ୍ଥାନ ତେଣୁ ବୋଧିସତ୍ତ୍ୱଙ୍କ ଜନ୍ମ ପାଇଁ ଉପଯୁକ୍ତ ।' ଅନ୍ୟ ଦେବପୁତ୍ରମାନେ କହିଲେ—'ସେଠାର ରାଜା ଲୋକମାନଙ୍କ ସହିତ ନ୍ୟାୟୋଚିତ ବ୍ୟବହାର କରନ୍ତି ନାହିଁ କିମ୍ବା ଧର୍ମାଚରଣ କରନ୍ତି ନାହିଁ । ଉତ୍ତମ, ମଧ୍ୟମ, ବୃଦ୍ଧ, ଜ୍ୟେଷ୍ଠ ପ୍ରଭୃତିଙ୍କୁ ସେ ଆଦର କରନ୍ତି ନାହିଁ । ସେଠାରେ ପ୍ରତ୍ୟେକେ ନିଜ ନିଜକୁ ରାଜାପରି ଭାବନ୍ତି । କେହି କାହାର ଶିଷ୍ୟ ହେବାକୁ ପ୍ରସ୍ତୁତ ନୁହନ୍ତି । ସୁତରାଂ ବୋଧିସତ୍ତ୍ୱଙ୍କ ପାଇଁ ସେ ନଗରୀ ଆଦୌ ଉପଯୁକ୍ତ ନୁହେ' ।

**୫—ଅବନ୍ତୀ ରାଜବଂଶ**—ଜଣେ ଦେବପୁତ୍ର କହିଲେ, "ଏହି ପ୍ରଦ୍ୟୋତଙ୍କ ବଂଶ ଅତ୍ୟନ୍ତ ବଳଶାଳୀ, ଉତ୍ତମ ଯାନବାହନ ସମ୍ପନ୍ନ ଏବଂ ପ୍ରବଳ ଶତ୍ରୁମାନଙ୍କୁ ପରାଜିତ କରି ପାରନ୍ତି । ତେଣୁ ବୋଧିସତ୍ତ୍ୱଙ୍କ ଏ ସ୍ଥାନ ଉପଯୁକ୍ତ" । ଅନ୍ୟମାନେ କହିଲେ "ସେହି ବଂଶର ରାଜା ବଡ଼ କୋପନ ସ୍ୱଭାବ, କ୍ରୂର, କଟୁଭାଷୀ ଓ ଦୁଃସାହସୀ । ସେ କର୍ମରେ ବିଶ୍ୱାସ କରନ୍ତି ନାହିଁ । ତେଣୁ ସେ ବଂଶ ବୋଧିସତ୍ତ୍ୱଙ୍କ ପାଇଁ ଏକାନ୍ତ ଅଶୋଭନୀୟ ।

**୬—ମଥୁରା ରାଜବଂଶ**—ଅନ୍ୟ ଜଣେ ଦେବପୁତ୍ର କହିଲେ,—'ମଥୁରା ନଗରୀ ସମୃଦ୍ଧ, ସୁଭିକ୍ଷ ଓ ଜନପୂର୍ଣ୍ଣ । କଂସ-ବଂଶର ସୁରସେନମାନଙ୍କର ରାଜା 'ସୁବାହୁ'ଙ୍କର ସେ ହେଉଛି ରାଜଧାନୀ । ବୋଧିସତ୍ତ୍ୱଙ୍କ ପାଇଁ ଏ ସ୍ଥାନ ଉପଯୁକ୍ତ' । ତାପରେ ଅନ୍ୟମାନେ କହିଲେ, 'ସେ ରାଜା ମିଥ୍ୟା ଦୃଷ୍ଟି ବଂଶରେ ଜାତ । ଦସ୍ୟୁ ରାଜା ଅଟେ । ଏ ନଗରୀ ବୋଧିସତ୍ତ୍ୱଙ୍କ ପାଇଁ ତେଣୁ ଉପଯୁକ୍ତ ନୁହେ' ।

**୭—କୁରୁ ରାଜବଂଶ**—ଜଣେ ଦେବପୁତ୍ର କହିଲେ, 'ହସ୍ତିନାପୁରରେ ପାଣ୍ଡବ ବଂଶର ବୀର ଏବଂ ରୂପବନ୍ତ ରାଜା ରାଜତ୍ୱ କରୁଛନ୍ତି । ଶତ୍ରୁ ସୈନ୍ୟମାନଙ୍କୁ ଧ୍ୱଂସ କରିବାରେ ଏ ବଂଶ ସମର୍ଥ । ବୋଧିସତ୍ତ୍ୱ ସେଠାରେ ଜନ୍ମ ହେବା ଉଚିତ' । ଅନ୍ୟଜଣେ କହିଲେ—ପାଣ୍ଡବବଂଶର ରାଜାମାନେ ନିଜ ବଂଶକୁ କଳଙ୍କିତ କରି ଦେଇଛନ୍ତି । ଯୁଧିଷ୍ଠିରଙ୍କୁ ଧର୍ମଙ୍କର, ଭୀମସେନଙ୍କୁ ପବନଙ୍କର, ଅର୍ଜୁନଙ୍କୁ ଇନ୍ଦ୍ରଙ୍କର ଓ ନକୁଳ ସହଦେବଙ୍କୁ ଅଶ୍ୱିନୀକୁମାରଙ୍କର ପୁତ୍ର ବୋଲି କୁହାଯାଇଥାଏ । ଏ ବଂଶ ମଧ୍ୟ ବୋଧିସତ୍ତ୍ୱଙ୍କ ପାଇଁ ଅନୁପଯୁକ୍ତ" ।

୮— **ମୈଥିଳ ରାଜବଂଶ**— ଆଉଜଣେ ଦେବପୁତ୍ର କହିଲେ,—ମୈଥିଳରାଜା ସୁମିତ୍ରଙ୍କର ରାଜଧାନୀ ଏହି ମିଥିଳା ନଗରୀ ଅତ୍ୟନ୍ତ ସୁନ୍ଦର । ହାତୀ, ଘୋଡ଼ା, ପଦାତି ପ୍ରଭୃତିରେ ସେ ରାଜା ସମୃଦ୍ଧ । ତାଙ୍କ ପାଖରେ ସୁନା, ମୋତି ଓ ହୀରା-ମାଳା ଅଛି । ସାମନ୍ତ ରାଜାମାନଙ୍କ ସୈନ୍ୟମାନେ ତାଙ୍କର ପରାକ୍ରମରେ ଭୀତତ୍ରସ୍ତ । ସେ ବଡ଼ ସହୃଦୟ ଓ ଧର୍ମବତ୍ସଳ । ତେଣୁ ବୋଧିସତ୍ତ୍ୱଙ୍କ ପାଇଁ ସେବଂଶ ବଡ଼ ଉପଯୁକ୍ତ” । ଅନ୍ୟମାନେ କହିଲେ—‘ଏ ସବୁ ଅବଶ୍ୟ ସତ; କିନ୍ତୁ ତାଙ୍କର ବହୁତ ସନ୍ତାନ ଅଛନ୍ତି ଏବଂ ସେ ଅତି ବୃଦ୍ଧ ହୋଇ ଯାଇଥିବାରୁ ପୁତ୍ର ଜନ୍ମ କରିବାକୁ ଅସମର୍ଥ ହୋଇଗଲେଣି । ସେ ବଂଶ ମଧ୍ୟ ବୋଧିସତ୍ତ୍ୱଙ୍କ ପାଇଁ ଅନୁପଯୁକ୍ତ” ।

ଏହି ପ୍ରକାରେ ସମସ୍ତ ଦେବପୁତ୍ର ଜମ୍ବୁଦ୍ୱୀପର ଷୋହଳଟି ରାଜ୍ୟରେ (ଷୋଡ଼ଶ ଜାନ ପଦେଷୁ) ଶ୍ରେଷ୍ଠ ବଡ଼ ଯେତେ ରାଜବଂଶ ଥିଲା ସେ ସମସ୍ତଙ୍କୁ ପରୀକ୍ଷା କଲେ । ପ୍ରତ୍ୟେକଟି ଦୋଷଯୁକ୍ତ ଦେଖାଗଲା । (୧)

## କେବଳ ଆଠଟି ବଂଶର ଜାଣିବା କଥା

ଷୋହଳଟି ରାଜ୍ୟଭିତରୁ ଏଠାରେ କେବଳ ଆଠଟି ବଂଶର ବର୍ଣ୍ଣନା କରାଯାଇଛି । ଏମାନଙ୍କ ମଧ୍ୟରେ ସୁମିତ୍ରଙ୍କର ବଂଶ, ବୋଧହୁଏ ତାଙ୍କପରେ ନଷ୍ଟହୋଇ, ବଜ୍ଜୀମାନଙ୍କ ରାଜ୍ୟରେ ମିଶି ଯାଇଥିଲା । ଅନ୍ୟ ସାତୋଟି ରାଜ୍ୟରେ ପାଣ୍ଡବମାନଙ୍କ ବଂଶର କେଉଁ ରାଜା କେଉଁଠାରେ ରାଜତ୍ୱ କରୁଥିଲେ କହି ହେବନାହିଁ । ପୁଣି ଏହା ଜାଣିବା ପାଇଁ ବୌଦ୍ଧଗ୍ରନ୍ଥମାନଙ୍କରୁ କୌଣସି ତଥ୍ୟ ମିଳୁ ନାହିଁ । ‘ରଠ୍‌ଠପାଳ ସୁତ୍ତ’ରେ ଲେଖାଅଛି, କୁରୁ ଦେଶରେ ‘କୌରବ’

(୧) ମୂଳଅଂଶର ଏହା ସଂକ୍ଷିପ୍ତ ଭାଷାନ୍ତର ।

ନାମକ ଜଣେ ରାଜା ରାଜତ୍ୱ କରୁଥିଲେ । କିନ୍ତୁ ସେ ପାଣ୍ଡବ ବଂଶର ବୋଲି କୌଣସି ପ୍ରମାଣ ମିଳୁ ନାହିଁ । ଅନ୍ୟ ଛଅଟି ରାଜବଂଶର ଯେଉଁ ବିବରଣୀ ମିଳେ ତାହା ଏଠାରେ ଦିଆଗଲା । ତ୍ରିପିଟକ ଗ୍ରନ୍ଥମାନଙ୍କରେ ଏ ଭଳି ବିବରଣୀ ଅଳ୍ପାଧିକ ପରିମାଣରେ ଅଛି ।

**ଶାକ୍ୟବଂଶ** — ବୌଦ୍ଧଗ୍ରନ୍ଥମାନଙ୍କରେ ଶାକ୍ୟବଂଶର ପରିଚୟ ବିସ୍ତୃତ ଭାବରେ ଦିଆଯାଇଛି । ତଥାପି ଉଲ୍ଲିଖିତ ଷୋହଳଟି ରାଜ୍ୟ ମଧ୍ୟରେ ଶାକ୍ୟବଂଶର ନାମ ନିର୍ଦ୍ଦେଶ ଯେ କାହିଁକି ନାହିଁ ଜାଣି ହେଉନାହିଁ । ଏ କଥା ହୋଇଥାଇ ପାରେ ଯେ, ଏ ତାଲିକା ତିଆରି ହେବା ପୂର୍ବରୁ ଶାକ୍ୟବଂଶର ସ୍ୱାଧୀନତା ନଷ୍ଟ ହୋଇଯାଇଥିଲା ଏବଂ କୋଶଳ ରାଜ୍ୟରେ ସେ ଦେଶ ମିଶି ଯାଇଥିଲା । ତେଣୁ ଏ ତାଲିକାରେ ତାହାର ଉଲ୍ଲେଖ କରାଗଲା ନାହିଁ ।

ଯେତେବେଳେ ବୋଧିସତ୍ତ୍ୱ ଗୃହ ତ୍ୟାଗ କରି ରାଜଗୃହକୁ ପ୍ରସ୍ଥାନ କଲେ, ସେତେବେଳେ ରାଜା ବିମ୍ବିସାର ତାଙ୍କୁ ସାକ୍ଷାତ୍ କରି ତାଙ୍କର ପରିଚୟ ପଚାରିଲେ । ସେ କହିଲେ—

**ଉଜୁଂ ଜାନପଦୋରାଜା ହିମବନ୍ତସ୍ସ ପସ୍ସତୋ ।**
**ଧନ ବିରିୟେନ ସଂପନ୍ନୋ କୋସଲେସୁ ନିକେତନୋ ॥**
**ଆଦିଚାନାମ ଗୋତ୍ତେନ ସାକିୟାନାମ ଜାତିୟା ।**
**ତମ୍ହା କୁଲା ପବ୍ବଜିତୋମ୍ହି ରାଜ ନକାମେ ଅଭି—**
**ପତ୍ଥୟଂ ॥୧**

"ହେ ରାଜା ! ଏଠାରୁ ସିଧା ହିମାଳୟର ପାଦ ଦେଶରେ କୋଶଳ ଦେଶର ଏକ ପ୍ରଦେଶ ( ଅଞ୍ଚଳ ) ଅଛି । ତାହାର ଗୋତ୍ର ଆଦିତ୍ୟ

(୧) ସୁତ୍ତନିପାତ, ପବ୍ବଜ୍ଜା ସୁତ୍ତ ।

ଗୋତ୍ର ଏବଂ ଜାତି ହେଉଛି ଶାକ୍ୟ । ହେ ରାଜା ! ମୁଁ ସେହି ବଂଶଜ । କାମ-ଉପଭୋଗର ସ୍ପୃହା ପରିତ୍ୟାଗ କରି ମୁଁ ପରିବ୍ରାଜକ ହୋଇଗଲି ।"

ଏହି ଗାଥାର **"କୋସଲେସୁ ନିକେତିନୋ"** ଶବ୍ଦ ବଡ଼ ଗୁରୁତ୍ୱପୂର୍ଣ୍ଣ । "କୋଶଳ ଦେଶରେ ଯାହାର ଘର", କୋଶଳ ଦେଶର ବୋଲି ଯେ ପରିଗଣିତ ହୁଏ—ଏଥିରୁ ସ୍ପଷ୍ଟ ଜଣାଯାଏ, ଶାକ୍ୟଙ୍କର ସ୍ୱାଧୀନତା ଅନେକ ଦିନୁ ନଷ୍ଟ ହୋଇ ଯାଇଥିଲା ।

ଶାକ୍ୟଙ୍କର ଲୋକେ କୋସଳ ରାଜାଙ୍କୁ କର ଦେଉଥିଲେ ଏବଂ ଗୃହନୀତି ନିଜେ ଚଳାଉଥିଲେ । ସେଠା ରାଜାଙ୍କ ଦାସୀ କନ୍ୟା ସହିତ 'ପସେନଦି'ଙ୍କ ବିବାହ କଥା ଏଥିପୂର୍ବେ କୁହା ଯାଇଛି । ସେ ବିଷୟରେ ଅଧ୍ୟାପକ ରାଇସ୍ ଡେଭିସ୍ ସନ୍ଦେହ ପ୍ରକାଶ କରିଛନ୍ତି । ସେ ବୋଧହୁଏ କହିବାକୁ ଚାହାନ୍ତି, ଯଦି କୋସଳ ରାଜାଙ୍କ ଆଧିପତ୍ୟକୁ ଶାକ୍ୟ ସ୍ୱୀକାର କରୁଥିଲେ, ତେବେ ନିଜ ଝିଅକୁ ତାଙ୍କୁ ଦେବାରେ କି ଆପତ୍ତି ଥିଲା । (୧) କିନ୍ତୁ ଭାରତର ଜାତି ଭେଦ ପ୍ରଥା ଯେ କେଡ଼େ ଉତ୍କଟ, ଏହା ବୋଧହୁଏ ତାଙ୍କୁ ଜଣାନାହିଁ । ଉଦୟପୁରର ରାଜା ଆକ୍‌ବରଙ୍କ ଆଧିପତ୍ୟ ସ୍ୱୀକାର କରୁଥିଲେ । ତଥାପି ନିଜ ଝିଅକୁ ଆକବରଙ୍କୁ ଦେବା ପାଇଁ ସେ ପ୍ରସ୍ତୁତ ନ ଥିଲେ । କୋସଳ ବଂଶ "ମାତଙ୍ଗ ଚ୍ୟୁତ୍ପନ୍ନ" ବୋଲି ଲଳିତ ବିସ୍ତରରେ କୁହାଯାଇଛି । ତହିଁରୁ ଜଣାଯାଉଛି ସେ ବଂଶ ମାତଙ୍ଗ ( ଚଣ୍ଡାଳ ) କୁଳରୁ ଉପରକୁ ଉଠିଥିଲା । ଏପରି ବଂଶ ସହିତ ବୈବାହିକ ସମ୍ବନ୍ଧ ରଖିବାକୁ ଶାକ୍ୟ ଯେ ପ୍ରସ୍ତୁତ ନ ଥିବେ ଏହା ତ ଅତି ସାଧାରଣ କଥା ।

[1] Buddhist India P. 11—12

**ଗଣ ରାଜ୍ୟମାନଙ୍କ ବ୍ୟବସ୍ଥା**—ଉପରେ କୁହା ଯାଇଛି, ଏ ରାଜ୍ୟ ଏକ ସମୟରେ ଗଣଅଧିକାର ଗୃହୀତ ଥିଲା । ବଜ୍ଜୀ, ମଲ୍ଲ ବା ଶାକ୍ୟ ପ୍ରଭୃତିଙ୍କ ସମ୍ପର୍କରେ ତ୍ରିପିଟକ ଗ୍ରନ୍ଥମାନଙ୍କରୁ ଜଣାଯାଏ ଯେ, ସେଗୁଡ଼ିକରେ ଗ୍ରାମମାନଙ୍କର ନେତାମାନଙ୍କୁ ରାଜା କୁହାଯାଉଥିଲା । ସବୁ ରାଜା ଏକାଠି ହୋଇ ନିଜ ମଧ୍ୟରୁ ଜଣକୁ ଅଧ୍ୟକ୍ଷରୂପେ ନିର୍ବାଚିତ କରୁଥିଲେ । ସେ ସାରାଜୀବନ ପାଇଁ ନା କୌଣସି ନିର୍ଦ୍ଦିଷ୍ଟ ସମୟ ପାଇଁ ନିର୍ବାଚିତ ହେଉଥିଲେ ଜାଣିବାର ଉପାୟ ନାହିଁ । ବଜ୍ଜୀମାନଙ୍କ ମଧ୍ୟରେ କୌଣସି ମହାରାଜା ଥିବାର ପ୍ରମାଣ ମିଳେ ନାହିଁ । ବଜ୍ଜୀମାନଙ୍କ ସେନାପତିଙ୍କ ନାମୋଲ୍ଲେଖ ହୋଇଛି କିନ୍ତୁ ମହାରାଜାଙ୍କର ନୁହେ । ବୋଧହୁଏ ନିର୍ଦ୍ଦିଷ୍ଟ ସମୟ ପାଇଁ ଅଧ୍ୟକ୍ଷ ନିର୍ବାଚନ କରି ସେମାନେ ଆପଣାର କାର୍ଯ୍ୟ ଚଳାଇ ନେଉଥିଲେ । ଗଣରାଜ୍ୟଗୁଡ଼ିକର ନ୍ୟାୟ ବିଚାର ଓ ଶାସନ ପଦ୍ଧତି ସମ୍ପର୍କରେ କେତେକ ଆଇନ କାନୁନ୍ ପ୍ରଣୟନ କରି ଯାଇଥିଲା ଓ ସେହି ଅନୁସାରେ ଗଣ-ରାଜ୍ୟ ଚଳୁଥିଲା ।

**ଗଣରାଜ୍ୟ ଗୁଡ଼ିକର ବିନାଶର କାରଣ**—ଷୋହଳଟି ଦେଶର ରାଜାମାନଙ୍କର ବିନାଶ ହୋଇ ପ୍ରାୟ ସବୁ ରାଜ୍ୟରେ ମହାରାଜଶାସନ ପ୍ରତିଷ୍ଠିତ ହେଲା । ମଲ୍ଲମାନଙ୍କର ଦୁଇଟି ଶ୍ରେଷ୍ଠ ଶ୍ରେଷ୍ଠ ରାଜ୍ୟ ଏବଂ ବଜ୍ଜୀମାନଙ୍କର ଗୋଟିଏ ଶକ୍ତିଶାଳୀ ରାଜ୍ୟ, ଏହାପରେ ଯେଉଁ ତିନୋଟି ଗଣଶାସିତ ସ୍ୱାଧୀନ ରାଜ୍ୟ ରହି ଯାଇଥିଲା ସେ ଗୁଡ଼ିକ ମଧ୍ୟ ଏକାଧିପତ୍ୟ ଗୃହୀତ ଶାସନ ପଦ୍ଧତିର କବଳିତ ହେଲା । ଯଥା ସମ୍ଭବ, ଗଣରାଜ୍ୟମାନଙ୍କର ବିଳାସିତା ଏବଂ ରାଜନୀତିରେ ବ୍ରାହ୍ମଣମାନଙ୍କର ପ୍ରଭାବ— ଏ ଦୁଇ କାରଣରୁ ଏ ଭଳି ଭୂମୂଳ ପରିବର୍ତ୍ତନ ଘଟିଥିଲା ।

କ୍ରମେ ଗଣରାଜାମାନଙ୍କର ନିର୍ବାଚନ ହେଲା ନାହିଁ । ବାପ ପରେ ପୁଅ ରାଜା ହେଲେ । ବଂଶ ପରମ୍ପରା କ୍ରମେ ଏହିପରି ଅଧିକାର ମିଳିଯିବା ଫଳରେ ସେମାନେ ବିଳାସୀ ଓ ଦାୟିତ୍ୱହୀନ ହୋଇ ପଡ଼ିଥିବା ସ୍ୱାଭାବିକ । ଉପରେ ବଜ୍ଜୀମାନଙ୍କ ସମ୍ପର୍କରେ ଲଳିତ ବିସ୍ତରରେ ଯେଉଁ ଅଂଶ ଉଦ୍ଧାର କରାଯାଇଛି ତହିଁରୁ ଜଣାଯାଏ ଯେ, ଗଣରାଜାମାନଙ୍କ ମଧ୍ୟରେ ପରସ୍ପର ପ୍ରତି ଅନାଦର ଭାବ ଥିଲା ଓ ପ୍ରତ୍ୟେକେ ନିଜ ନିଜକୁ ଏକମାତ୍ର ରାଜାବୋଲି ମନେ କରୁଥିଲେ । ବୁଦ୍ଧଙ୍କର ପରିନିର୍ବାଣ ପରେ ବଜ୍ଜୀମାନଙ୍କର ଗଣରାଜାମାନଙ୍କ ମଧ୍ୟରେ ଭେଦଭାବ ସୃଷ୍ଟି କରି ଅଜାତଶତ୍ରୁ ସେହି ରାଜ୍ୟ ଅଧିକାର କରି ପାରିଥିଲେ ।

ଗଣରାଜାମାନଙ୍କୁ ସାଧାରଣ ଜନତାର ସମର୍ଥନ ମିଳିବା ସମ୍ଭବପର ନ ଥିଲା । ଯଦି କୌଣସି ରାଜା ଇଚ୍ଛାନୁସାରେ ଲୋକଙ୍କ ଉପରେ ଅତ୍ୟାଚାର କରୁଥିଲା, ତାହାର ପ୍ରତିରୋଧ କରିବା ପାଇଁ ଲୋକଙ୍କଠାରେ ବା ଅନ୍ୟ ଗଣରାଜାଙ୍କଠାରେ ସାମର୍ଥ୍ୟ ନଥିଲା । ଏ ଭଳି ପରିସ୍ଥିତିରେ, ଜନସାଧାରଣଙ୍କ ଦୃଷ୍ଟିରୁ, ସମସ୍ତ ରାଜା ନଷ୍ଟ ହୋଇ ଜଣେ ମାତ୍ର ସର୍ବାଧିକାରୀ ରାଜା ରହିବା ଅଧିକ ବାଞ୍ଛନୀୟ ଥିଲା । ମହାରାଜାମାନେ ଯଦିଓ ଲୋକଙ୍କ ଉପରେ ବଳ ପ୍ରୟୋଗ କରୁଥିଲେ, ରାଜଧାନୀ ନିକଟରେ ସୁନ୍ଦରୀ ଯୁବତୀ ଦେଖିଲେ ବଳପୂର୍ବକ ତାକୁ ଅନ୍ତଃପୁରକୁ ନେଇ ଆସୁଥିଲେ ଏବଂ ଯଦିଓ ଭଣା ଅଧିକେ ଏପରି ବହୁ ଅନାଚାର ସେମାନେ କରୁଥିଲେ, ତଥାପି ଜନସାଧାରଣଙ୍କ ଦୃଷ୍ଟିରୁ, ଗଣରାଜାଙ୍କ [illegible] ଏ ମାନଙ୍କର ଅତ୍ୟାଚାର ଅଧିକ [illegible] । [illegible] ଗ୍ରାମରେ ରହୁଥିଲେ । [illegible] ଲୋକ ଦୁଇଏକ ଜଣ ମାତ୍ର [illegible] । [illegible],

**ଗଣ ରାଜ୍ୟମାନଙ୍କ ବ୍ୟବସ୍ଥା**—ଉପରେ କୁହା ଯାଇଛି, ଏ ରାଜ୍ୟ ଏକ ସମୟରେ ଗଣଅଧିକାର ଚାଳିତ ଥିଲା । ବଜ୍ଜୀ, ମଲ୍ଲ ବା ଶାକ୍ୟ ପ୍ରଭୃତିଙ୍କ ସମ୍ପର୍କରେ ତ୍ରିପିଟକ ଗ୍ରନ୍ଥମାନଙ୍କରୁ ଜଣାଯାଏ ଯେ, ସେଗୁଡ଼ିକରେ ଗ୍ରାମମାନଙ୍କର ନେତାମାନଙ୍କୁ ରାଜା କୁହାଯାଉଥିଲା । ସବୁ ରାଜା ଏକାଠି ହୋଇ ନିଜ ମଧ୍ୟରୁ ଜଣକୁ ଅଧ୍ୟକ୍ଷରୂପେ ନିର୍ବାଚିତ କରୁଥିଲେ । ସେ ସାରାଜୀବନ ପାଇଁ ନା କୌଣସି ନିର୍ଦ୍ଦିଷ୍ଟ ସମୟ ପାଇଁ ନିର୍ବାଚିତ ହେଉଥିଲେ ଜାଣିବାର ଉପାୟ ନାହିଁ । ବଜ୍ଜୀମାନଙ୍କ ମଧ୍ୟରେ କୌଣସି ମହାରାଜା ଥିବାର ପ୍ରମାଣ ମିଳେ ନାହିଁ । ବଜ୍ଜୀମାନଙ୍କ ସେନାପତିଙ୍କ ନାମୋଲ୍ଲେଖ ହୋଇଛି କିନ୍ତୁ ମହାରାଜାଙ୍କର ନୁହେଁ । ବୋଧହୁଏ ନିର୍ଦ୍ଦିଷ୍ଟ ସମୟ ପାଇଁ ଅଧ୍ୟକ୍ଷ ନିର୍ବାଚନ କରି ସେମାନେ ଆପଣାର କାର୍ଯ୍ୟ ଚଳାଇ ନେଉଥିଲେ । ଗଣରାଜ୍ୟଗୁଡ଼ିକର ନ୍ୟାୟ ବିଚାର ଓ ଶାସନ ପଦ୍ଧତି ସମ୍ପର୍କରେ କେତେକ ଆଇନ କାନୁନ୍ ପ୍ରଣୟନ କରା ଯାଇଥିଲା ଓ ସେହି ଅନୁସାରେ ଗଣ-ରାଜ୍ୟ ଚଳୁଥିଲା ।

**ଗଣରାଜ୍ୟ ଗୁଡ଼ିକର ବିନାଶର କାରଣ**—ଷୋହଳଟି ଦେଶର ରାଜାମାନଙ୍କର ବିନାଶ ହୋଇ ପ୍ରାୟ ସବୁ ରାଜ୍ୟରେ ମହାରାଜଶାସନ ପ୍ରତିଷ୍ଠିତ ହେଲା । ମଲ୍ଲମାନଙ୍କର ଦୁଇଟି ଶ୍ରେଷ୍ଠ ଶ୍ରେଷ୍ଠ ରାଜ୍ୟ ଏବଂ ବଜ୍ଜୀମାନଙ୍କର ଗୋଟିଏ ଶକ୍ତିଶାଳୀ ରାଜ୍ୟ, ଏହିପରି ଯେଉଁ ତିନୋଟି ଗଣଶାସିତ ସ୍ୱାଧୀନ ରାଜ୍ୟ ରହି ଯାଇଥିଲା ସେ ଗୁଡ଼ିକ ମଧ୍ୟ ଏକାଧିପତ୍ୟ ଚାଳିତ ଶାସନ ପଦ୍ଧତିର କବଳିତ ହେଲା । ଯଥା ସମ୍ଭବ, ଗଣରାଜ୍ୟମାନଙ୍କର ବିଳାସିତା ଏବଂ ରାଜମାତରେ ବ୍ରାହ୍ମଣମାନଙ୍କର ପ୍ରଭାବ— ଏ ଦୁଇ କାରଣରୁ ଏ ଭଳି ଭୂମୂଳ ପରିବର୍ତ୍ତନ ଘଟିଥିଲା ।

କ୍ରମେ ଗଣରାଜାମାନଙ୍କର ନିର୍ବାଚନ ହେଉ ନାହିଁ । ବାପ ପରେ ପୁଅ ରାଜା ହେଲେ । ବଂଶ ପରମ୍ପରା କ୍ରମେ ଏହିପରି ଅଧିକାର ମିଳିଯିବା ଫଳରେ ସେମାନେ ବିଳାସୀ ଓ ଦାୟିତ୍ୱହୀନ ହୋଇ ପଡ଼ିଥିବା ସ୍ୱାଭାବିକ । ଉପରେ ବଜ୍ଜୀମାନଙ୍କ ସମ୍ପର୍କରେ ଲଳିତ ବିସ୍ତରରେ ଯେଉଁ ଅଂଶ ଉଦ୍ଧାର କରାଯାଇଛି ତହିଁରୁ ଜଣାଯାଏ ଯେ, ଗଣରାଜାମାନଙ୍କ ମଧ୍ୟରେ ପରସ୍ପର ପ୍ରତି ଅନାଦର ଭାବ ଥିଲା ଓ ପ୍ରତ୍ୟେକେ ନିଜ ନିଜକୁ ଏକମାତ୍ର ରାଜାବୋଲି ମନେ କରୁଥିଲେ । ବୁଦ୍ଧଙ୍କର ପରିନିର୍ବାଣ ପରେ ବଜ୍ଜୀମାନଙ୍କର ଗଣରାଜାମାନଙ୍କ ମଧ୍ୟରେ ଭେଦଭାବ ସୃଷ୍ଟି କରି ଅଜାତଶତ୍ରୁ ସେହି ରାଜ୍ୟ ଅଧିକାର କରି ପାରିଥିଲେ ।

ଗଣରାଜାମାନଙ୍କୁ ସାଧାରଣ ଜନତାର ସମର୍ଥନ ମିଳିବା ସମ୍ଭବପର ନ ଥିଲା । ଯଦି କୌଣସି ରାଜା ଇଚ୍ଛାନୁସାରେ ଲୋକଙ୍କ ଉପରେ ଅତ୍ୟାଚାର କରୁଥିଲା, ତାହାର ପ୍ରତିରୋଧ କରିବା ପାଇଁ ଲୋକଙ୍କଠାରେ ବା ଅନ୍ୟ ଗଣରାଜାଙ୍କଠାରେ ସାମର୍ଥ୍ୟ ନଥିଲା । ଏ ଭଳି ପରିସ୍ଥିତିରେ, ଜନସାଧାରଣଙ୍କ ଦୃଷ୍ଟିରୁ, ସମସ୍ତ ରାଜା ନଷ୍ଟ ହୋଇ ଜଣେ ମାତ୍ର ସର୍ବାଧିକାରୀ ରାଜା ରହିବା ଅଧିକ ବାଞ୍ଛନୀୟ ଥିଲା । ମହାରାଜାମାନେ ଯଦିଓ ଲୋକଙ୍କ ଉପରେ ବଳ ପ୍ରୟୋଗ କରୁଥିଲେ, ରାଜଧାନୀ ନିକଟରେ ସୁନ୍ଦରୀ ଯୁବତୀ ଦେଖିଲେ ବଳପୂର୍ବକ ତାଙ୍କୁ ଅନ୍ତଃପୁରକୁ ନେଇ ଆସୁଥିଲେ ଏବଂ ଯଦିଓ ଉଣା ଅଧିକେ ଏପରି ବହୁ ଅନାଚାର ସେମାନେ କରୁଥିଲେ, ତଥାପି ଜନସାଧାରଣଙ୍କ ଦୃଷ୍ଟିରୁ, ଗଣରାଜାଙ୍କ ଅତ୍ୟାଚାର ଅପେକ୍ଷା ଏ ମାନଙ୍କର ଅତ୍ୟାଚାର ଅଧିକ ନଥିଲା । ଗଣରାଜାମାନେ ପ୍ରତି ଗ୍ରାମରେ ରହୁଥିଲେ । ତେଣୁ ସେମାନଙ୍କ ଅତ୍ୟାଚାରରୁ କୌଣସି ଲୋକ ହୁଏତ ରକ୍ଷା ପାଇ ପାରୁ ନଥିବ । କରଭାର ଏବଂ ବେଠି,

ଏଥିରେ ସେମାନେ ଲୋକଙ୍କୁ ସନ୍ତୁଷ୍ଟ କରୁଥିଲେ । ଲୋକଙ୍କୁ ଏପରି ଉଦ୍ବୁଦ୍ଧ କରାଇବାର ଆବଶ୍ୟକତା, ଏକଛତ୍ରାଧିପ—ମହାରାଜାଙ୍କ ପକ୍ଷରେ ଆଦୌ ନ ଥିଲା । ନିଜର ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ସେ ନିୟମିତ ଭାବରେ କର ସ୍ୱରୂପ ପଇସା କଉଡ଼ି ପାଉଥିଲେ । ତେଣୁ ତୁଳନାତ୍ମକ ଦୃଷ୍ଟିରେ ଏକଛତ୍ରାଧିପତି - ଶାସନ ଜନସାଧାରଣଙ୍କ ପକ୍ଷରେ ଅଧିକ ହିତକର ବିବେଚିତ ହେବା ସ୍ୱାଭାବିକ ।

ଏକଛତ୍ରାଧିପତିଙ୍କ ରାଜ୍ୟରେ ପୁରୋହିତମାନଙ୍କର କାର୍ଯ୍ୟ ବଂଶ ପରମ୍ପରାରେ ବା ବ୍ରାହ୍ମଣମାନଙ୍କର ସମ୍ମତି କ୍ରମେ ବ୍ରାହ୍ମଣଙ୍କ ଦ୍ୱାରହିଁ ଅନୁଷ୍ଠିତ ହେଉଥିଲା । ପ୍ରଧାନମନ୍ତ୍ରୀ ପ୍ରଭୃତିଙ୍କ କାର୍ଯ୍ୟ ମଧ୍ୟ ବ୍ରାହ୍ମଣମାନଙ୍କ ଉପରେହିଁ ନ୍ୟସ୍ତ ରହୁଥିଲା । ଏହା ଫଳରେ ବ୍ରାହ୍ମଣମାନେ ଏକଛତ୍ରଶାସନ ପଦ୍ଧତିର ଦୃଢ଼ ସମର୍ଥକ ହୋଇ ଉଠିଲେ । ବିଚାର କରିବାର ଅଛି, ବ୍ରାହ୍ମଣ—ଗ୍ରନ୍ଥମାନଙ୍କରେ ଗଣଅଧିକାର ଗୃହୀତ, ରାଜାମାନଙ୍କର ନାମଗନ୍ଧ ସୁଦ୍ଧା ନାହିଁ । ଏଥିରୁ ଜଣାପଡୁଛି ବ୍ରାହ୍ମଣମାନଙ୍କୁ ଗଣଅଧିକାର ଗୃହୀତ ଶାସନ ପ୍ରଣାଳୀ ଆଦୌ ଭଲ ଲାଗୁ ନ ଥିଲା । 'ଅମ୍ବଟ୍ଠ ସୁତ୍ତ'ରୁ ଜଣାପଡ଼େ, ଶାକ୍ୟଙ୍କ ପରି ଗଣରାଜାମାନେ ବ୍ରାହ୍ମଣଙ୍କୁ ସମ୍ମାନ ଦେଖାଉ ନ ଥିଲେ । (୧) ଗଣରାଜାମାନେ ଯାଗ ଯଜ୍ଞ ପ୍ରଭୃତିକୁ ଆଦୌ ଉତ୍ସାହିତ କରୁ ନଥିଲେ । ଅନ୍ୟ ପକ୍ଷରେ, ଏକଛତ୍ରଶାସନ ମହାରାଜାମାନେ ଯାଗ ଯଜ୍ଞ ଚଳାଇବା ପାଇଁ ବରଂ ବ୍ରାହ୍ମଣମାନଙ୍କୁ ବଂଶ ପରମ୍ପରା କ୍ରମେ ଭୂମି ବା ଅନ୍ୟ ପ୍ରକାରର ପୁରସ୍କାର

---

(୧) ଚଣ୍ଡାଭୋ ଗୋତମ ସକ୍ୟ ଜାତି—ଇବ୍ଭା ସନ୍ତାଇବ୍ଭା ସମାନା ନ ବ୍ରାହ୍ମଣେ ରୁଂଗ କରେନ୍ତି, ନ ବ୍ରାହ୍ମଣେମାନେନ୍ତି ଇତ୍ୟାଦି
(ଦୀଘନିକାୟ, ଅମ୍ବଟ୍ଠସୁତ୍ତ)

ଦେବାର ବ୍ୟବସ୍ଥା କରୁଥିଲେ । ସୂତ୍ର ପିଟକରୁ ଜଣାଯାଏ, ବିମ୍ବିସାରଙ୍କର ରାଜ୍ୟରେ ସୋଣ ଦଣ୍ଡ, କୂଟଦନ୍ତ ପ୍ରଭୃତି ବ୍ରାହ୍ମଣମାନଙ୍କୁ ଏବଂ କୋସଳ ଦେଶର ପୋକ୍ଖର ସାତି (ପୌଷ୍କର ସାଦି) ଚାରୁକ୍ଖ (ଚାରୁଷ) ପ୍ରଭୃତି ବ୍ରାହ୍ମଣମାନଙ୍କୁ ସେପରି ବଡ଼ ବଡ଼ ଜାଗିର ପୁରସ୍କାର ମିଳିଥିଲା । ଏଣୁ **"ପରସ୍ପରଂ ଭାବୟନ୍ତଃ, ଶ୍ରେୟଃ ପରମ ବାପ୍ସ୍ୟଥ"** ନ୍ୟାୟରେ ବ୍ରାହ୍ମଣ ଜାତି ଏବଂ ଏକଚ୍ଛତ୍ରଶାସନ ପଦ୍ଧତି ଅଭିବୃଦ୍ଧି ଲାଭ କଲେ ।

ଅନ୍ୟ ଏକ ଅଧ୍ୟାୟରେ ଏ କଥା ସ୍ପଷ୍ଟ ପ୍ରତିପାଦିତ ହୋଇଅଛି ଯେ, ବୁଦ୍ଧଙ୍କ ସମୟରେ ବ୍ରାହ୍ମଣମାନଙ୍କ ଅପେକ୍ଷା ଶ୍ରମଣ (ପରିବ୍ରାଜକ) ଙ୍କ ମହତ୍ତ୍ୱ ବିଶେଷ ଭାବରେ ବୃଦ୍ଧି ପାଇଥିଲା । ଗଣଶକ୍ତିମୂଳକ ରାଜ୍ୟ ପ୍ରତି ଏହି ଶ୍ରମଣମାନଙ୍କର ଆଦର-ଅନୁରାଗ ଥିଲା । କାରଣ ସେ ସବୁ ରାଜ୍ୟରେ ଯାଗ ଯଜ୍ଞକୁ କେହି ଶ୍ରଦ୍ଧା କରୁ ନଥିଲେ । କିନ୍ତୁ ଅଧ୍ୟାତ୍ମଚିନ୍ତନରେ ବ୍ୟସ୍ତ ଥିବାରୁ, ରାଜନୀତିର ବିଷୟ ବିଚାର କରି, ଗଣଶକ୍ତିମୂଳକ ରାଜ୍ୟ ଗୁଡ଼ିକର ଉନ୍ନତି ବିଧାନର ମାର୍ଗ ଖୋଜି ବାହାର କରିବା ସେମାନଙ୍କ ପକ୍ଷରେ ସମ୍ଭବପର ନ ଥିଲା । ସେମାନେ ବୋଧହୁଏ ବିଚାରୁଥିଲେ ଯେ, ଯାହା କିଛି ଚାଲିଛି ଓ ଅଛି ତାହା ଅପରିହାର୍ଯ୍ୟ ।

ଗଣରାଜାମାନଙ୍କ ପ୍ରତି ବୁଦ୍ଧଦେବଙ୍କର ଆଦର ଥିବା ସ୍ପଷ୍ଟ ଜଣାଯାଏ । ବଜ୍ଜୀମାନଙ୍କର ଉନ୍ନତି ଲାଗି ବୁଦ୍ଧ ସାତୋଟି ନୀତିଶିକ୍ଷା ସେମାନଙ୍କୁ ଦେଇଥିଲେ ବୋଲି ଏଥିପୂର୍ବେ ଉଲ୍ଲେଖ କରାଯାଇଛି ; କିନ୍ତୁ ପୁରାତନ ଶାସନ ପ୍ରଣାଳୀ ମଧ୍ୟରୁ ନୂତନ ଓ ସୁବ୍ୟବସ୍ଥିତ ଶାସନ ପଦ୍ଧତି କିପରି ଉଦ୍ଭୂତ ହୋଇ ପାରିବ,

ସେ ସମ୍ପର୍କରେ ସେ ଚିନ୍ତା କରିଥିବାର କୌଣସି ପ୍ରମାଣ ନାହିଁ । ଗଣରାଜ୍ୟମାନଙ୍କରେ କୌଣସି ରାଜା ଯଦି ଅନ୍ୟାୟ କରେ, ତାହାହେଲେ ଅନ୍ୟ ରାଜାମାନେ ମିଳି ମିଶି ତାଙ୍କର ପ୍ରତିରୋଧ କରିବେ, ନା ଲୋକମାନେ ଏ ପ୍ରକାର ଗଣରାଜାମାନଙ୍କୁ ସମୟ ସମୟରେ ନିର୍ବାଚିତ କରି ସେମାନଙ୍କ ଉପରେ ନଜର କରିବାର ରକ୍ଷା କରିବେ, ଏ ସବୁ ବିଷୟରେ ବୌଦ୍ଧ ସାହିତ୍ୟରେ କୌଣସି ବିଚାର ଦେଖିବାକୁ ମିଳେ ନାହିଁ ।

ବୁଦ୍ଧଙ୍କର ଅନୁଗାମୀମାନେ ଗଣଶକ୍ତିମୂଳକ ରାଜ୍ୟର କଳ୍ପନା ପୂରାପୂରି ପରିତ୍ୟାଗ କରି ବସିଲେ । 'ଦୀଘ ନିକାୟ'ରେ ଆଦର୍ଶ ଶାସନ ପ୍ରଣାଳୀ ବର୍ଣ୍ଣନା ପ୍ରସଙ୍ଗରେ ଦୁଇଟି ସୁତ୍ତ ଅଛି । ଗୋଟିଏ ହେଉଛି 'ଚକ୍‌କବତ୍ତି ସୁତ୍ତ' ଓ ଅନ୍ୟଟି 'ମହା ସୁଦସ୍‌ସନ ସୁତ୍ତ' । ଏ ଦୁଇଟିରେ ଚକ୍ରବର୍ତ୍ତୀ ରାଜାଙ୍କ ମହତ୍ତ୍ୱ ଅତିରଞ୍ଜିତ ଭାବରେ ବର୍ଣ୍ଣିତ ହୋଇଛି । ବ୍ରାହ୍ମଣମାନଙ୍କର ସମ୍ରାଟ୍‌ ଏବଂ ଏହି ଚକ୍ରବର୍ତ୍ତୀ ମଧ୍ୟରେ ପ୍ରଭେଦ ଏତିକି ଯେ, ସମ୍ରାଟ୍‌ ଜନସାଧାରଣଙ୍କର ହିତ ଚିନ୍ତା ନ କରି, ବହୁ ଯାଗଯଜ୍ଞ ଅନୁଷ୍ଠାନ ପୂର୍ବକ କେବଳ ବ୍ରାହ୍ମଣମାନଙ୍କ ଉନ୍ନତି ଚିନ୍ତା କରୁଥିଲେ ଏବଂ 'ଚକ୍‌କବତ୍ତି' ସମସ୍ତ ଲୋକଙ୍କ ସହିତ ନ୍ୟାୟୋଚିତ ବ୍ୟବହାର କରି ସେମାନଙ୍କୁ ସୁଖୀ କରାଇବା ପାଇଁ ଚେଷ୍ଟିତ ଥିଲେ । ରାଜ୍ୟରେ ଶାନ୍ତି ସ୍ଥାପନ ହେବା ମାତ୍ରେ ଚକ୍ରବର୍ତ୍ତୀ ଲୋକଙ୍କୁ ଉପଦେଶ ଦିଅନ୍ତି—

**"ପାଣୀ ନ ହନ୍ତବ୍ବୋ, ଅଦିନ୍ନଂ ନାଦାତବ୍‌ବଂ, କାମେସୁ ମିଚ୍ଛା ନ ଚରିତବ୍‌ବା, ମୁସା ନ ଭାସିତବ୍‌ବା, ମଜ୍‌ଜଂ ନ ପାତବ୍‌ବଂ" ।**

ଅର୍ଥାତ୍, ପ୍ରାଣୀମାନଙ୍କୁ ହତ୍ୟା କରିବା ଉଚିତ ନୁହେଁ, ଚୋରି କରିବା ଉଚିତ ନୁହେଁ, ବ୍ୟଭିଚାର କରିବା ଉଚିତ ନୁହେଁ । ମିଥ୍ୟା କହିବା ଉଚିତ ନୁହେଁ । ମଦ୍ୟପାନ କରିବା ଉଚିତ ନୁହେଁ । ଅର୍ଥାତ୍, ବୌଦ୍ଧ ଗୃହସ୍ଥଙ୍କୁ ଯେଉଁ ପଞ୍ଚଶୀଳ (ନିୟମ) ଉପଦେଶ ଦିଆ ଯାଇଛି ସେଗୁଡ଼ିକୁ ପାଳନ କରିବା ପାଇଁ ଚକ୍ରବର୍ତ୍ତୀମାନେ ଉପଦେଶ ଦେଉଥିଲେ । ମୂଳରେ, କି ବ୍ରାହ୍ମଣ, କି ବୁଦ୍ଧଦେବଙ୍କ ଅନୁଗାମୀ—ଉଭୟଙ୍କ ଦୃଷ୍ଟିରୁ ଏକଛତ୍ରଶାସନ ପ୍ରଣାଳୀ ଶ୍ରେୟସ୍କର ବୋଲି ବିବେଚିତ ହେଲା । ଉଭୟଙ୍କ ମଧ୍ୟରେ ମୌଳିକ ସିଦ୍ଧାନ୍ତର କୌଣସି ପାର୍ଥକ୍ୟ ନ ଥିଲା ; କେବଳ ବାହ୍ୟ କଥାମାନଙ୍କରେହିଁ ପ୍ରଭେଦ ରହିଲା ।

କିନ୍ତୁ ସ୍ୱୟଂ ଗୌତମ ବୋଧିସତ୍ତ୍ୱଙ୍କ ଉପରେ ଗଣଶକ୍ତି-ଚାଳିତ ଶାସନ ପ୍ରଣାଳୀରେ ସ୍ପଷ୍ଟ ପ୍ରଭାବ ପଡ଼ିଥିଲା । ଭଗବାନ୍ ବୁଦ୍ଧ ଗଣଅଧିକାର ଚାଳିତ ରାଜ୍ୟଗୁଡ଼ିକର ଶାସନ ପ୍ରଣାଳୀକୁ ଭିତ୍ତି କରି "ସଂଘ"ର ସୃଷ୍ଟି କରି ଥାଇ ପାରନ୍ତି । ସୁତରାଂ ଏପରି ରାଜ୍ୟ ଗୁଡ଼ିକ ସମ୍ପର୍କରେ ଯାହା କିଛି ତଥ୍ୟ ମିଳୁଛି ସେ ସବୁ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ।

---

## ତୃତୀୟ ଅଧ୍ୟାୟ

# ସମକାଳୀନ ଧାର୍ମିକ ପରିସ୍ଥିତି

## ଭ୍ରାନ୍ତ ଧାରଣା

ଆଜକାଲି ଅନେକ ପଣ୍ଡିତଙ୍କର ଏହି ଧାରଣା ଅଛି ଯେ, ପ୍ରଥମେ 'ବ୍ରାହ୍ମଣଙ୍କର ସମସ୍ତ କର୍ତ୍ତବ୍ୟ ବେଦଜପରେ ପ୍ରତିଷ୍ଠିତ ଥିଲା । ପରେ ସେମାନେ ଯାଗ ଯଜ୍ଞ ଉପରେ ଅଧିକ ଗୁରୁତ୍ୱ ସ୍ଥାପନ କଲେ, ବେଦରୁ ଉପନିଷଦ୍—ଦର୍ଶନ ବାହାର କଲେ ଓ ତାହା ପରେ ବୁଦ୍ଧଦେବ ଏହି ଦର୍ଶନର ସଂସ୍କାର ବିଧାନ କରି ନିଜର ସମ୍ପ୍ରଦାୟ ପ୍ରତିଷ୍ଠା କଲେ । ଏହି ବିଚାରର ପ୍ରଣାଳୀ ନିତାନ୍ତ ଭ୍ରମପୂର୍ଣ୍ଣ । ଏହି ଭ୍ରମ ଧାରଣା ଦୂର ନ ହେବା ପର୍ଯ୍ୟନ୍ତ ବୌଦ୍ଧ-ଧର୍ମର ଯଥାର୍ଥତତ୍ତ୍ୱ ଉପଲବ୍ଧି କରି ହେବ ନାହିଁ । ଏଣୁ ଏହି ଅଧ୍ୟାୟରେ ସେ ଯୁଗର ଧାର୍ମିକ ପରିସ୍ଥିତି କିପରି ଥିଲା ତାହାର ସଂକ୍ଷେପ ପରିଚୟ ଦେବା ଉଚିତ ମନେ ହୁଏ ।

## ଯଜ୍ଞ ସଂସ୍କୃତିର ପ୍ରବାହ

ପ୍ରଥମ ଅଧ୍ୟାୟରେ କୁହାଯାଇଛି ଯେ, ଆର୍ଯ୍ୟ ଏବଂ ଦାସଙ୍କର ସଂଘର୍ଷରୁ ସପ୍ତସିନ୍ଧୁ ପ୍ରଦେଶରେ ଯାଗ ଯଜ୍ଞ ସଂସ୍କୃତିର ଉନ୍ମେଷ ହେଲା । ପରୀକ୍ଷିତ ଏବଂ ଜନମେଜୟଙ୍କ ରାଜତ୍ୱକାଳରେ ସେହି ବୈଦିକ ସଂସ୍କୃତି କୁରୁଦେଶରେ ନିଜକୁ ସୁପ୍ରତିଷ୍ଠିତ କଲା । କିନ୍ତୁ ସେହି ରାଜ୍ୟର ପୂର୍ବବର୍ତ୍ତୀ ଦେଶମାନଙ୍କରେ ଏ ସଂସ୍କୃତି ଶୀଘ୍ର ବ୍ୟାପି

ଯାଇ ନଥିଲା । କୁରୁଦେଶରେହିଁ ସେ ପ୍ରବାହର ଗତି ସୀମିତ ହୋଇ ଯାଇଥିଲା । ଏହାର ପ୍ରଧାନ କାରଣ ହେଉଛି ଏହି ଯେ, ପୂର୍ବ-ଦେଶମାନଙ୍କରେ, ମୁନି ଋଷିମାନଙ୍କର ଅହିଂସା ଓ ତପଶ୍ଚରଣ ଉପରେ ଗଭୀର ଆସ୍ଥା ସ୍ଥାପନ କରୁଥିବା ବହୁଲୋକ ବାସ କରୁଥିଲେ ।

## ତପସ୍ୱୀ ମୁନି-ଋଷି

'ଜାତକ ଅଟ୍ଠକଥାରେ ତପସ୍ୱୀ—ମୁନିଋଷିଙ୍କ ସମ୍ପର୍କରେ ଅନେକ କଥା ଅଛି । ସେ ସବୁରୁ ଜଣାଯାଏ, ମୁନି ଋଷିମାନେ ଜଙ୍ଗଲକୁ ଯାଇ ତପଶ୍ଚର୍ଯ୍ୟା କରୁଥିଲେ । ସେମାନଙ୍କ ତପସ୍ୟାର ମୁଖ୍ୟ ବିଷୟ ଥିଲା, କୌଣସି ପ୍ରାଣୀକୁ ଦୁଃଖ ନ ଦେବା ଏବଂ ଯେତେଦୂର ସମ୍ଭବ ''ଦେହ-ଦଣ୍ଡନ କରିବା । ଏହି ମୁନିଋଷିମାନେ ଏକାକୀ ବା ସଂଘବଦ୍ଧ ହୋଇ ରହୁଥିଲେ । ଗୋଟିଏ ଗୋଟିଏ ସଂଘରେ ପାଞ୍ଚଶହ ପର୍ଯ୍ୟନ୍ତ ତପସ୍ୱୀ-ପରିବ୍ରାଜକ ରହୁ ଥିବାର ଉଲ୍ଲେଖ ଅନେକ ଜାତକ କଥାରୁ ମିଳେ । ଅରଣ୍ୟରେ ମିଳୁଥିବା କନ୍ଦ ଓ ଫଳ ମୂଳ ପ୍ରଭୃତି ପଦାର୍ଥ ଉପରେ ସେମାନେ ନିର୍ଭର କରୁଥିଲେ । କୌଣସି କୌଣସି ସମୟରେ ଲୁଣିଆ ଓ ଖଟା ପଦାର୍ଥ ପାଇବା ପାଇଁ ଗ୍ରାମବାସୀମାନଙ୍କ ନିକଟକୁ ଯାଉଥିଲେ । (୧) ଲୋକେ ସେମାନଙ୍କୁ ବଡ଼ ଆଦର କରୁଥିଲେ ଓ ସେମାନେ ଅତି ଆବଶ୍ୟକୀୟ ପଦାର୍ଥମାନ ସେମାନଙ୍କୁ ଦେଉଥିଲେ । ଲୋକଙ୍କ ଉପରେ ମୁନି ଋଷିମାନଙ୍କର ବଡ଼ ପ୍ରଭାବ ଥିଲା । ତଥାପି ଲୋକଙ୍କୁ ସେମାନେ ଧର୍ମୋପଦେଶ ଦେଉ ନଥିଲେ । ଲୋକେ ସେମାନଙ୍କୁ ଦେଖି ଅହିଂସା-ଭାବ ପୋଷଣ କରୁଥିଲେ ।

---

(୧) ଲୋଣ-ଅମ୍ବିଲ-ସେବନାର୍ଥଂ ।

# ମୁନି ଋଷିମାନଙ୍କର ସରଳତା

ଲୋକଙ୍କର ଗୁଲ ଚଳଣି ବା ଛନ୍ଦ କପଟ ଜାଣୁ ନ ଥିବାରୁ ତପସ୍ୱୀମାନେ ବେଳେ ବେଳେ ଗୃହସ୍ଥାଶ୍ରମରେ ଆବଦ୍ଧ ହୋଇ ଯାଉଥିଲେ । ସ୍ତ୍ରୀମାନଙ୍କ ଦ୍ୱାରା ଋଷ୍ୟ ଶୃଙ୍ଗଙ୍କୁ ଅଣା ଯାଇଥିବା ଏବଂ ସତ୍ୟବତୀଙ୍କ ସହିତ ପରାଶରଙ୍କ ରତିକ୍ରୀଡ଼ା ପ୍ରଭୃତିର ବର୍ଣ୍ଣନା ପୁରାଣମାନଙ୍କରେ ଅଛି । ଏହା ବ୍ୟତୀତ, ମୁନିଋଷିମାନେ କୁପଥରେ ଗ୍ଳଳିତ ହୋଇଥିବା ସମ୍ପର୍କରେ ଅନେକ କଥା ଜାତକ ଅଟ୍ଠକଥାରୁ ଜଣାଯାଏ । ତଳେ ତହିଁରୁ ଗୋଟିଏ କଥା ଅବତାରଣା କରାଯାଉଛି ।

ପୂର୍ବ କାଳରେ, ବାରାଣସୀ ନଗରୀରେ ବ୍ରହ୍ମଦତ୍ତ ରାଜତ୍ୱ କରୁଥିବା ସମୟରେ କାଶୀ ରାଜ୍ୟରେ ଔଦିଚ୍ୟ ବ୍ରାହ୍ମଣ ବଂଶରେ ବୋଧିସତ୍ତ୍ୱ ଜନ୍ମଗ୍ରହଣ କରିଥିଲେ । ପ୍ରାପ୍ତବୟସ୍କ ହେବା ପରେ ସେ ସନ୍ୟାସ ଗ୍ରହଣ କଲେ ଓ ପାଞ୍ଚଶତ ଶିଷ୍ୟଙ୍କ ସହିତ ହିମାଳୟର ଉପତ୍ୟକାରେ ଆଶ୍ରମ ସ୍ଥାପନ କଲେ । ବର୍ଷା ଋତୁ ଉପଗତ ହେବାରୁ ଶିଷ୍ୟମାନେ ତାଙ୍କୁ କହିଲେ – "ଗୁରୁ ଦେବ ! ଆମେ ଜନବସତିକୁ ଯାଇ ଲୁଣିଆ ଓ ଖଟା ପଦାର୍ଥ ଖାଇ ଆସିବୁ ।" ଗୁରୁଦେବ କହିଲେ, "ହେ ଶିଷ୍ୟମାନେ ! ମୁଁ ଏଠାରେ ରହୁଛି, ତୁମେ ଯାଇ ଦେହର ଅନୁକୂଳ ପଦାର୍ଥ ଭୋଜନ କରି ଆସ ।"

ତା ପରେ ତପସ୍ୱୀମାନେ ବାରାଣସୀରେ ପହଞ୍ଚିଲେ । ସେମାନଙ୍କର କୀର୍ତ୍ତି କଳାପ ଶୁଣି ସ୍ୱୟଂ ରାଜା ଆସି, ନିଜ ବଗିଚାରେ ଚାତୁର୍ମାସ୍ୟା କଟାଇବାକୁ ସେମାନଙ୍କୁ ଅନୁରୋଧ କଲେ । ସେମାନଙ୍କର ଖାଇବା ପିଇବାର ବ୍ୟବସ୍ଥା ନିଜ ଅନ୍ତଃପୁରରେ

କରାଇଲେ । ଦିନେ ସହରରେ ସୁରାପାନ ମହୋତ୍ସବ ହେଉଥିଲା । ତପସ୍ୱୀମାନଙ୍କୁ ଜଙ୍ଗଲରେ ମଦିରା ମିଳିବ କୁଆଡ଼ୁ ? ତେଣୁ ରାଜା ସେମାନଙ୍କୁ ଉତ୍ତମ ମଦ ପିଇବାକୁ ଦେଲେ । ସୁରାପାନ କରି ତପସ୍ୱୀମାନେ ଅଣଆୟତ୍ତ ହୋଇ ନାଚିଲେ, ଗାଇଲେ ଓ କେତେ ଜଣ ମଧ୍ୟ ଅସଂଯତ ଭାବରେ ଗଡ଼ାଗଡ଼ି ହେଲେ । ପ୍ରକୃତିସ୍ଥ ହେବା ପରେ ସେମାନେ ବଡ଼ ଅନୁତାପ କଲେ । ରାଜାଙ୍କ ଉଦ୍ୟାନ ତ୍ୟାଗ କରି ସେମାନେ ହିମାଳୟ ପଥେ ଯାତ୍ରା କଲେ । ଆଶ୍ରମରେ ପହଞ୍ଚି ଗୁରୁଦେବଙ୍କୁ ପ୍ରଣାମ କରି ଏକ ପାଖରେ ବସିଗଲେ । ଗୁରୁଦେବ ସେମାନଙ୍କୁ ପଚାରିଲେ—'ଜନବସତିରେ ତୁମର ଭିକ୍ଷା ପାଇଁ କୌଣସି ଅସୁବିଧା ହୋଇ ନାହିଁ ତ ?' ସେମାନେ ଉତ୍ତରରେ କହିଲେ, 'ହେ ଗୁରୁଦେବ ! ଆମ୍ଭେମାନେ ବଡ଼ ସୁଖରେ ଥିଲୁ, କିନ୍ତୁ ଯେଉଁ ପଦାର୍ଥ ପାନ କରିବା ଉଚିତ ନୁହେଁ ତାକୁ ମଧ୍ୟ ପାନ କରିଅଛୁ ।

**ଅପାୟିହ୍ମ ଅନଚ୍ଚିହ୍ମ ଅଗାୟିହ୍ମ ରୁଦାମ୍ହ ଚ**
**ବିସଞ୍ଞି କରଣିଂ ପିତ୍ୱା ଦିଟ୍ଠା ନାହୁହ୍ମ ବାନରା ॥ (୧)**

ଅର୍ଥାତ୍, ଆମେ ମଦ ପିଇଲୁ, ନାଚିଲୁ, ଗାଇଲୁ ଏବଂ କାନ୍ଦିଲୁ । ମଦ ପିଇ ଆମେ ଯେ ମାଙ୍କଡ଼ ହୋଇ ନ ଗଲୁ ଏତିକି ମାତ୍ର ବାକି ରହିଲା ।

ମୁନିଋଷିମାନଙ୍କ ମଧ୍ୟରେ ଜାତିଭେଦ ନ ଥିଲା—ତପସ୍ୱୀ—ମୁନିଋଷିମାନଙ୍କ ମଧ୍ୟରେ କୌଣସି ପ୍ରକାର ଜାତିଭେଦ ନ ଥିଲା । ଯେକୌଣସି ଜାତିର ବ୍ୟକ୍ତି ତପସ୍ୱୀ ହୋଇ ଯିବା ପରେ, ଶ୍ରମଣ

(୧) ସୁରାପାନ ଜାତକ ସଂ ୮୧

ସମାଜରେ ତାହାର ସମ୍ମାନ ବଢ଼ି ଯାଉଥିଲା । ଉଦାହରଣ ସ୍ୱରୂପ— ଜାତକରେ ଲିଖିତ ମାତଙ୍ଗ ଋଷିଙ୍କ କଥା ଏଠାରେ ସଂକ୍ଷେପରେ କୁହା ଯାଉଛି । (୧)

ବାରାଣସୀ ନଗର ବାହାରେ ଏକ ଚଣ୍ଡାଳ କୂଳରେ ମାତଙ୍ଗ ଜନ୍ମ ହୋଇଥିଲେ । ବଡ଼ ହେବା ପରେ ଦିନେ ବାଟରେ ଯାଉଥିବା ବେଳେ ବାରାଣସୀର ଶେଠଙ୍କର କନ୍ୟା ଦୃଷ୍ଟମଙ୍ଗଳିକା ଆସୁଥିବାର ଦେଖିଲେ । ତାଙ୍କୁ ଦେଖି ମାତଙ୍ଗ ଏକ ପାଖରେ ଠିଆ ହୋଇ ରହିଲେ । ଦୃଷ୍ଟମଙ୍ଗଳିକା ନିଜ ସଙ୍ଗରେ ଥିବା ଭୃତ୍ୟମାନଙ୍କୁ ସେ କିଏ ବୋଲି ପଚାରିଲା । ଉତ୍ତରରେ ସେମାନେ କହିଲେ—ଏ ଜଣେ ଚଣ୍ଡାଳ । ଏହା ଶୁଣି ଦୃଷ୍ଟମଙ୍ଗଳିକା ତାଙ୍କୁ ଅପଶକୁନ ମନେ କରି ସେହି ସ୍ଥାନରୁହିଁ ଫେରିଗଲା । ଦୃଷ୍ଟ-ମଙ୍ଗଳିକା ମାସେ ଦୁଇ ମାସରେ ଥରେ ଥରେ ଉଦ୍ୟାନକୁ ଯାଇ ନିଜର ସଙ୍ଗୀମାନଙ୍କୁ ଓ ସେଠାକୁ ଆସୁଥିବା ଅନ୍ୟ ଲୋକଙ୍କୁ ପଇସା କଉଡ଼ି ବାଣ୍ଟୁଥିଲେ । ସେଥର ସେ ବାଟରୁ ଫେରିଯିବା ଫଳରେ (ଉଦ୍ୟାନକୁ ଆସିଥିବା) ଲୋକେ ବଡ଼ ନିରାଶ ହେଲେ । ସେମାନେ ମାତଙ୍ଗଙ୍କୁ କଦର୍ଯ୍ୟ ଭାବରେ ଆଘାତ କରି ସଂଜ୍ଞାହୀନ ଅବସ୍ଥାରେ ବାଟରେ ପକାଇ ଦେଇ ଚାଲିଗଲେ । ଅଳ୍ପ ସମୟ ପରେ ମାତଙ୍ଗ ଚେତା ପାଇ ଦୁଷ୍ଟମଙ୍ଗଳିକାର ପିତାଙ୍କ ଘରଠାକୁ ଗଲେ ଓ ତାଙ୍କ ଦ୍ୱାରର ପାହାଚ ଉପରେ ଗଡ଼ି ପଡ଼ିଲେ । ନିଜକୁ କାହିଁକି ଏପରି କଷ୍ଟ ଦେଉଛ ବୋଲି ତାଙ୍କୁ ପଚରା ଯିବାରୁ ସେ କହିଲେ, 'ଦୃଷ୍ଟମଙ୍ଗଳିକାକୁ ନ ନେଇ ମୁଁ ଏଠାରୁ କଦାପି ଯିବି ନାହିଁ' । ସେ ସେପରି ଭାବରେ ସାତଦିନ ପର୍ଯ୍ୟନ୍ତ ପଡ଼ି

(୧) ମାତଙ୍ଗ ଜାତକ, ସଂ ୪୧୭ ।

ରହିଲେ । ଶେଷରେ ଶେଠ ନିରୁପାୟ ହୋଇ ନିଜ କନ୍ୟାକୁ ତାଙ୍କୁ ସମର୍ପଣ କଲେ । ତାକୁ ସାଙ୍ଗରେ ନେଇ ମାତଙ୍ଗ ଚଣ୍ଡାଳ ଗ୍ରାମକୁ ଚାଲିଗଲେ ।

ଯଦିଓ ଦୃଷ୍ଟମଙ୍ଗଳିକା ମାତଙ୍ଗଙ୍କ ସହିତ ପତ୍ନୀ ଭାବରେ ଚଳିବାକୁ ପ୍ରସ୍ତୁତ ଥିଲି ତଥାପି ତା ସଙ୍ଗେ ପତି ଭାବରେ ଚଳିବାକୁ ମାତଙ୍ଗ ଇଚ୍ଛା କଲେ ନାହିଁ । ସେ ଅରଣ୍ୟକୁ ଯାଇ କଠୋର ତପସ୍ୟା ଆରମ୍ଭ କରିଦେଲେ । ସାତଦିନ ପରେ ମାତଙ୍ଗ ଘରକୁ ଫେରି ଦୃଷ୍ଟମଙ୍ଗଳିକାକୁ କହିଲେ—"ତୁମେ ଏପରି ଘୋଷଣା କରିଦିଅ ଯେ, ମୋର ସ୍ୱାମୀ ମାତଙ୍ଗ ନୁହନ୍ତି । ସେ ହେଉଛନ୍ତି ମହାବ୍ରହ୍ମ । ପୂର୍ଣ୍ଣିମା ଦିନ ଚନ୍ଦ୍ରମଣ୍ଡଳ ତଳେ ସେ ଆତ୍ମପ୍ରକାଶ କରିବେ ।" ଦୃଷ୍ଟମଙ୍ଗଳିକା ସମସ୍ତଙ୍କୁ ସେହି କଥା କହିଲି । ପୂର୍ଣ୍ଣିମା ରାତିରେ ଦୃଷ୍ଟମଙ୍ଗଳିକାର ଦ୍ୱାର ସମ୍ମୁଖରେ ଚଣ୍ଡାଳ ଗ୍ରାମର ବହୁ ଲୋକ ଉପସ୍ଥିତ ହେଲେ । ମାତଙ୍ଗଋଷି ଚନ୍ଦ୍ରମଣ୍ଡଳରୁ ତଳକୁ ଖସିଲେ ଓ ନିଜ କୁଟୀରରେ ପ୍ରବେଶ କରି ଆଙ୍ଗୁଠିରେ ଦୃଷ୍ଟମଙ୍ଗଳିକାର ନାଭିକୁ ସ୍ପର୍ଶ କଲେ ।

ସେଠାରେ ରୁଣ୍ଡ ହୋଇଥିବା ବ୍ରହ୍ମ ଭକ୍ତମାନେ ଏହି ଅଦ୍ଭୁତ ଦୃଶ୍ୟ ଦେଖିଲେ ଓ ଦୃଷ୍ଟମଙ୍ଗଳିକାକୁ ବାରାଣସୀକୁ ନେଇଗଲେ । ନଗରର ମଧ୍ୟ ଭାଗରେ ସେମାନେ ଗୋଟାଏ ବଡ଼ ମଣ୍ଡପ ନିର୍ମାଣ କରି ଦୃଷ୍ଟମଙ୍ଗଳିକାର ପୂଜା ଆରମ୍ଭ କରିଦେଲେ । ଲୋକେ ତାହାର ଆନୁଗତ୍ୟ ସ୍ୱୀକାର କଲେ । ନ' ମାସ ପରେ ସେହି ମଣ୍ଡପରେ ଦୃଷ୍ଟମଙ୍ଗଳିକାର ଗୋଟିଏ ପୁଅ ଜନ୍ମ ହେଲା । ମଣ୍ଡପରେ ଜନ୍ମ ହୋଇଥିବାରୁ ଶିଶୁଟିର ନାମ ରଖାଗଲା ମାଣ୍ଡବ୍ୟ । ଲୋକେ ସେହି ମଣ୍ଡପ ନିକଟରେ ଗୋଟାଏ ପ୍ରାସାଦ ନିର୍ମାଣ

କଲେ । ନିଜ ପୁତ୍ର ସହିତ ମଙ୍ଗଳିକାକୁ ସେଠାରେ ରଖାଇଲେ । ତାହାକୁ ପୂଜା କରିବା ତ ଆଗରୁ ଆରମ୍ଭ ହୋଇଥିଲା ।

ପିଲା ଦିନରୁ ମାଣ୍ଡବ୍ୟଙ୍କୁ ପଢ଼ାଇବା ପାଇଁ ବଡ଼ ବଡ଼ ବୈଦିକ ପଣ୍ଡିତ ସ୍ୱତଃ ପ୍ରବୃତ୍ତ ହୋଇ ସେଠାକୁ ଆସିଲେ । ତିନି ବେଦରେ ସେ ପ୍ରବୀଣତା ଲାଭ କଲେ । ବ୍ରାହ୍ମଣମାନଙ୍କୁ ମଧ୍ୟ ସେ ବହୁତ ସାହାଯ୍ୟ କଲେ । ଦିନେ ମାତଙ୍ଗ ଋଷି ଭିକ୍ଷା ମାଗିବାକୁ ମାଣ୍ଡବ୍ୟଙ୍କର ଦ୍ୱାରଦେଶକୁ ଯାଇଥିଲେ । ମାଣ୍ଡବ୍ୟ ତାଙ୍କୁ କହିଲେ- "କୌପୁନୀ ପିନ୍ଧି ପିଶାଚ ପରି ତୁମେ କଏ ହୋ, ଏଠି ଛିଡ଼ା ହୋଇଛ ?" ମାତଙ୍ଗ କହିଲେ—'ତୁମର ଏଠାରେ ବହୁତ ଅନ୍ନ-ପାନ ଅଛି । ଏହି କାରଣରୁ ମତେ ମଧ୍ୟ ତହିଁରୁ କିଛି ମିଳି ଯିବ ବୋଲି ଏଠି ଛିଡ଼ା ହୋଇଛି ।

ମାଣ୍ଡବ୍ୟ କହିଲେ —'କିନ୍ତୁ ଏହି ଖାଦ୍ୟ କେବଳ ବ୍ରାହ୍ମଣ-ମାନଙ୍କ ପାଇଁ, ତୋ ଭଳି ନୀଚ ଲୋକଙ୍କୁ ଦେବା ପାଇଁ ନୁହେ' । ଦୁହିଁଙ୍କ ମଧ୍ୟରେ ବହୁ ସମୟ ଯାଏ ଏ ଭଳି ବାଗ୍‌ବିତଣ୍ଡା ଲାଗିଲା । ଶେଷରେ ମାଣ୍ଡବ୍ୟ ନିଜର ତିନିଜଣ ଦ୍ୱାର ରକ୍ଷକଙ୍କ ଦ୍ୱାରା ମାତଙ୍ଗଙ୍କୁ ଧକ୍‌କା ଦେଇ ବାହାର କରିଦେଲେ । ଏହାର ପରିଣତିରେ ମାଣ୍ଡବ୍ୟଙ୍କର ବାକ୍‌ଶକ୍ତି ବିନଷ୍ଟ ହୋଇଗଲା । ଆଖି ଲେଉଟି ଗଲା । ନିଶ୍ଚେଷ୍ଟ ହୋଇ ସେ ତଳେ ପଡ଼ି ରହିଲେ । ତାଙ୍କ ସଙ୍ଗରେ ଥିବା ବ୍ରାହ୍ମଣମାନଙ୍କର ମଧ୍ୟ କେତେକାଂଶରେ ଏହି ଦଶା ଘଟିଲା । ସେମାନଙ୍କର ମୁହିଁ ବୁଲି ଗଲା—ମୁହିଁ ମାଡ଼ି ସେମାନେ ତଳେ ପଡ଼ି ରହିଲେ । ଏହି ଦୃଶ୍ୟ ଦେଖି ମାଙ୍ଗଳିକା ଭୟ ଭୀତ ହୋଇ ପଡ଼ିଲା । ଜଣେ ଦରିଦ୍ର ତପସ୍ୱୀର ପ୍ରଭାବରେ ( ଅଭିଶାପ ) ତାଙ୍କ ପୁତ୍ରର ଓ ଅନ୍ୟ ବ୍ରାହ୍ମଣମାନଙ୍କର ସେପରି

ଦୁର୍ଗନ୍ଧ ହୋଇଥିବାର ଜାଣି ସେହି ତପସ୍ୱୀଙ୍କୁ ସେ ଖୋଜିବାକୁ ବାହାରି ପଡ଼ିଲେ । ଏଣେ ମାତଙ୍ଗ ଋଷି ଗୋଟିଏ ସ୍ଥାନରେ ବସି ଭିକ୍ଷାରୂପେ ମିଳିଥିବା ଖାଦ୍ୟ ଖାଉଥିଲେ । ଦୃଷ୍ଟମଙ୍ଗଳିକା ତାଙ୍କୁ ଚିହ୍ନି ପାରିଲେ ଓ ନିଜ ପୁତ୍ରକୁ କ୍ଷମା କରିବା ପାଇଁ ତାଙ୍କୁ ପ୍ରାର୍ଥନା କଲେ । ମାତଙ୍ଗ ଋଷି ନିଜ ଅଇଁଠାରୁ କିଛି ଦେଇ ତାଙ୍କୁ କହିଲେ— "ଏହା ନେଇ ତୁମ ପୁଅ ଓ ବ୍ରାହ୍ମଣମାନଙ୍କ ମୁହଁରେ ପକାଇଦେଲେ ସେମାନେ ସୁସ୍ଥ ହୋଇଯିବେ । ଦୃଷ୍ଟମଙ୍ଗଳିକା ସେପରି କରିବାରୁ ସମସ୍ତେ ସୁସ୍ଥ ହୋଇଗଲେ । ଚଣ୍ଡାଳର ଅଇଁଠାରେ ବ୍ରାହ୍ମଣମାନେ ସୁସ୍ଥ ହୋଇଗଲେ, ଏହି କଥା ସେତେବେଳେ ସାରା ବାରଣସୀରେ ପ୍ରଚାର ହୋଇଗଲା ଲୋକ-ଲଜ୍ଜାରେ ବ୍ରାହ୍ମଣମାନେ ସେ ସ୍ଥାନ ତ୍ୟାଗ କରି ମଧ୍ୟରାଜ୍ୟ (ରାଷ୍ଟ୍ର) ଆଡ଼କୁ ଚାଲିଗଲେ; କିନ୍ତୁ ମାଣ୍ଡବ୍ୟ ସେହିଠାରେ ରହିଲେ ।

ପରେ ମାତଙ୍ଗ ଋଷି ବୁଲି ବୁଲି ମଧ୍ୟରାଜ୍ୟରେ ପହଞ୍ଚିଲେ । ମାଣ୍ଡବ୍ୟଙ୍କ ସଙ୍ଗେ ଥିବା ବ୍ରାହ୍ମଣମାନେ, ମାତଙ୍ଗ ସେଠାକୁ ଉପଗତ ହୋଇଥିବାର ଜାଣି ପାରି ମଧ୍ୟରାଜ୍ୟର ରାଜାଙ୍କୁ କହିଲେ—'ଏଠାକୁ ନୂଆ ହୋଇ ଆସିଥିବା ଭିକାରି ଜଣେ ମାୟାବୀ ଲୋକ ଓ ସମଗ୍ର ଦେଶକୁ ସେ ନାଶ କରିଦେବ ।' ଏହା ଶୁଣି ରାଜା, ମାତଙ୍ଗଙ୍କୁ ଖୋଜିବା ପାଇଁ ନିଜ ସୈନ୍ୟମାନଙ୍କୁ ପଠାଇ ଦେଲେ । ସେମାନେ ତାଙ୍କୁ ଖୋଜୁ ଖୋଜୁ ଗୋଟିଏ ପାଚେରି ନିକଟରେ ଭିକ୍ଷାନ୍ନ ଖାଉଥିବା ଅବସ୍ଥାରେ ତାଙ୍କୁ ଦେଖିଲେ ଓ ତାଙ୍କୁ ପ୍ରାଣରେ ମାରି ପକାଇଲେ । ଏଥିରେ ଦେବତାମାନେ କ୍ଷୁବ୍ଧ ହେଲେ ଓ ସେହି ରାଜ୍ୟକୁ ନଷ୍ଟଭ୍ରଷ୍ଟ କରି ପକାଇଲେ । ମାତଙ୍ଗଙ୍କ ହତ୍ୟା ଫଳରେ ମଧ୍ୟରାଜ୍ୟକୁ ଅସ୍ତ ବ୍ୟସ୍ତ କରି ଦିଆ ଯାଇଥିବା କଥା ଅନେକ ଜାତକରେ ଉଲ୍ଲିଖିତ ହୋଇଛି । ଏ କଥାରେ କିନ୍ତୁ କେତେଦୂର

ସମ୍ଭୃତା ଅନ୍ମ କନ୍ମ ହେବନାହିଁ । ମାତଙ୍ଗ ଜାତି ଚଣ୍ଡାଳ ଥିଲେ ଓ ତାଙ୍କୁ ବ୍ରାହ୍ମଣ ଏବଂ କ୍ଷତ୍ରିୟମାନେ ମଧ୍ୟ ପୂଜା କରୁଥିଲେ । ଏହା ବସଲ ସୂତ୍ରର ନିମ୍ନୋକ୍ତ ଗାଥାମାନଙ୍କରୁ ନିଃସନ୍ଦେହ ଭାବରେ ଜଣା ଯାଉଛି ।

**ତଦମିନାପି ଜାନାଥ ଯଥା ମେଦଂ ନିଦସ୍ସନଂ**
**ଚଣ୍ଡାଲପୁତ୍ତୋ ସୋପାକୋ ମାତଂଗୋ ଇତି ବିସ୍ସୁତୋ ।**
**ସୋୟସଂ ପରମଂ ପତ୍ତୋ ମାତଂଗୋୟଂ ସୁଦୁଲ୍ଲଭଂ**
**ଆଗଚ୍ଛୁ ତସ୍ସୁପଟ୍ଠାନଂ ଖତ୍ତିୟା ବ୍ରାହ୍ମଣା ବହୂ**
**ଦେବଯାନଂ ଅଭିରୁହ୍ୟ ବିରଜଂ ସୋ ମହାପଥଂ**
**କାମରାଗଂ ବିରାଜେତ୍ୱା ବ୍ରହ୍ମଲୋକପଗୋ ଅହୁ**
**ନ ନଂ ଜାତି ନିବାରେସି ବ୍ରହ୍ମଲୋକୂପ ପତ୍ତିୟା ।**

ଅର୍ଥାତ୍,

୧ । ଏଥିପାଇଁ ମୁଁ ଗୋଟିଏ ଉଦାହରଣ ଦେଉଛି ।
କୁକୁର ମାଂସ ଭକ୍ଷକ ଚଣ୍ଡାଳର ପୁତ୍ର ମାତଙ୍ଗ ନାମରେ ପ୍ରସିଦ୍ଧ ।

୨ । ସେହି ମାତଙ୍ଗ ଅତ୍ୟନ୍ତ ମହିମାମୟ ଓ ଦୁର୍ଲ୍ଲଭ ଯଶ ଅର୍ଜନ କରିଥିଲେ । ତାଙ୍କର ସେବା କରିବାକୁ ବହୁ ବ୍ରାହ୍ମଣ ଓ କ୍ଷତ୍ରିୟ ମଧ୍ୟ ଉପସ୍ଥିତ ହେଉଥିଲେ ।

୩ । ବିଷୟ ବାସନାକ୍ଷୟକାରୀ ମହାନ୍ ମାର୍ଗରେ, ଦେବଯାନରେ (ସମାଧି) ଚଢ଼ି ସେ ବ୍ରହ୍ମଲୋକକୁ ଯାଇଥିଲେ । ବ୍ରହ୍ମଲୋକରେ ଜନ୍ମ ହେବାପାଇଁ ତାଙ୍କର ଜନ୍ମ ପ୍ରତିବନ୍ଧକ ହୋଇ ନଥିଲା ।

**ଶମ୍ବୂକର କଥା କାଳ୍ପନିକ**—ଶମ୍ବୂକ ନାମକ ଜଣେ ଶୂଦ୍ର ଅରଣ୍ୟରେ ତପସ୍ୟା କରୁଥିଲା । ତାହା ଫଳରେ ଗୋଟିଏ

ବ୍ରାହ୍ମଣର ପୁତ୍ର ମରଗଲା । ଶ୍ରୀରାମଚନ୍ଦ୍ର ଏ ଘଟଣା ଜାଣିବାପରେ ଅରଣ୍ୟକୁ ଯାଇ ଶମ୍ବୂକର ଶିରଚ୍ଛେଦନ କର ପକାଇଲେ । ବ୍ରାହ୍ମଣ ପୁତ୍ର ପୁନର୍ଜୀବନ ଲଭ କଲା । ଏ କଥା ରାମାୟଣରେ ବସ୍ତୃତଭାବରେ ବର୍ଣ୍ଣିତ ହୋଇଛି । ଏହାକୁ ସୁନ୍ଦର ଭାବରେ ଚୟଣ କର ଭବଭୂତି ଉତ୍ତରରାମ ଚରିତରେ ସମାବେଶିତ କରଛନ୍ତି; କନ୍ତୁ ଏହିପର ଘଟଣା ବୁଦ୍ଧଙ୍କ ପୂର୍ବରୁ କମ୍ବା ଭାରତରେ ବୌଦ୍ଧଧର୍ମର ସ୍ଥିତିକାଳରେ କେବେ ଘଟିଥିବାର କୌଣସି ପ୍ରମାଣ ମିଳୁନାହିଁ । ଏଇ କଥାକୁ ଯେ ଲେଖିଲେ, ତାଙ୍କ ଅଭିପ୍ରାୟ ହେଉଛି ଯେ, ରାଜାଙ୍କୁ ଏହିପର ବ୍ୟବହାର କରିବାକୁ ପଡ଼ିବ । ଅର୍ଥାତ୍, ପ୍ରଜାଙ୍କ ହିତ ପାଇଁ ରାଜା ଯାହା କିଛି କରିପାରନ୍ତି । ଏତିକ ମାତ୍ର ସତ୍ୟକଥା ପର ଏଥିରୁ ଜଣା ଯାଉଛି ।

**ଶ୍ରମଣ**—ଅରଣ୍ୟରେ ରହୁଥିବା ମୁନଋଷିମାନଙ୍କୁ ତାପସ ବା ପରବ୍ରାଜକ କୁହା ଯାଉଥିଲା । ସେମାନେ କପର ତପସ୍ୟା କରୁଥିଲେ, ସେ ବିଷୟରେ ବିଶେଷ କିଛି ଜଣା ଯାଏ ନାହିଁ । ଏହି ତପସ୍ୱୀ ସଙ୍ଘମାନଙ୍କ ମଧ୍ୟରୁ ଜନବସତିମାନଙ୍କରେ ଭ୍ରମଣ କର ଲୋକଙ୍କୁ ଉପଦେଶ ଦେବା ପାଇଁ ଭିନ୍ନ ଭିନ୍ନ ସଙ୍ଘ ଗଢ଼ି ଉଠିଥିଲା । 'ଶ୍ରମଣ' ଶବ୍ଦ 'ଶ୍ରମ୍' ଧାତୁରୁ ନିଷ୍ପନ୍ନ ହୋଇଛି । ଏହାର ଅର୍ଥ ହେଉଛି, ପରିଶ୍ରମକାରୀ । ଯେଉଁପର ଆଜକାଲି ଯୁଗରେ ଶାରୀରିକ ଶ୍ରମ କରୁଥିବା କୁଲି ମୁଲିଆଙ୍କ ମହତ୍ତ୍ୱ ବଢ଼ି ଯାଇଛି, ସେହିପର ବୁଦ୍ଧଙ୍କ ସମୟରେ ଶ୍ରମଣମାନଙ୍କର ମହତ୍ତ୍ୱ ବଢ଼ି ଯାଇଥିଲା । କନ୍ତୁ ଶ୍ରମିକ ଓ ଶ୍ରମଣମାନଙ୍କ ମଧ୍ୟରେ ପାର୍ଥକ୍ୟ ଅଛି । ଶ୍ରମିକମାନେ ସମାଜ ପାଇଁ ଆବଶ୍ୟକୀୟ ପଦାର୍ଥ ଉତ୍ପାଦନ କରିବାକୁ ପରିଶ୍ରମ କରନ୍ତି । କନ୍ତୁ ଶ୍ରମଣମାନେ ସମାଜର

ଆଧ୍ୟାତ୍ମିକ ଜାଗୃତି ପାଇଁ ଶ୍ରମ ସ୍ୱୀକାର କରନ୍ତି । ଏହି କାରଣରୁ ବୋଧହୁଏ ସେମାନଙ୍କୁ 'ଶ୍ରମଣ' କୁହାଯାଉଥିଲା । ଏମାନେ ତପସ୍ୟାରେ ଆପଣାର ଶରୀରକୁ ଶ୍ରମ ବା କଷ୍ଟ ଦେଉଥିଲେ । ଯଦିଓ ବଣରେ ରହୁଥିବା ମୁନିଋଷିମାନେ ତପସ୍ୟା ସାଧନରେ ନିଜ ନିଜର ଶରୀରକୁ କଷ୍ଟ ଦେଉଥିଲେ ତଥାପି ସେମାନଙ୍କୁ ଶ୍ରମଣ କୁହା ଯାଉ ନଥିଲା । ଏହି ହେତୁରୁ ମନେହୁଏ, ଯେଉଁମାନେ ଲୋକଙ୍କ ହିତ ପାଇଁ ଶ୍ରମ କରୁଥିଲେ, ସେହିମାନେହିଁ 'ଶ୍ରମଣ' ନାମରେ ଅଭିହିତ ହେଉଥିଲେ । ଅନ୍ୟ ଭାଷାରେ କହିଲେ ମୁନିଋଷିମାନେ କେବଳ ନିଜ ପାଇଁ ଶ୍ରମ କରୁଥିଲେ । ତେଣୁ ସେମାନଙ୍କୁ ଶ୍ରମଣ କୁହା ଯାଉ ନଥିଲା ।

## ତେଷଠି ଟି ଶ୍ରମଣ ପନ୍ଥା

ବୁଦ୍ଧଦେବଙ୍କ ସମୟରେ ଗୋଟିଏ ବଡ଼ ତେଷଠିଟି ଶ୍ରମଣ ପନ୍ଥା (ସମ୍ପ୍ରଦାୟ) ଥିଲା । "ପାନିଚ ଛାଣି ପାନିଚ ସଟ୍ଠି,"— ଏହି ବାକ୍ୟରେ ଯେଉଁ ତେଷଠିଟି ମତର ଉଲ୍ଲେଖ ଅଛି, ସେ ମଧ୍ୟରେ ବୌଦ୍ଧମତ ବା ପନ୍ଥାର ଗଣନା ହୋଇଥିଲା କି ନାହିଁ କହିବା କଷ୍ଟକର । ଯଦି ବୌଦ୍ଧ ପନ୍ଥା ତହିଁରେ ପରିଗଣିତ ହୋଇଥିଲା ବୋଲି କୁହାଯାଏ ତାହାହେଲେ ପାଲି ସାହିତ୍ୟରେ ଅନେକ ସ୍ଥଳରେ ଉଲ୍ଲିଖିତ 'ବାଷଠି ମତ' (ଦ୍ୱାସଟ୍ଠି ଦିଟ୍ଠିଗତାନି)ର ଅର୍ଥ ସ୍ପଷ୍ଟ ହୋଇଯିବ । ତଦ୍ୱାରା ନିଃସନ୍ଦେହରେ ପ୍ରତିପାଦିତ ହେଉଛି ଯେ, ବୁଦ୍ଧଦେବଙ୍କର ଶ୍ରମଣ ପନ୍ଥା ବ୍ୟତୀତ ସେ ସମୟରେ ଅନ୍ୟ ବାଷଠି ଗୋଟି ଶ୍ରମଣ ପନ୍ଥା ବିଦ୍ୟମାନ ଥିଲା । ଦୀଘ ନିକାୟର, ପ୍ରଥମ, ବ୍ରହ୍ମଜାଲ ସୁତ୍ତରେ ଏହି ବାଷଠିଟି ଶ୍ରମଣ ପନ୍ଥାର ମତ ବା ତତ୍ତ୍ୱ ବିସ୍ତୃତଭାବରେ ବୁଝାଇବାର ଚେଷ୍ଟା କରା-

ଯାଇଛି । କିନ୍ତୁ ସେଗୁଡ଼ିକ ସବୁ କୃତ୍ରିମ ବା କାଳ୍ପନିକ ପରି ମନେହୁଏ । ଯେଉଁବେଳେ ଏହି ସୂତ୍ର ଲେଖା ଯାଇଥିଲା ସେତେବେଳେ ବାଷଠିରୁ ବେଶୀ ପନ୍ଥାର ବିଶେଷ ତଥ୍ୟ ଜାଣିବାର ଉପାୟ ନଥିଲା । ତେଣୁ ସୂତ୍ରରଚକ ବାଷଠିଟି ସଂଖ୍ୟା ପୂର୍ଣ୍ଣ କରିବା ପାଇଁ ନୂତନ ଚରିତ କଳ୍ପନା କରି ଏହି ସୂତ୍ରରେ ଭର୍ତ୍ତିକରି ଦେଇଛନ୍ତି । 'ବାଷଠିଟି ଶ୍ରମଣ ପନ୍ଥା ସମ୍ପର୍କରେ ବିଶେଷ ତଥ୍ୟ ଜାଣିବାର ଉପାୟ ନାହିଁ,'—ଏଥିର କାରଣ ହୋଇପାରେ, ପ୍ରସିଦ୍ଧ ଶ୍ରମଣପନ୍ଥାଗୁଡ଼ିକର ସଂଖ୍ୟାର ଅଳ୍ପତା । ବଡ଼ ବଡ଼ ସମ୍ପ୍ରଦାୟଗୁଡ଼ିକ ମଧ୍ୟରେ କ୍ଷୁଦ୍ର କ୍ଷୁଦ୍ର 'ପନ୍ଥା'ଗୁଡ଼ିକ ସମାବିଷ୍ଟ ହୋଇ ଯାଇଥିଲା । ବର୍ତ୍ତମାନ ଯୁଗର 'ବାବା' 'ବୈରାଗୀ' ପ୍ରଭୃତିଙ୍କ ପନ୍ଥା ଗଣନା କଲେ ସଂଖ୍ୟା ଯେ କି ବିରାଟ ହେବ, କହି ହେଉ ନାହିଁ । କିନ୍ତୁ ସେମାନଙ୍କ ମଧ୍ୟରୁ 'କବୀର', 'ଦାଦୂ', 'ଉଦାସୀ' ପ୍ରଭୃତି ପନ୍ଥାର ସଂଖ୍ୟା ବିଶେଷ ନୁହେଁ ।

**ତପସ୍ୟାର ସ୍ୱରୂପ**—ବୁଦ୍ଧଙ୍କ ସମୟରେ କେବଳ ବିରାଟକାୟ ଛଅଟି ଶ୍ରମଣସଂଘ ଥିଲା । ସେମାନଙ୍କ ମଧ୍ୟରେ 'ନିର୍ଗ୍ରନ୍ଥ' ଶ୍ରମଣମାନଙ୍କ ସମ୍ପ୍ରଦାୟର ନାମ ସର୍ବପ୍ରଥମେ ଦେଖାଯାଏ । ଏହି ପନ୍ଥାର ଐତିହାସିକ ସଂସ୍ଥାପକ ଥିଲେ ପାର୍ଶ୍ୱମୁନି । ଏହାଙ୍କର ପରିନିର୍ବାଣ ବୁଦ୍ଧଙ୍କ ଜନ୍ମର ୧୯୩ ବର୍ଷ ପୂର୍ବେ ହୋଇଥିବା ଅନୁମିତ ହୁଏ । ତାଙ୍କର ଅନ୍ତତଃ ୪୦।୫୦ ବର୍ଷ ପୂର୍ବରୁ ପାର୍ଶ୍ୱତୀର୍ଥଙ୍କର ନିଜର ଧର୍ମ ଉପଦେଶ ଦେଇ ଆସିଥିଲେ । ତାଙ୍କର ଏବଂ ଅନ୍ୟ ଶ୍ରମଣସଂଘ ନାୟକମାନଙ୍କର ମତାବଳୀର ବିଚାର ପରେ କରାଯିବ । ଏଠାରେ କେବଳ ସେମାନଙ୍କର ତପସ୍ୟାର ସ୍ୱରୂପ ଉଲ୍ଲେଖ କରା ଯାଉଛି, ଯହିଁରୁ ତାପସମାନଙ୍କର ତପସ୍ୟା ବିଷୟରେ ମଧ୍ୟ ସାଧାରଣ ଜ୍ଞାନ

ଜଣାଯିବ । ଶ୍ରମଣମାନଙ୍କର ତପସ୍ୟାର ସ୍ୱରୂପ ଅନେକ ସୂତ୍ରରେ ଲିପିବଦ୍ଧ ହୋଇଛି । ଅନ୍ୟାନ୍ୟ ସୂତ୍ର ମଧ୍ୟରେ ମଜ୍‌ଝିମ ନିକାୟର 'ମହା ସୀହ ନାଦ' ସୂତ୍ରରେ ତପସ୍ୟାର ଯେଉଁ ବର୍ଣ୍ଣନା ଦେଖାଯାଏ ତାହା ବିଶେଷ ଗୁରୁତ୍ୱ ପୂର୍ଣ୍ଣ । ତଳେ ତାହାଁର ସଂକ୍ଷିପ୍ତସାର ଦିଆଯାଉଛି ।

ଭଗବାନ୍ ବୁଦ୍ଧ ସାରିପୁତ୍ରଙ୍କୁ କହୁଛନ୍ତି—"ହେ ସାରିପୁତ୍ର ! ମୋର ମନେ ପଡ଼ୁଛି ଯେ ମୁଁ ଚାରି ପ୍ରକାର ତପସ୍ୟା କରିଥିଲି । ମୁଁ ତପସ୍ୱୀ ହେଲି, 'ରୂକ୍ଷ' ହେଲି, ଜୁଗୁପ୍‌ସୀ ହେଲି ଏବଂ ପ୍ରବିବିକ୍ତ ହେଲି ।

**ତପସ୍ୱିତା**—"ହେ ସାରିପୁତ୍ର ! ମୋର ତପସ୍ୱିତା କିପରି ଥିଲା ମୁଁ କହୁଛି ।

(କ) ମୁଁ ଉଲଗ୍ନ ହୋଇ ରହୁଥିଲି । ଲୌକିକ ବିଧି ପାଳନ କରୁ ନଥିଲି । ହାତ ଆଞ୍ଜୁଳିରେ ଭିକ୍ଷା କରି ଖାଉଥିଲି । ଯଦି କେହି କହୁଥିଲା, 'ଆପଣ ଏ ଆଡ଼େ ଆସନ୍ତୁ' ମୁଁ ତାହା ଶୁଣୁ ନଥିଲି । ଯଦି କେହି କହୁଥିଲା 'ଆପଣ ଛିଡ଼ା ହୋଇ ରହନ୍ତୁ,' ମୁଁ ତାହା କଥା ଶୁଣୁ ନଥିଲି । ବସିଥିବା ସ୍ଥାନକୁ ଯଦି କେହି ଅନ୍ନ ଆଣି ଦେଉଥିଲା କିମ୍ବା ନିଜ ପାଇଁ ରାନ୍ଧିଥିବା ଅନ୍ନ ପାଇଁ ନିମନ୍ତ୍ରଣ କରୁଥିଲା ମୁଁ ତାହା ଗ୍ରହଣ କରୁ ନଥିଲି । ଯେଉଁ ପାତ୍ରରେ ଅନ୍ନ ରନ୍ଧା ଯାଉଥିଲା ସେହି ପାତ୍ରରେ ସେହି ଅନ୍ନ ମତେ ଯଦି କେହି ଦେଉଥିଲା, ମୁଁ ତାକୁ ମଧ୍ୟ ଗ୍ରହଣ କରୁ ନ ଥିଲି । କାଠର ବା ପଥରର ପାତ୍ରରେ ଯଦି କେହି ଅନ୍ନ ଆଣି ଦେଉଥିଲା ତାହା ମଧ୍ୟ ମୁଁ ରଖୁ ନଥିଲି । ଏରୁଣ୍ଡି ବା କାନ୍ଥର ଆରପଟେ ରହି ଯଦି କେହି

ମତେ ଭିକ୍ଷା ଦେଉଥିଲେ ତାହା ମଧ୍ୟ ମୁଁ ନେଉ ନ ଥିଲି । ଦୁଇଜଣ ଖାଇ ବସିବାବେଳେ ସେମାନଙ୍କ ମଧ୍ୟରୁ ଜଣେ ଉଠିପଡ଼ି ଯଦି ଭିକ୍ଷା ଦେଉଥିଲେ, ମୁଁ ତାହା ଗ୍ରହଣ କରୁ ନ ଥିଲି । ଗର୍ଭିଣୀ, ସନ୍ତାନକୁ ସ୍ତନ୍ୟ ଦେଉଥିବା ନାରୀ କମ୍ବା ରତି କ୍ରୀଡ଼ାରତ ସ୍ତ୍ରୀ ମତେ ଭିକ୍ଷା ଦେଲେ ମୁଁ ତାହା ଗ୍ରହଣ କରୁ ନଥିଲି । ମେଳାରେ ବା ତୀର୍ଥ ପ୍ରଭୃତି ସ୍ଥଳରେ ତିଆରି ହେଉଥିବା ଅନ୍ନକୁ ମଧ୍ୟ ମୁଁ ଗ୍ରହଣ କରୁ ନ ଥିଲି । ଯେଉଁଠାରେ କୁକୁର ଠିଆ ହୋଇଥାଏ କମ୍ବା ମାଛି ଜମି ଭଣ ଭଣ ହେଉଥାନ୍ତି ସେପରି ସ୍ଥାନରୁ ମୁଁ ଭିକ୍ଷା ନେଉ ନଥିଲି । ମତ୍ସ୍ୟ, ମାଂସ, ସୁରା ପ୍ରଭୃତି ଖାଉ ନ ଥିଲି (୧) । ଗୋଟିଏ ଘରୁ ଭିକ୍ଷା ନେଇ ଥରେ ମାତ୍ର ଖାଇ ମୁଁ ରହୁଥିଲି । ଦୁଇଟି ଘରୁ ଭିକ୍ଷା ନେଇ ଦୁଇଗ୍ରାସ, ତିନଘରୁ ତିନି ଗ୍ରାସ, ଏପରି ଭାବରେ ସାତଦିନ ପର୍ଯ୍ୟନ୍ତ ବଢ଼ାଇ ବଢ଼ାଇ ସାତ ଦିନରେ ସାତଗ୍ରାସ ଖାଇ ରହୁଥିଲି । ଗୋଟାଏ କାଠ ଡଙ୍କାରେ ଡଙ୍କାଏ ଅନ୍ନ ମୁଁ ଗ୍ରହଣ କରୁଥିଲି । ସାତ ଦିନଯାଏ ବଢ଼ାଇ ବଢ଼ାଇ ସାତଡଙ୍କା ବା ଅଣକ ପରିମାଣରେ ଅନ୍ନ ଗ୍ରହଣ କରି, (ସାତଗ୍ରାସ ଖାଇ) ଜୀବନ ନିର୍ବାହ କରୁଥିଲି । ଦିନେ ଛଡ଼ା ଦିନେ ଅର୍ଥାତ୍ ତୃତୀୟ ଦିନ ଭୋଜନ କରୁଥିଲି । ଦୁଇଦିନ ଛାଡ଼ି ଅର୍ଥାତ୍ ପ୍ରତ୍ୟେକ ଚତୁର୍ଥଦିନ ଭୋଜନ କରୁଥିଲି । ଏ ପ୍ରକାର ଉପବାସର ସଂଖ୍ୟା ବଢ଼ାଇ ସପ୍ତାହରେ ଥରେ ବା ଡଙ୍କାଏ ମାତ୍ର ଭୋଜନ କରୁଥିଲି ।

(ଖ) ଶାକ, ସୁଆଁ, ଗୁଜଲ, ମିବାର, ମୋଚି ଫିଙ୍ଗି ଦେଇଥିବା ଚର୍ମଖଣ୍ଡ, ଶିଉଳୀ, ଗଣ୍ଡ, ଘାସ ବା ଗାଈର ଗୋବର ପ୍ରଭୃତି ଖାଇ

---

(୧) ଜୈନସାଧୁ ମତ୍ସ୍ୟ—ମାଂସ ଗ୍ରହଣ କରନ୍ତି, କିନ୍ତୁ ସୁରା ପିଇବାର ଅବୋ ପ୍ରମାଣ ନାହିଁ । ୧୧ଶ ଅଧ୍ୟାୟରେ ମାଂସହାର ଚର୍ଚ୍ଚା କରି ଯାଉଛି ।

ମୁଁ ରହୁଥିଲି । ବଣର ଏକ ବୃକ୍ଷର ବଲ୍କଲ ପିନ୍ଧି ଚଳୁଥିଲି । ମୁଁ ଶଣପଟ ବା ମୋଟା ଲୁଗାର କୌପୀନ ପିନ୍ଧୁଥିଲି । ମନୁଷ୍ୟ ବାଳରେ ନିର୍ମିତ କମ୍ବଳ, ଘୋଡ଼ାବାଳ ତିଆରି କମ୍ବଳ, ଉଲୂକ ପକ୍ଷୀର ପର ନିର୍ମିତ ବସ୍ତ୍ର ସୁଦ୍ଧା ରୂପେ ବ୍ୟବହାର କରୁଥିଲି ।

(ଗ) ମୁଁ ଦାଢ଼ି, ନିଶ ଏବଂ ବାଳ ଉପୁଡ଼ାଇ ଦେଉଥିଲି । ମୁଁ ଛିଡ଼ା ହୋଇ ତପସ୍ୟା କରୁଥିଲି । ମୁଁ ଆଣ୍ଠୁ ମାଡ଼ି ବସି ତପସ୍ୟା କରୁଥିଲି ।

(ଘ) ମୁଁ କଣ୍ଟାର ଶେଯରେ ଶୋଉଥିଲି । ଦିନରେ ତିନଥର ଗାଧୋଉଥିଲି । ଏ ପ୍ରକାର ଅନେକ ଭାବରେ ମୁଁ ଦେହକୁ ପୀଡ଼ା ଦେଉଥିଲି । ଏହା ଥିଲା ମୋର ତପସ୍ୟା ।

**ରୁକ୍ଷତା**—"ହେ ସାରିପୁତ୍ର ! ମୋର ରୁକ୍ଷତା କିପରି ଥିଲା କହୁଛି ।

(କ) ଅନେକ ବର୍ଷରେ ଧୂଳିରେ ମୋର ଶରୀର ଉପରେ ଏକପ୍ରସ୍ଥ ମଳି ଜମି ଯାଇଥିଲା । ଯେପରି କୌଣସି କେନ୍ଦୁ ପତ୍ରରେ ଅନେକ ବର୍ଷର ଧୂଳି ଲାଗି ରହେ ସେହିପରି ମଧ୍ୟ ମୋ ଦେହରେ ଲାଗି ରହିଥିଲା । କିନ୍ତୁ ମୋର ସେ ଧୂଳିକୁ ମୁଁ ନିଜେ ସଫା କରିବି କିମ୍ବା କୌଣସି ବ୍ୟକ୍ତି ସଫା କରିଦେବ ତାହା ମୁଁ ଚାହୁଁ ନଥିଲି । ମୋ ରୁକ୍ଷତା ଏପରି ଥିଲା ।

**ଜୁଗୁପ୍ସା**—ବର୍ତ୍ତମାନ, ମୋର ଜୁଗୁପ୍ସା କିପରି ଥିଲା ମୁଁ କହୁଛି ।

(କ) ମୁଁ ଖୁବ୍ ସାବଧାନରେ ଯିବା ଆସିବା କରୁଥିଲି । ଜଳ ବିନ୍ଦୁରେ ସୁଦ୍ଧା ମୋର ଦୟା ଜାତ ହେଉଥିଲା । ଏପରିକି ବିଷମ ଅବସ୍ଥାରେ ପଡ଼ିଥିବା କ୍ଷୁଦ୍ର ପ୍ରାଣୀ ମଧ୍ୟ ମୋ ହାତରେ ନ

ମରୁ ଏଥିପାଇଁ ମୁଁ ବଡ଼ ସତର୍କ ରହୁଥିଲି । ମୋ ଜୁଗୁପ୍‌ସା ଏହିପରି ଥିଲା । (ଜୁଗୁପ୍‌ସାର ଅର୍ଥ ହେଉଛି ହିଂସା ପ୍ରତି ବିମୁଖତା)

**ପ୍ରବିବିକ୍ତତା**—ହେ ସାରିପୁତ୍ର ! ମୁଁ ମୋର ପ୍ରବିବିକ୍ତତା କିପରି ଥିଲା କହୁଛି ।

(ଖ) ମୁଁ ଜଙ୍ଗଲରେ ଥିବାବେଳେ କୌଣସି ଗାଈ ଜଗାଳି, ଘାସ କଟାଳି, କାଠୁରିଆ କିମ୍ବା ଜଙ୍ଗଲ ରକ୍ଷକକୁ ଦେଖିଲେ ଜଙ୍ଗଲର ଏକାନ୍ତ ପଦା ସ୍ଥାନକୁ ଦଉଡ଼ି ଯାଉଥିଲି । ମୋର ଲକ୍ଷ୍ୟଥିଲା ସେମାନେ ମୋତେ ନ ଦେଖନ୍ତୁ କି ମୁଁ ସେମାନଙ୍କୁ ନ ଦେଖେ । କୌଣସି ଅରଣ୍ୟ ମୃଗ ମନୁଷ୍ୟଙ୍କୁ ଦେଖିଲେ ଯେପରି ଦଉଡ଼ି ଚାଲିଯାଏ ମୁଁ ସେପରି ଦଉଡ଼ି ଯାଉଥିଲି । ମୋ ପ୍ରବିବିକ୍ତତା ଏପରି ଥିଲା ।

**କଦର୍ଯ୍ୟ ଭୋଜନ**—"ଯେଉଁଠାରେ ଗାଈ ବନ୍ଧା ହୋଇ ଥାଆନ୍ତି, ସେଠାରୁ ସେମାନେ ଚରିବାକୁ ଚାଲିଯିବାପରେ, ମୁଁ ହାତ ଓ ଗୋଡ଼ର ବଳରେ ଯାଇ ବାଛୁରିର ଗୋବର ଖାଉଥିଲି । ମୋର ମଳମୂତ୍ର ରୋଧ ହୋଇ ନଥିବା ପର୍ଯ୍ୟନ୍ତ ମୁଁ ତାହାରି ଉପରେ ନିର୍ଭର କରି ଚଳୁଥିଲି । ମୋର ଖାଦ୍ୟ ଏହିପରି କଦର୍ଯ୍ୟ ଥିଲା ।

**ଉପେକ୍ଷା**— (କ) "ମୁଁ କୌଣସି ଏକ ଭୟଙ୍କର ଅରଣ୍ୟରେ ରହୁଥିଲି । ଅରଣ୍ୟ ଏପରି ଭୟଙ୍କର ଥିଲା ଯେ କୌଣସି ବାହାରର ପ୍ରାଣୀ ତହିଁରେ ପ୍ରବେଶ କଲେ ମାନେ ତାହାର ରୋମ ଟାଙ୍କୁରି ଉଠୁଥିଲା । ଶୀତ ଦିନେ ଭୀଷଣ ବରଫ ବୃଷ୍ଟି ହେଉଥିବା-ବେଳେ ମୁଁ ଖୋଲା ସ୍ଥାନରେ ରହୁଥିଲି ଓ ଦିନରେ ଅରଣ୍ୟ ଭିତରେ ପଶି ଯାଉଥିଲି । ଗ୍ରୀଷ୍ମଦିନର ଶେଷଭାଗରେ ମୁଁ ମୁକ୍ତ

ଗଗନ ତଳେ ରହୁଥିଲି ଓ ରାତିରେ ଅରଣ୍ୟ ଭିତରକୁ ଚାଲି ଯାଉଥିଲି । ଶ୍ମଶାନରେ ମନୁଷ୍ୟଙ୍କର ହାଡ଼କୁ ମାଣ୍ଡିକରି ମୁଁ ଶୋଉଥିଲି । ଯଦିଓ ଗ୍ରାମବାସୀମାନେ ଆସି ମୋ ଉପରେ ଛେପ ପକାଉଥିଲେ, ମୂତ୍ର ତ୍ୟାଗ କରୁଥିଲେ, ଧୂଳି ଫିଙ୍ଗୁଥିଲେ ମୋ କାନରେ ଖ୍ରୋଚ ଖ୍ରୋଚ ଗୋଡ଼ ପକାଇ ଦେଉଥିଲେ ତଥାପି ସେମାନଙ୍କ ପ୍ରତି ମୋର ପାପବୁଦ୍ଧି ଜନ୍ମୁ ନ ଥିଲା ।

**ଆହାର ବ୍ରତ**—(ଖ) "କେତେକ ଶ୍ରମଣ ବା ବ୍ରାହ୍ମଣଙ୍କର ଧାରଣା ଅଛି ଯେ ଆହାରଦ୍ୱାରା ଆତ୍ମ ଶୁଦ୍ଧି ହୁଏ । ସେମାନେ କେବଳ ବରକୋଳି ଖାଆନ୍ତି, ବରକୋଳିର ଚୂର୍ଣ୍ଣ ଖାଆନ୍ତି, ବରକୋଳି ପାଚିଲ ପିଅନ୍ତି ବା ତହିଁରେ କୌଣସି ଖାଦ୍ୟ ପ୍ରସ୍ତୁତ କରି ଖାଇ ରହନ୍ତି । ମୋର ସ୍ପଷ୍ଟ ମନେ ଅଛି, ମୁଁ ଗୋଟିଏ ମାତ୍ର ବରକୋଳି ଖାଇ ରହୁଥିଲି । ହେ ସାରିପୁତ୍ର ! ତୁମେ ମନେ କର ନାହିଁ ଯେ ସେ ସମୟରେ ବରକୋଳିର ଆକାର ଖୁବ୍ ବଡ଼ଥିଲା । ଆଜିକାଲି ବରକୋଳି ଯେପରି ଗୋଟିଏ କ୍ଷୁଦ୍ରକାୟ ଫଳ ସେତେବେଳେ ମଧ୍ୟ ସେହିପରି ଥିଲା । ଗୋଟିଏ ମାତ୍ର ବରକୋଳି ଖାଇ ରହିବା ଫଳରେ ମୋର ଶରୀର ଅତ୍ୟନ୍ତ କ୍ଷୀଣ ହୋଇ ଯାଇଥିଲା । କଲି ବା ଆଖୁ ଗଛର ଗଣ୍ଠି ପରି ମୋ ଶରୀରର ଗଣ୍ଠି ସବୁ ସ୍ପଷ୍ଟ ଦେଖା ଯାଉଥିଲା । ମୋର କଟିବନ୍ଧ ଓଟର ପାଦ ପରି ଦେଖା-ଯାଉଥିଲା । ମୋ ମେରୁଦଣ୍ଡ ଡାକୁଡ଼ି ମାଳାପରି ଦେଖା ଯାଉଥିଲା । ଭାଙ୍ଗି ଯାଇଥିବା ଘରର ଖମ୍ବ ସବୁ ଯେପରି ତଳ ଉପର ହୋଇ-ଯାଏ ମୋର ଛାତିର ପଞ୍ଜରା ହାଡ଼ ସେହିପରି ହୋଇ ଯାଇଥିଲା । ମୋର ଆଖି ଗଭୀର କୂପରେ ପଡ଼ିଥିବା ନକ୍ଷତ୍ରର ପ୍ରତିବିମ୍ବ ପରି ଭିତରକୁ ପଶି ଯାଇଥିଲା । ଯେପରି କଞ୍ଚା ଲାଉକୁ କାଟି

ଖପରେ ପକାଇ ଦେଲେ ଶୁଖି ଯାଏ ସେହିପରି ମୋର ମୁଣ୍ଡର ଖପୁରି ଶୁଖି ଯାଇଥିଲା । ପେଟରେ ହାତ ବୁଲାଇଲାବେଳେ ମେରୁ-ଦଣ୍ଡାକୁ ହାତ ଲାଗି ଯାଉଥିଲା । ପୁଣି ମେରୁଦଣ୍ଡା ଉପରେ ହାତ ବୁଲାଇଲାବେଳେ ହାତକୁ ପେଟର ଚମଡ଼ା ଲାଗି ଯାଉଥିଲା । ଏପରିକି ମୋର ମେରୁଦଣ୍ଡା ଓ ପେଟର ଚମଡ଼ା ଏକ ହୋଇ ଯାଇଥିଲା । ମୁଁ ଶୌଚ ବା ପରିସ୍ରା କରିବାକୁ ବସିଲାବେଳେ ଗଡ଼ି ଯାଉଥିଲି । ଶରୀର ଉପରେ ହାତ ବୁଲାଇଲାବେଳେ ମୋ ଦେହରୁ ବାଳ ଝଡ଼ି ଯାଉଥିଲା । ଉପବାସ ହେତୁରୁ ମୋର ଅବସ୍ଥା ଏପରି ହୋଇ ଯାଇଥିଲା । କେତେକ ଶ୍ରମଣ ଏବଂ ବ୍ରାହ୍ମଣ ମୁଗ ଖାଇ ରହୁଥିଲେ । ଖସା ବା ଗୁଡ଼ଲ ଖାଇ ରହୁଥିଲେ । ସେମାନ-ଙ୍କର ଧାରଣା ଯେ ଏସବୁ ପଦାର୍ଥରେ ଆତ୍ମଶୁଦ୍ଧି ହୁଏ । ହେ ସାରିପୁତ୍ର ! ମୁଁ ଗୋଟିଏ ମାତ୍ର ଖସା, ଗୋଟିଏ ମାତ୍ର ଗୁଡ଼ଲ ବା ମୁଗ ଖାଇ ରହୁଥିଲି । ତୁମେ ମନେ କର ନାହିଁ ଯେ ସେ ସମୟରେ ଏ ଗୁଡ଼ିକର ଆକାର ବଡ଼ ଥିଲା । ଆଜକାଲି ଏଗୁଡ଼ିକର ଦାନାର ଆକାର ଯେପରି ଦେଖୁଛ ସେ ସମୟରେ ମଧ୍ୟ ସେପରି ଥିଲା । ଏହି ଉପବାସ ହେତୁରୁ ମୋର ଏପରି ଅବସ୍ଥା ହୋଇ ଯାଇଥିଲା ।"

ବୁଦ୍ଧ ଘୋଷାଚାର୍ଯ୍ୟ କହିଅଛନ୍ତି ଯେ, ଭଗବାନ୍ ବୁଦ୍ଧ କୌଣସି ଏକ ପୂର୍ବ-ଜନ୍ମରେ ଏପରି ତପସ୍ୟା କରିଥିଲେ । "ସେ ସମୟରେ ବରକୋଳି ପ୍ରଭୃତି ପଦାର୍ଥ ଆଜକାଲି ପରି ଥିଲା"— ଏଭଳି ଉଲ୍ଲେଖରୁ ବୁଦ୍ଧ ଘୋଷାଚାର୍ଯ୍ୟଙ୍କ ମତ ଯୁକ୍ତିଯୁକ୍ତ ପ୍ରତୀତ ହେଉଛି । କହିବା ଅନାବଶ୍ୟକ ଯେ ବୁଦ୍ଧଙ୍କ ସମୟରେ ପ୍ରଚଳିତ ବିଭିନ୍ନ ତପସ୍ୟାର ନିରର୍ଥକତା ଦେଖାଇବାପାଇଁ ସୂତ୍ର ରଚକ ଏ ସବୁ କଥା ଭଗବାନ୍ ବୁଦ୍ଧଙ୍କ ମୁହଁରେ କୁହାଇଛନ୍ତି ।

'କ' ବର୍ଗରେ ତପସ୍ୟା ବିଧିଗୁଡ଼ିକ ନିର୍ଗ୍ରନ୍ଥ (ଜୈନ ସାଧୁ) ମାନେ ପାଳନ କରନ୍ତି । ଆଜକାଲି ମଧ୍ୟ ବାଳ ଉପାଡ଼ିବା ଉପବାସ କରିବା ପ୍ରଭୃତି ବିଧି ଏମାନଙ୍କ ମଧ୍ୟରେ ପ୍ରଚଳିତ ।

'ଖ' ବର୍ଗମାନଙ୍କରେ ବର୍ଣ୍ଣିତ ତପସ୍ୟା ବିଧି ଅନ୍ୟ ଅନେକ ପନ୍ଥାର ଶ୍ରମଣ ଓ ବ୍ରାହ୍ମଣମାନେ ପାଳନ କରନ୍ତି । ପ୍ରାୟ ସେ ସବୁ ବିଧି, 'ବାବା' 'ବୈରାଗୀ' ପ୍ରଭୃତି ଲୋକଙ୍କ ମଧ୍ୟରେ ଆଜି ସୁଦ୍ଧା ପ୍ରଚଳିତ ।

**ମଳ ମୂତ୍ର ଖାଇବା ପ୍ରଥା**—ନିଜର ମଳମୂତ୍ର ଖାଇବା ପ୍ରଥା ଆଜକାଲି ମଧ୍ୟ ଅଘୋରୀ ପ୍ରଭୃତି ପନ୍ଥାରେ ଚଳୁଥିବା ଦେଖାଯାଏ । କାଶୀରେ ତୈଲଙ୍ଗସ୍ୱାମୀ ନାମକ ଜଣେ ପ୍ରସିଦ୍ଧ ସନ୍ନ୍ୟାସୀ ଥିଲେ । ସେ ଉଲଗ୍ନ ରହୁଥିଲେ । କାଶୀରେ ତାଙ୍କ ପରି ଅନେକ ଉଲଗ୍ନ ସନ୍ନ୍ୟାସୀ, ପରମହଂସ ମଧ୍ୟ ରହୁଥିଲେ । ସେହି ସମୟରେ ସେଠାରେ ଗୋଡ଼ବିନ୍ ନାମକ ଜଣେ ଲୋକପ୍ରିୟ କଲେକ୍ଟର ଥିଲେ । (କାଶୀର ଲୋକ ତାଙ୍କୁ ଗୋବିନ୍ଦ ସାହେବ କହୁଥିଲେ ।) ହିନ୍ଦୁ ଲୋକଙ୍କ ରୀତି ନୀତି ବିଷୟରେ ସେ ସହାନୁଭୂତିଶୀଳ ଭାବରେ ଜ୍ଞାନ ଅର୍ଜନ କରିଥିଲେ । ଉଲଗ୍ନ ସନ୍ନ୍ୟାସୀମାନେ କପଡ଼ା କୌପୀନ ପିନ୍ଧିବେ ସେଥିପାଇଁ ସେ ଏକ ଯୁକ୍ତି ବାହାର କଲେ । ରାଜପଥରେ ବୁଲୁଥିବା ବେଳେ ଉଲଗ୍ନ ସନ୍ନ୍ୟାସୀଙ୍କୁ ଦେଖିଲେ ପୁଲିସବାଲାମାନେ ସେମାନଙ୍କୁ ସାହେବଙ୍କ ନିକଟକୁ ଘେନି ଯାଉଥିଲେ । ସାହେବ ସନ୍ନ୍ୟାସୀଙ୍କୁ ପଚାରୁଥିଲେ, "ତୁମେ କଣ 'ପରମହଂସ'? ଯଦି, "ହିଁ" ଉତ୍ତର ମିଳୁଥିଲା, ତେବେ ସାହେବ ନିଜର ଖାଦ୍ୟ ତାଙ୍କୁ ଖାଇବାକୁ ଯାଚୁଥିଲେ । ଉଲଗ୍ନ ସନ୍ନ୍ୟାସୀ ଅବା ସାହେବଙ୍କ ଖାଦ୍ୟ ଖାଇବେ କପରି? ସେମାନେ ନ ଖାଇବାରୁ ସାହେବ କହୁଥିଲେ—'ଶାସ୍ତ୍ର ଅନୁସାରେ

ପରମହଂସମାନେ କୌଣସି ପ୍ରକାରର ଭେଦଭାବ ମାନିବା ଉଚିତ ନୁହେ, କିନ୍ତୁ ତୁମ ମନରେ ଭେଦଭାବ ପୂର୍ଣ ରହିଛି । ତୁମେ ଉଲଗ୍ନ ହୋଇ ବୁଲିବା ଉଚିତ ନୁହେ ।" ଏହିପରି ଭାବରେ ବହୁ ଉଲଗ୍ନ ସନ୍ନ୍ୟାସୀଙ୍କୁ କୌପୀନ ପରିଧାନ କରିବାକୁ ସେ ବାଧ୍ୟ କରିଥିଲେ ।

ଥରେ ତୈଲଙ୍ଗସ୍ୱାମୀଙ୍କ ସମ୍ପର୍କରେ ମଧ୍ୟ ଏହି କଥା ଘଟିଲା । ପୋଲିସବାଲାମାନେ ତୈଲଙ୍ଗସ୍ୱାମୀଙ୍କୁ ନେଇ କଲେକ୍ଟର ସାହେବଙ୍କ ବଙ୍ଗଳାକୁ ଯାଇଥିବା ସମ୍ବାଦ ରାଷ୍ଟ୍ର ହେବା ସଙ୍ଗେ ସଙ୍ଗେ ତାଙ୍କର ଅନୁରକ୍ତ ବଡ଼ ବଡ଼ ପଣ୍ଡିତ ଓ ଗଣ୍ୟମାନ୍ୟ ବ୍ୟକ୍ତିମାନେ ସାହେବଙ୍କ ବଙ୍ଗଳାରେ ପହଞ୍ଚିଲେ । ସମସ୍ତଙ୍କୁ ବସାଇ ଦେଇ ସାହେବ ସ୍ୱାମୀଜୀଙ୍କୁ ପଚାରିଲେ, "ଆପଣ କଣ ପରମହଂସ ?" ସ୍ୱାମୀଜୀ, "ହଁ" କରିବାରୁ ସାହେବ ତାଙ୍କୁ ପୁଣି ପ୍ରଶ୍ନ କଲେ, "ଆପଣ କଣ ମୋର ଅନ୍ନ ଖାଇବେ ?" ସ୍ୱାମୀଜୀ କହିଲେ— 'ଆପଣ କଣ ମୋର ଅନ୍ନ ଖାଇବେ ?' ସାହେବ ଉତ୍ତର ଦେଲେ, 'ଯଦିଓ ମୁଁ ପରମହଂସ ନୁହେଁ, ତଥାପି ମୁଁ ଯେ କୌଣସି ଲୋକର ଅନ୍ନ ଖାଇବାକୁ ପ୍ରସ୍ତୁତ ।" ତାପରେ ସ୍ୱାମୀଜୀ ସେଠାରେ ନିଜ ହାତ ଉପରେ ମଳ ତ୍ୟାଗ କଲେ ଏବଂ ହାତକୁ ଆଗକୁ ବଢ଼ାଇ ଦେଇ ଗୋବିନ୍ଦ ସାହେବଙ୍କୁ କହିଲେ— "ନିଅନ୍ତୁ, ଏହାହିଁ ମୋର ଅନ୍ନ । ଆପଣ ଏହାକୁ ଖାଆନ୍ତୁ ଦେଖି ।" ସାହେବଙ୍କୁ ଏ କଥାରେ ବଡ଼ ଘୃଣା ଲାଗିଲା ଓ ସେ କ୍ରୋଧରେ କହିଲେ— "ଏହା କଣ ମଣିଷର ଖାଇବା ଯୋଗ୍ୟ ଅନ୍ନ ?" ସେତେବେଳେ ସ୍ୱାମୀଜୀ ସେହି ବସ୍ତୁକୁ ନିଜେ ଖାଇଗଲେ ଓ ହାତକୁ ଝାଡ଼ି ପୋଛି ସଫା କରିଦେଲେ । ଏହା ଦେଖି ସାହେବ ସ୍ୱାମୀଜୀଙ୍କୁ ଛାଡ଼ି ଦେଲେ ଓ ତାଙ୍କ କଥା ଆଉ କେବେ ହେଲେ ପଚାରୁ ନ ଥିଲେ । ମୁଁ

ଯେତେବେଳେ ୧୯୦୨ ଖ୍ରୀଷ୍ଟାବ୍ଦରେ କାଶୀରେ ଥିଲି, ସେଠାର ପଣ୍ଡିତମାନେ ଏ କଥାଟି ବଡ଼ ଆଗ୍ରହରେ ମତେ କହିଥିଲେ । "କାଶୀ ଯାତ୍ରା" ନାମକ ପୁସ୍ତକରେ ମଧ୍ୟ ଏ କଥା ସ୍ଥାନ ପାଇଥିଲା ।

**ଆଧୁନିକ ତପସ୍ୟା—** ଏହି ତୈଲଙ୍ଗସ୍ୱାମୀ ଶୀତଦିନର ଭୟଙ୍କର ଜାଡ଼ରେ କେବଳ ମୁଣ୍ଡକୁ ବାହାରେ ରଖି ଗଙ୍ଗାରେ ବସି ରହୁଥିଲେ ଏବଂ ଠିକ୍ ଖରାଦିନେ ଯହିଁରେ ଚାଲିଲେ ପାଦରୁ ଛାଲି ଛାଡ଼ିଯିବ, ଗଙ୍ଗା ନଦୀର ସେପରି ତତଲା ବାଲିରେ ବସି ରହୁଥିଲେ ।

ଲୁହା କଣ୍ଟାରେ ଖଟ ତିଆରି କରି ତାହା ଉପରେ ଶୋଉଥିବା ବୈରାଗୀ ଲୋକ ମଧ୍ୟ ଅନେକ ଲୋକ ଦେଖିଥାଇ ପାରନ୍ତି । ୧୯୦୨ ଖ୍ରୀଷ୍ଟାବ୍ଦରେ ଏପରି ଜଣେ ବୈରାଗୀ କାଶୀର 'ବିନ୍ଦୁମାଧବ' ମନ୍ଦିର ନିକଟରେ ରହୁଥିଲେ । କାଠର ଲେଙ୍ଗୁଟି ପିନ୍ଧି ବୁଲୁଥିବା ବାବାଜୀଙ୍କି ମଧ୍ୟ ମୁଁ ଦେଖିଛି ।

**ଶ୍ରମଣମାନଙ୍କ ମନରେ ତପଶ୍ଚରଣ ପ୍ରତି ଆଦର—**

ତପସ୍ୟାର ଉପରୋକ୍ତ ବିଧି ବିଧାନମାନଙ୍କ ମଧ୍ୟରୁ ଶାକ, ସୁଆଁ, ଗୃଜଳ ଏବଂ ଜଙ୍ଗଲରେ ସହଜରେ ମିଳୁଥିବା କନ୍ଦ ଫଳମୂଳ ଖାଇ ରହିବା ପ୍ରଭୃତି ବିଧିଗୁଡ଼ିକୁ ଅରଣ୍ୟବାସୀ ମୁନିଋଷିମାନେ ନିଜସ୍ୱ କରି ଦେଇଥିଲେ । ସେମାନେ ବଲକଳ ପିନ୍ଧୁଥିଲେ ଏବଂ ବହୁ ପ୍ରକାର ଅଗ୍ନିହୋତ୍ର ମଧ୍ୟ କରୁଥିଲେ, କିନ୍ତୁ ଏହି ନୂତନ ଶ୍ରମଣ ସମ୍ପ୍ରଦାୟମାନ ଅଗ୍ନିହୋତ୍ର ତ୍ୟାଗ କଲେ । ଅରଣ୍ୟରେ ରହୁଥିବା ମୁନି ଋଷିମାନଙ୍କର ବହୁବିଧ ତପସ୍ୟା ବିଧି ନେଇ ତାହା ସହିତ ଚର୍ମଖଣ୍ଡ ଭକ୍ଷଣ ପ୍ରଭୃତିକୁ ମଧ୍ୟ ଯୋଡ଼ି ଦେଲେ ।

ଉପରେ କୁହା ଯାଇଛି ବୁଦ୍ଧଦେବଙ୍କ ସମୟରେ "ନିର୍ଗ୍ରନ୍ଥ" ସମ୍ପ୍ରଦାୟ ବଡ଼ ପ୍ରତିପତ୍ତିଶାଳୀ ଥିଲା । ସେମାନଙ୍କ ଛଡ଼ା 'ପୂରଣ କାଶ୍ୟପ', 'ମକ୍ଖଲି ଗୋସାଲ' 'ଅଜିତ କେସ', 'ପକୁଧ କାତ୍ୟାୟନ' ଏବଂ 'ସଞ୍ଜୟ ବେଲଟ୍‌ଠି ପୁତ୍ତ' । ଏହି ପାଞ୍ଚଜଣ ଶ୍ରମଣ ନାୟକଙ୍କ ସମ୍ପ୍ରଦାୟମାନ ପ୍ରଖ୍ୟାତ ଥିଲା । ସେମାନଙ୍କ ଦାର୍ଶନିକ ମତ ବିଷୟର ସଂକ୍ଷେପରେ ସପ୍ତମ ଅଧ୍ୟାୟରେ କରାଯାଇଛି । ତହିଁରୁ ପ୍ରତିପନ୍ନ ହେବ ଯେ ତତ୍ତ୍ୱ ବିଷୟରେ ସେମାନଙ୍କ ଭିତରେ ପ୍ରବଳ ମତଭେଦ ଥିଲା । ତଥାପି ଦୁଇଟି କଥାରେ ସେମାନେ ଏକମତ ଥିଲେ ।

୧—ସେ ସମସ୍ତଙ୍କୁ ଯାଗଯଜ୍ଞ ଭଲ ଲାଗୁ ନ ଥିଲା ।

୨—ଅଳ୍ପାଧିକ ପରିମାଣରେ ତପସ୍ୟା ପ୍ରତି ସେମାନଙ୍କର ଆଗ୍ରହ ଥିଲା ।

**ଶ୍ରମଣମାନଙ୍କର ପ୍ରଚାର କାର୍ଯ୍ୟ**— ଏଥିପୂର୍ବେ କଥିତ ହୋଇଅଛି ଯେ, ଏହିସବୁ ଅନ୍ୟ ଶ୍ରମଣମାନଙ୍କର ପ୍ରଭାବ ଲୋକଙ୍କ ଉପରେ ଯଥେଷ୍ଟ ଥିଲା । ଶ୍ରମଣମାନେ ପୂର୍ବରେ ଚମ୍ପା (ଭାଗଲପୁର) ପଶ୍ଚିମରେ କୁରୁଦେଶ, ଉତ୍ତରରେ ହିମାଳୟ ଏବଂ ଦକ୍ଷିଣରେ ବିନ୍ଧ୍ୟ, ଏମାନଙ୍କ ମଧ୍ୟବର୍ତ୍ତୀ ପ୍ରଦେଶରେ, ବର୍ଷା ଋତୁମାସ ଛାଡ଼ି ଅନ୍ୟ ଆଠମାସ ଯାକ ବରାବର ବୁଲୁଥିଲେ ଏବଂ ଲୋକଙ୍କ ଭିତରେ ନିଜ ନିଜର ମତ ପ୍ରଚାର କରୁଥିଲେ । ତାହା ଫଳରେ ଲୋକମାନଙ୍କର ମନରେ ଯାଗଯଜ୍ଞ ପ୍ରତି ଅନାଦର ଏବଂ ତପସ୍ୟା ପ୍ରତି ଆଗ୍ରହ ଜନ୍ମିଥିଲା ।

**ଯାଗଯଜ୍ଞର ପ୍ରସାର**—କିନ୍ତୁ ଯୁଦ୍ଧରେ ଜୟଲାଭ କରିବା ପାଇଁ ରାଜାମାନେ ଯାଗଯଜ୍ଞର ଆବଶ୍ୟକତା ଉପଲବ୍ଧି କରୁଥିଲେ ।

ଯାଗଯଜ୍ଞ କରିବା ଉଦ୍ଦେଶ୍ୟରେ କୋଶଳର ରାଜା ପସେନଦି, ଉକ୍କଟ୍ଠା ନାମକ ଗ୍ରାମ ପୋକ୍ଖର ସାତି (ପୌଷ୍କର ସାଦ୍)ଙ୍କୁ ଏବଂ ସାଲବତିକା ଗ୍ରାମ ଲୋହିଚ (ଲୋହିତ୍ୟ) ନାମକ ବ୍ରାହ୍ମଣଙ୍କୁ ପୁରସ୍କାର ସ୍ୱରୂପ ଦେଇଥିଲେ । ସେହିପରି ମଗଧର ରାଜା ବିମ୍ବିସାର 'ସୋଣଦଣ୍ଡ' ନାମକ ବ୍ରାହ୍ମଣଙ୍କୁ "ଚମ୍ପା" ଗ୍ରାମ ଏବଂ ବ୍ରାହ୍ମଣ କୁଟଦନ୍ତଙ୍କୁ 'ଖାଣୁ ମତ' ନାମକ ଗ୍ରାମ ଉପହାର ସ୍ୱରୂପ ଦେଇଥିଲେ । ଦିଘନିକାୟରେ ଏ କଥା ଉଲ୍ଲିଖିତ ହୋଇଛି । ଏହାଛଡ଼ା; 'କୋଶଳ ସଂଯୁତ୍ତ'ର ନବମ "ସୂତ୍ରରୁ ଜଣାଯାଏ, ନିଜେ ରାଜା ପସେନଦି ଯାଗଯଜ୍ଞ କରୁଥିଲେ । ଏହି ଯାଗଯଜ୍ଞର ପ୍ରସାର କୋଶଳ ଓ ମଗଧ ରାଜ୍ୟରେହିଁ ସୀମିତ ଥିଲା । କାରଣ, ଯାଗଯଜ୍ଞର ଅନୁଷ୍ଠାନ କେବଳ ସେହିପରି ରାଜା ବା ସେ ଭଳି ଉପହାର ପାଇଥିବା ବ୍ରାହ୍ମଣମାନଙ୍କ ପକ୍ଷରେହିଁ ସମ୍ଭବପର ଥିଲା ।

ବଡ଼ ବଡ଼ ଯାଗଯଜ୍ଞର ଅନୁଷ୍ଠାନ ସାଧାରଣ ଲୋକର ଶକ୍ତି ବହିର୍ଭୂତ ଥିଲା । ତେଣୁ ତାହାର ଏକ ସହଜ ଉପାୟ ବା ପ୍ରଣାଳୀ ବାହାର କରାଗଲା । ବ୍ରାହ୍ମଣମାନେ ଲୋକଙ୍କୁ ନାନା କଥା କହି ହୋମ କରାଉଥିଲେ । ଯଥା—ଅମୁକ ପ୍ରକାରର କାଠକୁ ଅମୁକ ପ୍ରକାରର ଦର୍ବୀ (କାଠ ଡଙ୍କା )ରେ, ଅମୁକ ଫଳ ଚୋପା, ତଷ୍ଟ, ଅମୁକ ପ୍ରକାରର ଗୁଣ୍ଡଲକୁ, ଅମୁକ ପ୍ରକାରର ଘିଅ, ଅମୁକ ପ୍ରକାରର ତେଲ, ଅମୁକ ପ୍ରକାରର ପ୍ରାଣୀର ରକ୍ତ ହୋମ କରିବା ଦ୍ୱାରା ଅମୁକ କାର୍ଯ୍ୟ ସିଦ୍ଧି ହୁଏ । ଏହା ଦିଘନିକାୟରୁ ଜଣାଯାଏ । କୌଣସି କୌଣସି ଶ୍ରମଣ ମଧ୍ୟ ତହିଁରେ ଅଂଶ ଗ୍ରହଣ କରୁଥିଲେ (୧) ମନେ ହେଉଛି, ଯଦିଓ କାର୍ଯ୍ୟ ସିଦ୍ଧି ପାଇଁ ଲୋକେ ହୋମ କରୁଥିଲେ ତଥାପି ସେ ଗୁଡ଼ିକ ଧାର୍ମିକ ବିଧି ବିଧାନ ମଧ୍ୟରେ

(୧) ଦେଖନ୍ତୁ ଦିଘନିକାୟ, ବ୍ରହ୍ମଜାଲ, ସାମଞ୍ଞ ଫଳସୁତ୍ତ ପ୍ରଭୃତି ।

ଅବହେଳିତ ହୋଇ ନଥିଲା । କାହିଁକି ନା, ଏହି ହୋମକାରୀ ବ୍ରାହ୍ମଣମାନଙ୍କୁ ଓ ଶ୍ରମଣମାନଙ୍କୁ ଲୋକେ ଅଧିକ ସମ୍ମାନ କରୁ ନଥିଲେ ।

**ଦେବତାମାନଙ୍କ ପୂଜା**— ଆଜକାଲି ହିନ୍ଦୁମାନେ ଯେଉଁପରି ଦେବଦେବୀ ଯକ୍ଷ ପିଶାଚ ପ୍ରଭୃତିଙ୍କୁ ମାନୁଛନ୍ତି ଓ ସେମାନଙ୍କୁ ସନ୍ତୁଷ୍ଟ କରାଇବା ପାଇଁ ବଳି ଦେଉଛନ୍ତି ସେହିପରି ବୁଦ୍ଧଙ୍କ ସମୟର ଲୋକେ ମଧ୍ୟ ଦେବତାମାନଙ୍କୁ ମାନୁଥିଲେ ଓ ସେମାନଙ୍କ ପାଇଁ ବଳି ଦେଉଥିଲେ । ଆଜିକାଲିର ଦେବତା ପ୍ରଭୃତିଙ୍କୁ ପୂଜା କରିବା ସକାଶେ ପୂଜାରୀ ଆବଶ୍ୟକ ହୁଅନ୍ତି ଏବଂ ସେମାନେ ଜାତିରେ ପ୍ରାୟ ବ୍ରାହ୍ମଣ ଅଟନ୍ତି । ଏହାଛଡ଼ା ଆଜକାଲିର ଦେବତା ବୁଦ୍ଧ ସମୟର ଦେବତାଙ୍କ ପରି କାଳ୍ପନିକ ହୋଇଥିଲେ ସୁଦ୍ଧା ବହୁ ଦେବତାଙ୍କ ସମ୍ପର୍କରେ ପୁରାଣମାନ ସୃଷ୍ଟି ହୋଇ ଯାଇଛି । ବୁଦ୍ଧଦେବଙ୍କ ସମୟରେ ଏ ସବୁ ନ ଥିଲା । ବଟଗଛ ପରି ଗଛରେ, କୌଣସି ପର୍ବତରେ ବା ବଣରେ ମହାନୁଭବ ଦେବତାମାନେ ରହନ୍ତି ଏବଂ ସେମାନଙ୍କ ନିକଟରେ ବିନୀତ ନିବେଦନ କଲେ ସେମାନେ ପ୍ରସନ୍ନ ହୁଅନ୍ତି—ଲୋକଙ୍କର ଏ ପ୍ରକାରର ଧାରଣା ଥିଲା । ତେଣୁ ସେହି ଲକ୍ଷ୍ୟରେ ଛେଳି କୁକୁଡ଼ା ପ୍ରଭୃତିଙ୍କୁ ବଳି ନ ଦେଇ ସେମାନେ ନିଜର ବିନୀତ ନିବେଦନ ଜଣାଉଥିଲେ । 'ପଳାସ ଜାତକ' ( ସଂଖ୍ୟା-୩୦୭ ) ରୁ ଜଣାଯାଏ, ବ୍ରାହ୍ମଣମାନେ ଦେବତାମାନଙ୍କର ପୂଜା କରୁଥିଲେ, କିନ୍ତୁ ନିଜର ଅଧିକାରୂପେ ସେମାନେ ପୂଜାରୀ ହେଉଥିବାର ପ୍ରମାଣ କେଉଁଠାରେ ମିଳେ ନାହିଁ । ଯେଉଁପରି ଆଜକାଲି ଅନୁନ୍ନତ ସମ୍ପ୍ରଦାୟ ବା ଆଦିବାସୀଙ୍କ ସକାଶେ ବ୍ରାହ୍ମଣ ପୁରୋହିତ ଦରକାର ହୁଅନ୍ତି ସେ ସମୟରେ କୌଣସି ଦେବତା ପାଇଁ ବ୍ରାହ୍ମଣମାନଙ୍କର ଆବଶ୍ୟକତା

ନ ଥିଲା । ଲୋକେ ଦେବତାମାନଙ୍କୁ ଦୈନ୍ୟ ଜଣାଉଥିଲେ ଏବଂ ବନସ୍ପ ମଧ୍ୟସ୍ଥରେ ନିଜ ହାତରେ ବଳି ଦେଉଥିଲେ । ସୁଜାତା, ବଟବୃକ୍ଷବାସୀ ଦେବତାଙ୍କୁ ଦୁଧ କ୍ଷୀରି ମନାସି ଥିଲେ । ଶେଷରେ ସେ ବଟ ବୃକ୍ଷତଳେ ବସି ଗୌତମ ବୋଧିସତ୍ତ୍ୱଙ୍କ ପାଇଁ ସେହି କ୍ଷୀରି ଦେଇଥିଲେ ବୋଲି ବୌଦ୍ଧ ସାହିତ୍ୟରେ ସ୍ପଷ୍ଟ ଭାବରେ ଉଲ୍ଲିଖିତ ହୋଇଛି । ବୌଦ୍ଧ ଶିଳ୍ପକଳା ଉପରେ ଏହାର ପ୍ରଭାବ ପଡ଼ିଥିବା ଜଣାଯାଏ । ସାରକଥା ହେଉଚି ଦେବତାମାନଙ୍କର ପୂଜା ସକାଶେ ବ୍ରାହ୍ମଣମାନଙ୍କର ଆବଶ୍ୟକତା ନ ଥିଲା ।

**ଶ୍ରମଣମାନଙ୍କର ଉତ୍କର୍ଷ** – ଦେବତାଙ୍କ ପାଇଁ ପୁରାଣ ନ ଥିଲା କି ପୂଜାରୀ ନ ଥିଲେ । ତେଣୁ ଆଜିକାଲିର ପରି ସେ ସବୁ ଧାର୍ମିକରୂପ ପାଇ ପାରି ନ ଥିଲା । ସବୁ ଶ୍ରେଣୀର ଲୋକେ ନିଜର ଦୁର୍ଦ୍ଦଶାକୁ ଦୂର କରିବା ପାଇଁ ବା କାମନା ପୂର୍ଣ୍ଣ କରିବା ପାଇଁ ଦେବତାମାନଙ୍କୁ ବଳି ଦାନ ଦେଉଥିଲେ । କିନ୍ତୁ ତାହା ଧାର୍ମିକ କାର୍ଯ୍ୟରୂପେ ଗୃହୀତ ହେଉ ନଥିଲା କିମ୍ବା ଲୋକେ ସେ-ଗୁଡ଼ିକୁ ଧାର୍ମିକ ଭାବରେ ବୁଝୁ ନଥିଲେ । ବ୍ରାହ୍ମଣମାନଙ୍କର ଯାଗଯଜ୍ଞ ପ୍ରଭୃତିକୁ ବେଦ ଓ ବୈଦିକ ସାହିତ୍ୟର ସମର୍ଥନ ମିଳି-ଥିବାରୁ ସେଗୁଡ଼ିକୁ ଧାର୍ମିକ କୃତ୍ୟ ମଧ୍ୟରେ ଗଣନା କରା ଯାଉଥିଲା । କିନ୍ତୁ ବହୁ ବ୍ୟୟସାପେକ୍ଷ ହୋଇଥିବାରୁ ତାହାର ଅନୁଷ୍ଠାନ ସାଧାରଣ ଲୋକଙ୍କର ସାଧ୍ୟାତୀତ ଥିଲା । ଯାଗଯଜ୍ଞରେ ଶହ ଶହ ଗାଈ ଓ ବଳଦ ମରା ଯାଉଥିଲା । କୃଷିବାସର ଉପଯୋଗୀ ଏହି ଜୀବଜନ୍ତୁଗୁଡ଼ିକୁ ରାଜାମାନେ ଏବଂ ଅନ୍ୟାନ୍ୟ ବଶିଷ୍ଟ ଲୋକେ ବଳ-ପୂର୍ବକ ମଧ୍ୟ ନେଇ ଯାଉଥିଲେ । ଫଳରେ ଜନସାଧାରଣଙ୍କ ମଧ୍ୟରେ ଯାଗଯଜ୍ଞ ବଡ଼ ଅପ୍ରିୟ ହୋଇ ଉଠିଲା । ଅନ୍ୟ ପକ୍ଷରେ

ସେମାନଙ୍କର, ଶ୍ରମଣମାନଙ୍କ ପ୍ରତି ଆଦର—ଆଗ୍ରହ ବଢ଼ିଲା । ତେଣୁ ଚାତୁର୍ମାସ୍ୟା ଯାପନ ନିମନ୍ତେ ଲୋକେ ସେମାନଙ୍କ ପାଇଁ କୁଟୀର ନିର୍ମାଣ କରି ସେମାନଙ୍କର ରହିବା ସକାଶେ ଅନ୍ୟାନ୍ୟ ବ୍ୟବସ୍ଥା ମଧ୍ୟ କରି ଦେଉଥିଲେ । ସେମାନଙ୍କଠାରୁ ଉପଦେଶ ଶୁଣିବାକୁ ମଧ୍ୟ ଲୋକଙ୍କର ବ୍ୟଗ୍ରତା ପ୍ରକାଶ ପାଉଥିଲା । ଏ ସବୁର ଅର୍ଥ ହେଉଛି, ଶ୍ରମଣସଂଘର ପ୍ରତିଷ୍ଠା ଦିନକୁଦିନ ବୃଦ୍ଧି ଲାଭ କରୁଥିଲା ।

**ଉପନିଷଦ ସମୟର କୃଷି**— ଆଜିକାଲି ଏପରି ଗୋଟାଏ ଧାରଣା ବ୍ୟାପି ଯାଇଛି ଯେ ବେଦରୁ ଉପନିଷଦ୍ ଏବଂ ଉପନିଷଦ ରୁ ବୌଦ୍ଧ, ଜୈନ ପ୍ରଭୃତି ଧର୍ମ ଉତ୍ପତ୍ତି ଲାଭ କରିଛି; ସୁତରାଂ ସେଗୁଡ଼ିକ ମଧ୍ୟ ବୈଦିକ ଧର୍ମ । ଆମର ବିଶ୍ୱାସ ଉପରି ଆଲୋଚନାରୁ, ବୌଦ୍ଧ ଏବଂ ଜୈନଙ୍କ ପରମ୍ପରା ବେଦ ଏବଂ ଉପନିଷଦ୍‌ରୁ ବାହାରି ନାହିଁ ବୋଲି ସ୍ପଷ୍ଟ ଉପଲବ୍ଧ ହେବ । ସେ-ଗୁଡ଼ିକ ବେଦକାଳ ପୂର୍ବରୁ ମଧ୍ୟ ଭାରତର ମୁନି ଋଷିମାନଙ୍କ ପରମ୍ପରାରୁ ବାହାରି ଥିଲା । ବୁଦ୍ଧଦେବଙ୍କ ସମୟରେ ଉପନିଷଦ୍—ବର୍ଣ୍ଣିତ ବ୍ରାହ୍ମଣମାନଙ୍କର ଅବସ୍ଥା କିପରି ଥିଲା ସେ ସମ୍ପର୍କରେ ଏଠାରେ ସଂକ୍ଷେପରେ ବିଚାର କଲେ ବୋଧହୁଏ ଅପ୍ରାସଙ୍ଗିକ ହେବ ନାହିଁ ।

ମୋର ନିଜ ଗ୍ରନ୍ଥ 'ହିନ୍ଦୀସଂସ୍କୃତି ଆଣି ଅହିଂସା''ରେ (୧) ଏ କଥା ପ୍ରତିପାଦିତ ହୋଇଛି ଯେ ଆରଣ୍ୟକ ଏବଂ ଉପନିଷଦ୍ ବୁଦ୍ଧଙ୍କର ଅନେକ ବର୍ଷ ପରେ ରଚିତ ହୋଇଥିଲା । ତଥାପି ବୁଦ୍ଧଙ୍କ ସମୟରେ ଉପନିଷଦର ବର୍ଣ୍ଣନା ପ୍ରକାରେ କେତେକ

(୧) ଦେଖନ୍ତୁ, ପୃଷ୍ଠା ୪୮-୫୦ ।

ବ୍ରାହ୍ମଣ ଓ କ୍ଷତ୍ରିୟ ଥିଲେ ବୋଲି ସ୍ୱୀକାର କରିବାକୁ ପଡ଼ିବ । ଜାତକର ଅନେକ କଥାରୁ ମଧ୍ୟ ଜଣାଯାଏ ଯେ ସେମାନଙ୍କ ମଧ୍ୟରୁ ବହୁଲୋକ ହୋମ-ହବନ ପ୍ରଭୃତି ଛାଡ଼ି ବିଶୁଦ୍ଧ ଶ୍ରମଣ ହୋଇ ଯାଉଥିଲେ । ଉଦାହରଣ ସ୍ୱରୂପ, ନଙ୍ଗୁଟ୍ଠ ଜାତକ (ସଂଖ୍ୟା—୧୪୪)ରୁ ଗୋଟିଏ କଥାର ସାରାଂଶ ଏଠାରେ ଦିଆଯାଉଛି ।

ବ୍ରହ୍ମଦତ୍ତ ବାରାଣସୀରେ ରାଜା ଥିବାବେଳେ ଔଦୀଚ୍ୟ ବ୍ରାହ୍ମଣ ବଂଶରେ ବୋଧିସତ୍ତ୍ୱ ଜନ୍ମଗ୍ରହଣ କରିଥିଲେ । ତାଙ୍କ ଜନ୍ମ ଦିବସରୁ ତାଙ୍କର ପିତା ମାତା ଜାତାଗ୍ନି ରଖିଥିଲେ । ବୋଧିସତ୍ତ୍ୱ ଷୋହଳ ବର୍ଷ ବୟସ୍କ ହେବାପରେ ସେମାନେ ତାଙ୍କୁ କହିଲେ— 'ଦେଖ, ତୁମର ଜନ୍ମଦିନ ଏହି ଅଗ୍ନି ସ୍ଥାପନା କରାଯାଇଥିଲା । ଯଦି ତୁମେ ଗୃହସ୍ଥ ହୋଇ ରହିବାକୁ ଚାହଁ ତାହାହେଲେ ତିନି ବେଦ ଅଧ୍ୟୟନ କର । ନାହିଁ ଯଦି ତୁମେ ବ୍ରହ୍ମଲୋକ ପରାୟଣ ହେବାକୁ ଚାହଁ ଏହି ଅଗ୍ନି ନେଇ ବଣକୁ ଯାଅ, ତାହାରି ସେବା ଦ୍ୱାରା ବ୍ରହ୍ମଦେବଙ୍କ ଆରାଧନା କରି ବ୍ରହ୍ମଲୋକ ପରାୟଣ ହୁଅ ।"

ଗୃହସ୍ଥାଶ୍ରମରେ ବୋଧିସତ୍ତ୍ୱଙ୍କର ଆସକ୍ତି ନଥିଲା । ତେଣୁ ସେ ନିଜ 'ଜାତାଗ୍ନି' ନେଇ ଅରଣ୍ୟକୁ ଗଲେ । ସେଠାରେ ଆଶ୍ରମ କରି ସେହି ଅଗ୍ନି ସେବାରେ ଲାଗି ଗଲେ । ଦିନେ ଜଣେ କୃଷକ ବୋଧିସତ୍ତ୍ୱଙ୍କୁ ଦକ୍ଷିଣା ସ୍ୱରୂପ ଗୋଟିଏ ବଳଦ ଦାନ କଲା । ସେହି ବଳଦଟିକୁ ବଳି ଦେଇ ଅଗ୍ନି ଦେବତାଙ୍କର ପୂଜା କରିବାକୁ ବୋଧିସତ୍ତ୍ୱଙ୍କର ଇଚ୍ଛା ଥିଲା । କିନ୍ତୁ ଆଶ୍ରମରେ ଲୁଣ ସରି ଯାଇଥିଲା । ଲୁଣ ଆଣିବା ପାଇଁ ସେ ଏକ ଗ୍ରାମକୁ ଗଲେ । ତେଣେ କେତେକ ଗୁଣ୍ଡାଶ୍ରେଣୀର ଲୋକ ସେହି ବଳଦଟିକୁ ମାରି ପକାଇଲେ ଓ ଅଗ୍ନିହୋତ୍ରରେ ଯେତିକି ମାଂସ ଦରକାର ସେତିକି ପୋଡ଼ି ଖାଇଲେ ଓ ବଳକା ମାଂସ ଘେନି ଚାଲିଗଲେ ।

ବୋଧିସତ୍ତ୍ୱ ଲୁଣ ନେଇ ଫେରିବାପରେ ଦେଖନ୍ତି ତ ବଳଦର ଚର୍ମ, ପୁଚ୍ଛ ଓ ହାଡ଼ଗୁଡ଼ିକ ପଡ଼ି ରହିଛି । ସେ ଭାବିଲେ, ଯଦି ଅଗ୍ନିଦେବତା ନିଜ ବଳକୁ ରକ୍ଷା କରି ପାରିଲେ ନାହିଁ, ତାହାହେଲେ ମତେ ବା କପରି ରକ୍ଷା କରିବେ ? ଏପରି ଭାବି ସେ ଅଗ୍ନିହୋତ୍ର ପାତ୍ରକୁ ଜଳରେ ଫିଙ୍ଗିଦେଲେ ଓ ଋଷି-ପ୍ରବ୍ରଜ୍ୟା ଗ୍ରହଣ କଲେ ।

ବୁଦ୍ଧଦେବଙ୍କର ଉପଦେଶ ଶୁଣି ଉରୁବେଳ କାଶ୍ୟପ ନଦୀକାଶ୍ୟପ, ଗୟା କାଶ୍ୟପ, ଏହି ତିନିଜଣ ବ୍ରାହ୍ମଣ ନିଜ ନିଜର ଅଗ୍ନିହୋତ୍ରପାତ୍ରଗୁଡ଼ିକୁ ନଦୀରେ ଫିଙ୍ଗି ଦେଇଥିଲେ । ଏହା ବୌଦ୍ଧ ସାହିତ୍ୟର ଏକ ପ୍ରସିଦ୍ଧ କଥା ।

## ଉପନିଷଦର ଋଷି

କେତେକ ବ୍ରାହ୍ମଣ ପ୍ରକାଶ୍ୟରେ ଶ୍ରମଣ ଧର୍ମ ଗ୍ରହଣ କରିବାକୁ ସାହସ କରୁ ନ ଥିଲେ । ଏକ ପକ୍ଷରେ ବୈଦିକ ଯାଗଯଜ୍ଞ-ତତ୍ତ୍ୱ ଓ ଅନ୍ୟ ପକ୍ଷରେ ଶ୍ରମଣମାନଙ୍କର ଦାର୍ଶନିକତତ୍ତ୍ୱ—ଏ ଦୁଇ ମଧ୍ୟରେ ଦୋଳାୟମାନ ଥିଲେ । ତେଣୁ ଅଶ୍ୱମେଧ ପ୍ରଭୃତିର ରୂପକ ବ୍ୟାଖ୍ୟାନ କରି ସେ ସବୁରୁ ଆତ୍ମତତ୍ତ୍ୱ ବାହାର କରିବାକୁ ଚେଷ୍ଟା କରୁଥିଲେ । ଉଦାହରଣ ସ୍ୱରୂପ — ବୃହଦାରଣ୍ୟକୋପନିଷଦ୍ ପ୍ରଥମ ଅଧ୍ୟାୟ, ଦ୍ୱିତୀୟ ବ୍ରାହ୍ମଣର ମୂଳରେ ଥିବା କଥା ଦେଖାଯାଉ । ସେଠାରେ ଋଷି କହୁଛନ୍ତି—ଏହି ଜଗତର ସୃଷ୍ଟିପୂର୍ବରୁ କିଛି ନ ଥିଲା । ମୃତ୍ୟୁ ଏ ସବୁକୁ ଘୋଡ଼ାଇ ରଖିଥିଲା । ସେପରି କାହିଁକି ? କଣ ଖାଇବା ଇଚ୍ଛାରେ, କଣ ଖାଇବା ଇଚ୍ଛାକୁ ମୃତ୍ୟୁ କୁହାଯାଏ ? ତାଙ୍କୁ ଏପରି ଜଣାଗଲା, ଆତ୍ମବାନ୍ ହୋଇ ଯାଉ । ସେହି ମୃତ୍ୟୁ

ଏହିଭଳି କାମନା କଲା ଯେ "ମୁଁ ବଡ଼ ଯଜ୍ଞରେ ଯଜନ କରେ" । ଏଭଳି କାମନା କରି, ସେ ଶ୍ରାନ୍ତ ହୋଇ ତପସ୍ୟା କରିବାରେ ଲାଗିଲା । ଏହି ଶ୍ରାନ୍ତ ଓ ତପସ୍ୟା ଦ୍ୱାରା ତପ୍ତ ମୃତ୍ୟୁରୁ ଯଜ୍ଞ ଏବଂ ବୀର୍ଯ୍ୟ ଜାତ ହେଲା । ପ୍ରାଣ ହେଉଛି ଯଶ ଏବଂ ତାହାହିଁ ବୀର୍ଯ୍ୟ । ଏ ପ୍ରକାରେ ଯେତେବେଳେ ସେହି ପ୍ରାଣ ଶରୀର ଛାଡ଼ି ଚାଲିଗଲା ସେତେବେଳେ ପ୍ରଜାପତିଙ୍କର ଶରୀର ଫୁଲିଗଲା । ତଥାପି ସେହି ଶରୀରରେହିଁ ତାଙ୍କର ମନ ଥିଲା । ମୋର ଏହି ଶରୀର ମେଧ୍ୟ (ଯଜ୍ଞ ଯୋଗ୍ୟ) ହୋଇଯାଉ ଏବଂ ତଦ୍ଦ୍ୱାରା ମୁଁ ଆତ୍ମବାନ୍ ହୁଏ, ସେ ଏପ୍ରକାର କାମନା କଲେ । ମୋର ବିଚ୍ଛେଦରେ ଶରୀର କ୍ଷୀଣ ଏବଂ ବୀର୍ଯ୍ୟ ଶୂନ୍ୟ ହୋଇଗଲା, ଫୁଲିଗଲା । ତେଣୁ ସେ ଅଶ୍ୱ (ଫୁଲିବା) ହୋଇଗଲା । ଏବଂ ଯେଉଁ ହେତୁରୁ ସେ 'ମେଧ୍ୟ' ହେଲା, ତହିଁରେହିଁ 'ଅଶ୍ୱମେଧ'ର ଅଶ୍ୱମେଧତ୍ୱ ସାର୍ଥକ ହେଲା । ଯେଉଁମାନେ 'ଅଶ୍ୱ'କୁ ଏହି ପ୍ରକାରେ ବୁଝିବେ ସେମାନେହିଁ ଯଥାର୍ଥରେ ଅଶ୍ୱମେଧକୁ ଜାଣି ପାରିବେ ।"

ଏଥିରେ 'ଅଶ୍ୱମେଧ' ମାଧ୍ୟମରେ ତପସ୍ୟା-ପ୍ରଧାନ ଅହିଂସା ଧର୍ମକୁ ବୁଝାଇବାକୁ ଚେଷ୍ଟା କରାଯାଇଛି । ଖାଇବା ଇଚ୍ଛାହିଁ ମୃତ୍ୟୁ । ସେ ଆତ୍ମବାନ୍ ହେଲା, ଅର୍ଥାତ୍, ସେ ବ୍ୟକ୍ତିତ୍ୱ ପ୍ରାପ୍ତ ହେଲା ଏବଂ କ୍ରମଶଃ ଯଜ୍ଞ କରିବାକୁ ତାହାର ଇଚ୍ଛା ହେଲା । ସେହି ଇଚ୍ଛାରୁ ଯଶ ଏବଂ ବୀର୍ଯ୍ୟ, ଏହି ଦୁଇଟି ଗୁଣ ପ୍ରକାଶ ଲାଭ କଲା । ସେ ଦୁଇଟି ପ୍ରକୃତ ପ୍ରାଣ ଅଟନ୍ତି । ସେ ଯଦି ଚାଲି ଯାଆନ୍ତି, ଶରୀର ପୂରାପୂରି ଫୁଲିଗଲା ପରି ( ଅଶ୍ୱୟିତ ) ହୋଇଯାଏ ବୋଲି ବୁଝିବାକୁ ହେବ । ଆହୁରି ମଧ୍ୟ ସେହି ଶରୀର ପୋଡ଼ା ହେବାର ଯୋଗ୍ୟ ହୋଇଯାଏ । ଏ ତତ୍ତ୍ୱ ଯେ ଜାଣିପାରେ, ସେ କେବଳ "ଅଶ୍ୱମେଧ" ଜାଣିପାରେ ।

ଛାନ୍ଦୋଗ୍ୟ ଉପନିଷଦ (୫।୪) ରେ ପ୍ରବାହଣ ଜୈବଳି ଅରୁଣଙ୍କ ପୁତ୍ରକୁ କହୁଛନ୍ତି—"ହେ ଗୌତମ ! ଦ୍ୟୁଲୋକହିଁ ହେଉଛି ଅଗ୍ନି । ସୂର୍ଯ୍ୟ ତାହାର ସମିଧ । କିରଣ ହେଉଛି ଧୂମ । ଦିବସ ହେଉଛି ଜାଳ । ଚନ୍ଦ୍ରମା ହେଉଛି ଅଙ୍ଗାର ଏବଂ ନକ୍ଷତ୍ର-ମାନେ ହେଉଛନ୍ତି ଅଗ୍ନି ସ୍ଫୁଲିଙ୍ଗ ।"

ଏଥିରୁ ସ୍ପଷ୍ଟ ବୁଝାଯାଏ ଯେ, ଏହି ଋଷିମାନଙ୍କ ମନରେ ଶ୍ରମଣ ସଂସ୍କୃତିର ପୂର୍ଣ୍ଣ ପ୍ରଭାବ ପଡ଼ିଥିଲା । କିନ୍ତୁ ବ୍ୟବହାରରେ, ଖୋଲି ଖୋଲି ଭାବେ ସେହି ତତ୍ତ୍ୱ ଗୁଡ଼ିକ ପ୍ରତିପାଦନ କରିବାକୁ ସେମାନେ ଇଚ୍ଛା କରୁ ନଥିଲେ । ଅତଏବ ଏପରି ରୂପକାତ୍ମକ ଭାଷାର ପ୍ରୟୋଗ କରିଥିଲେ ।

## ଉପନିଷଦ୍‌ର ଋଷିମଧ୍ୟ ଜାତିଭେଦ ମାନୁ ନଥିଲେ

ପ୍ରାଚୀନ ମୁନି ଋଷିମାନେ, ଶ୍ରମଣମାନେ ଏବଂ ଉପନିଷଦ୍‌ର ଋଷିମାନେ—ଏ ସମସ୍ତେ, ଜାତିଭେଦ ସ୍ୱୀକାର ନ କରିବା ବିଷୟରେ, ଏକମତ ଥିଲେ । ମାତଙ୍ଗ ଋଷିଙ୍କ କଥା ଏଥିପୂର୍ବେ କୁହାଯାଇଛି । ତହିଁରୁ ସ୍ପଷ୍ଟ ଜଣା ଯାଉଛି, ମୁନି ଋଷିମାନଙ୍କ ମଧ୍ୟରେ ଜାତି ଭେଦ ନ ଥିଲା । ଶ୍ରମଣ ସଂଘ ମାନଙ୍କରେ ଜାତିଭେଦ ପାଇଁ ମୋଟେ ସ୍ଥାନ ନ ଥିଲା । ତଳେ ଯେଉଁ କଥାଟି କୁହାଯାଉଛି ତହିଁରୁ ଉପନିଷଦର ଋଷି ମଧ୍ୟ ଜାତି ଭେଦ ଉପରେ ବିଶେଷ ଗୁରୁତ୍ୱ ଦେଉ ନଥିବାର ଜଣାଯିବ ।

ସତ୍ୟକାମ ନିଜ ମାତା ଜବାଲାଙ୍କୁ କହିଲେ—"ମା, ମୁଁ ବ୍ରହ୍ମଚର୍ଯ୍ୟ ପାଳନ କରିବାକୁ ଚାହୁଁଛି ( ଜ୍ଞାନଲାଭ କରିବାକୁ ଚାହୁଁଛି ) । ମୋର ଗୋତ୍ର କଣ, ମୋତେ କହ ।" ଏହାର

ଉତ୍ତରରେ ମା କହିଲେ—"ଆରେ ପୁଅ ! ଏକଥା ମୁଁ ମଧ୍ୟ ଜାଣି ନାହିଁ । ଯୌବନ କାଳରେ ମୁଁ ଅନେକ ପୁରୁଷଙ୍କ ସଙ୍ଗେ ରହୁଥିଲି ( ବହ୍ୱହଂ ଚରନ୍ତୀ ) । ସେତେବେଳେ ତୋର ଜନ୍ମ ହୋଇଥିଲା । ତେଣୁ ତୋର ଗୋତ୍ର ମୁଁ କହିପାରିବି ନାହିଁ । ମୋ ନାଁ ହେଉଛି 'ଜବାଲା' ଏବଂ ତୋ ନାଁ ହେଉଛି 'ସତ୍ୟକାମ' । ତେଣୁ ତୋ ନା "ସତ୍ୟକାମ ଜାବାଳ" ବୋଲି ତୁ କହିଦେବୁ ।

ସତ୍ୟକାମ, ହାରିଦ୍ରୁମତ ଗୌତମଙ୍କୁ କହିଲେ—"ମୁଁ ବ୍ରହ୍ମଜ୍ଞାନ ଶିଖିବା ପାଇଁ ଆପଣଙ୍କ ପାଖକୁ ଆସିଛି ।" "ତୁମର ଗୋତ୍ର କଣ ?" ବୋଲି ଗୌତମ ତାଙ୍କୁ ପଚାରିଲେ । ସତ୍ୟକାମ କହିଲେ, "ତାହା ମୁଁ ଜାଣେ ନାହିଁ । ସେ କଥା ମୁଁ ମୋ ମାଆଙ୍କୁ ପଚାରି ଥିଲି ଏବଂ ସେ କହିଲେ, 'ଯୌବନ କାଳରେ ଅନେକ ପୁରୁଷଙ୍କ ସଙ୍ଗେ ମୋର ସମ୍ପର୍କ ଥିଲା । ତେଣୁ ତୋର ଗୋତ୍ର କଣ, ମୁଁ କହି ପାରିବି ନାହିଁ । ତୋ ନାଁ 'ସତ୍ୟକାମ ଜାବାଳ' ବୋଲି ତୁ କହିଦେବୁ ।"

ଗୌତମ କହିଲେ—"ତୁମେ ସତ୍ୟଭ୍ରଷ୍ଟ ହୋଇ ନାହିଁ । ଅବ୍ରାହ୍ମଣ ପକ୍ଷରେ ଏହା ସମ୍ଭବ ନୁହେ । ତେଣୁ ସମିଧ ଆଣି ମୁଁ ତୁମର ଉପନୟନ କରି ଦେଉଛି । ଏହା କହି ସେ ସତ୍ୟକାମ ଜାବାଳଙ୍କର ଉପନୟନ କରିଦେଲେ । (୧)

(୧) ଛାନ୍ଦୋଗ୍ୟ ଉପନିଷଦ୍ ୪ । ୪

## ଗୁପ୍ତମାନଙ୍କର ଶାସନକାଳରେ ଜାତିଭେଦ ବଢ଼ିଗଲା

ଯଦିଓ ଉପନିଷଦ୍‌ର ଋଷି ଜାତି ଭେଦ ମାନୁ ନଥିଲେ, ତଥାପି ଜାତିଭେଦ ଅପେକ୍ଷା ସେମାନେ ସତ୍ୟକୁ ବେଶି ମାନୁଥିଲେ । ସତ୍ୟକାମ ଚରିତରୁ ଏକଥା ପ୍ରମାଣିତ ହୋଇ ଯାଉଛି । ଅଥଚ ସେହି ଉପନିଷଦମାନଙ୍କର ସମନ୍ୱୟ କରିବାକୁ ଚେଷ୍ଟା କରିଥିବା ବାଦରାୟଣବ୍ୟାସ ଓ ଭାଷ୍ୟକାର ଶଙ୍କରାଚାର୍ଯ୍ୟ ଜାତିଭେଦର ଡିଣ୍ଡିମ ବଜାଇଛନ୍ତି ।

ଶ୍ରବଣାଧ୍ୟୟନାର୍ଥ ପ୍ରତିଷେଧାତ୍ ସ୍ମୃତେଶ୍ଚ (୧) ଇତଶ୍ଚ ନ ଶୂଦ୍ର ସ୍ୟାଧିକାରଃ । ଯଦସ୍ୟ ସ୍ମୃତେଃ ଶ୍ରବଣାଧ୍ୟୟ-ନାର୍ଥ ପ୍ରତିଷେଧୋ ଭବତି । ବେଦ ଶ୍ରବଣ ପ୍ରତିଷେଧୋ ବେଦାଧ୍ୟୟନ ପ୍ରତିଷେଧସ୍ତଦର୍ଥ ଜ୍ଞାନାନୁଷ୍ଠାନଯୋଶ୍ଚ ପ୍ରତିଷେଧଃ ଶୂଦ୍ରସ୍ୟ ସ୍ମର୍ଯ୍ୟତେ । ଶ୍ରବଣ ପ୍ରତିଷେଧସ୍ତାବତ୍ 'ଅଥାସ୍ୟ ବେଦମୁପଶୃଣ୍ୱତ ସ୍ତ୍ରପୁଜତୁଭ୍ୟାଂ ଶ୍ରୋତ୍ର-ପ୍ରତିପୂରଣମିତି । ପଦ୍ୟୁ ହବା ଏତତ୍ ଶ୍ମଶାନଂ ଯଚ୍ଛୂଦ୍ର ସ୍ତସ୍ମାଚ୍ଛୂଦ୍ର ସମୀପେ ନାଧ୍ୟେତବ୍ୟମ୍ ଇତିଚ । ଅତଏବା-ଧ୍ୟୟନ ପ୍ରତିଷେଧଃ । ଯସ୍ୟହ୍ଣ ସମୀପେଽପିନାଧ୍ୟେତବ୍ୟ ଭବତି, ସ କଥମଶ୍ରୁତ ମଧୀୟୀତ । ଭବତିଚ ବେଦୋଚ୍ଚାରଣେ ଜହ୍ୱାଚ୍ଛେଦୋ, ଧାରଣେ ଶରୀର

(୧) ଅଧ୍ୟାୟ ୧ । ୩ । ୩୮

ଭେଦ ଇତି । ଅତଏବ ଶ୍ରୁତ୍ୟର୍ଥଜ୍ଞାନାନୁଷ୍ଠାନୟୋଃ ପ୍ରତିଷେଧୋ ଭବତି 'ନ ଶୂଦ୍ରାୟ ମତିଂ ଦଦ୍ୟାତ୍' ଇତି (୧)

ଅର୍ଥାତ୍, ଆହୁରି ମଧ୍ୟ ଏହି କାରଣରୁ ଶୂଦ୍ରର ବ୍ରହ୍ମଜ୍ଞାନରେ ଅଧିକାର ନାହିଁ । ବେଦ ଶ୍ରବଣ ଏବଂ ଅଧ୍ୟୟନ ପାଇଁ ସ୍ମୃତିରେ ଶୂଦ୍ରକୁ ନିଷିଦ୍ଧ କରା ଯାଇଛି । ବେଦ ଶ୍ରବଣ, ବେଦାଧ୍ୟୟନ ଏବଂ ତାହାର ଅର୍ଥଜ୍ଞାନ, ଓ ଅନୁଷ୍ଠାନ—ଶୂଦ୍ର ପକ୍ଷରେ ଏଗୁଡ଼ିକୁ ସ୍ମୃତିରେ ନିଷେଧ କରାଯାଇଛି । ବେଦଶ୍ରବଣ ଏହିପରି ଭାବରେ ନିଷିଦ୍ଧ ହୋଇଛି ଯେ ଶୂଦ୍ର ଯଦି ବେଦ ବାକ୍ୟ ଶୁଣେ, ତେବେ ଜଉ କମ୍ବା ସୀସା ଦେଇ ତାର କାନକୁ ମୁଦ୍ଧି ଦେବାକୁ ହେବ । ଶୂଦ୍ରକୁ ପାଦଯୁକ୍ତ ଶ୍ମଶାନ ବୋଲି ବୁଝିବାକୁ ହେବ । ଏହି ହେତୁ ଶୂଦ୍ର ପାଖରେ ବସି ବେଦାଧ୍ୟୟନ କରିବା ଉଚିତ ନୁହେ । ଏଥିରୁ ମଧ୍ୟ ଶୂଦ୍ରର ବେଦାଧ୍ୟୟନ ନିଷିଦ୍ଧ ହୋଇ ଯାଉଛି । ଯାହା ନିକଟରେ ସୁଦ୍ଧା ବେଦ ଧ୍ୟୟନ ନିଷିଦ୍ଧ ହୋଇଛି, ସେ ନିଜେ କପରି ଅବା ବେଦାଧ୍ୟୟନର ଅଧିକାରୀ ହେବ ? ଯେଉଁ ଶୂଦ୍ର ବେଦୋଚାରଣ କରେ, ତାହାର ଜିହ୍ୱାଚ୍ଛେଦ କରାଯିବା ଉଚିତ । ଯଦି ସେ ବେଦମନ୍ତ୍ର ଧାରଣ କରେ ତେବେ ତାକୁ ପ୍ରାଣରେ ମାରି ଦେବାକୁ ହେବ । ଅତଏବ ଏଥିରୁ ସ୍ପଷ୍ଟ ପ୍ରମାଣିତ ହୋଇ ଯାଉଛି ଯେ ଶୂଦ୍ର ବେଦର ଅର୍ଥ ଜାଣିବା ଉଚିତ ନୁହେ କମ୍ବା ତାହାର ବିଧି ଅନୁଷ୍ଠାନ କରିବା ଉଚିତ ନୁହେ ।

---

(୧) ବ୍ରହ୍ମସୂତ୍ର ଶାଙ୍କର ଭାଷ୍ୟ ଅ ୧ । ୩ । ୩୮

ଶଙ୍କରାଚାର୍ଯ୍ୟ ଶୂଦ୍ରଙ୍କୁ ଏହି ଦୃଷ୍ଟିରୁ ଦେଖିବା ପାଇଁ ଯେଉଁ ପ୍ରମାଣର ସାହାଯ୍ୟ ନେଇଥିଲେ, ତାହା ଗୁପ୍ତରାଜାମାନଙ୍କ ସମୟରେ ଲିଖିତ ହୋଇଥିବା ଗୌତମ ଧର୍ମସୂତ୍ର ପ୍ରଭୃତି ଗ୍ରନ୍ଥରୁ ସେ ପାଇଥିଲେ । ଅର୍ଥାତ୍ ସମୁଦ୍ର ଗୁପ୍ତଙ୍କଠାରୁ (ଖ୍ରୀଷ୍ଟିୟ ଚତୁର୍ଥ ଶତାବ୍ଦୀଠାରୁ ଆରମ୍ଭ କରି) ଶଙ୍କରାଚାର୍ଯ୍ୟଙ୍କ ପର୍ଯ୍ୟନ୍ତ (ଖ୍ରୀଷ୍ଟୀୟ ନବମ ଶତାବ୍ଦୀ ପ୍ରାରମ୍ଭ ପର୍ଯ୍ୟନ୍ତ) ସେକାଳର ବ୍ରାହ୍ମଣମାନେ ଶୂଦ୍ରଙ୍କୁ ଅଧଃକୃତ କରି ନିଜର ମହତ୍ତ୍ୱ ଅକ୍ଷୁଣ୍ଣ ରଖିବାକୁ ବରାବର ଚେଷ୍ଟା କରୁଥିଲେ । 'ଧର୍ମସୂତ୍ର' କାର ଏବଂ ଆଚାର୍ଯ୍ୟ ଶଙ୍କରଙ୍କ ମଧ୍ୟରେ ପ୍ରଭେଦ ହେଉଛି ଏତିକ ଯେ, ସୂତ୍ରକାରଙ୍କ ସମୟକୁ ମୁସଲମାନମାନେ ଏ ଦେଶରେ ପ୍ରବେଶ କରି ନ ଥିଲେ । କିନ୍ତୁ ଶଙ୍କରଙ୍କ ସମୟକୁ ସେମାନେ ସିନ୍ଧୁଦେଶରେ ଆଧିପତ୍ୟ ବିସ୍ତାର କରି ସାରିଲେଣି । ସେତେବେଳକୁ ସେଠାରେ ମୁସଲମାନ୍ ଧର୍ମର ପ୍ରସାର ଅବାଧରେ ଚାଲି ଥିଲା । ସେମାନଙ୍କଠାରୁ ଶଙ୍କରାଚାର୍ଯ୍ୟ ସାମ୍ୟନୀତି ଶିଖିବା ଉଚିତ ହୋଇଥାନ୍ତା କିନ୍ତୁ ଏହାର ବୈପରୀତ୍ୟରେ ଜାତିଭେଦର ଅପ୍ରାକୃତିକ ସ୍ୱର'ସେ ଉଠାଇ ଥିଲେ । ଏହି ଅସାଧାରଣ ତାହାର ବିଷମୟ ଫଳ କିପରି ଭୋଗ କରିଥିଲା, ଇତିହାସ ତହିଁର ସାକ୍ଷୀ ଦିଏ ।

## ସାଧ୍ୱୀମାନଙ୍କର ସଂଘ

ତପସ୍ୱୀ ମୁନିଋଷିଙ୍କ ମଧ୍ୟରେ ବା ବୈଦିକ ଋଷିଙ୍କ ଗୋଷ୍ଠୀରେ ସ୍ତ୍ରୀମାନେ ପ୍ରବେଶ କରି ନଥିଲେ । ଅବଶ୍ୟ ଗାର୍ଗୀ, ବାଚକ୍ନବୀଙ୍କ ପରି ନାରୀମାନେ ବ୍ରହ୍ମଜ୍ଞାନ ଚର୍ଚ୍ଚାରେ ଅଂଶ ଗ୍ରହଣ କରୁଥିଲେ । (୧)

(୧) ବୃହଦାରଣ୍ୟ କୋପନିଷଦ୍ ୩ । ୬ । ୧

କିନ୍ତୁ ସେମାନଙ୍କର ସ୍ୱତନ୍ତ୍ର ସଂଘ ନ ଥିଲା । ବୁଦ୍ଧଙ୍କ ସମୟର ପ୍ରାୟ ଶହେ—ଦୁଇଶହ ବର୍ଷ ପୂର୍ବେ ସ୍ତ୍ରୀମାନଙ୍କର ସ୍ୱତନ୍ତ୍ର ସଂଘ ସ୍ଥାପିତ ହୋଇଥିଲା । ମନେ ହୁଏ, ଜୈନ ସାଧ୍ୱୀମାନେ ସବୁଠାରୁ ପ୍ରାଚୀନ ସଂଘ ଗଠନ କରିଥିଲେ । ସେମାନେ ଶାସ୍ତ୍ରୀୟ ବାଦ ବିବାଦରେ ପ୍ରବୀଣ ଥିଲେ । ଭଦ୍ରା, କୁଣ୍ଡଳକେଶା ପ୍ରଭୃତିଙ୍କ ଚରିତରୁ ଏକଥା ଉତ୍ତମ ରୂପେ ଜଣାଯାଏ । (୧)

ପ୍ରାଚୀନ ମୁନିଋଷିମାନେ ଅରଣ୍ୟରେ ବାସ କରୁଥିଲେ ଏବଂ ବେଳେ ବେଳେ ଗ୍ରାମମାନଙ୍କୁ ଯାଉଥିଲେ । ଏହି ହେତୁ ସ୍ତ୍ରୀମାନଙ୍କ ସକାଶେ ସଂଘ ଗଢ଼ିବା ସେମାନଙ୍କ ପକ୍ଷରେ ସମ୍ଭବପର ନ ଥିଲା । ଅନ୍ୟ ପକ୍ଷରେ, ଶ୍ରମଣମାନେ ଜନବସତି ନିକଟରେ ରହୁଥିଲେ । ସେହି ସମୟରେ ସେମାନଙ୍କ ଲାଗି ଅନୁକୂଳ ପରିସ୍ଥିତି ଉପୁଜି ଥିବାରୁ ନାରୀମାନଙ୍କ ପାଇଁ ସେମାନେ ସଂଘ ସ୍ଥାପନା କରି ପାରିଥିଲେ । ବୌଦ୍ଧ ଓ ଜୈନ ସାହିତ୍ୟରୁ, ସେ ସମୟର ସ୍ତ୍ରୀମାନେ ମଧ୍ୟ ପୁରୁଷଙ୍କ ପରି ଧାର୍ମିକ କାର୍ଯ୍ୟରେ ପ୍ରଗତିଶୀଳ ଥିଲେ ବୋଲି ଜଣାଯାଏ । ଗଣ ଅଧିକାର ସ୍ଥଳିତ ରାଜ୍ୟମାନଙ୍କରେ ସ୍ତ୍ରୀମାନଙ୍କର ପୂର୍ଣ୍ଣ ସ୍ୱାଧୀନତା ଥିଲା । ବଜ୍ଜୀମାନଙ୍କୁ ଭଗବାନ୍ ବୁଦ୍ଧ ଯେଉଁ ସାତୋଟି ଉପଦେଶ ଦେଇଥିଲେ, ସେ ମଧ୍ୟରେ ପଞ୍ଚମ ଉପଦେଶ ହେଉଛି—ସ୍ତ୍ରୀମାନଙ୍କର ମାନ ସମ୍ମାନ ରକ୍ଷା କରାଯିବା ଉଚିତ, ବିବାହିତ ବା ଅବିବାହିତ ଯେ କୌଣସି ସ୍ତ୍ରୀ ଉପରେ କୌଣସି ପ୍ରକାରର ବଳପ୍ରୟୋଗ ହେବା ସର୍ବଥା ଅନୁଚିତ । ଅତଏବ ମଧ୍ୟ ଏହି ନିୟମ ଅନୁସାରେ ଅନ୍ତତଃ ବୁଦ୍ଧଦେବଙ୍କ ମୃତ୍ୟୁ ପର୍ଯ୍ୟନ୍ତ, ବଜ୍ଜୀର ଲୋକମାନେ ଏହି ଆଚରଣ ଯଥାର୍ଥଭାବେ ରକ୍ଷା କରି

(୧) ଦେଖନ୍ତୁ—ବୌଦ୍ଧ ସଂଘାର ପରିଚୟ ପୃଷ୍ଠା ୨୧୪-୨୧୭ ।

ପାରିଥିଲେ । ଏଥି ସଙ୍ଗେ ଏକଥା ସ୍ୱୀକାର କରିବାକୁ ପଡ଼ିବ ଯେ ବଜ୍ଜୀମାନଙ୍କ ପରି ମଲ୍ଲରାଜ୍ୟର ଲୋକେ ସ୍ତ୍ରୀମାନଙ୍କର ସମ୍ମାନ ରକ୍ଷା କରିପାରି ନଥିଲେ । ଅଙ୍ଗ, କାଶୀ ଶାକ୍ୟ ଓ କୋଲିୟ ପ୍ରଭୃତି ଗଣଅଧିକାର ମୂଳକ ରାଜ୍ୟମାନଙ୍କର ସ୍ୱାଧୀନତା ନଷ୍ଟ ହୋଇ ଯାଇଥିଲେ ମଧ୍ୟ ଅଭ୍ୟନ୍ତରୀଣ ବ୍ୟବସ୍ଥା ସେହିମାନଙ୍କ ହାତରେ ଥିବାରୁ ସେ ରାଜ୍ୟମାନଙ୍କରେ ସ୍ତ୍ରୀ ସ୍ୱାଧୀନତା ଉପରେ ବିଶେଷ ଆଘାତ ଲାଗି ନ ଥିଲା ।

ମଗଧ ଏବଂ କୋଶଳ ଦେଶରେ ଏକଛତ୍ର ଶାସନ ପଦ୍ଧତି ବଦ୍ଧମୂଳ ହୋଇ ଯାଇଥିଲା । ତଥାପି ସେଠାରେ ମଧ୍ୟ, ମୂଳଭୂତ–ଗଣଶକ୍ତି-ମୂଳକ ଶାସନ-ପଦ୍ଧତି ପୂର୍ବାପୂର୍ବ ଉତ୍ପାଟିତ ହୋଇ ପାରି ନ ଥିଲା । ମହାରାଜା ବିମ୍ବିସାର କିମ୍ବା ପସେନଦି କୋଶଳ ନୃପଙ୍କ କୌଣସି ସ୍ତ୍ରୀକୁ ନିଜ ଅନ୍ତଃପୁରକୁ ନେଇ ଯାଇଥିବାର ଉଲ୍ଲେଖ କୌଣସିଠାରେ ମିଳେ ନାହିଁ ।

## କେତୋଟି ଏକଛତ୍ର ଶାସିତ—ରାଜ୍ୟରେ ସ୍ତ୍ରୀମାନଙ୍କର ସମ୍ମାନ

ଗଣଅଧିକାର ମୂଳକ ଶାସନ ପଦ୍ଧତିକୁ ଲୋକେ ଯେଉଁ ପରିମାଣରେ ଭୁଲି ଗଲେ, ସେହି ପରିମାଣରେ ଏକଛତ୍ର ଶାସନ ପଦ୍ଧତି ପ୍ରବଳ ହୋଇ ଉଠିଲା ଓ ସେହି ପରିମାଣରେ ନାରୀ ସ୍ୱାଧୀନତା ସଙ୍କୁଚିତ ହୋଇ ଆସିଲା । ତଥାପି ଉମ୍ମଦନ୍ତୀ କଥାରୁ ପ୍ରମାଣିତ ହୁଏ ଯେ କେତେକ ରାଜା ସ୍ତ୍ରୀମାନଙ୍କୁ ସମ୍ମାନ ଦେଉଥିଲେ (୧) ।

(୧) ଉମ୍ମଦନ୍ତୀଜାତକ, ନ ୫୨୭ ।

ବୋଧିସତ୍ତ୍ୱ ଶିବ ରାଜକୁଳରେ ଜନ୍ମଗ୍ରହଣ କରିଥିଲେ। ତାଙ୍କୁ ଶିବ କୁମାର କୁହା ଯାଉଥିଲା। ଶିବ ରାଜାଙ୍କ ସେନାପତିଙ୍କ ପୁତ୍ର ଅଭିପାରକ ଓ ଶିବକୁମାର ସମବୟସ୍କ ଥିଲେ। ଦୁହେଁ ତକ୍ଷଶିଳା ଯାଇ ଶାସ୍ତ୍ରାଧ୍ୟୟନ କରିଥିଲେ। ନିଜ ପିତାଙ୍କ ମୃତ୍ୟୁ ପରେ ଅଭିପାରକ ସେନାପତି ହେଲେ। ଉନ୍ମାଦୟନ୍ତୀ ନାମକ ପରମ ରୂପବତୀ ଶ୍ରେଷ୍ଠୀ କନ୍ୟାଙ୍କୁ ସେ ବିବାହ କଲେ। ରାଜା ନଗର ପ୍ରଦକ୍ଷିଣରେ ବାହାରି ଭ୍ରମଣ କରୁଥିବା ବେଳେ ବାତାୟନ ନିକଟରେ ଠିଆ ହୋଇଥିବା ଉନ୍ମାଦୟନ୍ତୀଙ୍କୁ ଦେଖିଲେ—ଚାରି ଚକ୍ଷୁ ମିଳନ ହୋଇଗଲା। ରାଜା ତାହାର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଉନ୍ମତ୍ତ ପ୍ରାୟ ହେଲେ ଓ ରାଜଭବନକୁ ପ୍ରତ୍ୟାଗମନ କରି ଶଯ୍ୟାଶାୟୀ ହୋଇ ରହିଲେ। ଅଭିପାରକ ଏ ସମସ୍ତ ଘଟଣା ଜାଣିବା ପରେ, ନିଜର ପତ୍ନୀଙ୍କୁ ଭୋଗ କରିବାକୁ ରାଜାଙ୍କୁ ଅନୁରୋଧ କଲେ। ଏହା ଶୁଣିବାମାତ୍ରେ ରାଜା ପ୍ରକୃତିସ୍ଥ ହୋଇ କହିଲେ—"ଏହା ଶିବମାନଙ୍କର ଧର୍ମ ନୁହେ। ମୁଁ ଶିବମାନଙ୍କର ରାଜା ଓ ସେମାନଙ୍କ ଧର୍ମର ପରିପାଳନ ମୋର କର୍ତ୍ତବ୍ୟ। ତେଣୁ ରିପୁବିକୃତିର କବଳରେ ପଡ଼ିବା ମୋ ପକ୍ଷରେ ଏକାନ୍ତ ଅନୁଚିତ।"

ଏହି କଥାଟି ବଡ଼ ରୋଚକ ତଥା ଉପାଦେୟ। ମନେ ହୁଏ, ଏହି କଥା ଯେଉଁ ସମୟରେ ରଚିତ ହୋଇଥିଲା, ସେତେବେଳକୁ ଗଣଶକ୍ତି ଚାଳିତ ଶାସନ ପଦ୍ଧତି ପୂରାପୂରି ନଷ୍ଟ ହୋଇଯାଇଥିଲା। ତଥାପି ଶିବଙ୍କ ପରି ଗଣଶକ୍ତିଚାଳିତ ରାଜ୍ୟର ରାଜାଙ୍କୁ, ସ୍ତ୍ରୀମାନଙ୍କର ପ୍ରତି ସେମାନଙ୍କର କର୍ତ୍ତବ୍ୟ ଉତ୍ତମରୂପେ ଜଣାଥିଲା। ପୁଣି ଏ କଥାର ଲକ୍ଷ୍ୟ ଥିଲା— ସର୍ବଶକ୍ତିଶାଳୀ ଏକଚ୍ଛତ୍ର

ନରପତିମାନେ ଏହି କର୍ତ୍ତବ୍ୟ ପ୍ରତି ଦୃଷ୍ଟି ଦେଉଥିଲେ । ଶିବିକୁମାରଙ୍କ କହିବା ଶେଷରେ ଅଛି ।

ନେତା ପିତା ଉଗ୍‌ଗତୋ ରଟ୍‌ଠପାଲୋ
ଧମ୍ମଂ ଶିବୀନଂ ଅପଚ୍ଚଯ୍ଯ ମାନୋ ।
ସୋ ଧମ୍ମମେବାନୁବିଚନ୍ତଯ୍ଯନ୍ତୋ
ତସ୍ମା ସକେ ଚିତ୍ତବସେ ନ ବତ୍ତେ ।

ଅର୍ଥାତ୍, ମୁଁ ଶିବିମାନଙ୍କର ନେତା ଓ ପିତା, ଅଗ୍ରଣୀ ଓ ରାଷ୍ଟ୍ର ପାଳକ । ଅତଏବ ଶିବିମାନଙ୍କ କର୍ତ୍ତବ୍ୟର ସମ୍ମାନ ରଖି ଓ ସେମାନଙ୍କର ଧର୍ମକୁ ଉତ୍ତମରୂପେ ଚନ୍ତାକରି ମୁଁ ଚିତ୍ତ ବୃତ୍ତିର ଅଧୀନ ହେବ ନାହିଁ ।

## ବାଲ୍ୟ ବିବାହ ପ୍ରଥା

ଏହି କଥା ବୌଦ୍ଧ ରାଜାମାନଙ୍କ ଉପରେ ନିଶ୍ଚୟ ପ୍ରଭାବ ପକାଇଥିବ । କିନ୍ତୁ ଅନୁମିତ ହୁଏ, ପରିଣାମରେ ଏଥିରୁ ଗୋଟାଏ ଅହିତକର ପ୍ରଥା ଜାତ ହେଲା । ବ୍ରହ୍ମଦେଶର ରାଜା ବିବାହିତା ସ୍ତ୍ରୀଙ୍କୁ ଅନ୍ତଃପୁରରେ ରଖି ନଥିଲେ । ଯଦି କୌଣସି ବିବାହିତା ସ୍ତ୍ରୀକୁ ତାର ସ୍ୱାମୀ ଛାଡ଼ପତ୍ର ଦେଇ ତାକୁ ରାଜାଙ୍କ ଦାୟିତ୍ୱରେ ଛାଡ଼ି ଦେବାକୁ ଚାହୁଁଥିଲା ବା ପ୍ରସ୍ତୁତ ଥିଲା, ତଥାପି ରାଜା ସେ କଥାକୁ ବଡ଼ ଅଧର୍ମ ବୋଲି ବିଚାରୁଥିଲେ । ଅଥଚ (ନାଗରି) ପିତାମାତାଙ୍କର ବିନାନୁମତିରେ ଅବିବାହିତା ସ୍ତ୍ରୀକୁ ଯେ କୌଣସି ସ୍ଥାନରୁ ବଳପୂର୍ବକ ନେଇ ଯାଉଥିଲେ । ରାଜା, କାଳେ ଝିଅକୁ ବଳପୂର୍ବକ ନେଇ ଯିବ, ଏହି ଆଶଙ୍କାରେ ଝିଅର ପିତାମାତା

ବାଲ୍ୟ ବୟସରୁହିଁ ତାହାର ବିବାହ କରି ଦେଉଥିଲେ ଓ ତାହାର କଣ୍ଠରେ ବିବାହ ସୂଚକ ମଙ୍ଗଳସୂତ୍ର ବାନ୍ଧି ଦେଉଥିଲେ । ଏ ପ୍ରକାର ବିବାହ ପୁରପୂରି ମିଛରେ କରାଯାଉଥିଲା । ଝିଅମାନେ ଶାଶୂ ଘରକୁ ଯାଉ ନ ଥିଲେ । କେବଳ ସେତିକ ନୁହେଁ, ପ୍ରଥମ ପତିକୁ ଛାଡ଼ି ଅନ୍ୟ ଯେ କୌଣସି ପୁରୁଷକୁ ବିବାହ କରିବାର ସ୍ୱାଧୀନତା ଏମାନଙ୍କର ଥିଲା । ରାଜାମାନଙ୍କର ବଳାତ୍କାରରୁ ଝିଅମାନଙ୍କୁ ରକ୍ଷା କରିବା ପାଇଁ ସେପରି ବିବାହ ଗୋଟାଏ ଉପାୟ ମାତ୍ର ଥିଲା । ଭାରତର ସୁପ୍ରତିଷ୍ଠିତ ବାଲ୍ୟ ବିବାହପ୍ରଥା କେବଳ ଏହି ପରିସ୍ଥିତିରୁ ଜାତ ହେଲା କି ତାହାର ଅନ୍ୟ କୌଣସି କାରଣ ଥିଲା କହିବା ବଡ଼ କଷ୍ଟକର । ବୁଦ୍ଧଙ୍କ ସମୟରେ ଏହି ବିବାହ ପ୍ରଥା ଯେ ସର୍ବତ୍ର ପ୍ରଚଳିତ ନଥିଲା, ଏଥିରେ ଲବ ମାତ୍ର ସନ୍ଦେହ ନାହିଁ । ଏକଚ୍ଛତ୍ର ଶାସନ ପ୍ରଣାଳୀ ପ୍ରତିଷ୍ଠିତ ହୋଇ ନ ଥିଲେ ବୋଧହୁଏ ବାଲ୍ୟବିବାହ ପ୍ରଥାର ସ୍ଥିତି ଭିନ୍ନ ପ୍ରକାର ହୋଇଥାଆନ୍ତା ।

## ଚାରି ପ୍ରକାର ଶ୍ରମଣ–ବ୍ରାହ୍ମଣ

ବୁଦ୍ଧଙ୍କର ସମୟକୁ ଚାରିପ୍ରକାର ଶ୍ରମଣ—ବ୍ରାହ୍ମଣ ଥିଲେ । ସେହି ସମ୍ପର୍କରେ ଏକରୂପକ ଓ ତାହାର ସ୍ପଷ୍ଟୀକରଣ ମଧ୍ୟ ମଜ୍ଝିମ ନିକାୟର 'ନିବାପସୁତ୍ତ'ରେ ଦେଖିବାକୁ ମିଳେ । ତାର ସାରକଥା ହେଉଛି—

ଭଗବାନ୍ ବୁଦ୍ଧ ଶ୍ରାବସ୍ତୀରେ, ଅନାଥ ପିଣ୍ଡିକଙ୍କ ଆଶ୍ରମରେ ରହୁଥିବା ବେଳେ ଭିକ୍ଷୁମାନଙ୍କୁ ସମ୍ବୋଧନ କରି କହିଥିଲେ, "ହେ ଭିକ୍ଷୁଗଣ ! ପଶୁଚରିବା ପାଇଁ ମନୁଷ୍ୟ ଯେଉଁ ଘାସ ପଡ଼ିଆ ତିଆରି କରେ ତାହା ପ୍ରକୃତରେ ମୃଗମାନଙ୍କର କଲ୍ୟାଣ ପାଇଁ ନୁହେ ।

ମନୁଷ୍ୟର ଲକ୍ଷ୍ୟ ହେଉଛି, ସେହି ପଡ଼ିଆରେ ଘାସ ଖାଇ ମୃଗମାନେ ଉନ୍ମତ୍ତ ଥିବା ବେଳେ ସେମାନଙ୍କୁ ଧରି-ବାନ୍ଧି ନେଇ ଆସିବା ।

୧ । "ହେ ଭିକ୍ଷୁଗଣ ! ଏହିପରି ଏକ ଘାସ ପଡ଼ିଆରେ ମୃଗମାନେ ପଶିଗଲେ ଓ ଯଥେଷ୍ଟ ଘାସ ଖାଇ ଉନ୍ମତ୍ତ ହୋଇ ପଡ଼ିଲେ, (ଫଳରେ) ମନୁଷ୍ୟ ତାଙ୍କୁ ଧରି ପକାଇଲା ।

୨ । "ତାହା ଦେଖି ଅନ୍ୟ କେତେକ ମୃଗ ଭାବିଲେ ଯେ ସେହି ପଡ଼ିଆ ନିତାନ୍ତ ଅନିଷ୍ଟକର । ସୁତରାଂ ସେମାନେ ସେହି ପଡ଼ିଆ ଛାଡ଼ି ଜଙ୍ଗଲକୁ ଚାଲିଗଲେ । ଖରାଦିନ ହେବାରୁ ସେଠାରେ ସେମାନଙ୍କୁ ଖାଇବା ପିଇବାକୁ ମିଳିଲା ନାହିଁ, ସେମାନଙ୍କର ଦେହ ବଡ଼ ଦୁର୍ବଳ ହୋଇ ଗଲା । ଉଦର ଜ୍ୱାଳାରେ ପୀଡ଼ିତ ହୋଇ ସେମାନେ ପୁଣି ଥରେ ସେହି ଘାସ ପଡ଼ିଆକୁ ଲେଉଟି ଆସିଲେ । ପ୍ରମତ୍ତ ହୋଇ, ଖିଆ ପିଆରେ ମାତିଥିବା ବେଳେ ସେହି ପଡ଼ିଆର ମାଲିକ ହାତରେ ଧରା ପଡ଼ିଲେ ।

ତୃତୀୟରେ, "କେତେକ ମୃଗ ଏ ଦୁଇ ପନ୍ଥାର ଆଶ୍ରୟ ନ ନେଇ, ନିକଟରେ ଥିବା ଜଙ୍ଗଲକୁ ପଳାୟନ କଲେ ଓ ସତର୍କ ଭାବରେ, ସେଠାରେ ଘାସ ଖାଇଲେ । ଏକଥା ଅନେକଦିନ ପର୍ଯ୍ୟନ୍ତ ସେହି ପଡ଼ିଆର ମାଲିକ ଜାଣି ପାରିଲା ନାହିଁ । ଶେଷରେ, ସେ ସେହି ମୃଗମାନଙ୍କ ଆଶ୍ରୟ ସ୍ଥାନ ଖୋଜି ଖୋଜି ବାହାର କଲା । ଚାରିପଟେ ଜାଲ ବିଛାଇ ଦେଇ ମୃଗମାନଙ୍କୁ ଧରି ପକାଇଲା ।

ଚତୁର୍ଥରେ, ଅନ୍ୟ କେତେକ ମୃଗ ଦୂରବର୍ତ୍ତୀ ଘୋର ଜଙ୍ଗଲକୁ ଚାଲିଗଲେ । ସେମାନେ ବଡ଼ ସତର୍କ ଥିଲେ । ସେହି ଘନ-ଜଙ୍ଗଲରେ ଥିବା ଘାସ ଓ ପାଣିକୁ ( ଉନ୍ମତ୍ତ ଭାବରେ ଶେଷ କରି

ନ ଦେଇ ) ସାବଧାନତାର ସହିତ ଖିଆ ପିଆ କଲେ । ଘାସ ପଡ଼ିଆର ମାଲିକ ସେମାନଙ୍କର ଆଶ୍ରୟ ସ୍ଥାନର ସନ୍ଧାନ ପାଇ ପାରି ନ ଥିଲା ।

"ଭିକ୍ଷୁଗଣ ! ମୁଁ ତୁମ୍ଭମାନଙ୍କୁ ରୂପକରେ କଥାଟିଏ କହିଛି । ଘାସ ପଡ଼ିଆ ମାଲିକ "ମାର" ଛଡ଼ା ଅନ୍ୟ କେହି ନୁହେ । (୧) ଯେଉଁ ଶ୍ରମଣ ବ୍ରାହ୍ମଣମାନେ ବିଷୟ ସୁଖରେ ଆନନ୍ଦ ଲାଭ କରନ୍ତି, ସେମାନେ ପ୍ରଥମ ଶ୍ରେଣୀର ମୃଗ । (୨) ଯେଉଁମାନେ ବିଷୟ ସୁଖସମ୍ଭୋଗ ଭୟରେ ଅରଣ୍ୟରେ ବାସ କରନ୍ତି ଓ ଯେଉଁମାନେ ସାରା ଜଗତରୁ ଅଲଗା ହୋଇ ରହନ୍ତି, ସେମାନେ ଦ୍ୱିତୀୟ ପ୍ରକାରର ମୃଗ । (୩) ଯେଉଁମାନେ ଅତ୍ୟନ୍ତ ସାବଧାନତାର ସହିତ ବିଷୟ ଭୋଗ କରନ୍ତି, ଜଗତ ନିତ୍ୟ କି ଅନିତ୍ୟ, ଆତ୍ମା ଅମର କି ନଶ୍ୱର ଇତ୍ୟାଦି ବିଷୟରେ ବାଦାନୁବାଦ କରି ସମୟ ନଷ୍ଟ କରନ୍ତି, ସେମାନେ ତୃତୀୟ ପ୍ରକାରର ମୃଗ । (୪) କିନ୍ତୁ ଯେଉଁମାନେ ଏପ୍ରକାର ବାଦ ବିସମ୍ବାଦରେ ନପଡ଼ି, ନିଜର ଅନ୍ତଃକରଣକୁ ନିଷ୍କଳଙ୍କ ରଖିବାକୁ ଯତ୍ନଶୀଳ, ସେହିମାନେହିଁ ଚତୁର୍ଥ ପ୍ରକାରର ମୃଗ ।

ଏହି ସୂତ୍ରରେ ପୁଣି କୁହାଯାଇଛି, ଯାଗଯଜ୍ଞରେ ସୋମରସ ପାନକୁ ଧର୍ମର ସାର ମନେ କରୁଥିବା ବୈଦିକ ବ୍ରାହ୍ମଣ ହିଁ ଶ୍ରମଣ ବ୍ରାହ୍ମଣ । ବୈଦିକ ହିଂସା ତଥା ସୋମରସପାନରେ ବିରକ୍ତ ହୋଇ ଯେଉଁମାନେ ଅରଣ୍ୟରେ ଆଶ୍ରୟ ନେଲେ ଓ ସେଠାରେ ଫଳମୂଳ ଉପରେ ନିର୍ଭର କରି ପ୍ରାଣଧାରଣ କଲେ, ସେହି ମୁନିଋଷିମାନଙ୍କୁ ଅନ୍ୟ ଏକ ଶ୍ରେଣୀର ଶ୍ରମଣ-ବ୍ରାହ୍ମଣ କୁହାଯାଇପାରେ । ଯେତେବେଳେ ଅରଣ୍ୟରେ ଫଳମୂଳର ଅଭାବ ଘଟେ

ସେତେବେଳେ ସେମାନେ ଲୁଣିଆ ଓ ଖଟା ପଦାର୍ଥ ଖାଇବା ପାଇଁ ଗ୍ରାମମାନଙ୍କୁ ଯାଆନ୍ତି, ଓ ଗୃହସ୍ଥର ଜାଲରେ ପଡ଼ନ୍ତି । ଏହାର ଗୋଟିଏ ଉଦାହରଣ ଏଥିପୂର୍ବେ ଦିଆଯାଇଛି । ପୁଣି ଯେଉଁମାନେ, ମୁନିଋଷିମାନଙ୍କର ଫଳମୂଳ ଉପରେ ନିର୍ଭର କରିବାର ମାର୍ଗ ଛାଡ଼ି ବିଭିନ୍ନ ଶ୍ରମଣ ସଂଘ ସ୍ଥାପନ କଲେ, ସେମାନଙ୍କୁ ତୃତୀୟ ପ୍ରକାରର ଶ୍ରମଣ-ବ୍ରାହ୍ମଣ କୁହାଯାଇପାରେ । ଏହି ପରିବ୍ରାଜକମାନେ ଘନ-ଜଙ୍ଗଲକୁ ନଯାଇ, ଜନବସତିର ଆଶ୍ରୟରେ ରହୁଥିଲେ । ସେମାନେ ଲୋକଙ୍କ ସହିତ ମିଳିମିଶି ସତର୍କ ଭାବରେ ଅନ୍ନ-ବସ୍ତ୍ର ପ୍ରଭୃତିର ଉପଭୋଗ କରୁଥିଲେ । କିନ୍ତୁ, 'ଆତ୍ମା ଅଛି କି ନାହିଁ' ଏ ପ୍ରକାର ବିବାଦରେ ବୁଡ଼ି ରହୁଥିଲେ । ଏହାଦ୍ୱାରା ସେମାନଙ୍କର ଆତ୍ମଶୁଦ୍ଧି ଘଟି ନଥିଲା; ବରଂ ସେମାନେ "ମାର" ର ଜାଲରେ ପଡ଼ୁଥିଲେ । ବୁଦ୍ଧଦେବ ଏହିସବୁ ନିରର୍ଥକ ବାଦବିବାଦ ତ୍ୟାଗ କରି ଆତ୍ମଶୁଦ୍ଧିର ମାର୍ଗ ଆବିଷ୍କାର କଲେ । ତାଙ୍କର ଭିକ୍ଷୁ-ମାନଙ୍କୁ ଚତୁର୍ଥ ପ୍ରକାରର ଶ୍ରମଣ-ବ୍ରାହ୍ମଣମାନଙ୍କ ମଧ୍ୟରେ ଗଣନା କରିଯାଇପାରେ । ଅନ୍ୟ ଶ୍ରମଣ-ବ୍ରାହ୍ମଣଙ୍କର ତଥା ବୁଦ୍ଧଦେବଙ୍କର ଅଧ୍ୟାତ୍ମବାଦରେ କି ପାର୍ଥକ୍ୟ ଥିଲା, ତାହା ସପ୍ତମ ଅଧ୍ୟାୟରେ ପ୍ରତିପାଦନ କରାଯିବ । ଏଠାରେ କେବଳ ଏତିକି କୁହାଯାଇପାରିବ ଯେ, ଏହି ଚାରି ପ୍ରକାର ଶ୍ରମଣ-ବ୍ରାହ୍ମଣମାନଙ୍କ ମଧ୍ୟରେ ଉପନିଷଦ୍‌ର ଋଷିମାନଙ୍କ ସ୍ଥାନ ଆଦୌ ନଥିଲା । ସୁତରାଂ ବୌଦ୍ଧଧର୍ମ, ଉପନିଷଦ୍‌ରୁ ବାହାରିଥିବାର ଧାରଣା ଯେ ଏକାନ୍ତ ଭିତ୍ତିହୀନ, ଏହା ସ୍ପଷ୍ଟ ପ୍ରତିପାଦିତ ହେଉଛି ।

---

## ଚତୁର୍ଥ ଅଧ୍ୟାୟ

# ଗୌତମ ବୋଧିସତ୍ତ୍ୱ

## ଗୌତମଙ୍କର ଜନ୍ମ ସମୟ

ଗୌତମଙ୍କର ଜନ୍ମକାଳ ବିଷୟରେ ନବ୍ୟ ପଣ୍ଡିତମାନଙ୍କ ମଧ୍ୟରେ ବହୁ ମତଭେଦ ଦେଖାଯାଏ । ଦେୱାନବାହାଦୁର୍ ସ୍ୱାମିକନ୍ନୁ ପିଲ୍ଲାଇଙ୍କ ମତରେ ଖ୍ରୀଷ୍ଟପୂର୍ବ ୪୭୮ ରେ ବୁଦ୍ଧଦେବଙ୍କର ପରିନିର୍ବାଣ ହୋଇଥିଲା । ଅନ୍ୟ କେତେକ ପଣ୍ଡିତଙ୍କ ମତରେ ତାଙ୍କର ପରିନିର୍ବାଣ ସମୟ ହେଉଛି, ଖ୍ରୀଷ୍ଟପୂର୍ବ ୪୮୭-୮୬ କିନ୍ତୁ "ମହାବଂଶ" ଓ ଦୀପବଂଶ"ରେ ତାଙ୍କର ପରିନିର୍ବାଣର ଯେଉଁ ସମୟ ନିର୍ଦ୍ଦେଶିତ ହୋଇଛି, ତାହା ଅଧିକ ସମୀଚୀନ ପରି ପ୍ରତୀତ ହୁଏ (୧) । ଖ୍ରୀଷ୍ଟପୂର୍ବ ୫୪୩ ଅବ୍ଦରେ ବୁଦ୍ଧଦେବଙ୍କର ପରିନିର୍ବାଣ ହୋଇଥିଲା ବୋଲି ଉକ୍ତ ଗ୍ରନ୍ଥମାନଙ୍କରୁ ସ୍ପଷ୍ଟ ଜଣାଯାଉଛି । ଯଦି ଏହି ଅବ୍ଦକୁ ସ୍ୱୀକାର କରାଯାଏ ତେବେ ବୁଦ୍ଧଙ୍କ ଜନ୍ମ ଖ୍ରୀଷ୍ଟପୂର୍ବ ୬୨୩ରେ ହୋଇଥିଲା ବୋଲି ସ୍ଥିର କରିବାକୁ ହେବ ।

## ବୋଧିସତ୍ତ୍ୱ

ଗୌତମ ବୁଦ୍ଧଙ୍କର ଜନ୍ମରୁ ବୁଦ୍ଧତ୍ୱ ପ୍ରାପ୍ତି ପର୍ଯ୍ୟନ୍ତ ତାଙ୍କୁ ବୋଧିସତ୍ତ୍ୱ ରୂପେ ଅଭିହିତ କରିବାର ପ୍ରଥା ବହୁକାଳରୁ ଚଳି ଆସିଛି । ପାଲି ସାହିତ୍ୟର ସବୁଠାରୁ ପ୍ରାଚୀନ ଅଂଶ ହେଉଛି 'ସୁତ୍ତନିପାତ' । ତନ୍ମଧ୍ୟରେ କୁହାଯାଇଛି ।

---

(୧) The Easly History of India by V. A. Smith (Oxford 1924) P. 49-50.

**ସେ ବୋଧିସତ୍ତୋ ରତନବରୋ ଅତୁଲେ ।**
**ମନୁସ୍ସ ଲୋକେ ହିତସୁଖାୟ ଜାତୋ**
**ସକ୍ୟାନଂ ଗାମେ ଜନପଦେ ଲୁମ୍ବିନେୟ୍ୟ ॥**

ଅର୍ଥାତ୍ ମହୋଜ୍ଜ୍ୱଳରତ୍ନ ଓ ବର, ବୋଧିସତ୍ତ୍ୱ ଲୁମ୍ବିନୀ ଜନପଦରେ, ଶାକ୍ୟଙ୍କ ଗ୍ରାମରେ ମନୁଷ୍ୟମାନଙ୍କର ହିତ ଓ ସୁଖପାଇଁ ଜନ୍ମଗ୍ରହଣ କରିଥିଲେ । 'ବୋଧି'ର ଅର୍ଥ ହେଉଛି, ମନୁଷ୍ୟମାନଙ୍କର ଉଦ୍ଧାରର ଜ୍ଞାନ । ତାହାର ପାଇଁ ଯତ୍ନ କରୁଥିବା ପ୍ରାଣୀ ( ବା ସତ୍ତ୍ୱ ) ହେଉଛନ୍ତି ବୋଧିସତ୍ତ୍ୱ । ବୋଧହୁଏ, ଗୌତମଙ୍କର ଜନ୍ମଠାରୁ ତାଙ୍କର "ସମ୍ବୋଧି" ଜ୍ଞାନ ପ୍ରାପ୍ତି ପର୍ଯ୍ୟନ୍ତ ପ୍ରଥମେ ପ୍ରଥମେ ତାଙ୍କୁ ଏହି ଶବ୍ଦରେ ଅଭିହିତ କରାଯାଉଥିବ । ଏହି ବିଶେଷଣ ବାରମ୍ବାର ବ୍ୟବହୃତ ହେବାରୁ କ୍ରମେ ତାଙ୍କର ପୂର୍ବ-ପୂର୍ବ ଜନ୍ମକଥା ଉଲ୍ଲେଖ କଲାବେଳେ ମଧ୍ୟ, ତାଙ୍କୁ 'ବୋଧିସତ୍ତ୍ୱ'-ବିଶେଷଣରେ ଅଭିହିତ କରାଗଲା । ତାଙ୍କର ପୂର୍ବଜନ୍ମର କଥାମାନଙ୍କର ସଂଗ୍ରହ, ଜାତକ କଥାମାନଙ୍କରେ ଦେଖିବାକୁ ମିଳେ । ସେହି କଥାମାନଙ୍କର ପ୍ରଧାନ ଚରିତ୍ରକୁ ବୋଧିସତ୍ତ୍ୱ କୁହାଗଲା ଏବଂ ସେ ପୂର୍ବଜନ୍ମର ଗୌତମ ବୋଲି ମଧ୍ୟ ଗୃହୀତ ହେଲେ (୧) । ଯେଉଁକଥାରେ ଉପଯୁକ୍ତ 'ଚରିତ୍ର' ମିଳିଲା ନାହିଁ, ସେହି କଥାରେ ବୋଧିସତ୍ତ୍ୱଙ୍କର ସହିତ ବିଶେଷ ସମ୍ପର୍କ ନଥିବା କୌଣସି ବନଦେବୀ ବା କୌଣସି ବ୍ୟକ୍ତିକୁ ରୂପ ଦେଇ କୌଣସି ପ୍ରକାରେ ତାଙ୍କ ସହିତ ଯୋଡ଼ି ଦିଆଗଲା । ତେବେ ଏଠାରେ ଗୌତମଙ୍କର ଜନ୍ମଠାରୁ ବୁଦ୍ଧତ୍ୱ ପ୍ରାପ୍ତି ପର୍ଯ୍ୟନ୍ତ ତାଙ୍କୁ ବୋଧିସତ୍ତ୍ୱ ନାମରେ ଅଭିହିତ କରାଯିବ । କିନ୍ତୁ ତାଙ୍କର ପୂର୍ବଜନ୍ମ ସହିତ ଏହି ବିଶେଷଣର କୌଣସି ସମ୍ପର୍କ ଅଛି ବୋଲି ବୁଝିବା ଠିକ୍ ହେବ ନାହିଁ ।

---

( ୧ ) ଦେଖନ୍ତୁ—'ବୌଦ୍ଧସଂସ୍କୃତି ପରିଚୟ' ପୃଷ୍ଠା ୧୫୪

## ବୋଧିସତ୍ତ୍ୱଙ୍କର ବଂଶ

ତ୍ରିପିଟକ ଗ୍ରନ୍ଥରେ ବୋଧିସତ୍ତ୍ୱଙ୍କର ବଂଶ ଏବଂ ବାଲ୍ୟାବସ୍ଥା ସମ୍ପର୍କରେ ବିଶେଷ କିଛି ମିଳେ ନାହିଁ । ପ୍ରସଙ୍ଗାନୁସାରେ ଉପଦେଶ ପ୍ରଦତ୍ତ ହୋଇଥିବା ସୂତ୍ରମାନଙ୍କରେ ସେ କଥା ଉଲ୍ଲିଖିତ ହୋଇଛି ମାତ୍ର । ଅଟ୍‌ଠ କଥାମାନଙ୍କରେ ଉପଲଭ୍ୟ ବିବରଣୀ ସହିତ, ତ୍ରିପିଟକ ଗ୍ରନ୍ଥମାନଙ୍କ ବିବରଣୀର ଅସାମଞ୍ଜସ୍ୟ ବେଳେବେଳେ ପରିଲକ୍ଷିତ ହୁଏ । ତେଣୁ ପରସ୍ପର ବିରୋଧୀ କଥାମାନଙ୍କୁ ପୁଙ୍ଖାନୁପୁଙ୍ଖ ଭାବରେ ବିଚାର କରି, ପ୍ରକୃତରେ ଏହିଁରୁ କି ତଥ୍ୟ ବାହାରୁଛି, ଦେଖିବା ବିଧେୟ । 'ମଜ୍‌ଝିମନିକାୟ'ର "ଚୂଳ ଦୁକ୍‌ଖକ୍‌ଖନ୍ଧସୁତ୍ତ"ର ଅଟ୍‌ଠ କଥରେ ଗୌତମଙ୍କ ପରିବାର ସମ୍ପର୍କରେ ଏ ପ୍ରକାର ବିବରଣୀ ମିଳେ—

ଶୁଦ୍ଧୋଦନ, ଶୁକ୍ଳୋଦନ, ଶାକ୍ୟୋଦନ, ଧୋତୋଦନ ଓ ଅମିତୋଦନ, ଏପରି ପାଞ୍ଚଭାଇ ଥିଲେ । ଅମିତା ଦେବୀ ଏମାନଙ୍କର ଭଉଣୀ ଥିଲେ । ତିଷ୍ୟସ୍ଥବିର ତାଙ୍କର ପୁତ୍ର ଥିଲେ । ତଥାଗତ ଏବଂ ନନ୍ଦ, ଶୁଦ୍ଧୋଦନଙ୍କର ପୁତ୍ର ଥିଲେ । ମହାନାମ ଏବଂ ଅନିରୁଦ୍ଧ, ଶୁକ୍ଳୋଦନଙ୍କର ପୁତ୍ର ଏବଂ "ଆନନ୍ଦସ୍ଥବିର" ଅମିତୋଦନଙ୍କର ପୁତ୍ରଥିଲେ । ସେ ଭଗବାନ୍ ବୁଦ୍ଧଙ୍କ ଠାରୁ ଜ୍ୟେଷ୍ଠ ଓ ମହାନାମଙ୍କ-ଠାରୁ ବଡ଼ ଥିଲେ । ଏଠାରେ ପ୍ରଦତ୍ତ କ୍ରମ ଅନୁସାରେ ଅମିତୋଦନ ସାନ ଭାଇପରି ପ୍ରତୀତ ହୁଅନ୍ତି । ତେଣୁ ଏହା ଉତ୍ତର ରୂପେ ଜଣାଯାଉଛି ଯେ ତାଙ୍କର ପୁତ୍ର ଆନନ୍ଦ, ଭଗବାନ୍ ବୁଦ୍ଧଙ୍କଠାରୁ ବୟସରେ ଜ୍ୟେଷ୍ଠ ଥିଲେ । କିନ୍ତୁ ମନୋରଥ ପୂରଣୀ ଅଟ୍‌ଠ କଥାରେ, ଅନିରୁଦ୍ଧଙ୍କ ବିଷୟରେ ଲେଖା ହେଲାବେଳେ କୁହା-ଯାଇଛି—"ଅମିତୋଦନ ସକ୍‌କସ ଗେହେ ପଟିସନ୍ଧି ଗଣ୍ହି"

(ଅମିତୋଦନ ଶାକ୍ୟଙ୍କ ଘରେ ଜନ୍ମ ଗ୍ରହଣ କରିଥିଲେ) । ଜଣେ ବୁଦ୍ଧଘୋଷାଚାର୍ଯ୍ୟଙ୍କ ଲିଖିତ ଏ ଦୁଇ ଅଟ୍ଠ କଥାରେ ଏ ପ୍ରକାର ଅମେଳ ଦେଖାଯାଉଛି । ଗୋଟିଏ ଅଟ୍ଠ କଥାରେ ଆନନ୍ଦଙ୍କୁ ଅମିତୋଦନଙ୍କ ପୁତ୍ର ବୋଲି କୁହାଯାଇଛି । ଅଥଚ ଅନ୍ୟ କଥାଟିରେ, ଅନିରୁଦ୍ଧ ତାଙ୍କର ପୁତ୍ରବୋଲି ଲେଖାଅଛି । ଅତଏବ ଶୁକ୍ଳୋଦନ ପ୍ରଭୃତି ନାମଗୁଡ଼ିକ ମଧ୍ୟ କାଳ୍ପନିକ ହୋଇଥାଇପାରେ ବୋଲି ସନ୍ଦେହ ଜାତହୁଏ ।

## ବୋଧିସତ୍ତ୍ୱଙ୍କ ଜନ୍ମସ୍ଥାନ

ସୁତ୍ତନିପାତ ଅନୁସାରେ ବୁଦ୍ଧ, ଲୁମ୍ବିନୀ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ଆଜିକାଲି ମଧ୍ୟ ସେହିସ୍ଥାନକୁ 'ଲୁମ୍ବିନୀ ଦେଈ' କୁହାଯାଉଛି । ସେଠାରେ ମାଟିତଳେ ପୋତା ହୋଇଥିବା ଅଶୋକଙ୍କ ଶିଳାସ୍ତମ୍ଭରେ ଲେଖାଅଛି—"ଲୁଂମିନିଗାମେ ଉବାଲିକେ କଟେ ।" ଏହି ଦ୍ୱାରା ନିଃସନ୍ଦେହ ଭାବରେ ପ୍ରତିପାଦିତ ହେଉଅଛି ଯେ ଲୁମ୍ବିନୀ ଗ୍ରାମରେ ବୋଧିସତ୍ତ୍ୱ ଜନ୍ମ ହୋଇଥିଲେ ।

ଅନ୍ୟ ଏକ ସୁତ୍ତରେ ଏହି ମର୍ମରେ ଲେଖାଅଛି—ମହାମାନ୍ୟ ଶାକ୍ୟ କପିଳବସ୍ତୁର ଅଧିବାସୀ ଥିଲେ । ଶୁଦ୍ଧୋଦନ କପିଳବସ୍ତୁରେ ଥିଲେବୋଲି କେବଳ 'ମହାବଗ୍ଗ'ରେ ଉଲ୍ଲିଖିତ ହୋଇଛି । ଲୁମ୍ବିନୀ ଗ୍ରାମ ଏବଂ କପିଳବସ୍ତୁ ମଧ୍ୟରେ ବ୍ୟବଧାନ ହେଉଛି ପ୍ରାୟ ୧୪।୧୫ ମାଇଲ । ସୁତରାଂ ଶୁଦ୍ଧୋଦନ ବେଳେ ବେଳେ ଲୁମ୍ବିନୀ ଗ୍ରାମରେ, ନିଜ ଜମିଦାରୀରେ ରହୁଥିଲେ ବୋଲି ଅନୁମାନ କରି-ଯାଇପାରେ ଓ ସେ ସମୟରେ ବୋଧିସତ୍ତ୍ୱଙ୍କର ଜନ୍ମ ହୋଇଥିଲା । କିନ୍ତୁ 'ଅଙ୍ଗୁତ୍ତରନିକାୟ'ର 'ତିକନିପାତ'ର ୧୨୪ ସୁତ୍ତରେ ଏ ବିଷୟରେ ଯାହା ଲେଖାଅଛି, ତହିଁରୁ ଘୋର ସନ୍ଦେହ ଜାତହୁଏ ।

## କାଲମଙ୍କ ଆଶ୍ରମ

ଥରେ ଭଗବାନ୍ ବୁଦ୍ଧ କୋଶଳ ଦେଶରେ ଯାତ୍ରା କରୁ କରୁ କପିଳବସ୍ତୁରେ ଆସି ପହଞ୍ଚିଗଲେ । ତାଙ୍କ ଆଗମନ ସମ୍ବାଦ ଶୁଣି, ମହାମାନ୍ୟ ଶାକ୍ୟ ଯାଇ ତାଙ୍କୁ ସାକ୍ଷାତ କଲେ । ଭଗବାନ୍ ବୁଦ୍ଧ ନିଜେ ରାତ୍ରକ ପାଇଁ ମାତ୍ର ରହିବାର ସ୍ଥାନ ସ୍ଥିର କରିବାକୁ ତାଙ୍କୁ କହିଲେ । କିନ୍ତୁ ତାଙ୍କର ରହିବା ଭଳି ସ୍ଥାନ, କେଉଁଠାରେ ହେଲେ ମିଳିଲା ନାହିଁ । ଫେରିଆସି ସେ ବୁଦ୍ଧଙ୍କୁ କହିଲେ, 'ଆପଣଙ୍କ ପାଇଁ ଉପଯୁକ୍ତ ସ୍ଥାନ ମତେ ମିଳୁନାହିଁ । ଆପଣ ରାତ୍ରକ ପାଇଁ ଆପଣଙ୍କର ପୁରୁଣା ବ୍ରହ୍ମଚର୍ଯ୍ୟ 'ଭରଣ୍ଡୁ କାଲମ'ଙ୍କ ଆଶ୍ରମରେ ରହି ଯାଆନ୍ତୁ ।' ବୁଦ୍ଧଦେବ, ସେଠାରେ ରହିବାର ବନ୍ଦୋବସ୍ତ କରିବାକୁ ତାଙ୍କୁ କହିଲେ ଓ ସେହି ଆଶ୍ରମରେ ରାତ୍ରି ଯାପନ କଲେ ।

ପରଦିନ ସକାଳୁ ମହାମାନ୍ୟ ଶାକ୍ୟ, ବୁଦ୍ଧଦେବଙ୍କର ଦର୍ଶନ ପାଇଁ ସେଠାକୁ ଯିବାରୁ, ସେ କହିଲେ—"ହେ ମହାମାନ୍ୟ ଏ ସଂସାରରେ ତିନିପ୍ରକାର ଧର୍ମଗୁରୁ ଅଛନ୍ତି । ପ୍ରଥମ ଶ୍ରେଣୀର ଧର୍ମଗୁରୁମାନେ, କାମୋପଭୋଗ ପରିତ୍ୟାଗ କରନ୍ତି; କିନ୍ତୁ 'ରୂପ' ଓ 'ବେଦନା'କୁ ତ୍ୟାଗ କରନ୍ତି ନାହିଁ । ଦ୍ୱିତୀୟ ଶ୍ରେଣୀର ଗୁରୁମାନେ, କାମୋପଭୋଗ ଏବଂ ରୂପକୁ ମଧ୍ୟ ତ୍ୟାଗ କରନ୍ତି । କିନ୍ତୁ 'ବେଦନା'କୁ ତ୍ୟାଗ କରନ୍ତି ନାହିଁ । ତୃତୀୟ ପ୍ରକାରର ଗୁରୁମାନେ ଏହି ତିନୋଟି ଯାକ ତ୍ୟାଗ କରନ୍ତି । ଏହି ଧର୍ମ ଗୁରୁମାନଙ୍କର ଧ୍ୟେୟ ବସ୍ତୁ ଏକ ନା ଭିନ୍ନ ?

ଏହାପରେ ଭରଣ୍ଡୁ କାଲମ କହିଲେ—"ହେ ମହାମାନ୍ୟ ! ଏ ସମସ୍ତଙ୍କର ଧ୍ୟେୟ ଏକବୋଲି ଆପଣ କହନ୍ତୁ ।" କିନ୍ତୁ ଭଗବାନ୍ କହିଲେ, "ହେ ମହାମାନ୍ୟ ! ଏମାନଙ୍କର ଧ୍ୟେୟ ଭିନ୍ନ ଭିନ୍ନ

ବୋଲି ଆପଣ କହନ୍ତୁ । ଭିକ୍ଷୁ ଓ ଭିକ୍ଷୁଣୀ ଥିଲେ ମଧ୍ୟ ସେପରି କହିବାକୁ ଭରଣ୍ଡୁ ତାଙ୍କୁ କହିଲେ । ପୁଣି, ଭଗବାନ୍ ବୁଦ୍ଧ ସେମାନଙ୍କର ଧ୍ୟେୟ ଭିନ୍ନ ଭିନ୍ନ ବୋଲି କହିବାକୁ ତାଙ୍କୁ କହିଲେ । ମହାମାନ୍ୟଙ୍କ ପରି ପ୍ରଭାବଶାଳୀ ଶାକ୍ୟଙ୍କ ସମକ୍ଷରେ, ଗୌତମ ନିଜକୁ ଅପମାନିତ କଲେ, ଏହା ଭାବି ଭରଣ୍ଡୁ କାଲାମ, କପିଳବସ୍ତୁରୁ ଚାଲିଗଲେ ଓ ସେଠାକୁ ଆଉ କେବେ ଫେରିଲେ ନାହିଁ ।

## ଭରଣ୍ଡୁ କାଲାମସୁତ୍ତର ବୋଧ ବିଷୟ

ଏହି ସୁତ୍ତର ସମସ୍ତ କଥା ଏଠାରେ କୁହାଗଲା । ଏଥିରେ 'ବୁଦ୍ଧ-ଚରିତ'ର ଦୁଇ ତିନୋଟି କଥା ଅତି ସ୍ପଷ୍ଟ ଭାବରେ ଫୁଟି ଉଠିଛି । ପ୍ରଥମ କଥା ହେଉଛି, 'ବୁଦ୍ଧ' ହେବା ପରେ ଭଗବାନ୍ ଗୌତମ ବଡ଼ ଭିକ୍ଷୁସଂଘ ସହିତ କପିଳବସ୍ତୁ ଯାଇ ନ ଥିଲେ, କିମ୍ବା ଶାକ୍ୟ-ମାନେ ତାଙ୍କର ଯଥୋଚିତ ସତ୍କାର କରି ନ ଥିଲେ । ସେ ଏକାକୀ ଯାଇଥିଲେ । ତହିଁରେ ପୁଣି ତାଙ୍କ ପାଇଁ ଉପଯୁକ୍ତ ସ୍ଥାନ ଖୋଜିବାକୁ ସେହି 'ମହାମାନ୍ୟ'ଙ୍କୁ ମଧ୍ୟ ବହୁ ଶ୍ରମ ସ୍ୱୀକାର କରିବାକୁ ପଡ଼ିଥିଲା । ଯଦି ରାଜା ଶୁଦ୍ଧୋଦନ ବୋଧିସତ୍ତ୍ୱଙ୍କ ପାଇଁ ତିନୋଟି ପ୍ରାସାଦ ନିର୍ମାଣ କରିଥିଲେ; ତାହାହେଲେ ଗୋଟିକୁ ଖାଲି କରି ତାଙ୍କୁ ଦିଆ ନଗଲା କାହିଁକି ? କପିଳବସ୍ତୁରେ ଗୋଟାଏ ସଂସ୍ଥାଗାର ( ନଗର ମନ୍ଦିର ) ନିର୍ମିତ ହୋଇଥିବାର ଅନେକ ସ୍ଥାନରେ ଉଲ୍ଲେଖ ଅଛି । ବୁଦ୍ଧଦେବଙ୍କର ବୃଦ୍ଧାବସ୍ଥାରେ ଶାକ୍ୟ ସେହି ସଂସ୍ଥାଗାରର ପୁନର୍ନିର୍ମାଣ କରିଥିଲେ । ସେଠାରେ ଭିକ୍ଷୁସଂଘ ସହିତ ପ୍ରଥମତଃ ଭଗବାନ୍ ବୁଦ୍ଧ ଅବସ୍ଥାନ କରିବାକୁ ଅନୁରୁଦ୍ଧ ହୋଇଥିଲେ ଓ ସେ ସେଠାରେ ଧର୍ମୋପଦେଶ ମଧ୍ୟ ଦେଇ-

ଥିଲେ । (୧) କିନ୍ତୁ ଉଲ୍ଲିଖିତ ଘଟଣାରେ ସେହି ସଂସ୍ଥାଗାରରେ ରହିବାକୁ ବୁଦ୍ଧଙ୍କୁ ସ୍ଥାନ ମିଳି ନଥିଲା । ଏଥିରୁ ପ୍ରତୀତ ହୁଏ, ଶାକ୍ୟମାନଙ୍କ ମଧ୍ୟରେ ବୁଦ୍ଧଦେବ ଜଣେ ସାଧାରଣ ଯୁବକ ରୂପେ ପରିଗଣିତ ହେଉ ଥିଲେ ଓ କପିଳବସ୍ତୁରେ ତାଙ୍କର ବିଶେଷ କିଛି ମହତ୍ତ୍ୱ ନ ଥିଲା ।

ଦ୍ୱିତୀୟ କଥା ହେଉଛି, ଗୌତମଙ୍କ ଗୃହତ୍ୟାଗ ପୂର୍ବରୁ କପିଳବସ୍ତୁରେ ଏହି କାଲାମଙ୍କର ଆଶ୍ରମ ଥିଲା । କାଲାମଙ୍କର ଧର୍ମ ଜାଣିବା ପାଇଁ ତାଙ୍କୁ ମଗଧର ରାଜଗୃହ ପର୍ଯ୍ୟନ୍ତ ଯାତ୍ରା କରିବାର କୌଣସି ଆବଶ୍ୟକତା ନ ଥିଲା । ଏହି ସୂତ୍ରରୁ ଜଣା ଯାଉଛି ଯେ କପିଳବସ୍ତୁରେ ହିଁ ଭଗବାନ୍ ବୁଦ୍ଧ, କାଲାମଙ୍କର ଦର୍ଶନତତ୍ତ୍ୱ ଅଧ୍ୟୟନ କରିଥିଲେ । ତୃତୀୟରେ, ମହାମାନ୍ୟ ଶାକ୍ୟ ଯଦି ବୁଦ୍ଧଙ୍କର କକେଇ ପୁଅ ଭାଇ ହୋଇ ଥାନ୍ତି, ତାହାହେଲେ ସେ ବୁଦ୍ଧଙ୍କର ରହିବା ପାଇଁ ସ୍ଥାନର ବ୍ୟବସ୍ଥା ଭରଣ୍ଡଙ୍କର ଆଶ୍ରମରେ ନକରି ନିଜ ଘର ନିକଟରେ କୌଣସି ଭଲ ସ୍ଥାନରେ କରି ଦେଇ ଥାନ୍ତେ । ଶ୍ରମଣମାନେ ଗୃହସ୍ଥମାନଙ୍କ ଘରେ ତିନଦିନ ପର୍ଯ୍ୟନ୍ତ ରହିପାରୁ ଥିଲେ । ଏ ପ୍ରସଙ୍ଗରେ, ମାତ୍ର ରାତିକ ପାଇଁ 'ମହାମାନ୍ୟ' ନିଜ ଘରେ ବା ଅତିଥି ଭବନରେ ତାହା କରିପାରି ଥାନ୍ତେ । ହୁଏତ ମହାମାନ୍ୟଙ୍କ ଘର ଅତ୍ୟନ୍ତ ସଂକୀର୍ଣ୍ଣ ଥିବ ଅଥବା ବୁଦ୍ଧଦେବଙ୍କୁ ରାତିକ ପାଇଁ ଆଶ୍ରୟ ଦେବାର ଆବଶ୍ୟକତା ସେ ଅନୁଭବ କରି ନଥିବେ ।

ଏହି ସବୁ କଥା ବିଚାର କଲେ ଜଣାଯାଏ, ମହାମାନ୍ୟ ଶାକ୍ୟଙ୍କ ସହିତ ଭଗବାନ ବୁଦ୍ଧଙ୍କର ବିଶେଷ ନିକଟ ସମ୍ପର୍କ

---

(୧) ଦେଖନ୍ତୁ—ସଲ୍ଲାୟତନ ସଂଯୁତ୍ତ, ଆସୀବିସବଗ୍ଗ ସୁତ୍ତ ୭ ।

ନ ଥିଲା ଓ ଶୁଦ୍ଧୋଦନ ଶାକ୍ୟ କପିଳବସ୍ତୁଠାରୁ ଚଉଦ ମାଇଲ ଦୂରରେ ରହୁଥିଲେ । କପିଳବସ୍ତୁ ସହିତ ତାଙ୍କର ବିଶେଷ ସମ୍ପର୍କ ନ ଥାଇ ପାରେ, ପୁଣି ଶାକ୍ୟମାନଙ୍କର ସଭା ଅନୁଷ୍ଠିତ ହେବା-ବେଳେହିଁ ସେ କପିଳବସ୍ତୁ ଯାଉଥିବେ ।

## ଭଦ୍ଦିୟ ରାଜାଙ୍କ କଥା

'ମହାପଦାନ ସୁତ୍ତ'ରେ ଶୁଦ୍ଧୋଦନଙ୍କୁ ରାଜାବୋଲି କୁହାଯାଇଛି । ତାଙ୍କର ରାଜଧାନୀ କପିଳବସ୍ତୁ ଥିବାର ଉଲ୍ଲେଖ ତହିଁରେ ହୋଇଛି । କିନ୍ତୁ, ବିନୟପିଟକର ଚୂଲ୍ଲବଗ୍ଗରେ ଭଦ୍ଦିୟଙ୍କର ଯେଉଁ ଚରିତ ବର୍ଣ୍ଣିତ, ତହିଁରେ ଏସବୁ ବିବରଣୀର ବିରୋଧ ମତ ଦେଖାଯାଏ ।

ଅନିରୁଦ୍ଧଙ୍କ ବଡ଼ଭାଇ ମହାନାମ ନିଜ ପିତାଙ୍କ ମୃତ୍ୟୁପରେ ଘରର ସମସ୍ତ ଦାୟିତ୍ୱ ଗ୍ରହଣ କରିଥିଲେ । ଗୃହସ୍ଥାଶ୍ରମ ବିଷୟରେ ଅନିରୁଦ୍ଧଙ୍କର କୌଣସି ଧାରଣା ନ ଥିଲା । ବୁଦ୍ଧଦେବଙ୍କର ଖ୍ୟାତି ସର୍ବତ୍ର ବ୍ୟାପିଯିବାରୁ ବଡ଼ ବଡ଼ ଶାକ୍ୟ କୁଳର ଯୁବକମାନେ ଭିକ୍ଷୁ ହୋଇ ସଂଘରେ ପ୍ରବେଶ କରିବାକୁ ଲାଗିଲେ । ଏହା ଦେଖି ମହାମାନ୍ୟ ଅନିରୁଦ୍ଧଙ୍କୁ କହିଲେ, ଆମ କୁଳରୁ ଜଣେହେଲେ ଭିକ୍ଷୁ ହୋଇ ନାହାନ୍ତି । ଏଣୁ ହୁଏତ ତୁମେ ଭିକ୍ଷୁ ହୋଇଯାଅ ନହେଲେ ମୁଁ ଭିକ୍ଷୁ ହେବି । ଅନିରୁଦ୍ଧ କହିଲେ, ମୋ' ଦ୍ୱାରା ଏ କାର୍ଯ୍ୟ ହୋଇ ପାରିବ ନାହିଁ, ଆପଣହିଁ ଭିକ୍ଷୁ ହୋଇ ଯାନ୍ତୁ ।

ଏ କଥାକୁ ମହାମାନ୍ୟ ଗ୍ରହଣ କଲେ, ଓ ଗୃହସ୍ଥାଶ୍ରମ ସମ୍ପର୍କରେ କେତେକ ଶିକ୍ଷଣୀୟ କଥା ସାନଭାଇଙ୍କୁ ବତାଇ ଦେଲେ । ସେ କହିଲେ, ପ୍ରଥମେ ଜମି ଚାଷ କରିବାକୁ ପଡ଼ିବ ।

ପରେ ବଢ଼ନ ବୁଣିବାକୁ ହେବ । ତା'ପରେ ଜମିରେ ପାଣି ମଡ଼େଇବାକୁ ପଡ଼ିବ । ପୁଣି ଜମିରୁ ପାଣି ବାହାର କରି ବେଉଷଣ ପ୍ରଭୃତି କରିବାକୁ ପଡ଼ିବ, ଓ ଶେଷରେ ଫସଲ ପାଚି ଗଲେ ତା'କୁ କାଟିକରି ଆଦାୟ କରିବାକୁ ହେବ ।

ଅନିରୁଦ୍ଧ କହିଲେ, ଏସବୁ ବଡ଼ ଅଡୁଆ କାମ ଆପଣ ଘର ଚଳାନ୍ତୁ ଓ ମୁଁ ଯାଉଛି ଭିକ୍ଷୁ ହୋଇ ଯିବି ।

କିନ୍ତୁ ଭିକ୍ଷୁ ହେବା ପାଇଁ ତାଙ୍କ ମା' ଅନୁମତି ଦେଲେ ନାହିଁ । ସେ ଯେତେବେଳେ ସେ କଥାକୁ ଧରି ବସିଲେ, ତା'ଙ୍କ ମା' କହିଲେ; 'ଯଦି ଶାକ୍ୟମାନଙ୍କର ରାଜା ଭଦ୍ଦିୟ ତୋ ସହିତ ଭିକ୍ଷୁ ହେବେ, ତେବେ ଯାଇ ମୁଁ ତୋତେ ଅନୁମତି ଦେବି ।'

ଭଦ୍ଦିୟ ରାଜା ଅନିରୁଦ୍ଧଙ୍କର ମିତ୍ର ଥିଲେ । ଅନିରୁଦ୍ଧଙ୍କର ମା' ଭାବିଥିଲେ ଯେ ଭଦ୍ଦିୟ ରାଜପଦ ଛାଡ଼ି ଭିକ୍ଷୁ ହେବାକୁ ପ୍ରସ୍ତୁତ ହେବେ ନାହିଁ । ତେଣୁ ପୁଅ ଆଗରେ ସେ ଏପରି ଏକ ସର୍ତ୍ତ ଉପସ୍ଥାପନ କରିଥିଲେ । ଅନିରୁଦ୍ଧ ନିଜର ସେହି ମିତ୍ରଙ୍କ ନିକଟକୁ ଯାଇ ଭିକ୍ଷୁ ହେବା ପାଇଁ ତାଙ୍କୁ ଅନୁରୋଧ କଲେ । ଭଦ୍ଦିୟ କହିଲେ, "ତୁମେ ଆଉ ସାତବର୍ଷ ଅପେକ୍ଷା କରିଯାଅ ତା'ପରେ ମୁଁ ଭିକ୍ଷୁ ହୋଇଯିବି ।" କିନ୍ତୁ ଏତେ କାଳ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ଅନିରୁଦ୍ଧ ପ୍ରସ୍ତୁତ ନଥିଲେ । ଏଣୁ କ୍ରମେ କଥାବାର୍ତ୍ତା ପ୍ରସଙ୍ଗରେ ଛ'ବର୍ଷ, ପାଞ୍ଚବର୍ଷ, ତିନ ବର୍ଷ, ଦୁଇ ବର୍ଷ, ବର୍ଷେ, ସାତ ମାସ— ଏହି ଭଳି ଭାବରେ ସମୟର ସୀମା କମି ଆସିଲା । ଶେଷରେ ସାତଦିନ ପରେ ଅନିରୁଦ୍ଧଙ୍କ ସହିତ ଭିକ୍ଷୁ ହେବାକୁ ଭଦ୍ଦିୟ ସ୍ୱୀକୃତି ଦେଲେ । ସାତଦିନ ପରେ ଭଦ୍ଦିୟ, ଅନିରୁଦ୍ଧ, ଆନନ୍ଦ, ଭଗୁ, କିମ୍ବିଳ ଏବଂ ଦେବଦତ୍ତ, ଏହି ଛ'ଜଣ ଶାକ୍ୟପୁତ୍ର

ଓ ଉପାଳି ନାମକ ଜଣେ ଭଣ୍ଡାରୀ—ଏମାନେ ସଜ୍ଜିତ ଚତୁରଙ୍ଗ ସେନା ସହିତ କପିଳବସ୍ତୁଠାରୁ ବହୁଦୂରକୁ ଚାଲିଗଲେ । ତା'ପରେ ସେମାନେ ସୈନ୍ୟମାନଙ୍କୁ ଫେରାଇ ଦେଇ, ଶାକ୍ୟ ଦେଶର ସୀମା ଅତିକ୍ରମ କଲେ । ସେ ସମୟରେ ମଲ୍ଲମାନଙ୍କର ଅନୁପ୍ରିୟ ନାମକ ଗ୍ରାମରେ ବୁଦ୍ଧଦେବ ରହୁ ଥିଲେ । ଏହି ସାତ ଜଣ ସେଠାକୁ ଯାଇ ପ୍ରବ୍ରଜ୍ୟା ଗ୍ରହଣ କଲେ ।

## ଭଦ୍ଦିୟଙ୍କ କଥାର ସାର ମର୍ମ୍ମ

ଭଗବାନ୍ ବୁଦ୍ଧଙ୍କର ଯଶ ଓ ପ୍ରତିଷ୍ଠାରେ ଆକୃଷ୍ଟ ହୋଇ ଅନେକ ଶାକ୍ୟ ଯୁବକ ଭିକ୍ଷୁ ହେଲେ ଓ ସେ ପର୍ଯ୍ୟନ୍ତ ଶାକ୍ୟଙ୍କର ସିଂହାସନରେ ରାଜା ଭଦ୍ଦିୟ ଉପବିଷ୍ଟ ଥିଲେ । ତାହାହେଲେ ଶୁଦ୍ଧୋଦନ ରାଜା ଥିଲେ ବା ହେଲେ କେବେ ? ଶାକ୍ୟମାନେ ମିଳିମିଶି ନିଜ ରାଜାଙ୍କୁ ନିର୍ବାଚିତ କରୁଥିଲେ, ନା କୋଶଳ ଦେଶର ରାଜାଙ୍କ ଦ୍ୱାରା ତାଙ୍କର ନିଯୁକ୍ତି ହେଉଥିଲା, ଏସମ୍ପର୍କରେ ବିଶେଷ କିଛି କହି ହେବ ନାହିଁ । ଯଦି ଶାକ୍ୟ ଜାତି ନିଜ ରାଜାଙ୍କୁ ନିର୍ବାଚନ କରୁଥାନ୍ତା, ତାହାହେଲେ ଭଦ୍ଦିୟଙ୍କ ଅପେକ୍ଷା ମହାମାନ୍ୟଙ୍କ ପରି କୌଣସି ବିଶିଷ୍ଟ ଶାକ୍ୟ ସହଜରେ ନିର୍ବାଚିତ ହୋଇ ପାରି ଥାନ୍ତା । ପୁଣି ଅଙ୍ଗୁତ୍ତରନିକାୟର ପ୍ରଥମ ନିପାତରେ ବୁଦ୍ଧ କହିଥିବାର ଜଣାଯାଏ ଯେ, "ଉଚ୍ଚବଂଶରେ ଜନ୍ମ ହୋଇଥିବା ମୋର ଭିକ୍ଷୁ-ଶ୍ରମଣମାନଙ୍କ ମଧ୍ୟରେ କାଳିଗୋଧାଙ୍କ ପୁତ୍ର ଭଦ୍ଦିୟ ଶ୍ରେଷ୍ଠ ଅଟନ୍ତି ।" କେବଳ ଉଚ୍ଚ କୁଳରେ ଜନ୍ମଗ୍ରହଣ କରିଥିବା ହେତୁ, ଶାକ୍ୟମାନଙ୍କ ଭଳି ଗଣ ରାଜ୍ୟରେ ଭଦ୍ଦିୟଙ୍କୁ ରାଜ ପଦ ଅର୍ପଣ କରାଯାଇଥିବ, ଏହା ଯୁକ୍ତିଯୁକ୍ତ ମନେ ହେଉ ନାହିଁ । ସୁତରାଂ କୋଶଳ ଦେଶର ରାଜା ପସେନଦିଙ୍କ ଦ୍ୱାରା ଭଦ୍ଦିୟଙ୍କ ନିଯୁକ୍ତି ହୋଇଥିବା ଅନୁମାନ

ଅଧିକ ଯୁକ୍ତି ସଙ୍ଗତ ପ୍ରତୀତ ହେଉଛି । ତାହାହେଲେ, ଶୁଦ୍ଧୋଦନ କେବେହେଲେ ଶାକ୍ୟମାନଙ୍କର ରାଜାଥିଲେ ବୋଲି କୁହାଯାଇ ପାରିବନାହିଁ ।

## ଶାକ୍ୟଙ୍କର ପ୍ରଧାନ ବ୍ୟବସାୟ-କୃଷି

ତ୍ରିପିଟକ ସାହିତ୍ୟରେ ଉପଲଭ୍ୟ ପ୍ରମାଣ ଏବଂ ଅଶୋକଙ୍କର ଲୁମ୍ବିନୀଦେଶ ସମ୍ପର୍କୀୟ ଶିଳାଲେଖର ପ୍ରମାଣ—ଏ ଦୁଇଟି ପ୍ରମାଣ ବା ତଥ୍ୟ ବିଚାର କଲେ ସ୍ପଷ୍ଟ ଜଣାଯିବ ଯେ, ଶୁଦ୍ଧୋଦନ ଶାକ୍ୟ-ମାନଙ୍କ ମଧ୍ୟରୁ ଥିଲେ ଅନ୍ୟତମ । ଲୁମ୍ବିନୀ ଗ୍ରାମରେ ସେ ବାସ କରୁଥିଲେ ଓ ସେହିଠାରେ ହିଁ ବୋଧିସତ୍ତ୍ୱଙ୍କର ଜନ୍ମ ହୋଇଥିଲା । ଉପରେ ମହାମାନ୍ୟ ଓ ଅନିରୁଦ୍ଧଙ୍କର ଯେଉଁ ସମ୍ବାଦର ଅବତାରଣା କରାଯାଇଛି ତହିଁରୁ କୃଷି ତାଙ୍କର ପ୍ରଧାନ ବ୍ୟବସାୟ ଥିବାର ଜଣାଯାଏ । ଶୁଦ୍ଧୋଦନ ଶାକ୍ୟ ମଧ୍ୟ ସେହି କଥା କରୁଥିଲେ । ଜାତକର ନିଦାନ-କଥାରେ ଶୁଦ୍ଧୋଦନଙ୍କୁ ମହାରାଜ ରୂପେ ଅଭିହିତ କରି ତାଙ୍କ କୃଷି ସମ୍ପର୍କରେ ଏପରି ବର୍ଣ୍ଣନା କରାଯାଇଛି ।

ଦିନେ ରାଜାଙ୍କର ବୀଜବପନ ଉତ୍ସବ ( ବପ୍ପ ମଙ୍ଗଳ ) ମହାସମାରୋହରେ ପାଳିତ ହେଉଥିଲା । ସେଦିନ ନଗରର ଦେବତାମାନଙ୍କୁ ବିମାନମାନଙ୍କରେ ଉତ୍ତମ ରୂପେ ସଜ୍ଜିତ କରା-ଯାଇଥିଲା । ସମସ୍ତ ଶ୍ରମିକ ଓ ଭୃତ୍ୟ ନୂତନ ବସ୍ତ୍ର ଓ ମାଳା, ଚନ୍ଦନ ପ୍ରଭୃତିରେ ଭୂଷିତ ହୋଇ ରାଜ ଭବନରେ ରୁଣ୍ଡ ହୋଇଥିଲେ । ରାଜାଙ୍କର ଜମିରେ ଏକହଜାର ହଳ ପଡ଼ୁଥିଲା । ସେହିଦିନ ସାତଶହ ଅନେଶ୍ୱତ ହଳର ଦଉଡ଼ିରେ ବଳଦ ତଥା ବଳଦଙ୍କ ନାକ ଦଉଡ଼ିରେ ରୂପା ଗୁନ୍ଥଣି ହୋଇଥିଲା । ସୁବର୍ଣ୍ଣ ଖଚିତ ଲଙ୍ଗଳ ରାଜା ଧରୁଥିଲେ ଓ ମନ୍ତ୍ରୀମାନେ ରୌପ୍ୟ ଖଚିତ ସାତଶହ

ଅନେଶ୍ୱତ ହଳ ଧରୁ ଥିଲେ । ବାକି ଦୁଇଶହ ହଳ ଅନ୍ୟାନ୍ୟ ଲୋକେ ଧରୁ ଥିଲେ ଓ ସମସ୍ତେ ମିଳି ମିଶି ହଳ ବୁଲଉ ଥିଲେ । ରାଜା ଲଙ୍ଗଳରେ ଗୋଟିଏ ସିଧା ଗାର ଟାଣି ଦେଉଥିଲେ ।

ଏହି କଥାର ବହୁ ଅଂଶ ଯେ ଅତିରଞ୍ଜିତ, କହିବା ଅନାବଶ୍ୟକ । ତିଳକୁ ତାଳ କରି ଏଠାରେ ଥୁଆ ଯାଇଅଛି । ତେବେ ଏଥିରୁ ଏତିକ ଜଣାଯାଉଛି ଯେ, ଶୁଦ୍ଧୋଦନ ନିଜେ କୃଷି କରୁଥିଲେ । ଆଜିକାଲି ମହାରାଷ୍ଟ୍ର ଏବଂ ଗୁଜୁରାଟରେ ଯେପରି ଜମିଦାର ପଟେଲମାନେ ନିଜର କୃଷି କରନ୍ତି ଓ ଶ୍ରମିକଙ୍କ ସାହାଯ୍ୟରେ ମଧ କରାନ୍ତି ସେହିପରି ଶାକ୍ୟମାନେ ମଧ କରୁଥିଲେ । ପ୍ରଭେଦ ହେଉଛି, ଏହି ପଟେଲମାନଙ୍କର ରାଜକାର୍ଯ୍ୟ କ୍ଷମତା କିଛି ନାହିଁ କହିଲେ ଚଳେ । କିନ୍ତୁ ସେହି କ୍ଷମତା ବହୁ ପରିମାଣରେ ଶାକ୍ୟମାନଙ୍କର ଥିଲା । ନିଜର ଜମିଦାରୀର ଶ୍ରମିକ ଓ କୃଷକ-ମାନଙ୍କୁ ସେ ନ୍ୟାୟ ଦେଉଥିଲେ ଓ ନିଜ ଦେଶର ଆଭ୍ୟନ୍ତରୀଣ ଯାବତୀୟ କଥା ସନ୍ଥାଗାରରେ ଏକତ୍ରିତ ହୋଇ ବୁଝାଶୁଝା କରୁ-ଥିଲେ । କୌଣସି ବାଦବିବାଦ ଉପସ୍ଥିତ ହେଲେ ନିଜେ ନିଜେ ତା'ର ମୀମାଂସା କରି ଦେଉଥିଲେ । କିନ୍ତୁ, କୌଣସି ଲୋକକୁ ନିର୍ବାସନ କରିବା ପୂର୍ବରୁ ବା ଫାସିଦଣ୍ଡ ଦେବା ଆଗରୁ କୋସଳ ରାଜାଙ୍କର ଅନୁମତି ବା ଆଦେଶ ଆଣିବାକୁ ପଡ଼ୁଥିଲା । ଏହା ଚୂଳସଚ୍ଚକ ସୁତ୍ତର ତଳଲିଖିତ କଥାରୁ ଜାଣିହେବ ।

ଭଗବାନ୍ ବୁଦ୍ଧ କହୁଛନ୍ତି—"ହେ ଅଗ୍ଗିବେସ୍ସନ ! ପସେନଦିଙ୍କ ପରି କୋସଳ ଦେଶର ଓ ଅଜାତଶତ୍ରୁଙ୍କ ପରି ମଗଧର ମୂର୍ଦ୍ଧାଭିଷିକ୍ତ ରାଜାମାନେ ନିଜ ରାଜ୍ୟର ଅପରାଧୀଙ୍କୁ ମୃତ୍ୟୁ-ଦଣ୍ଡ, ଅର୍ଥ ଦଣ୍ଡ ଓ ନିର୍ବାସନ ଦଣ୍ଡ ଦେବାକୁ ପୂର୍ଣ୍ଣ ଅଧିକାରୀ ନା ନୁହନ୍ତି ।"

ସଚ୍ଚକ କହୁଛନ୍ତି—"ହେ ଗୌତମ ! ବଜ୍ଜୀ ଏବଂ ମଲ୍ଲମାନଙ୍କ ପରି ଗଣରାଜ୍ୟର ରାଜାମାନଙ୍କର ମଧ୍ୟ ନିଜ ନିଜ ରାଜ୍ୟର ଅପରାଧୀ ମାନଙ୍କୁ ପ୍ରାଣଦଣ୍ଡ ଅର୍ଥ ଦଣ୍ଡ ଓ ନିର୍ବାସନ ଦଣ୍ଡ ଦେବାର ଅଧିକାର ଅଛି । ତାହାହେଲେ କୋଶଳ ଓ ମଗଧ ଦେଶର ରାଜାମାନଙ୍କର ସେ ଅଧିକାର ଅଛି ବୋଲି କହିବାର ଆବଶ୍ୟକତା ନାହିଁ ।" ଏହି କଥୋପକଥନରୁ ଜଣାଯାଏ ଯେ, ଗଣ ରାଜ୍ୟମାନଙ୍କ ମଧ୍ୟରୁ କେବଳ ବଜ୍ଜୀ ଓ ମଲ୍ଲ ମାନଙ୍କର ପୂର୍ଣ୍ଣ ସ୍ୱାଧୀନତା ଥିଲା । ଶାକ୍ୟ, କୋଲିୟ, କାଶୀ, ଅଙ୍ଗ ପ୍ରଭୃତି ଗଣ ରାଜାମାନଙ୍କୁ କୋଶଳ ରାଜାଙ୍କଠାରୁ ଓ ଅଙ୍ଗର ଗଣ ରାଜାଙ୍କୁ ମଗଧ ରାଜାଙ୍କଠାରୁ ସେପରି ଦଣ୍ଡ ସମ୍ପର୍କରେ ଅନୁମତି ବା ଆଦେଶ ନେବାକୁ ପଡ଼ୁଥିଲା ।

## ମାୟାଦେବୀଙ୍କ ପରିଚୟ

ବୋଧିସତ୍ତ୍ୱଙ୍କ ମାତାଙ୍କ ସମ୍ପର୍କରେ ବିଶେଷ କିଛି ଜଣାଯାଏ ନାହିଁ । ତାଙ୍କ ମାତାଙ୍କ ନାମ ଯେ 'ମାୟାଦେବୀ', ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । କିନ୍ତୁ କେତେ ବର୍ଷ ବୟସରେ ଶୁଦ୍ଧୋଦନ ବିବାହ କରିଥିଲେ ଏବଂ କେତେ ବର୍ଷ ବୟସରେ ମାୟାଦେବୀ ବୋଧିସତ୍ତ୍ୱଙ୍କୁ ଜନ୍ମ ଦେଇଥିଲେ ଇତ୍ୟାଦିର ପ୍ରମାଣ କେଉଁଠାରେ ମିଳେ ନାହିଁ । 'ଅପଦାନ' ଗ୍ରନ୍ଥରେ ମହାପ୍ରଜାପତି ଗୌତମୀଙ୍କର ଏକ 'ଅପଦାନ' ଅଛି । ତହିଁରେ ସେ କହିଛନ୍ତି :—

**ପଚ୍ଛିମେଚ ଭବେଦାନି ଜାତାଦେବଦହେପୁରେ**
**ପିତା ଅଞ୍ଜନସକ୍କୋମେ ମାତାମମ ସୁଲକ୍ଖଣା ॥**
**ତତୋ କପିଲ ବତ୍ଥୁସ୍ମିଂ ସୁଦ୍ଧୋଦନ ଘରଂଗତା ॥**

ଅର୍ଥାତ୍, ଏହି ଶେଷ ଜନ୍ମରେ ମୁଁ ଦେବ ଦହ—ନଗରରେ ଜନ୍ମ ଗ୍ରହଣ କଲି । ମୋର ପିତା ହେଉଛନ୍ତି ଅଞ୍ଜନ ଶାକ୍ୟ ଏବଂ ସୁଲକ୍ଷଣା ମୋର ଜନନୀ । ପୁଣି ( ଯୁବକ ହେଲାପରେ ) ମୁଁ କପିଳବସ୍ତୁର ରାଜା ଶୁଦ୍ଧୋଦନଙ୍କ ଘରକୁ ଗଲି ଅର୍ଥାତ୍ ମୁଁ ଶୁଦ୍ଧୋଦନଙ୍କୁ ବିବାହ ହେଲି ।

ଗୌତମଙ୍କର ଏହି ଉକ୍ତିରେ ସତ୍ୟତାର ପରିମାଣ ଯେ କେତେ, କହିବା କଷ୍ଟକର । "କପିଳବସ୍ତୁର ଶୁଦ୍ଧୋଦନଙ୍କ ଘରକୁ ଗଲି" ଉପରୋକ୍ତ ବିବରଣୀ ସହିତ ଏହି କଥାର ଅସାମଞ୍ଜସ୍ୟ ସ୍ପଷ୍ଟ (୧) କିନ୍ତୁ ଅଞ୍ଜନ ଶାକ୍ୟ ଏବଂ ସୁଲକ୍ଷଣାଙ୍କ କନ୍ୟା ହେବା ସମ୍ପର୍କରେ କୌଣସି ବାଧକ ପ୍ରମାଣ ମିଳୁ ନଥିବାରୁ ଏକଥା କହିହେବ ଯେ, ଗୌତମୀ ଏବଂ ତାଙ୍କର ବଡ଼ ଭଉଣୀ ମାୟାଦେବୀ ଅଞ୍ଜନ ଶାକ୍ୟଙ୍କର ଦୁଇ କନ୍ୟା ଥିଲେ ଓ ଶୁଦ୍ଧୋଦନ ଶାକ୍ୟଙ୍କ ସହିତ ଦୁହିଙ୍କର ବିବାହ ହୋଇଥିଲା । ଦୁହେଁ ଏକ ସମୟରେ ବିବାହ କରିଥିଲେ କି ଭିନ୍ନ ଭିନ୍ନ ସମୟରେ ବିବାହ କରିଥିଲେ, ଜାଣିବାର କୌଣସି ବାଟ ନାହିଁ ।

ବୋଧିସତ୍ତ୍ୱଙ୍କର ଜନ୍ମର ସପ୍ତମ ଦିବସରେ ମାୟାଦେବୀଙ୍କର ପରଲୋକ ହୋଇଥିଲା, ଏହା ବୌଦ୍ଧ ସାହିତ୍ୟରେ ବେଶ୍ ଜଣାଶୁଣା । ବୋଧିସତ୍ତ୍ୱ ମାତୃହୀନ ହୋଇ କଷ୍ଟ ପାଉଥିବା ଦେଖି ଶୁଦ୍ଧୋଦନ ନିଜର ଶାଳୀଙ୍କୁ ବିବାହ କରିଥାଇ ପାରନ୍ତି । ଏହା ବିଶେଷ ଯୁକ୍ତିସଙ୍ଗତ ମନେ ହୁଏ । ଗୌତମୀ ନିଜର ଗର୍ଭଜାତ ସନ୍ତାନ ପରି ଅତ୍ୟନ୍ତ ଯତ୍ନ ସହକାରେ ବୋଧିସତ୍ତ୍ୱଙ୍କୁ ଲାଳନପାଳନ

(୧) କାରଣ ଭରଣ୍ଡୁ କଥାରୁ ଜଣାଯାଏ ଯେ ଶୁଦ୍ଧୋଦନ କପିଳବସ୍ତୁରେ ରହୁ ନଥିଲେ ।

କରିଥିବେ ଓ ସେ ଜନନୀଙ୍କର ଅଭାବ ଆଦୌ ଅନୁଭବ କରି ନ ଥିବେ ।

## ବୋଧିସତ୍ତ୍ୱଙ୍କ ଜନ୍ମ

ଜାତକର କଥାରେ ବୋଧିସତ୍ତ୍ୱଙ୍କ ଜନ୍ମ ସମ୍ପର୍କରେ ଯେଉଁ ବିବରଣୀ ମିଳେ, ତାହା ଏଠାରେ ପ୍ରଦାନ କରାଯାଉଛି ।

ମାୟା ଦେବୀଙ୍କର ଯେତେବେଳେ ଦଶମାସ, ସେତେବେଳେ ସେ ବାପ ଘରକୁ ଯିବାକୁ ଇଚ୍ଛା କଲେ । ରାଜା ଶୁଦ୍ଧୋଦନ ତାଙ୍କର ଏହି ମନକଥା ଜାଣିପାରି କପିଳବସ୍ତୁରୁ ଦେବଦହ ପର୍ଯ୍ୟନ୍ତ ସମଗ୍ର ମାର୍ଗ ପରିଷ୍କାର କରାଇ ଦେଲେ । ପତାକା ପ୍ରଭୃତି ଦ୍ୱାରା ମାର୍ଗଟିକୁ ମଣ୍ଡିତ କଲେ । ମାୟାଦେବୀଙ୍କୁ ପଲଙ୍କରେ ବସାଇ ଦଳବଳ ସହିତ ପିତୃ ଗୃହକୁ ପଠାଇ ଦେଲେ । ଯାଉ ଯାଉ ବାଟରେ ଲୁମ୍ବିନୀ—ବନରେ ଗୋଟାଏ ଶାଳ ଗଛ ମୂଳରେ ସେ ସନ୍ତାନ ପ୍ରସବ କଲେ । ରାଜା ଶୁଦ୍ଧୋଦନ ଯଦି ଜଣେ ସାଧାରଣ ଜମିଦାର ମାତ୍ର ହୋଇଥା’ନ୍ତେ, ତାହାହେଲେ ମାର୍ଗରେ ଏ ସାଜ ସଜ୍ଜା ପ୍ରଭୃତି କରି ପାରି ନ ଥା’ନ୍ତେ । ବିଶେଷ କଥା ହେଉଛି, ଦଶମାସର ଗର୍ଭିଣୀଙ୍କୁ ସାଧାରଣରେ କେହିହେଲେ ନିଜ ପିତୃଗୃହକୁ ପଠାନ୍ତି ନାହିଁ । ତେଣୁ ଏ’କଥାରେ ବିଶେଷ ସତ୍ୟତା ଅଛିବୋଲି ମନେ ହେଉ ନାହିଁ ।

ମହାପଦାନ ସୂତ୍ରରେ କୁହାଯାଇଛି, ବୋଧିସତ୍ତ୍ୱଙ୍କର ମାତୃ ଗର୍ଭରେ ପ୍ରବେଶଠାରୁ ଆରମ୍ଭ କରି ଜନ୍ମର ସାତ ଦିନ ପର୍ଯ୍ୟନ୍ତ, ଷୋହଳଟି ଅଲୌକିକ ଘଟଣା ଘଟିଥିଲା । ସେମାନଙ୍କ ମଧ୍ୟରୁ ନବମ ଘଟଣା ସମ୍ପର୍କରେ କୁହାଯାଇଛି, ବୋଧିସତ୍ତ୍ୱଙ୍କ ମା’ ଦଶମାସ ପୂର୍ଣ୍ଣହେବା ପରେହିଁ ତାଙ୍କୁ ଜନ୍ମ

ଦେଇଥିଲେ । ଅଷ୍ଟମ ଘଟଣା ସମ୍ପର୍କରେ ଲେଖାଅଛି, ବୋଧିସତ୍ତ୍ୱଙ୍କ ଜନ୍ମର ସାତଦିନପରେ ମାୟାଦେବୀଙ୍କର ପରଲୋକ ହୋଇଥିଲା । ଏହି ଅଦ୍ଭୁତ ଘଟଣାମାନ କୌଣସି ( ଅନ୍ୟ ) ବୋଧିସତ୍ତ୍ୱଙ୍କ ଜୀବନୀରୁ ନିଆଯାଇଛି । ଶେଷ ଘଟଣାଗୁଡ଼ିକ କଳ୍ପନା—ପ୍ରସୂତ ମାତ୍ର । କିନ୍ତୁ ଧୀରେ ଧୀରେ ସେଗୁଡ଼ିକ ମଧ୍ୟ ଗୌତମ ବୁଦ୍ଧଙ୍କର ଜୀବନଚରିତରେ ଭର୍ତ୍ତି ହୋଇଗଲା । ସ୍ଥଳରେ, ଜଣାଯାଉଛି, ବୋଧିସତ୍ତ୍ୱଙ୍କ ମାତା ତାଙ୍କୁ ଯେଉଁତବେଳେ ପ୍ରସବ କଲେ ସେ ସେତେବେଳେ ଠିଆ ହୋଇଥିଲେ । ବୋଧିସତ୍ତ୍ୱଙ୍କ ଜନ୍ମର ସାତ ଦିନ ପରେ ମାୟାଦେବୀ ସ୍ୱର୍ଗାରୋହଣ କରିଥିଲେ । ଜାତକର ନିଦାନ କଥାରେ କୁହା ଯାଇଛି ଯେ ମାୟାଦେବୀ ବୋଧିସତ୍ତ୍ୱଙ୍କୁ ଶାଳଗଛ ତଳେ ପ୍ରସବ କରିଥିଲେ । ପୁଣି ଅଶ୍ୱତ୍ଥ ଗଛ ତଳେ ଗୌତମ ଜନ୍ମ ଗ୍ରହଣ କରିଥିଲେ ବୋଲି ଲଳିତ ବିସ୍ତରରେ ଲେଖାଅଛି । ଲୁମ୍ବିନୀ ଗ୍ରାମରେ ଶୁଦ୍ଧୋଦନଙ୍କର ବାସଭବନ ବାହାରେ ଥିବା ଉଦ୍ୟାନରେ ବୁଲୁଥିବାବେଳେ ମାୟାଦେବୀ ତାଙ୍କୁ ପ୍ରସବ କରିଥିଲେ ବୋଲି ମଧ୍ୟ ତହିଁରୁ ଜଣାଯାଏ । ବୋଧିସତ୍ତ୍ୱ ଶାଳଗଛତଳେ ବା ଅନ୍ୟ କୌଣସି ଗଛତଳେ ଜନ୍ମ ହୋଇ ଥା'ନ୍ତୁ, ଏସବୁ ବର୍ଣ୍ଣନାରୁ ଏତିକି ମାତ୍ର ଜଣାଯାଏ ଯେ ଠିଆ ହୋଇଥିବା ଅବସ୍ଥାରେ ମାୟାଦେବୀ ତାଙ୍କୁ ଜନ୍ମ କରିଥିଲେ ।

## ବୋଧିସତ୍ତ୍ୱଙ୍କ ଭବିଷ୍ୟତ

ବୋଧିସତ୍ତ୍ୱଙ୍କ ଜନ୍ମପରେ ଶୁଦ୍ଧୋଦନ ତାଙ୍କୁ ମାୟାଦେବୀଙ୍କ ସହିତ ଘରକୁ ଘେନିଯାଇ ତାଙ୍କର ଭବିଷ୍ୟତ ସମ୍ପର୍କରେ ବଡ଼ ବଡ଼ ବ୍ରାହ୍ମଣ, ପଣ୍ଡିତମାନଙ୍କୁ ପଚାରିଥିଲେ । ତାଙ୍କଠାରେ ବତିଶ ଲକ୍ଷଣ ଦେଖି ପଣ୍ଡିତମାନେ କହିଲେ ଏ ହୁଏତ ରାଜଚକ୍ରବର୍ତ୍ତୀ ହେବ

କମ୍ବା "ସମ୍ୟକ୍ ସମ୍ବୁଦ୍ଧ" ହେବ । ଏସବୁର ବିସ୍ତୃତ ବର୍ଣ୍ଣନା, 'ଜାତକ କଥା', 'ଲଳିତବିସ୍ତର' ଏବଂ 'ବୁଦ୍ଧ ଚରିତ' କାବ୍ୟରେ କରାଯାଇଛି । ସେ ସମୟରେ ସାମୁଦ୍ରିକ ଲକ୍ଷଣ ମାନଙ୍କ ଉପରେ ଲୋକଙ୍କର ଯେ ଗଭୀର ବିଶ୍ୱାସ ଥିଲା, ତହିଁରେ ସନ୍ଦେହର ଅବକାଶ ନାହିଁ । ତ୍ରିପିଟକ ସାହିତ୍ୟର ଅନେକ ସ୍ଥଳରେ ମଧ୍ୟ ତହିଁର ବିସ୍ତୃତ ବର୍ଣ୍ଣନା ଅଛି । ପୋକ୍ଖର ସାତି ବ୍ରାହ୍ମଣ, ତରୁଣ ଅମ୍ବେଷ୍ଟକୁ ବୁଦ୍ଧଙ୍କ ଶରୀରର ଲକ୍ଷଣ ଗୁଡ଼ିକୁ ଦେଖିବାକୁ ପଠାଇ ଥିଲେ । କିନ୍ତୁ ତାଙ୍କୁ ସେ ଲକ୍ଷଣ ଗୁଡ଼ିକ ଦେଖା ଯାଇ ନ ଥିଲା । ବୁଦ୍ଧ ତାଙ୍କୁ ଅଦ୍ଭୁତ ଘଟଣା ଦେଖାଇଥିଲେ (୧) । ବୁଦ୍ଧ ଚରିତରେ ଓ ଅନ୍ୟତ୍ର ଏ ଲକ୍ଷଣ ଗୁଡ଼ିକର ସମ୍ପର୍କ ବା ଉଲ୍ଲେଖ ବହୁସ୍ଥଳରେ ଦେଖିବାକୁ ମିଳେ । କିନ୍ତୁ ଏସବୁରେ ବିଶେଷ କିଛି ତଥ୍ୟ ଅଛି ବୋଲି ଧରିନେବା ଠିକ୍ ନୁହେଁ, କାରଣ ତାଙ୍କର ଭକ୍ତମାନେ ତାଙ୍କ ମହତ୍ତ୍ୱ ପ୍ରତିପାଦନ କରିବା ପାଇଁ ଏସବୁ ସୃଷ୍ଟି କରିଅଛନ୍ତି । ତେବେ ବୋଧିସତ୍ତ୍ୱଙ୍କ ଜନ୍ମ ପରେ ଅସିତଋଷି ଯେଉଁ ଭବିଷ୍ୟତ ବାଣୀ କହିଥିଲେ, ତାହା ଅତି ପ୍ରାଚୀନ ପରି ଜଣାଯାଏ । ସୁତ୍ତନିପାତର ନାଳକସୁତ୍ତର ପ୍ରସ୍ତାବନାରେ ତାହାର ଉଲ୍ଲେଖ ଅଛି । ତଳେ ସେହି କଥା ସଂକ୍ଷେପରେ କୁହାଯାଉଛି ।

ଉତ୍ତମ ବସ୍ତ୍ର ପରିଧାନ କରି ଓ ଇନ୍ଦ୍ରଙ୍କର ସତ୍କାର କରିବା ସଙ୍ଗେ ସଙ୍ଗେ ନିଜର ଉତ୍ତରୀୟ ବସ୍ତ୍ର ପ୍ରଭୃତିକୁ ଆକାଶକୁ ଫିଙ୍ଗି ଦେବତାମାନେ ଆନନ୍ଦ ଉତ୍ସବରେ ମାତିଥିଲେ । ତାହା ଦେଖି ଅସିତଋଷି ସେହି ଉତ୍ସବ ପାଳନର ଉଦ୍ଦେଶ୍ୟ କ'ଣ ବୋଲି ପଚାରିଲେ । ଦେବତାମାନେ କହିଲେ—"ଲୁମ୍ବିନୀ ଗ୍ରାମର ଶାକ୍ୟ

(୧) ଦୀଘନିକାୟ, ଅମ୍ବଟ୍ଠ ସୁତ୍ତ ।

ବଂଶରେ ବୋଧିସତ୍ତ୍ୱ ଜନ୍ମଗ୍ରହଣ କରିଅଛନ୍ତି । ତାହା ଶୁଣି ଅସିତ ଋଷି ବିନମ୍ର ଭାବରେ ଶୁଦ୍ଧୋଦନଙ୍କ ଘରକୁ ଗଲେ ଓ କୁମାରଙ୍କୁ ଦେଖିବାକୁ ଇଚ୍ଛା ପ୍ରକାଶ କଲେ । କୁମାରଙ୍କ ସୁଲକ୍ଷଣ ଦେଖିବା ପରେ ହଠାତ୍ ତାଙ୍କ ମୁହଁରୁ ବାହାରି ପଡ଼ିଲା, "ମନୁଷ୍ୟମାନଙ୍କ ମଧ୍ୟରେ ଏ ସର୍ବଶ୍ରେଷ୍ଠ ।" ତାପରେ ତାଙ୍କର ନିଜ ଆୟୁଷ ଆଉ ଅଳ୍ପଦିନ ଥିବା କଥା ମନେ ପଡ଼ିଗଲା । ତେଣୁ ତାଙ୍କ ଆଖିରୁ ଲୁହ ବୋହିଗଲା । ଶାକ୍ୟ ତାଙ୍କୁ ପଚାରିଲେ, "ପିଲାଟିର ଆୟୁଷ ସମ୍ପର୍କରେ କିଛି ଆଶଙ୍କା କରୁଛନ୍ତି କି ?" ଅସିତ ତାଙ୍କୁ ସାନ୍ତ୍ୱନା ଦେଇ କହିଲେ, "ଭବିଷ୍ୟତରେ ଏ କୁମାର ସମ୍ବୁଦ୍ଧ ହୋଇଯିବ । କିନ୍ତୁ, ମୁଁ ଆଉ ବେଶୀ ଦିନ ବଞ୍ଚିବି ନାହିଁ ଓ ତାଙ୍କର ଧର୍ମତତ୍ତ୍ୱ ଶୁଣିବାକୁ ପାଇବି ନାହିଁ । ତେଣୁ ମୋ' ମନରେ ଗଭୀର ଦୁଃଖ ହେଉଛି ।" ଏହା କହି ଶାକ୍ୟଙ୍କୁ ଆନନ୍ଦିତ କରି ଋଷି ସେଠାରୁ ଚାଲିଗଲେ ।

## ବୋଧିସତ୍ତ୍ୱଙ୍କ ନାମ

**ସ ଶାକ୍ୟସିଂହଃ ସର୍ବାର୍ଥସିଦ୍ଧଃ ଶୌଦ୍ଧୋଦନିଶ୍ଚ ସଃ**
**ଗୌତମଶ୍ଚାର୍କ ବନ୍ଧୁଶ୍ଚ ମାୟାଦେବୀସୁତଶ୍ଚ ସଃ ।**

ଅମରକୋଷରେ ବୋଧିସତ୍ତ୍ୱଙ୍କର ଏହି ଛଅଟି ନାମ ଦେଖିବାକୁ ମିଳେ । ଏ ମଧ୍ୟରୁ ଶାକ୍ୟସିଂହ, ଶୌଦ୍ଧୋଦନି ଓ ମାୟାଦେବୀ-ସୁତ, ଏହି ତିନୋଟି ବିଶେଷଣାତ୍ମକ ନାମ । ଅର୍କବନ୍ଧୁ, ଏଥିରେ ତାଙ୍କର ଗୋତ୍ର ସୂଚିତ ହୁଏ । ବର୍ତ୍ତମାନ ପ୍ରଶ୍ନ ଉଠେ, ସର୍ବାର୍ଥସିଦ୍ଧ ଓ ଗୌତମ, ଏ ଦୁଇଟି ମଧ୍ୟରୁ କେଉଁଟି ତାଙ୍କର ପ୍ରକୃତ ନାମ; ନା ଦୁଇଟିଯାକ ତାଙ୍କର (ମୂଳ) ନାମ ଥିଲା ।

ବୋଧିସତ୍ତ୍ୱଙ୍କର ନାମ, ସର୍ବାର୍ଥସିଦ୍ଧି ଥିଲା ବୋଲି ତ୍ରିପିଟକ ସାହିତ୍ୟରୁ ଜଣାଯାଏ ନାହିଁ । କେବଳ ନିଦାନ କଥାରେ "ସିଦ୍ଧାର୍ଥ"

(ସିଦ୍ଧାର୍ଥ) ନାମ ଦେଖିବାକୁ ମିଳେ । କିନ୍ତୁ ତାହା ମଧ୍ୟ ଲଳିତ ବିସ୍ତରରୁ ଗୃହୀତ ହୋଇଥାଇପାରେ । ଲଳିତ ବିସ୍ତରରେ ଅଛି :—

"ଅସ୍ୟହି ଜାତମାତ୍ରେଣ ମମ ସର୍ବାର୍ଥାଃ ସଂସିଦ୍ଧାଃ ଯନ୍ନ୍ୱହମସ୍ୟ ସର୍ବାର୍ଥସିଦ୍ଧ ଇତି ନାମ କୁର୍ଯ୍ୟାମ୍ । ତତୋ ରାଜା ବୋଧିସତ୍ତ୍ୱଂ ମହତା ସତ୍କାରେଣ ସତ୍କୃତ୍ୟ ସର୍ବାର୍ଥସିଦ୍ଧୋୟଂ କୁମାରୋ ନାମ୍ନାଭବତ୍ତୁ ଇତି ନାମାସ୍ୟାକାର୍ଷୀତ୍"

ସର୍ବାର୍ଥସିଦ୍ଧ ନାମ ଅମରକୋଷରେ କେବଳ ଦିଆଯାଇଛି । ଲଳିତବିସ୍ତରରେ କିନ୍ତୁ ବୋଧିସତ୍ତ୍ୱଙ୍କୁ ବାରମ୍ବାର ସିଦ୍ଧାର୍ଥକୁମାର କୁହାଯାଇଛି । ଏହାର ପାଲିଭାଷାରେ ରୂପାନ୍ତର ହେଉଛି, ସିଦ୍ଧତ୍ଥ । ସର୍ବାର୍ଥସିଦ୍ଧର ପାଲି ଭାଷାରେ ରୂପ ହେବ 'ସବ୍‌ବତ୍ଥ-ସିଦ୍ଧ' । ତେଣୁ ଏହା ବଡ଼ ବିଚିତ୍ର ଲାଗେ । ହୁଏତ ଏହି ନିଦାନ୍କ୍ଟ୍ଟ ଜାତକ-ଅଟ୍ଠକଥାକାର, ସିଦ୍ଧତ୍ଥ ନାମ ପ୍ରୟୋଗ କରିଥିବେ । ଅନ୍ୟଭାଷାରେ କହିଲେ, ସର୍ବାର୍ଥସିଦ୍ଧ ବା ସିଦ୍ଧାର୍ଥ, ଏ ଦୁଇଟି ନାମ ଲଳିତ-ବିସ୍ତରକାର ଅଥବା ସେ ଭଳି ଅନ୍ୟ କୌଣସି ବୁଦ୍ଧଭକ୍ତ-କବିଙ୍କ କଳ୍ପନାରୁ ବାହାରିଥିବ । ବୋଧିସତ୍ତ୍ୱଙ୍କର ପ୍ରକୃତ ନାମ ଯେ ଗୌତମ ଏଥିରେ ସନ୍ଦେହ ନାହିଁ । ଥେରୀଗାଥାରେ ମହାପ୍ରଜାପତି ଗୌତମଙ୍କର ଯେଉଁ ଗାଥାଗୁଡ଼ିକ ଅଛି, ସେ ମଧ୍ୟରୁ ଗୋଟିଏ ଗାଥା ହେଉଛି :—

"ବହୂନଂବତ ଅତ୍ଥାୟ ମାୟାଜନୟି ଗୋତମଂ
ବ୍ୟାଧିମରଣତୁନ୍ନାନଂ ଦୁକ୍ଖକ୍ଖନ୍ଧଂ ବ୍ୟପାନୁଦି ।"

ଅର୍ଥାତ୍ ବହୁଲୋକଙ୍କର କଲ୍ୟାଣ ପାଇଁ ମାୟା, ଗୌତମଙ୍କୁ ଜନ୍ମ କଲେ । ବ୍ୟାଧି ଓ ମରଣ ପୀଡ଼ିତ ଲୋକମାନଙ୍କର ଦୁଃଖସମୂହକୁ ସେ ନଷ୍ଟ କଲେ ।

କିନ୍ତୁ ମହାପଦାନସୁତ୍ତରେ ବୁଦ୍ଧଙ୍କୁ "ଗୋତମୋ ଗୋତ୍ତେନ" କୁହାଯାଇଛି । ଏ ପ୍ରକାର ଅପଦାନ ଗ୍ରନ୍ଥମାନଙ୍କରେ ଅନେକ ସ୍ଥଳରେ "ଗୋତମୋ ନାମନାମେନ" ଏବଂ "ଗୋତମୋ ନାମ ଗୋତ୍ତେନ", ଏଭଳି ଦୁଇପ୍ରକାର ଉଲ୍ଲେଖ ଅଛି । ସୁତରାଂ ବୋଧିସତ୍ତ୍ୱଙ୍କର ନାମ ଏବଂ ଗୋତ୍ର ମଧ୍ୟରେ କିଛି ପ୍ରଭେଦ ନ ଥିଲା ବୋଲି ଆଶଙ୍କା ହେଉଛି । ତଥାପି 'ସୁତ୍ତନିପାତ'ର ଯେଉଁ ଗାଥା ଏଠାରେ ଉଦ୍ଧାର କରାଯାଉଛି, ତହିଁରୁ ଏ ଆଶଙ୍କା ଦୂର ହୋଇଯିବ ।

ଉଜୁଂଜାନପଦୋରାଜା ହିମବନ୍ତସ୍ୟ ପସ୍ସତୋ ।
ଧନ ବିରିୟେନ ସମ୍ପନ୍ନୋ କୋସଲେସୁ ନିକେତିନୋ ॥
ଆଦିଚ୍ଚାନାମ ଗୋତ୍ତେନ ସାକିୟାନାମ ଜାତିୟା ।
ତମ୍ହାକୁଲାପବ୍ବଜିତୋମ୍ହି ରାଜ ନ କାମେ ଅଭିପତ୍ଥୟଂ । (୧)

ଅର୍ଥାତ୍ (ବୋଧିସତ୍ତ୍ୱ, ରାଜା ବିମ୍ବିସାରଙ୍କୁ କହୁଅଛନ୍ତି) ହେ ରାଜା ! ଏଠାରୁ ସିଧା ସଳଖେ ହିମାଳୟ ଆଡ଼େ ଗଲେ, ଧନ ଏବଂ ବୀରତ୍ୱପୂର୍ଣ୍ଣ ଏକ ପ୍ରଦେଶ ପଡ଼ିବ । କୋସଳ ରାଷ୍ଟ୍ରରେ ସେହି ପ୍ରଦେଶଟି ସମାବେଶିତ ହୋଇଯାଇଛି । ସେଠାର ଲୋକଙ୍କର ଗୋତ୍ର ହେଉଛି ଆଦିତ୍ୟଗୋତ୍ର ଏବଂ ସେମାନଙ୍କୁ ଶାକ୍ୟ କୁହାଯାଏ । ମୁଁ ସେହି ବଂଶରୁ ପରିବ୍ରାଜକ ହୋଇଛି । ହେ ରାଜା ! ମୋର କାମୋପଭୋଗ ଇଚ୍ଛା ନାହିଁ ।" ଏହି ଉଦ୍ଧୃତ ଗାଥାରେ ଶାକ୍ୟଙ୍କ ଗୋତ୍ର ଆଦିତ୍ୟ ବୋଲି କୁହାଯାଇଛି । ଏକ ସମୟରେ ଆଦିତ୍ୟ ଏବଂ ଗୌତମ, ଏହି ଭଳି ଦୁଇଟି ଗୋତ୍ର ହୋଇ ନ ପାରେ । ପୁଣି ସୁତ୍ତନିପାତ, ଅତି ପ୍ରାଚୀନ କାଳରେ ରଚନା । ତେଣୁ ଶାକ୍ୟଙ୍କର

(୧) ପବ୍ବଜ୍ଜା ସୁତ୍ତ, ଗାଥା ୧୮-୧୯

ଗୋତ୍ର, ପ୍ରକୃତରେ ଆଦିତ୍ୟ ଗୋତ୍ର ବୋଲି ଗ୍ରହଣ କରାଯିବା ଉଚିତ । ଅମରକୋଷରେ 'ଅର୍କବନ୍ଧୁ' ବୋଲି ବୁଦ୍ଧଙ୍କର ଯେଉଁ ନାମ ଅଛି, ତାହା ତାଙ୍କ ଗୋତ୍ର-ପରିଚାୟକ ନାମ ବୋଲି କହିବାକୁ ହେବ । ଉଦ୍ଧୃତିରେ ଥିବା "ଆଦିଚ୍ଚା ନାମ ଗୋତ୍ତେନ" ସଙ୍ଗେ ତାହା ପୂରାପୂରି ମିଳିଯାଉଛି । ବୋଧିସତ୍ତ୍ୱଙ୍କର ଅସଲ ନାମଥିଲା ଗୌତମ । ଏବଂ ବୁଦ୍ଧତ୍ୱ ପ୍ରାପ୍ତ ହେବା ପରେ, ସେ ସେହି ନାମରେ ପ୍ରସିଦ୍ଧ ହେଲେ । "ସମଣୋ ଖଲୁ ଭୋ ଗୋତମୋ ସକ୍ୟ କୁଲା ପବ୍ବଜିତୋ", ଏହି ପ୍ରକାର ଉଲ୍ଲେଖ ସୁତ୍ତପିଟକର କେତେକ ସ୍ଥାନରେ ମିଳେ ।

## ବୋଧିସତ୍ତ୍ୱଙ୍କର ସମାଧି-ପ୍ରେମ

ଜାତକର 'ଦନ୍ତକଥା'ର ସାର ହେଉଛି—ରାଜା ଶୁଦ୍ଧୋଦନଙ୍କ କୃଷି ମହୋତ୍ସବ ସମୟରେ ଶିଶୁ ବୋଧିସତ୍ତ୍ୱଙ୍କୁ ସେ ସ୍ଥଳକୁ ନିଆଯାଇଥିଲା । ତାଙ୍କର ଧାଈମା, ଗୋଟିଏ ଜାମୁକୋଳି ଗଛମୂଳେ ତାଙ୍କୁ ଶୁଆଇ ଦେଇଥିଲେ । ସିଦ୍ଧାର୍ଥକୁମାର ଶୋଇପଡ଼ିଥିବାର ଦେଖି, ଧାଈମାନେ କୃଷିମହୋତ୍ସବ ଦେଖିବାକୁ ଚାଲିଗଲେ । ଏହି ସମୟରେ ବୋଧିସତ୍ତ୍ୱ ନିଦରୁ ଉଠି ସ୍ୱସ୍ତିକାସନରେ ଧ୍ୟାନମଗ୍ନ ହୋଇ ବସିଗଲେ । କିଛି ସମୟ ପରେ ଧାଈମାନେ ଆସି ଦେଖିଲେ ଯେ, ଅନ୍ୟ ଗଛମାନଙ୍କର ଛାଇ ଦୂରକୁ ଚାଲିଯାଇଛି କିନ୍ତୁ ସେହି ଜାମୁଗଛର ଛାଇ ଯେପରି ସେପରି ରହିଛି । ଏହି ଅଦ୍ଭୁତ ଘଟଣା ଦେଖି ରାଜା ଶୁଦ୍ଧୋଦନ, ବୋଧିସତ୍ତ୍ୱଙ୍କୁ ନମସ୍କାର କଲେ । ବୋଧିସତ୍ତ୍ୱଙ୍କ ଜୀବନର ଏ କଥାକୁ ଏପ୍ରକାର ଅଦ୍ଭୁତ ଭାବରେ ରୂପାୟିତ କରାଯାଇଛି, କିନ୍ତୁ ତହିଁରେ ବିଶେଷ କିଛି ଅର୍ଥ ନାହିଁ । ବୋଧହୁଏ, ପ୍ରକୃତ କଥା ହେଉଛି, ବୋଧିସତ୍ତ୍ୱ ପିତାଙ୍କ ସହିତ ଚାଷ ଜମିକୁ ଯାଇ ଲଙ୍ଗଳ ଚଳାଇବା

ପ୍ରଭୃତି କାର୍ଯ୍ୟ କରୁଥିଲେ ଓ ଅବକାଶ ସମୟରେ ଜମ୍ବୁ ବୃକ୍ଷ ମୂଳରେ ଧ୍ୟାନମଗ୍ନ ହୋଇ ବସିଯାଉଥିଲେ ।

ମଜ୍‌ଝିମନିକାୟର ମହାସଚ୍ଚକସୁତ୍ତରେ ଭଗବାନ୍ ବୁଦ୍ଧ, ସଚ୍ଚକଙ୍କୁ କହୁଛନ୍ତି—"ମୋର ମନେ ପଡ଼ୁଛି, ମୋ ବାପାଙ୍କ ଚାଲକୁ ମୁଁ ଯେତେବେଳେ ଯାଉଥିଲି, ସେତେବେଳେ ମୁଁ ବୃକ୍ଷର ଶୀତଳ ଛାୟାରେ ବସି, କାମୋପଭୋଗ ଓ ଅବୈଧ ବିଚାରମାନଙ୍କରୁ ମୁକ୍ତ ହୋଇ, ଉତ୍ତମ ବିଚାର-ପ୍ରତିଷ୍ଠିତ ସୁଖ ଓ ପ୍ରୀତି ସମ୍ପାଦନ ସମ୍ପର୍କରେ ଧ୍ୟାନମଗ୍ନ ହେଉଥିଲି । ଏହା କ'ଣ ତତ୍ତ୍ୱବୋଧର ପ୍ରକୃତ ମାର୍ଗ ହୋଇପାରିବନାହିଁ ? ମୋର ବିଜ୍ଞାନ, ସ୍ମୃତିକୁ ଅନୁସରଣ କଲା ଏବଂ ମତେ ଜଣାଗଲା, ଏହା ହେଉଛି ତତ୍ତ୍ୱବୋଧର ପ୍ରକୃତମାର୍ଗ । ହେ ଅଗ୍‌ଗିବେସନ ! ମୁଁ ମନକୁ ମନ ଭାବିଲି, ଯେଉଁ ସୁଖ କାମୋପଭୋଗ ଓ ଅବୈଧ ବିଚାରରେ ଲିପ୍ତନୁହେ, ସେହିପରି ସୁଖକୁ ମୁଁ କାହିଁକି ଡରିବି । ମୁଁ ପୁଣି ବିଚାର କଲି, ସେ ସୁଖକୁ ମୁଁ ଡରିବା ଉଚିତ ନୁହେ । କିନ୍ତୁ ସେହି ସୁଖ, ଦେହକୁ ଦଣ୍ଡ ଦେଇ ଦୁର୍ବଳ ହୋଇ ପଡ଼ିଥିବା ଲୋକପକ୍ଷରେ ସମ୍ଭବ ନୁହେ । ସୁତରାଂ ଯଥେଷ୍ଟ ପରିମାଣରେ ଅନ୍ନଗ୍ରହଣ କରିବା ଉଚିତ ।" ବୋଧିସତ୍ତ୍ୱ, ସାତବର୍ଷ ପର୍ଯ୍ୟନ୍ତ ଦେହକୁ ଦଣ୍ଡଦେଇ ସାଧନା ଚଳାଇଥିଲେ । ତା'ପରେ ପିତାଙ୍କ କୃଷି ଜମି ନିକଟରେ ଜାମୁଗଛମୂଳରେ ବସି କରିଥିବା ଧ୍ୟାନ କଥା ହଠାତ୍ ମନେ ପଡ଼ିଗଲା । ସେହି ମାର୍ଗ ତତ୍ତ୍ୱ-ବୋଧର ପ୍ରକୃତମାର୍ଗ ହେବା ଉଚିତ—ଏପରି ଭାବି ସେ ଦେହ ପୀଡ଼ା-ମୂଳକ ସାଧନାରୁ ବିରତ ହେଲେ ଓ ଆହାର ଗ୍ରହଣ କରିବା ପ୍ରଭୃତି ଆରମ୍ଭ କରିଦେଲେ । କିନ୍ତୁ ବୋଧିସତ୍ତ୍ୱ ବାଲ୍ୟକାଳରେ ସେହି ଧ୍ୟାନ-ତତ୍ତ୍ୱ କାହାଠାରୁ ଶିକ୍ଷା କରିଥିଲେ ? ତାହା କ'ଣ ମନକୁମନ, ଅନ୍ୟର ବିନା ସାହାଯ୍ୟରେ ଶିଖି ପକାଇଥିଲେ ? ବୁଦ୍ଧଦେବ ବାଲ୍ୟକାଳରେହିଁ

ସେହି ଧ୍ୟାନ ଶିକ୍ଷା କରିଥିଲେ ବୋଲି ଜାତକ ଅଟ୍‌ଠକଥା, ଲଳିତବିସ୍ତର ଓ ବୁଦ୍ଧଚରିତର ପ୍ରଣେତାମାନେ କହିଅଛନ୍ତି । ତେଣୁ ଏ କଥା କହିବାକୁ ପଡ଼ୁଛି ଯେ, ଅନ୍ୟର ବିନା ପରାମର୍ଶରେ ତାହା ସେ ସ୍ୱତଃ ପାଇଥିଲେ ଏବଂ ତାହା ଗୋଟାଏ ବଡ଼ ଅଦ୍ଭୁତ ଘଟଣା । ଏଥିପୂର୍ବେ ଭରଣ୍ଡୁ କାଲାମ ସୂତ୍ରରୁ ଯେଉଁ ଚରିତର ଅବତାରଣା କରାଯାଇଛି, ତହିଁରୁ ଏ ରହସ୍ୟର ପ୍ରକୃତ ମର୍ମ ଜଣାପଡ଼ଯାଏ । କାଲାମଙ୍କର ଆଶ୍ରମ, କପିଳବସ୍ତୁରେ ଥିଲା । ଶାକ୍ୟମାନଙ୍କ ମଧ୍ୟରେ ତାଙ୍କ ସମ୍ପ୍ରଦାୟର ତତ୍ତ୍ୱ ଜାଣିବା ଅନେକ ଲୋକ ଥାଇପାରନ୍ତି । ପୂର୍ବେ କାଲାମଙ୍କ ସମ୍ପର୍କରେ ଯେଉଁ କେତେକ ତଥ୍ୟ ଉପସ୍ଥାପିତ ହୋଇଛି ତହିଁରୁ ଜଣାଯାଏ ଯେ ସେ ଥିଲେ ଧ୍ୟାନମାର୍ଗୀ । ସେ ସମାଧିର ସାତୋଟି ସୋପାନ ଶିକ୍ଷା କରିଥିଲେ । ସେ ମଧ୍ୟରୁ ପ୍ରଥମ ସୋପାନ ଥିଲା—ଧ୍ୟାନ । ତେଣୁ ବୋଧିସତ୍ତ୍ୱ ଯଦି ନିଜ ଘରେ ତାକୁ ଶିଖିଥିଲେ, ତହିଁରେ କୌଣସି ବିଚିତ୍ରତା ନାହିଁ । ତେବେ ଏତିକିମାତ୍ର ଆଶ୍ଚର୍ଯ୍ୟ କଥା ହୋଇପାରେ ଯେ, ବାଲ୍ୟବୟସରେ ଓ କୃଷିକାର୍ଯ୍ୟ ସମୟରେ ମଧ୍ୟ ବୋଧିସତ୍ତ୍ୱଙ୍କର ଧାର୍ମିକ ମନୋବୃତ୍ତି ପ୍ରକଟିତ ହେଉଥିଲା ଓ ସେ ସମୟ ସମୟରେ ଧ୍ୟାନ-ସମାଧି ଅଭ୍ୟାସ କରୁଥିଲେ ।

## ବୋଧିସତ୍ତ୍ୱଙ୍କ ସମାଧି-ବିଷୟ

ବୋଧିସତ୍ତ୍ୱଙ୍କର ଧ୍ୟାନର ବିଷୟ କଣ ଥିଲା, କହିବା ସହଜ ନୁହେ । ଧ୍ୟାନର ଛବିଶଟି ବିଷୟ ମଧ୍ୟରୁ ବୋଧିସତ୍ତ୍ୱ କେଉଁ ବିଷୟରେ ଧ୍ୟାନ କରୁଥିଲେ, କହିବା ଅତ୍ୟନ୍ତ କଷ୍ଟକର । (୧) ତଥାପି

---

(୧) ବୃଦ୍ଧ ଘୋଷାଚାର୍ଯ୍ୟ ଓ ଅଭିଧର୍ମ ଅନୁସାରେ ବିଷୟ ୨୫ ଗୋଟି । ପରନ୍ତୁ ଉପେକ୍ଷା ପରେ ମଧ୍ୟ ପ୍ରଥମ ଧ୍ୟାନ ସାଧ୍ୟ ହୁଏ । ଏପରି ହେଲେ ୨୬ ଟି ବିଷୟ ହେଉଛି, ଦେଖନ୍ତୁ ସମାଧି ମାର୍ଗ ପୃ: ୬୮-୬୯ ।

ମୈତ୍ରୀ, କରୁଣା, ମୁଦିତା ଓ ଉପେକ୍ଷା—ଏହି ଗୁଡ଼ିକ ବିଷୟରେ ସେ ଧ୍ୟାନ କରୁଥିଲେ ବୋଲି ଅନୁମାନ କଲେ ଅସଙ୍ଗତ ହେବନାହିଁ; କାରଣ ଏଗୁଡ଼ିକ ତାଙ୍କର ପ୍ରେମମୟ ସ୍ୱଭାବର ଅନୁରୂପ ଥିଲା, ପୁଣି ଏ ସମ୍ପର୍କରେ ଅନ୍ୟ ଏକ ପ୍ରମାଣ ମଧ୍ୟ ମିଳେ ।

"ଭଗବାନ୍ ବୁଦ୍ଧ ଯେତେବେଳେ କୋଲିୟ ଦେଶରେ ହରିଦ୍ରବସନ ନାମକ ସହରରେ ରହୁଥିଲେ, ସେତେବେଳେ କେତେକ ଭିକ୍ଷୁ ପ୍ରାତଃକାଳରେ ଭିକ୍ଷା ଉଦ୍ଦେଶ୍ୟରେ ବାହାରିବା ପୂର୍ବରୁ ଅନ୍ୟ କୌଣସି ପରିବ୍ରାଜକଙ୍କ ଉଦ୍ୟାନକୁ ଯାଇଥିଲେ । ଏମାନେ ଯିବାରୁ, ସେଠାର ପରିବ୍ରାଜକମାନେ ଏମାନଙ୍କୁ କହିଲେ, "ଆମେ ଆମର ଶ୍ରାବକଙ୍କୁ ଏହି ଉପଦେଶ ଦେଉଛୁ—

"ହେ ବନ୍ଧୁଗଣ ! ଚିତ୍ତକୁ କଷ୍ଟ ଦେଉଥିବା ଓ ଚିତ୍ତକୁ ଦୁର୍ବଳ କରି ଦେଉଥିବା ପାଞ୍ଚୋଟି 'ନୀବରଣ'କୁ (୨) ଛାଡ଼ି ମୈତ୍ରୀ ପୂର୍ଣ୍ଣ-ଚିତ୍ତରେ ଗୋଟିଏ ଦିଗକୁ ପୂର୍ଣ୍ଣ କରିଦିଅ ଓ ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ଦିଗକୁ ମଧ୍ୟ ପୂର୍ଣ୍ଣ କରିଦିଅ । ଏହାପରେ ଉପର, ତଳ ଓ ଚାରି ଦିଗକୁ ବିପୁଳ ଶ୍ରେଷ୍ଠ, ସୀମାହୀନ, ଅବୈର ଓ ଦ୍ୱେଷହୀନ ମୈତ୍ରୀ ପୂର୍ଣ୍ଣ ଚିତ୍ତରେ ପୂର୍ଣ୍ଣ କରିଦିଅ, କରୁଣା ପୂର୍ଣ୍ଣ ଚିତ୍ତରେ······ମୁଦିତା ପୂର୍ଣ୍ଣ ଚିତ୍ତରେ······ଉପେକ୍ଷା ପୂର୍ଣ୍ଣ ଚିତ୍ତରେ ପୂର୍ଣ୍ଣ କରିଦିଅ । ଶ୍ରମଣ ଗୌତମ ମଧ୍ୟ ଏ ପ୍ରକାର ଉପଦେଶ ଦେଉଛନ୍ତି । ତାଙ୍କର ଓ ଆମ ଉପଦେଶ ମଧ୍ୟରେ ପ୍ରଭେଦ ବା କ'ଣ ଅଛି ?" (୩)

ଜାତକ ଅଟ୍ଠକଥା ଓ ଅନ୍ୟ ଅଟ୍ଠ କଥାମାନଙ୍କରୁ ଜଣାଯାଏ ଯେ, ଶାକ୍ୟ ଓ କୋଲିୟ ପରସ୍ପରର ପ୍ରତିବେଶୀ ଥିଲେ ।

(୨) ଦେଖନ୍ତୁ 'ମହାଯାନମାର୍ଗ' ପୃ ୩୧-୩୫ ।

(୩) ବୋଜ୍—ଝଙ୍ଗ ସଂଯୁତ୍ତ ବ ଗ ଗ ୬, ସୁତ୍ତ ୪ ।

ସେମାନଙ୍କ ମଧ୍ୟରେ ନିକଟ ସମ୍ପର୍କ ଥିଲା । ରୋହିଣୀ ନଦୀର ପାଣି (ବ୍ୟବହାର) ଯୋଗ, ବେଳେବେଳେ ସେମାନଙ୍କ ମଧ୍ୟରେ ବିବାଦ ଉପସ୍ଥିତ ହେଉଥିଲା । କୋଲିୟମାନଙ୍କର ରାଜ୍ୟରେ ଅନ୍ୟ ପନ୍ଥାର ପରିବ୍ରାଜକମାନେ ବୌଦ୍ଧ ସଂଘର ଭିକ୍ଷୁମାନଙ୍କୁ ଉପର୍ଯ୍ୟୁକ୍ତ ପ୍ରଶ୍ନ ପଚାରୁଥିଲେ । ସେହି ପରିବ୍ରାଜକମାନେ ସେଠାରେ ବହୁବର୍ଷ ଧରି ରହିଥାଇ ପାରନ୍ତି । ଏକଥା ନିଶ୍ଚିତ ଯେ, ସେମାନଙ୍କର ଆଶ୍ରମ-ଗୁଡ଼ିକ ବୁଦ୍ଧଦେବ ଧର୍ମୋପଦେଶ ଦେବାପରେ ସ୍ଥାପିତ ହୋଇନଥିଲା । ପରିବ୍ରାଜକମାନେ ସେଠାରେ ମୈତ୍ରୀ, କରୁଣା, ମୁଦିତା ଏବଂ ଉପେକ୍ଷା, 'ବ୍ରହ୍ମ ବିହାର'ର ଏହି ଚାରି ଉପଦେଶ ଦେଉଥିଲେ । (୧) ଏହି ଦୃଷ୍ଟିରୁ ସେମାନେ କାଲାମଙ୍କ ପନ୍ଥାର ଅନ୍ତର୍ଭୁକ୍ତ ଥିଲେ ବୋଲି ଗ୍ରହଣ କରିବାରେ ଆପତ୍ତି ବା କ'ଣ ? ବୋଧିସତ୍ତ୍ୱ, ଯୌବନା-ବସ୍ଥାରେ ବ୍ରହ୍ମ ବିହାରର ଏହି ତତ୍ତ୍ୱ ଲାଭ କରିଥିଲେ । ତାକୁ ହିଁ ଲକ୍ଷ୍ୟକରି, ସେ ପ୍ରଥମାବସ୍ଥାରେ ଧ୍ୟାନ କରୁଥିଲେ ବୋଲି କହିଲେ ବୋଧହୁଏ ଅସଙ୍ଗତ ହେବନାହିଁ ।

## ବୋଧିସତ୍ତ୍ୱଙ୍କର ଗୃହତ୍ୟାଗର କାରଣ କ'ଣ ?

ଏହାପରେ, ରାଜପ୍ରାସାଦରୁ ବୁଦ୍ଧଦେବଙ୍କର ଉଦ୍ୟାନ ଆଡ଼କୁ ଯିବା ବିଷୟ ହେଉଛି ବିଶେଷ ଗୁରୁତ୍ୱପୂର୍ଣ୍ଣ ଘଟଣା । ଶୁଦ୍ଧୋଦନ କେତେଗୁଡ଼ିଏ ବ୍ୟବସ୍ଥା କରିଥିଲେ; ଯଥା—ବୋଧିସତ୍ତ୍ୱଙ୍କ ଯିବା ମାର୍ଗରେ କୌଣସି ବୃଦ୍ଧ, ରୋଗୀ, କିମ୍ବା ଶବ—ଏସବୁ ରହିବ ନାହିଁ । ତଥାପି ଦେବତାମାନେ ତାଙ୍କର ଯିବା ବାଟରେ ଜଣେ ବୁଢ଼ାଙ୍କୁ ଆଣି ଠିଆ କରାଇ ଦିଅନ୍ତି । ତାଙ୍କୁ ଦେଖି

(୧) ବ୍ରହ୍ମ ବିହାରର ବ୍ୟାଖ୍ୟା "ସମାଧି ମାର୍ଗ" ୫ମ ଅଧ୍ୟାୟରେ ପ୍ରଦତ୍ତ

ବୁଦ୍ଧଦେବ ବିରକ୍ତ ହୋଇ ପ୍ରାସାଦକୁ ଫେରି ଯାଆନ୍ତି । ଏହାପରେ ଦେବତାମାନେ, ବ୍ୟାଧିଗ୍ରସ୍ତ ଲୋକ, ମୃତ ବ୍ୟକ୍ତିର ଦେହ ଓ ଚତୁର୍ଥରେ ଜଣେ ସନ୍ନ୍ୟାସୀକୁ ଆଣି ତାଙ୍କ ଯିବା ମାର୍ଗରେ ଉପସ୍ଥିତ କରାଇ ଦିଅନ୍ତି । ଏଥିରେ ସେ ପୂର୍ଣ୍ଣ ଭାବରେ ବିରକ୍ତ ହୋଇ ଘରକୁ ଫେରିଯାଆନ୍ତି ଓ ତତ୍ତ୍ୱବୋଧର ପ୍ରକୃତମାର୍ଗ ଅନୁସନ୍ଧାନ କରିବା ପାଇଁ ପ୍ରବୃତ୍ତ ହୁଅନ୍ତି । ଲଳିତବିସ୍ତର ପ୍ରଭୃତି ଗ୍ରନ୍ଥରେ ଏ ସବୁର ବଡ଼ ସୁନ୍ଦର ବର୍ଣ୍ଣନା କରାଯାଇଛି । କିନ୍ତୁ ତା ସଙ୍ଗେ ସଙ୍ଗେ କହିବାକୁ ପଡ଼ିବ ଯେ, ଏହି କଥାଗୁଡ଼ିକ ପୂରା ମାତ୍ରାରେ ଗ୍ରାହ୍ୟ ନୁହେଁ । ଯଦି ବୋଧିସତ୍ତ୍ୱ ବାଲ୍ୟକାଳରେ କୃଷିକ୍ଷେତ୍ର ଆଡ଼କୁ ଯାଉଥିଲେ ଏବଂ କାଲାମଙ୍କର ଆଶ୍ରମକୁ ଯାଇ ତାଙ୍କର ଦର୍ଶନତତ୍ତ୍ୱ ଶିକ୍ଷା କରୁଥିଲେ, ତାହାହେଲେ କିପରି ବିଶ୍ୱାସ କରିବାକୁ ହେବ ଯେ, ସେ ବୃଦ୍ଧ ଓ ରୋଗଗ୍ରସ୍ତ ଲୋକଙ୍କୁ ଦେଖି ନଥିଲେ ।

ଶେଷକୁ, ବୋଧିସତ୍ତ୍ୱ ଉଦ୍ୟାନକୁ ଯାଇଥିବାବେଳେ ଦେବତାମାନେ ଜଣେ ଆଦର୍ଶ ପରିବ୍ରାଜକଙ୍କୁ ସୃଷ୍ଟିକରି ବୁଦ୍ଧଦେବଙ୍କ ଆଗରେ ଠିଆ କରାଇ ଦେଲେ । ତାଙ୍କୁ ଦେଖି ସେ ସାରଥିଙ୍କୁ ପଚାରିଲେ "ଏ ଲୋକଟି କିଏ ?" ସେତେବେଳକୁ ବୁଦ୍ଧଦେବ ପରିବ୍ରାଜକ ହୋଇନଥିବାରୁ, କୌଣସି ପରିବ୍ରାଜକ କିମ୍ବା ତାଙ୍କର ଗୁଣ ସମ୍ପର୍କରେ ସାରଥିଙ୍କୁ କିଛି ଜଣାନଥିଲା । ତଥାପି ଦେବତାମାନଙ୍କର ପ୍ରଭାବରେ ସେ କହିଲେ, "ଏ ହେଉଛନ୍ତି ଜଣେ ପରିବ୍ରାଜକ ।" ଆହୁରି ମଧ୍ୟ ସେ ପରିବ୍ରାଜକଙ୍କ ଗୁଣାବଳୀ ବର୍ଣ୍ଣନା କଲେ । ଜାତକ ଅଟ୍ଠ କଥାରେ ଏପରି କୁହାଯାଇଛି; କିନ୍ତୁ କପିଳବସ୍ତୁରେ ଏବଂ ଶାକ୍ୟଙ୍କର ପଡ଼ୋଶୀ ରାଜ୍ୟରେ ଯଦି ପରିବ୍ରାଜକମାନଙ୍କ ଆଶ୍ରମ ଥିଲା, ତାହାହେଲେ ସେ ସମ୍ପର୍କରେ ସାରଥିଙ୍କର କିଛି ଅଭିଜ୍ଞତା ନଥିଲା ବୋଲି କହିବା ବିଶ୍ୱାସ ଯୋଗ୍ୟ ହେବ କି ?

ଅଙ୍ଗୁତ୍ତର ନିକାୟର ଚତୁକ୍କନିପାତରେ (୧) 'ବପ୍ପ'ଶାକ୍ୟଙ୍କ ଚରିତ ବର୍ଣ୍ଣିତ ହୋଇଅଛି । ସେ ନିର୍ଗ୍ରନ୍ଥ (ଜୈନ) ଶ୍ରାବକ ଥିଲେ । ଥରେ ମହାମୋଗ୍‌ଗଲ୍ଲାନଙ୍କ ସହିତ ବୁଦ୍ଧଙ୍କ ବିଷୟରେ ସେ ଚର୍ଚ୍ଚା କରୁଥିଲେ । ସେତିକିବେଳେ ଭଗବାନ ବୁଦ୍ଧ ସେଠାରେ ଉପସ୍ଥିତ ହେଲେ ଓ ବପ୍ପଙ୍କୁ ଉପଦେଶ ଦେଲେ । ତାହା ଶୁଣି ବପ୍ପ କହିଲେ,ନିର୍ଗ୍ରନ୍ଥମାନଙ୍କ ଉପାସନାରେ ମୋର କିଛି ଲାଭ ହେଲା ନାହିଁ । ବର୍ତ୍ତମାନ ଭଗବାନ୍ ବୁଦ୍ଧଙ୍କ ଉପାସନା ମତେ ଭଲ ଲାଗୁଛି । ଅଟ୍‌ଠକଥାକାରଙ୍କ ମତରେ ବପ୍ପ ଥିଲେ ଭଗବାନ ବୁଦ୍ଧଙ୍କର ପିତୃବ୍ୟ । କିନ୍ତୁ ମହାଦୁକ୍‌ଖକ୍‌ଖନ୍ଧସୁତ୍ତର ଅଟ୍‌ଠକଥା ସହିତ ଏ କଥାର ଅମେଳ ଘଟୁଛି । ସେ ଯାହାହେଉ, ବପ୍ପ ନାମକ ଜଣେ ବୟୋଜ୍ୟେଷ୍ଠ ଶାକ୍ୟ ଜୈନଥିଲେ, ଏଥିରେ ସନ୍ଦେହ ନାହିଁ । ଏଥିରୁ ଜଣାଯାଏ, ବୋଧିସତ୍ତ୍ୱଙ୍କ ଜନ୍ମପୂର୍ବରୁ ଶାକ୍ୟଦେଶରେ ଜୈନ ଧର୍ମର ପ୍ରସାର ହୋଇସାରିଥିଲା । ତେଣୁ ବୋଧିସତ୍ତ୍ୱଙ୍କର ପରିବ୍ରାଜକଙ୍କ ସମ୍ପର୍କରେ କିଛି ଧାରଣା ନଥିବା କଥା ଅସମ୍ଭବ-ପରି ମନେ ହେଉଛି ।

ତାହାହେଲେ ପ୍ରଶ୍ନ ଉଠୁଛି, ଏସବୁ ଅଦ୍ଭୁତ କଥା ବୋଧିସତ୍ତ୍ୱଙ୍କ ଜୀବନୀକୁ ଆସିଲା କିପରି । ମହାପଦାନସୁତ୍ତ (୨) ହିଁ ଏସବୁର ମୂଳ । ବୃଦ୍ଧ ମନୁଷ୍ୟକୁ ଦେଖି ବୋଧିସତ୍ତ୍ୱ ସାରଥିକୁ କି ପ୍ରକାର ପ୍ରଶ୍ନ କଲେ, ଏ ସମ୍ପର୍କରେ ଜାତକ ଅଟ୍‌ଠକଥାକାର କହିଛନ୍ତି, "ମହାପଦାନେ ଆଗତନୟେନ ପୁଚ୍ଛିତ୍ୱା" (ମହାପଦାନ ସୁତ୍ତରେ ଥିବା

(୧) ସୂତ୍ର ସଂ ୧୯୫

(୨) ଅପଦାନ (ସଂସ୍କୃତ, ଅବଦାନ) ଅର୍ଥ 'ସଚ୍ଚରିତ' । ମହାପୁରୁଷ-ମାନଙ୍କର ସଚ୍ଚରିତ-କଥା ଯହିଁରେ ସଂଗୃହୀତ, ତାହା ମହାପଦାନ ସୁତ୍ତ । ଏଥିରେ ପୂର୍ବଯୁଗର ଛଅଜଣ ଏବଂ ଏହି ଯୁଗର ଗୌତମଙ୍କୁ ମିଶାଇ ମୋଟ

କଥା ଅନୁସାରେ ପ୍ରଶ୍ନ ପଚୁରି) । ଏଥିରୁ ଜଣାଯାଏ, ଅଦ୍ଭୁତ କଥାଗୁଡ଼ିକ ମହାପଦାନସୁତ୍ତରୁ ନିଆଯାଇଛି ।

ବୋଧିସତ୍ତ୍ୱ ନିଜ ଗୃହତ୍ୟାଗର କାରଣ ନିଜେ ଅତ୍ତରି ସୁତ୍ତରେ ନିମ୍ନଲିଖିତ ପ୍ରକାରେ ବୁଝାଇଛନ୍ତି—

---

ସାତଜଣ ବୁଦ୍ଧଙ୍କ ଜୀବନଚରିତ ସଂକ୍ଷେପରେ ଦିଆଯାଇଛି । ବିପସ୍ସୀ ବୁଦ୍ଧଙ୍କ ଜୀବନ-ଚରିତ ବିସ୍ତୃତ ଭାବେ କୁହାଯାଇଛି । ଅଟ୍ଠ କଥାକାର କହନ୍ତି, ତାହା ଏକ ଆଦର୍ଶ ମାତ୍ର ଏବଂ ସେହି ଅନୁସାରେ ଅନ୍ୟବୁଦ୍ଧଙ୍କ ଚରିତଗୁଡ଼ିକ ବିସ୍ତୃତ ଭାବେ ବର୍ଣ୍ଣିତ ହେବା ଆବଶ୍ୟକ । ଏହି ବର୍ଣ୍ଣନାର ଅଧିକାଂଶ ବିଷୟ, ଉକ୍ତ ସୁତ୍ତ ରଚନାର ପୂର୍ବେ ବା ପରେ ଗୌତମ ବୁଦ୍ଧଙ୍କ ଜୀବନୀରେ ଭର୍ତ୍ତିକରି ଦିଆଯାଇଛି ଓ ସେଗୁଡ଼ିକ ତ୍ରିପିଟକ ସାହିତ୍ୟର ବିଭିନ୍ନ ସ୍ଥଳରେ ମଧ୍ୟ ଅଛି । କିନ୍ତୁ ଉଦ୍ୟାନ ଦର୍ଶନ ବିଷୟ ତ୍ରିପିଟକରେ ନାହିଁ । ତାହା ଜାତକ ଅଟ୍ଠ କଥାକାର ଗ୍ରହଣକରିଛନ୍ତି । ତାହାପୂର୍ବରୁ ଲଳିତବିସ୍ତରରେ ଏବଂ ବୁଦ୍ଧଚରିତ କାବ୍ୟରେ ଏକଥା ସମାବେଶିତ ହୋଇଛି ।

ଗୌତମବୋଧିସତ୍ତ୍ୱଙ୍କ ପାଇଁ ତିନୋଟି ପ୍ରାସାଦ ନିର୍ମାଣ କରାଯାଇଥିବା କଥା ଐତିହାସିକ ସତ୍ୟବୋଲି ମୁଁ ଧରି ନେଇଥିଲି; କିନ୍ତୁ ତାହାମଧ୍ୟ କଳ୍ପନା ପ୍ରସୂତ ପରି ପ୍ରତୀତ ହୁଏ । ଶୁଦ୍ଧୋଦନଙ୍କ ପରି ନିଜେ ଶ୍ରମିକ ଭଳି କାର୍ଯ୍ୟକରୁଥିବା ଜଣେ ଶ୍ରେଷ୍ଠିଆ ଜମିଦାର ନିଜପୁତ୍ର ପାଇଁ ସେ ତିନୋଟି ପ୍ରାସାଦ ନିର୍ମାଣ କରିପାରିଥିବେ, ଏହା ବିଶ୍ୱାସଯୋଗ୍ୟ ମନେହେଉନାହିଁ ।

ଜାତକକଥା, ଦ୍ୱିତୀୟ ଭାଗ, ଅନୁବାଦକ, ଚିନ୍ତାମଣି ବୈଜନାଥ ରାଜବାଡ଼େ (ପ୍ରକାଶକ, ଗ୍ରନ୍ଥସମ୍ପାଦକ ଓ ପ୍ରକାଶକ ମଣ୍ଡଳୀ ନମ୍ବର ୩୮୦ ଠାକୁରଦ୍ୱାର ରୋଡ଼, ବମ୍ବେ-୨) ସେ ଗ୍ରନ୍ଥର ଆରମ୍ଭରେ ମହାପଦାନ ସୁତ୍ତର ମରାଠୀ ଅନୁବାଦ ଦେଇଛନ୍ତି । ଯେଉଁମାନେ ଏ ବିଷୟରେ ବିଶେଷ ଭାବେ ଜାଣିବାକୁ ଚାହାନ୍ତି, ସେମାନେ ତାହା ଅବଶ୍ୟ ପଢ଼ିବା ଉଚିତ ।

**ଅତ୍ତଦଣ୍ଡା ଭୟଂଜାତଂ ଜନଂ ପସ୍‌ସଥ ମେଧଗଂ**
**ସଂବେଗଂ କିତ୍ତୟିସ୍‌ସାମି ଯଥା ସଂବିଜିତଂ ମୟା ।୧।**
**ଫନ୍ଦମାନଂ ପଜଂ ଦିସ୍ୱା ମଚ୍ଛେ ଅପ୍‌ପୋଦକେ ଯଥା**
**ଅଞ୍ଞମଞ୍ଞେହି ବ୍ୟାରୁଦ୍ଧେ ଦିସ୍ୱାମଂ ଭୟମାବିସି ।୨।**
**ସମନ୍ତମସାରୋ ଲୋକୋ ଦିସା ସବ୍‌ବା ସମେରିତା**
**ଇଚ୍ଛଂ ଭବନମତ୍ତନୋ ନାଦ୍ଦସାସିଂ ଅନୋସିତଂ**
**ଓସାନେତ୍ୱେବ ବ୍ୟାରୁଦ୍ଧେ ଦିସ୍ୱାମେ ଅରତି ଅହୁ ।୩।**

**ଅର୍ଥାତ୍** (୧) ଅସ୍ତ୍ର ଧରିବାକୁ ଭୟ ଲାଗିଲା । ଏହାଦ୍ୱାରା ଲୋକେ କିପରି କଳହଗୋଳ କରୁଛନ୍ତି ଦେଖ । ମୋଠାରେ କିପରି ବୈରାଗ୍ୟ ଜାତ ହେଲା, ତାହା ମୁଁ କହୁଛି । (୨) ଅଳ୍ପ ପାଣିରେ ମାଛମାନେ ଯେପରି ଛଟପଟ ହୁଅନ୍ତି, ଜଣେ ଅନ୍ୟଜଣକ ସହିତ କଳିକଳହ କରି ସେପରି ଛଟପଟ ହେଉଥିବାର ଦେଖି ମୋର ଅନ୍ତଃକରଣରେ ଭୟ ଜାତ ହେଲା । (୩) ଚତୁର୍ଦ୍ଦିଗରେ ଜଗତ ଅସାର ଦେଖାଗଲା । ପୁଣି ସବୁଦିଗ ତ ଥରହର ହେଉଛନ୍ତି ; ସୁତରାଂ ବିଭିନ୍ନ ଦିଗରେ ଭୟ ଶୂନ୍ୟ ଆଶ୍ରୟ ସ୍ଥଳ ମିଳିବ କାହୁଁ, ଏପରି ଜଣାଗଲା । କାହିଁକନା ନିଖିଳ ଜନତା ପରସ୍ପର ବିରୋଧରେ ଲାଗି ରହିଥିବାର ଦେଖି ମୋ ପ୍ରାଣ ବ୍ୟାକୁଳ ହୋଇ ଉଠିଲା ।

ରୋହିଣୀ ନଦୀର ପାଣି ପାଇଁ ଶାକ୍ୟ ଓ କୋଲିୟଙ୍କ ମଧ୍ୟରେ ବାଦବିବାଦ ଲାଗିଥିଲା । ପରେ ସେ ଦୁଇ ଜାତି, ନିଜ ନିଜର ସେନା ସଜ୍ଜିତ କରି ସେହି ନଦୀ ନିକଟକୁ ଗଲେ । ସେତିକି ବେଳେ ଭଗବାନ୍ ବୁଦ୍ଧ ସୈନ୍ୟମାନଙ୍କ ମଧ୍ୟରେ ଉପସ୍ଥିତ ହୋଇ

ଉକ୍ତ ସୂତ୍ରରେ କଥିତ ଉପଦେଶ ପ୍ରଦାନ କରିଥିଲେ । ଜାତକ ଅଟ୍ଠ କଥାରେ ଏପରି ଉଲ୍ଲେଖ ଅନେକ ସ୍ଥଳରେ ଦେଖାଯାଏ । କିନ୍ତୁ, ଏହା ଠିକ୍ ବୋଲି ମନେ ହେଉ ନାହିଁ । ପ୍ରକୃତରେ ଶାକ୍ୟ ଓ କୋଳିୟମାନଙ୍କୁ ଭଗବାନ୍ ବୁଦ୍ଧ ଉପଦେଶ ଦେଇ ପାରି ଥା'ନ୍ତି, ଓ ସେମାନଙ୍କ ମଧ୍ୟରେ ଥିବା ବାଦବିବାଦ ତୁଟାଇ ଦେଇଥାଇ ପାରନ୍ତି । କିନ୍ତୁ, ସେହି ସମୟରେ ଏହି ସୂତ୍ରବର୍ଣ୍ଣିତ ଉପଦେଶ ଦେଇଥିବା ପରି ଲାଗୁନାହିଁ । ସେହି ଉପଦେଶ ପ୍ରସଙ୍ଗରେ, ତାଙ୍କ ବୈରାଗ୍ୟ କିପରି ଜାତ ହେଲା ଓ ସେ କାହିଁକି ଘରୁ ବାହାରି ପଡ଼ିଲେ ସେକଥା ସେ କହିଛନ୍ତି । ରୋହିଣୀ ନଦୀର ଜଳ ବ୍ୟବହାର ସମ୍ପର୍କରେ ବା ସେପରି ଅନ୍ୟ କୌଣସି ସାମାନ୍ୟ କାରଣରୁ ଶାକ୍ୟ ଏବଂ କୋଳିୟମାନଙ୍କ ମଧ୍ୟରେ ବିବାଦ ଲାଗିଥିଲା । ଏହା ଯଦି ସତ୍ୟ ହୁଏ, ତେବେ ବୋଧିସତ୍ତ୍ୱଙ୍କ ପକ୍ଷରେ, ସେ ସ୍ଥଳରେ ସମସ୍ୟା ଥିଲା, ସେତିକିବେଳେ ସେ ଶସ୍ତ୍ର ଧାରଣ କରିବେ କି ନାହିଁ । କିନ୍ତୁ ଶସ୍ତ୍ର ଦ୍ୱାରା ବିବାଦର ନିଷ୍ପତ୍ତି ସମ୍ଭବପର ନ ଥିଲା । ଶାକ୍ୟ ଏବଂ କୋଳିୟଙ୍କ ବିବାଦ ଯଦି ବଳ ପ୍ରୟୋଗ କରି ମେଣ୍ଟା ଯାଇ ପାରି-ଥାଆନ୍ତା, ତାହାହେଲେ ମଧ୍ୟ ପୂର୍ଣ୍ଣ ଶାନ୍ତି ସ୍ଥାପନ ହୋଇ ପାରି ନ ଥାନ୍ତା । କାରଣ ସମାଧାନକାରୀଙ୍କୁ ପୁଣି ପଡ଼ୋଶୀ ରାଜ୍ୟ ସହିତ ଯୁଦ୍ଧ କରିବାକୁ ପଡ଼ି ଥାଆନ୍ତା । ତାଙ୍କୁ ଯଦି ସେ ହରାଇ ଦିଅନ୍ତା, ତେବେ ତାଙ୍କର ପଡ଼ୋଶୀ ରାଜାଙ୍କ ସହିତ ଯୁଦ୍ଧ କରିବାକୁ ପଡ଼ନ୍ତା । ସେ ପ୍ରକାର ଶସ୍ତ୍ର ଗ୍ରହଣ ଦ୍ୱାରା ସବଂଶ ଜୟପ୍ରାପ୍ତି ହୁଏତ ଅନିବାର୍ଯ୍ୟ ହୋଇ ପଡ଼ି ଥା'ନ୍ତା । କିନ୍ତୁ ଜୟପ୍ରାପ୍ତି ହୋଇଥିଲେ ମଧ୍ୟ ଶାନ୍ତି ପ୍ରତିଷ୍ଠା ହୋଇ ପାରି ନ ଥାନ୍ତା । କୋସଳର ରାଜା ପସେନଦି ଓ ବିମ୍ବିସାରଙ୍କ ପୁତ୍ର ତାହାର ଶତ୍ରୁ ପାଲଟି ଯାଇଥିଲେ । ତାହାହେଲେ ଶସ୍ତ୍ର ଗ୍ରହଣ କରିବା ଦ୍ୱାରା ବିଶେଷ କିଛି ଲାଭ ହୋଇ

ନଥାନ୍ତା । ମୁକ୍ତି ଶେଷ ହୁଅନ୍ତା ଝଗଡ଼ା ଲାଗିରହିବା ମଧ୍ୟ ଅଉଚିତ । ତେଣୁ, ଶସ୍ତ୍ର ଗ୍ରହଣ ପନ୍ଥାକୁ ବୁଦ୍ଧଦେବ ପସନ୍ଦକରି ନ ଥିଲେ, ବରଂ ଶମନବୃତ୍ତି ମାର୍ଗ ସେ ବାଛି ନେଇଥିଲେ ।

ସୁତ୍ତନିପାତର 'ପବ୍‌ବଜ୍ଜା ସୁତ୍ତ'ର ପ୍ରାରମ୍ଭରେ ନିମ୍ନୋଦ୍ଧୃତ ଗାଥା ଦେଖାଯାଏ ।

**ପବ୍ବଜଂ କିତ୍ତୟିସ୍‌ସାମି ଯଥାପବ୍ବଜି ଚକ୍‌ଖୁମା**
**ଯଥା ବୀମଂସମାନୋ ସୋପବ୍ବଜଂ ସମରୋଚୟି ।୧।**
**ସଂବାଧୋଽୟଂ ଘରାବାସୋ ରଜସ୍‌ସାୟ୍ତନଂ ଇତି**
**ଅବ୍‌ଭୋକାସୋଚ ପବ୍ବଜ୍ଜା ଇତି ଦିସ୍ୱାନ ପବ୍ବଜି । ୨ ।**

(୧) ଚକ୍ଷୁଷ୍ମାନ୍ ( ବୁଦ୍ଧ ) ପ୍ରବ୍ରଜ୍ୟା କାହିଁକି ଗ୍ରହଣ କଲେ ଓ କି ବିବେଚନାରୁ ତାହା ତାଙ୍କୁ ଭଲ ଲାଗିଲା, ତାହା କହି ମୁଁ ତାଙ୍କର ପ୍ରବ୍ରଜ୍ୟା ବର୍ଣ୍ଣନା କରୁଅଛି ।

(୨) ଗୃହସ୍ଥାଶ୍ରମ ବଡ଼ ବିରକ୍ତିକର ଓ ଖତଗଦାର ସ୍ଥାନ ଅଟେ । ପ୍ରବ୍ରଜ୍ୟା ହେଉଛି ମୁକ୍ତବାୟୁ । ଏହା ଜାଣି ସେ ପରିବ୍ରାଜକ ହୋଇଗଲେ ।

ମଜ୍‌ଝିମ ନିକାୟର 'ମହାସଚ୍ଚକ ସୁତ୍ତ'ରେ ଏ ସମ୍ପର୍କରେ କେତେକ କଥା ଦେଖାଯାଏ । ସେଠାରେ ଭଗବାନ୍ ବୁଦ୍ଧ କହୁଛନ୍ତି, "ହେ ଅଗ୍‌ଗିବେସ୍‌ସନ ! ସମ୍ବୋଧି ଜ୍ଞାନ ହେବା ପୂର୍ବରୁ ବୋଧିସତ୍ତ୍ୱ ଥିବା ଅବସ୍ଥାରେ ମୋତେ ଲାଗିଲା, ଗୃହସ୍ଥାଶ୍ରମ ହେଉଛି ଖତ କୁଢ଼ ଏବଂ ପ୍ରବ୍ରଜ୍ୟା ହେଉଛି ମୁକ୍ତ ପବନ । ଗୃହସ୍ଥାଶ୍ରମରେ ରହି ପରିପୂର୍ଣ୍ଣ ଓ ପରିଶୁଦ୍ଧ ବ୍ରହ୍ମଚର୍ଯ୍ୟ ପାଳନ କରିବା ଅସମ୍ଭବ ।

ତେଣୁ ମୁଁ ମୁଣ୍ଡିତ ମସ୍ତକ ହୋଇ ଓ କଷାୟ ବସ୍ତ୍ର ପରିଧାନ କରି ଗୃହତ୍ୟାଗ ପୂର୍ବକ ପରିବ୍ରାଜକ ହୋଇଯିବା ଉଚିତ ।

କିନ୍ତୁ 'ଅରିୟ ପରିୟେସନ ସୁତ୍ତ'ରେ ଏହାଠାରୁ ଟିକିଏ ଭିନ୍ନ କାରଣ ପ୍ରଦର୍ଶିତ ହୋଇଛି । ଭଗବାନ୍ ବୁଦ୍ଧ କହୁଛନ୍ତି— "ହେ ଭିକ୍ଷୁଗଣ ! ସମ୍ବୋଧି ଜ୍ଞାନ ହେବା ପୂର୍ବରୁ ଯେତେବେଳେ ମୁଁ ବୋଧିସତ୍ତ୍ୱ ଥିଲି ସେତେବେଳେ ମୁଁ ସ୍ୱୟଂ ଜନ୍ମ-ଧର୍ମୀ ହୋଇ, ଜନ୍ମ ମରଣ ପ୍ରବାହରେ ପ୍ରବେଶ କରିଥିଲି ଓ ପୁତ୍ର-କଳତ୍ର, ଦାସଦାସୀ ପ୍ରଭୃତିଙ୍କଠାରେ ଆସକ୍ତ ଥିଲି । ଏହିସବୁ ବସ୍ତୁମାନଙ୍କରେ ପରମ ସୁଖ ନିହିତ ବୋଲି ମୋତେ ପ୍ରତୀତ ହେଉଥିଲା । ନିଜେ ଜରା ଧର୍ମୀ, ବ୍ୟାଧି ଧର୍ମୀ, ମରଣ ଧର୍ମୀ ଓ ଶୋକ ଧର୍ମୀ ହୋଇ, ଜରା, ବ୍ୟାଧି, ମରଣ ଏବଂ ଶୋକ ପ୍ରବାହରେ ପଡ଼ିଥିବା ବସ୍ତୁମାନଙ୍କର ପଛରେ ଧାଇଁଥିଲି । ସେତେବେଳେ ମୁଁ ଭାବୁଥିଲି ଯେ, ମୁଁ ନିଜେ ଜନ୍ମ, ମରଣ, ଜରା, ବ୍ୟାଧି ଏବଂ ଶୋକରେ ଆବଦ୍ଧ । ଆହୁରି ମଧ୍ୟ ଏଗୁଡ଼ିକରେ ସଂବଦ୍ଧ ପୁତ୍ର କଳତ୍ର ପ୍ରଭୃତିଙ୍କ ପଛରେ ଲାଗି ରହିଥିବା ଠିକ୍ ନୁହେଁ । ଅତଏବ ଜରା ମରଣ ପ୍ରଭୃତିରୁ ଯେଉଁ ଦୁର୍ଗତି ଘଟୁଥିଲା, ତାହା ଦେଖି ମୁଁ ସ୍ଥିର କଲି ଯେ, ମୁଁ ଅଜନ୍ମ, ଅ-ଜରା, ଅ-ବ୍ୟାଧି, ଅ-ମରଣ ଓ ଅ-ଶୋକ ଯୁକ୍ତ ତଥା ପରମ ଶ୍ରେଷ୍ଠ ନିର୍ବାଣର ଅନୁସନ୍ଧାନ କରିବି ।

ଏହିଭଳି ଭାବରେ, ବୋଧିସତ୍ତ୍ୱଙ୍କ ପ୍ରବ୍ରଜ୍ୟାର, ସାଧାରଣ ଭାବରେ ତିନୋଟି କାରଣ ଦିଆଯାଇଛି ।

(୧) ନିଜର ଆପ୍ତ ଲୋକମାନଙ୍କର ପରସ୍ପର ବାଦବିବାଦରେ ଅସ୍ତ୍ରଧାରଣ କରିବାକୁ ତାଙ୍କୁ ଭୟ ଲାଗିଲା ।

(୨) ଘରଦ୍ୱାର ବଡ଼ ବିରକ୍ତିକର ଓ ଖଟଗଦାର ସ୍ଥାନ ପରି ତାଙ୍କୁ ବୋଧ ହେଲା ।

(୩) ତାଙ୍କୁ ଲାଗିଲା ଯେ ସେ ନିଜେ ଜନ୍ମ, ଜରା ମରଣ, ବ୍ୟାଧି ଓ ଶୋକରେ ଆବଦ୍ଧ ରହି, ସେହିପରି ଆବଦ୍ଧ ଥିବା ବସ୍ତୁମାନଙ୍କଠାରେ ଆସକ୍ତ ରହିବା ଶ୍ରେୟସ୍କର ନୁହେଁ । ଏହିତିନୋଟିଯାକ କାରଣ ଯୁକ୍ତି ସଙ୍ଗତ ମନେ ହେଉଛି ।

ବୋଧିସତ୍ତ୍ୱଙ୍କ ଜାତି ଭାଇ ଶାକ୍ୟ ତଥା କୋଳୀୟମାନଙ୍କ ମଧ୍ୟରେ ବିବାଦ ଉପସ୍ଥିତ ହେବାବେଳେ ସେ ନିଜେ ସେହି ବିବାଦରେ ଯୋଗ ଦେବେ କି ନାହିଁ ଏ ପ୍ରଶ୍ନ ଉଠିଲା । ସେ ବୁଝିଥିଲେ ଯେ ଗଣ୍ଡଗୋଳରେ ବିବାଦ ମେଣ୍ଟିବ ନାହିଁ । କିନ୍ତୁ, ତହିଁରେ ଯଦି ସେ ଭାଗ ନ ନିଅନ୍ତି, ତାହାହେଲେ ଲୋକେ ତାଙ୍କୁ ଭୟାଳୁ ବୋଲି କହିବେ ଓ ସେହି କାରଣରୁ ସେ ଗୃହସ୍ଥାଶ୍ରମରେ ପ୍ରବେଶ କଲେ ନାହିଁ ବୋଲି ଲୋକେ ମନେ କରିବେ । ଏହା ଫଳରେ ତାଙ୍କୁ ଗୃହସ୍ଥାଶ୍ରମ ଗୋଟାଏ ପ୍ରତିବନ୍ଧକ ପରି ପ୍ରତୀତ ହେଲା । ତାହା ଅପେକ୍ଷା ସନ୍ନ୍ୟାସୀ ହୋଇ ନିରପେକ୍ଷ ଭାବେ ଅରଣ୍ୟରେ ଭ୍ରମଣ କରିବା ଅଧିକଶ୍ରେୟ ମନେହେଲା ? ନିଜର ପତ୍ନୀ ଓ ପୁତ୍ରଙ୍କଠାରେ ଅତ୍ୟଧିକ ସ୍ନେହ ଓ ପ୍ରୀତି ଥିବାରୁ ଗୃହତ୍ୟାଗ କରିବା ବଡ଼ କଷ୍ଟକର ବୋଧ-ହେଲା । ସେଥିପାଇଁ ତାଙ୍କୁ ବିଶେଷ ଭାବରେ ଚିନ୍ତା କରିବାକୁ ପଡ଼ିଲା । ସେ ଭାବିଲେ, ମୁଁ ତ ନିଜେ ଜନ୍ମ-ଜରା-ବ୍ୟାଧି-ମରଣ-ଧର୍ମୀ । ତେଣୁ ସେମାନଙ୍କ ଦ୍ୱାରା ଆବଦ୍ଧ ସ୍ତ୍ରୀ ପୁତ୍ରଙ୍କଠାରେ ଆସକ୍ତ ହୋଇ ବାନ୍ଧି ହେବାରେ ଓ ଖଟଗଦା ଭଳି ଗୃହସ୍ଥାଶ୍ରମରେ ପଡ଼ି ରହିବାରେ କି

ଫଳଅଛି ? ସେହି କାରଣରୁ ସେ ସନ୍ନ୍ୟାସୀ ହୋଇଗଲେ । ତିନୋଟି କାରଣ ମଧ୍ୟରୁ ସନ୍ନ୍ୟାସୀ ହେବାର ମୁଖ୍ୟ କାରଣ ଥିଲା, ଶାକ୍ୟ ଓ କୋଳିୟମାନଙ୍କ ମଧ୍ୟରେ ବାଦ ବିବାଦ । ଏହି ସବୁ କଥା ଉତ୍ତମ-ରୂପେ ଅବଗତ ହେଲେ ବୁଦ୍ଧଦେବଙ୍କର ତତ୍ତ୍ୱଜ୍ଞାନରୁ ପ୍ରାପ୍ତ ମଧ୍ୟମ ମାର୍ଗର ଅର୍ଥ ସହଜରେ ବୁଝି ହେବ ।

## ରାହୁଲ କୁମାର

ବୋଧିସତ୍ତ୍ୱ ଯୌବନାବସ୍ଥାରେ ବିବାହ କରିଥିଲେ । ଗୃହତ୍ୟାଗ ପୂର୍ବରୁ ତାଙ୍କର 'ରାହୁଲ' ନାମକ ପୁତ୍ର ଜନ୍ମ ହୋଇଥିଲା । ଏକଥାର ପ୍ରମାଣ ତ୍ରିପିଟକରେ ଦେଖିବାକୁ ମିଳେ । ଜାତକ ନିଦାନ କଥାରେ କୁହାଯାଇଛି ଯେ, ଯେଉଁଦିନ ରାହୁଲ ଜନ୍ମ ହେଲେ ସେଦିନ ବୁଦ୍ଧଦେବ ଗୃହତ୍ୟାଗ କଲେ । କିନ୍ତୁ, ଅନ୍ୟ ଅଟ୍‌ଠ କଥାମାନଙ୍କ ଅନୁସାରେ ରାହୁଲ ଜନ୍ମହେବାର ସପ୍ତମ ଦିବସରେ ସେ ଗୃହତ୍ୟାଗ କରିଥିଲେ । ପ୍ରାଚୀନ ଗ୍ରନ୍ଥମାନଙ୍କରେ ଏ ଦୁଇ ମତର କୌଣସି ପ୍ରମାଣ ମିଳେ ନାହିଁ । କେବଳ ଏତିକି ମାତ୍ର ନିଶ୍ଚିତ ଯେ ବୋଧିସତ୍ତ୍ୱ ଗୃହତ୍ୟାଗ କରିବା ପୂର୍ବରୁ ରାହୁଲ ଜନ୍ମ ହୋଇଥିଲେ । ଗୌତମ-ବୋଧିସତ୍ତ୍ୱ, ବୁଦ୍ଧତ୍ୱ ପ୍ରାପ୍ତିପରେ, କପିଳବସ୍ତୁକୁ ପ୍ରତ୍ୟାବର୍ତ୍ତନ କଲେ ଓ ସେହି ସମୟରେ ରାହୁଲଙ୍କୁ ଦୀକ୍ଷା ଦେଇଥିଲେ ବୋଲି "ମହାବଗ୍‌ଗ"ରେ ଓ ଅନ୍ୟ କେତେକ ସ୍ଥଳରେ ଉଲ୍ଲିଖିତ ହୋଇଛି । ସେ ସମୟରେ ରାହୁଲଙ୍କୁ ସାତବର୍ଷ ହୋଇଥିଲା ବୋଲି ଅଟ୍‌ଠ କଥାମାନଙ୍କରେ କୁହାଯାଇଛି । ବୁଦ୍ଧଦେବ ରାହୁଲଙ୍କୁ ଶ୍ରାମଣେର କରାଇଲେ କି ନାହିଁ ଓ ସେତେବେଳେ ତାଙ୍କର ବୟସ କେତେ ଥିଲା, ଏ ସବୁର ବିଷୟର ବିଚାର ଷଷ୍ଠ ଅଧ୍ୟାୟରେ କରାଯିବ, କାରଣ, ଭିକ୍ଷୁ ସଂଘ ସହିତ ଶ୍ରାମଣେରମାନଙ୍କର ସମ୍ବନ୍ଧ ଥିଲା ।

## ରାହୁଲମାତା ଦେବୀ

ରାହୁଲଙ୍କ ଜନନୀ, "ରାହୁଲ ମାତା ଦେବୀ" ଥିଲେ ବୋଲି ମହାବଗ୍‌ଗରେ ଓ ଜାତକ ଅଟ୍‌ଠ କଥାରେ ସର୍ବତ୍ର କୁହାଯାଇଅଛି । ତାଙ୍କର 'ଯସୋଧରା' ( ଯଶୋଧରା ) ନାମ କେବଳ ଅପଦାନ ଗ୍ରନ୍ଥରେ ଦେଖିବାକୁ ମିଳେ । ଜାତକର ନିଦାନ କଥାରେ କୁହାଯାଇଛି ଯେ, ଯେତେବେଳେ ଲୁମ୍ବିନୀବନରେ ବୋଧିସତ୍ତ୍ୱ ଜନ୍ମ ଗ୍ରହଣ କଲେ, ସେତେବେଳେ ରାହୁଲ ମାତା ଦେବୀ, ଛନ୍ନ ଅମାତ୍ୟ, ଅମାତ୍ୟ, କାଳୁଦାୟି ( କାଳା ଉଦୟି ) ଅଶ୍ୱଶ୍ରେଷ୍ଠ କନ୍ଥକ ( ବୁଦ୍ଧ ଗୟାର ) ମହାବୋଧିବୃକ୍ଷ ଓ ଚାରି ନିଧି କୁମ୍ଭ (ଧନ ପୂର୍ଣ୍ଣ ମାଠିଆ) ଜାତ ହେଲେ । ଏମାନଙ୍କ ମଧ୍ୟରୁ ବୋଧିବୃକ୍ଷ ଓ ଧନପୂର୍ଣ୍ଣ ମାଠିଆର, ସେହି ସମୟରେ ଜନ୍ମ ହେବା କଥା କେବଳ ଗଳ୍ପ ବା କିମ୍ବଦନ୍ତୀ ବୋଲି ବୁଝିବାକୁ ହେବ । କିନ୍ତୁ ବୋଧିସତ୍ତ୍ୱ, ରାହୁଲ, ଛନ୍ନ ଓ କାଳାଉଦାୟି ଏକ ସମୟରେ ଜନ୍ମ ହୋଇଥିଲେ ବୋଲି ଧରାଗଲେ ସେମାନେ ସମବୟସ୍କ ଥିବା ନିଃସନ୍ଦେହ । ରାହୁଲ ମାତାଙ୍କର ମୃତ୍ୟୁ ୭୮ ବର୍ଷ ବୟସରେ ଅର୍ଥାତ୍ ବୁଦ୍ଧଙ୍କ ପରିନିର୍ବାଣର ଦୁଇବର୍ଷ ପୂର୍ବେ ହୋଇଥିଲା । ଅପଦାନ ( ୫୮୪ ) ରେ କୁହାଯାଇଛି :—

"ଅଟ୍‌ଠ ସତ୍ତତିବ ସାସ୍‌ହଂ ପଚ୍ଛିମୋବତ୍ତତି ଭବୋ

× × ×

ପହାୟବୋ ଗମିସାସ୍‌ମି କତମ୍ମେ ସରଣ ମତ୍ତନୋ ।"

ଅର୍ଥାତ୍ "ଆଜି ମୋର ବୟସ ୭୮ ବର୍ଷ । ଏହା ମୋର ଶେଷ ଜନ୍ମ । ଆପଣଙ୍କୁ ଛାଡ଼ି ମୁଁ ଚାଲିଯିବି । ମୁଁ ମୋର ମୁକ୍ତି ପାଇସାରିଛି ।"

ଏହି ଶେଷ ଜନ୍ମରେ ସେ ଶାକ୍ୟ କୁଳରେ ଜନ୍ମ ଗ୍ରହଣ କରିବା କଥା ମଧ୍ୟ ସେ ଉଲ୍ଲେଖ କରିଛନ୍ତି । କିନ୍ତୁ କୌଣସି ସ୍ଥଳରେ ସେହି ବଂଶ ସମ୍ପର୍କରେ କିଛି ପ୍ରମାଣ ମିଳେ ନାହିଁ । ଅପଦାନକାରଙ୍କ ମତରେ ସେ ଏକପ୍ରକାର ଭିକ୍ଷୁଣୀ ହୋଇ ରହିଥିଲେ । ୭୮ ବର୍ଷ ବୟସରେ ସେ ବୁଦ୍ଧଙ୍କ ନିକଟକୁ ଯାଇ ଉପରୋକ୍ତ କଥା କହିଥିଲେ । କିନ୍ତୁ ଭିକ୍ଷୁଣୀ ହେବା ପରେ ସେ କୌଣସି ଉପଦେଶ ଦେଇଥିଲେ କି ନାହିଁ, ଓ ବୁଦ୍ଧ—ସଂଘ ସହିତ ତାଙ୍କର କୌଣସି ସମ୍ପର୍କ ଥିଲା କି ନାହିଁ, ଏ ବିଷୟରେ କିଛି ଜାଣି ହୁଏ ନାହିଁ । ସୁତରାଂ, ବାସ୍ତବରେ ସେ ଭିକ୍ଷୁଣୀ ଥିଲେ କି ନାହିଁ, ଏହା ନିଶ୍ଚିତରୂପେ କହିବା ସହଜ ନୁହେଁ । ତାଙ୍କର ନାମ ଯଶୋଧରା ବୋଲି ଅପଦାନ ଗ୍ରନ୍ଥରେ ଲେଖା ଅଛି । କିନ୍ତୁ ଲଳିତବିସ୍ତର ଅନୁସାରେ ସେ ହେଉଛନ୍ତି ଗୋପା । ଏଥିରୁ ବୁଝି ହେଉ ନାହିଁ, କେଉଁଟି ତାଙ୍କର ପ୍ରକୃତ ନାମ କିମ୍ବା ଏ ଦୁଇଟିଯାକ ତାଙ୍କର ନିଜ ନାମ ।

## ଗୃହତ୍ୟାଗ-ପ୍ରସଙ୍ଗ

ବୋଧିସତ୍ତ୍ୱ ଯେଉଁ ରାତିରେ ଗୃହତ୍ୟାଗ କଲେ, ସେଦିନ ତାଙ୍କ ପରିବାରର ସ୍ତ୍ରୀ ଲୋକମାନେ ବାଦ୍ୟ ଗୀତାଦି ଦ୍ୱାରା ତାଙ୍କର ହୃଦୟ ପରିବର୍ତ୍ତନ କରିବାକୁ ବହୁତ ଚେଷ୍ଟା କରିଥିଲେ । କିନ୍ତୁ ତହିଁରେ ତାଙ୍କ ମନ ଭୁଲିଲା ନାହିଁ । ଶେଷରେ, ସେହି ରାତିରେ, ସ୍ତ୍ରୀମାନେ ଶାନ୍ତ ହୋଇ ଶୋଇ ପଡ଼ିଲେ । କୌଣସି କୌଣସି ସ୍ତ୍ରୀ ନିଦ୍ରିତ ଅବସ୍ଥାରେ ପ୍ରଳାପ କରୁଥିଲେ । କାହାର କାହାର ମୁହଁରୁ ବା ଲାଳ ଗଡ଼ୁଥିଲା । ସେ ସବୁ ଦେଖି ବୋଧିସତ୍ତ୍ୱଙ୍କ ମନରେ ବଡ଼ ଘୃଣା ଜାତ ହେଲା । ସେ ଯାଇ ସାରଥି 'ଛନ୍ନ'କୁ ଉଠାଇଲେ ।

ସେ କନ୍ଥକ ନାମକ ଗୋଟାଏ ଘୋଡ଼ାକୁ ସଜ୍ଜିତ କରି ଆଣିଲେ । ବୁଦ୍ଧଦେବ ସେହି ଅଶ୍ୱ ଆରୋହଣ କଲେ ଏବଂ ଛନ୍ନ ତାହାର ଲାଞ୍ଜ ଟାଣି ଧଇଲେ । ଦେବତାମାନେ ସେମାନଙ୍କ ପାଇଁ ନଗର-ଦ୍ୱାର ଖୋଲି ଦେଲେ । ସେମାନେ ସେଠାରୁ ଯାଇ, ଅନୋମା ନଦୀ କୂଳରେ ଉପସ୍ଥିତ ହେଲେ । ସେଠାରେ ବୋଧିସତ୍ତ୍ୱ ଖଣ୍ଡାରେ ମୁଣ୍ଡର ବାଳ କାଟି ପକାଇଲେ ଓ ଅଳଙ୍କାର ପ୍ରଭୃତି ଛନ୍ନକୁ ଦେଇ, ରାଜଗୃହ ଅଭିମୁଖେ ଯାତ୍ରା କଲେ । ବୋଧିସତ୍ତ୍ୱଙ୍କ ସଂସାର-ତ୍ୟାଗ ଫଳରେ କନ୍ଥକ ସେହି ନଦୀରେହିଁ ଦେହ ବିସର୍ଜନ କଲା । ଛନ୍ନ, ଅଳଙ୍କାର ପ୍ରଭୃତି ଧରି କପିଳବସ୍ତୁ ଫେରି ଆସିଲେ ।

"ନିଦାନ କଥା" ଅନୁସାରେ ଏହା ଏଠାରେ କୁହାଯାଇଛି । ନିଦାନ କଥା, ଲଳିତ ବିସ୍ତର ଓ ବୁଦ୍ଧ ଚରିତ କାବ୍ୟରେ ଏହି ଚରିତର ବର୍ଣ୍ଣନା ବଡ଼ ହୃଦୟସ୍ପର୍ଶୀ । ବୌଦ୍ଧଶିଳ୍ପ-କଳା ଉପରେ ମଧ୍ୟ ଏହାର ପ୍ରଭାବ ପଡ଼ିଅଛି । କିନ୍ତୁ ଏସବୁ କଥାରେ ଆଦୌ ସତ୍ୟତା ଥିଲାପରି ଜଣାଯାଏ ନାହିଁ । ଯଦି ଥିବ, ତେବେ ତାହାର ମାତ୍ରା ଅତ୍ୟନ୍ତ ଅଳ୍ପ । ଏପରି ଅଦ୍ଭୁତ କିମ୍ବଦନ୍ତୀମାନଙ୍କର କୌଣସି ପ୍ରମାଣ ପ୍ରାଚୀନତର ସୂତ୍ରମାନଙ୍କରେ ମିଳେ ନାହିଁ ।

ଅରିୟ ପରିୟେସନ ସୁତ୍ତରେ, ସ୍ୱୟଂ ବୁଦ୍ଧ, ନିଜର ଗୃହତ୍ୟାଗ ସମୟର ଘଟଣା ଏପରି ଭାବରେ ବର୍ଣ୍ଣନା କରିଥିଲେ :—

"ସୋ ଖୋ ଅହଂ ଭିକ୍ଖବେ ଅପରେନ ସମୟେନ ଦହରୋ ବ ସମାନୋ ସୁ ସୁ କାଲକେସୋ ଭଦ୍ରେନ ଯୋବ୍ବନେନ ସମନ୍ନାଗତୋ ପଠମେନ ବୟସା ଅକାମକାନଂ ମାତାପିତୂନଂ ଅସ୍ସୁମୁଖାନଂ ରୁଦନ୍ତାନଂ କେସମସ୍ସୁଂ ଓହାରେତ୍ୱା କାସାବାନି ବତ୍ଥାନି ଅଚ୍ଛାଦେତ୍ୱା ଅଗାରସ୍ମା ଅନଗାରିୟଂ ପବ୍ବଜିଂ" ।

ଅର୍ଥାତ୍, "ହେ ଭିକ୍ଷୁଗଣ ! ଏପରି କିଛି ସମୟ ବିତିଗଲା । ମୁଁ ସେତେବେଳେ ଯୁବକ ଥିଲି, ମୋର ବାଳଟିଏ ସୁଦ୍ଧା ଧଳା ହୋଇ ନଥିଲା । ମୁଁ ପୂର୍ଣ୍ଣ ଯୌବନରେ ଥିଲି । ମୋର ପିତା-ମାତା ମତେ ଆଦେଶ ଦେଉ ନଥିଲେ । ନୟନରୁ ନିର୍ଗତ ଲୋତକଧାରରେ ସେମାନଙ୍କ ମୁଖମଣ୍ଡଳ ସିକ୍ତ ହୋଇ ଯାଇଥିଲା । ସେମାନେ ଅନବରତ କ୍ରନ୍ଦନ କରୁଥାଆନ୍ତି । ତଥାପି ମୁଁ (ସେ ସମସ୍ତଙ୍କୁ ଭ୍ରୂକ୍ଷେପ ନକରି) ମସ୍ତକ ମୁଣ୍ଡନ କରି ଓ କଷାୟ ବସନ ପରିଧାନ କରି, ଘରୁ ବାହାରି ପଡ଼ିଲି ( ଅର୍ଥାତ୍ ମୁଁ ସନ୍ନ୍ୟାସୀ ହୋଇଗଲି )" ଏହି ବିବରଣୀ ପ୍ରାୟ ଏହିଭଳି ଭାଷାରେ 'ମହାସଚ୍ଚକ' ସୁତ୍ତରେ ମଧ୍ୟ ଅଛି । ସୁତରାଂ, ବୋଧିସତ୍ତ୍ୱ ସମସ୍ତଙ୍କର ଅଜ୍ଞାତ ସାରରେ, ଛନ୍ନ ସହିତ କନ୍ଥକ ଉପରେ ବସି ଘରୁ ଚାଲିଯାଇଥିବା କଥା ଯେ ସମ୍ପୂର୍ଣ୍ଣ ଅସତ୍ୟ, ଏହା ସ୍ପଷ୍ଟ ପ୍ରମାଣିତ ହୋଇ ଯାଉଛି । ତାଙ୍କ ଜନ୍ମର ସପ୍ତମ ଦିବସରେ, ଜନନୀ ମାୟାଦେବୀଙ୍କର ପରଲୋକ ହୋଇ ଯାଇଥିଲା । ତଥାପି ମହାପ୍ରଜାପତି ଗୌତମୀ ନିଜର ପୁତ୍ରପରି ତାଙ୍କର ଲାଳନ-ପାଳନ କରିଥିଲେ । ଉପରର ଉଦ୍ଧୃତିରେ, ତାଙ୍କୁହିଁ ନିଜର ମାତା ରୂପେ ସେ ଉଲ୍ଲେଖ କରି ଥାଇପାରନ୍ତି । ଏଥିରୁ ସ୍ପଷ୍ଟ ପ୍ରତୀତ ହେଉଅଛି ଯେ ବୋଧିସତ୍ତ୍ୱ ପରିବ୍ରାଜକ ହୋଇଯିବେ ବୋଲି, ଶୁଦ୍ଧୋଦନ ଓ ଗୌତମୀ ସେ ଘଟଣାର ବହୁଦିନ ପୂର୍ବରୁ ଜାଣିଥିଲେ; ପୁଣି ସେମାନଙ୍କର ଇଚ୍ଛା ବିରୁଦ୍ଧରେ ଓ ସେମାନଙ୍କର ସମକ୍ଷରେହିଁ ବୁଦ୍ଧଦେବ ପ୍ରବ୍ରଜ୍ୟା ଗ୍ରହଣ କରିଥିଲେ ।

—×○×—

## ପଞ୍ଚମ ଅଧ୍ୟାୟ

# ତପଶ୍ଚର୍ଯ୍ୟା ଓ ତତ୍ତ୍ୱବୋଧ

## ଆଲାର କାଲାମଙ୍କ ସହିତ ଭେଟ

ଗୃହତ୍ୟାଗ କରି ବୁଦ୍ଧଦେବ ସିଧା ସଳଖେ ରାଜଗୃହ ଚାଲି-ଯାଇଥିଲେ । ସେଠାରେ ରାଜା ବିମ୍ବିସାରଙ୍କ ସହିତ ତାଙ୍କର ସାକ୍ଷାତ ହୋଇଥିଲା । ପୁଣି ତା'ପରେ ସେଠାରୁ ଆଲାର କାଲାମଙ୍କ ନିକଟକୁ ଯାଇ ତାଙ୍କଠାରୁ ତତ୍ତ୍ୱଜ୍ଞାନ ଶିକ୍ଷା କଲେ । ଏକଥା ଜାତକର ନିଦାନ କଥାରେ ଉଲ୍ଲିଖିତ ହୋଇଅଛି । ଅଶ୍ୱଘୋଷକୃତ 'ବୁଦ୍ଧଚରିତ' କାବ୍ୟରେ ନିଦାନ କଥାର କ୍ରମ ଗୃହୀତ ହୋଇଅଛି । ଲଳିତ ବିସ୍ତରରେ ବିସ୍ତୃତ ଭାବେ ବର୍ଣ୍ଣିତ ହୋଇଅଛି ଯେ ବୋଧିସତ୍ତ୍ୱ ପ୍ରଥମେ ବୈଶାଳୀ ଯାଇଥିଲେ ଓ ସେଠାରେ ଆଲାର କାଲାମଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ସେଠାରୁ ସେ ରାଜଗୃହ ଯାଇଥିଲେ । କିନ୍ତୁ ଏ ଦୁଇଟିଯାକ କଥାର, ପ୍ରାଚୀନ ସୁତ୍ତମାନଙ୍କ ସହିତ ସାମଞ୍ଜସ୍ୟ ଦେଖାଯାଉନାହିଁ । ଉପରେ ଦିଆଯାଇଥିବା 'ଅରିୟ ପରିୟେସନ ସୁତ୍ତ'ର ଉଦ୍ଧୃତିରେ କୁହାଯାଇଛି ଯେ ବୋଧିସତ୍ତ୍ୱ ନିଜ ଘରେ ପିତାମାତାଙ୍କ ସମକ୍ଷରେ ପ୍ରବ୍ରଜ୍ୟା ଗ୍ରହଣ କରିଥିଲେ । ତାହାର ଅବ୍ୟବହିତ ପରେ କୁହାଯାଇଛି—"ସୋ ଏବଂ ପବ୍ବଜିତୋ ସମାନୋ କିଂକୁସଲଗବେସୀ

ଅନୁତ୍ତରଂ ସନ୍ତିବରପଦଂ ପରିଯେସମାନୋ ଯେନ ଆଳାରୋ କାଳାମୋ ତେନୁପସଂ କମିଂ" ଅର୍ଥାତ୍, ( ଭଗବାନ୍ ବୁଦ୍ଧ କହୁଛନ୍ତି ) "ମୁଁ ଏ ପ୍ରକାର ପ୍ରବ୍ରଜ୍ୟା ଗ୍ରହଣ କରିବା ପରେ ହିତକାରୀ ମାର୍ଗ ଜାଣିବା ଇଚ୍ଛାରେ, ଶ୍ରେଷ୍ଠ, ଲୋକୋତ୍ତର ଓ ଶାନ୍ତ ତତ୍ତ୍ୱର ଅନୁସନ୍ଧାନ କରି କରି ଆଳାର କାଳାମଙ୍କ ନିକଟକୁ ଚାଲି ଯାଇଥିଲେ ।

ବୋଧିସତ୍ତ୍ୱ ରାଜଗୃହ ନ ଯାଇ ପ୍ରଥମେ ଆଳାର କାଳାମଙ୍କ ନିକଟକୁ ଚାଲି ଯାଇଥିଲେ ବୋଲି ଏଥିରୁ ପ୍ରତୀତ ହେଉଛି । ଆଳାର କାଳାମ କୋସଳ ଦେଶରେହିଁ ଅବସ୍ଥାନ କରୁଥିଲେ । ଅଙ୍ଗୁତ୍ତର ନିକାୟ 'ତିକ ନିପାତ' ( ସୁତ୍ତ ସଂ-୬୫ ) ରେ କାଳାମ ନାମକ କ୍ଷତ୍ରିୟମାନଙ୍କର 'କେସପୁତ୍ତ' ସହରର ଉଲ୍ଲେଖ ଅଛି । ସୁତରାଂ ଆଳାର କାଳାମ ସେମାନଙ୍କ ମଧ୍ୟରୁ ଜଣେ ଥିଲେ ବୋଲି ଜଣାଯାଉଛି । ଶାକ୍ୟ ଏବଂ କୋଳିୟ ରାଜ୍ୟରେ ତାଙ୍କର ସୁଖ୍ୟାତି ଥିଲା । ଏଥିପୂର୍ବେ, ଆଳାର କାଳାମଙ୍କ ଅନ୍ୟତମ ଶିଷ୍ୟ ଭରଣ୍ଡୁ କାଳାମଙ୍କ ଆଶ୍ରମ କପିଳବାସ୍ତୁରେ ଥିଲା ବୋଲି କୁହାଯାଇଛି । ତାଙ୍କର ଆଉ ଜଣେ ଶିଷ୍ୟ, କିମ୍ବା ଅତି ବେଶୀ ହେଲେ 'ଉଦ୍ଦକ ରାମ ପୁତ୍ତ'ଙ୍କ ଶିଷ୍ୟ ନିକଟବର୍ତ୍ତୀ କୋଳିୟଦେଶରେ ରହୁଥିଲେ । ଶାକ୍ୟ ଏବଂ କୋଳିୟ ଦେଶରେ ଏ ସମ୍ପ୍ରଦାୟର ପ୍ରତିପତ୍ତି ଅତ୍ୟଧିକ ଥିଲା । ବୋଧିସତ୍ତ୍ୱ ଏହି ପରିବ୍ରାଜକମାନଙ୍କଠାରୁ ଧ୍ୟାନ ମାର୍ଗ ଶିକ୍ଷା କରିଥିଲେ । ପୁଣି ଏହିମାନେହିଁ ତାଙ୍କୁ ସନ୍ନ୍ୟାସ-ଦୀକ୍ଷା ଦେଇ ଥାଇପାରନ୍ତି ।

କିନ୍ତୁ ଶାକ୍ୟ ବା କୋଳିୟ, କୌଣସି ଦେଶର ଆଶ୍ରମରେ ସମୟ ଅତିବାହିତ କରିବାକୁ ବୋଧିସତ୍ତ୍ୱ ଉପଯୁକ୍ତ ମନେ କରି

ନ ଥିଲେ । ହିତକାରୀ ମାର୍ଗର ଏବଂ ଶ୍ରେଷ୍ଠ ଓ ଲୋକୋତ୍ତର ଶାନ୍ତ ତତ୍ତ୍ୱ-ବୋଧ ପାଇଁ ସେ ଆଲାର କାଲାମଙ୍କ ନିକଟକୁ ଯାଇଥିଲେ । ସେହି ସମୟରେ ଆଲାର କାଲାମ କୋଶଳ ଦେଶରେ କେଉଁଠାରେ ହେଲେ ଅବସ୍ଥାନ କରୁଥିବେ । ଆଲାର କାଲାମ ତାଙ୍କୁ ଚାରି ପ୍ରକାରର ଧ୍ୟାନ ଓ ତାପରେ ତିନୋଟି ସୋପାନ ଶିଖାଇଥିଲେ । କିନ୍ତୁ ସମାଧିର ଏହି ସାତୋଟି ସୋପାନରେ ସେ ସନ୍ତୁଷ୍ଟ ହୋଇ-ନଥିଲେ । ଅବଶ୍ୟ ଏହା ମନୋନିଗ୍ରହର ଏକ ମାର୍ଗ । କିନ୍ତୁ ସାରା ମନୁଷ୍ୟ ଜାତି ପକ୍ଷରେ ତାହାର ଉପାଦେୟତା ଅଛି ବୋଲି ସେ ଉପଲବ୍ଧି କଲେ ନାହିଁ । ଏହି କାରଣରୁ ହିତକାରୀ-ମାର୍ଗ ଅନୁସନ୍ଧାନ କରିବାକୁ ସେ ବାହାରି ପଡ଼ିଲେ ।

## ଉଦ୍ଦକ ରାମ ପୁତ୍ରଙ୍କ ସହିତ ଭେଟ

ଆଲାର କାଲାମ ଏବଂ ଉଦ୍ଦକ ରାମ ପୁତ୍ର, ଏ ଦୁହେଁ କେବଳ ଗୋଟିଏ ସମାଧି ମାର୍ଗ ଶିକ୍ଷା ଦେଉଥିଲେ । ଉଭୟଙ୍କ ମଧ୍ୟରେ ଏତିକି ମାତ୍ର ପ୍ରଭେଦ ଯେ ଆଲାର କାଲାମ ସମାଧିର ସାତୋଟି ସୋପାନର ଶିକ୍ଷା ଦେଉଥିଲେ କିନ୍ତୁ ଉଦ୍ଦକ ରାମ ପୁତ୍ର ଆଠୋଟି ସୋପାନର ଶିକ୍ଷା ଦେଉଥିଲେ । ମନେ ହୁଏ, ଦୁହେଁ ଜଣେ ଗୁରୁଙ୍କର ଶିଷ୍ୟ ଥିଲେ ଏବଂ ପରେ ସେମାନେ ଏ ଦୁଇଟି ମାର୍ଗ ପ୍ରଚାର କରିଥିଲେ । ଆଲାର କାଲାମଙ୍କୁ ଛାଡ଼ି ବୋଧିସତ୍ତ୍ୱ ଉଦ୍ଦକଙ୍କ ନିକଟକୁ ଯାଇଥିଲେ କିନ୍ତୁ ତାଙ୍କର ସାଧନା ମାର୍ଗରେ ମଧ୍ୟ ବିଶେଷ କିଛି ମହତ୍ତ୍ୱ ଥିବା ପରି ସେ ଉପଲବ୍ଧି କଲେ ନାହିଁ । ତେଣୁ ସେ ରାଜଗୃହ ଯାଇ ସେଠାର ପ୍ରସିଦ୍ଧ ଶ୍ରମଣ ପନ୍ଥାମାନଙ୍କର ତତ୍ତ୍ୱ ଶିକ୍ଷା କରିବାକୁ ସ୍ଥିର କଲେ ।

# ରାଜା ବିମ୍ବିସାରଙ୍କ ସହିତ ଭେଟ

ରାଜଗୃହକୁ ବୋଧିସତ୍ତ୍ୱଙ୍କର ଆଗମନ ସମ୍ପର୍କରେ କେହି ଜଣେ କବି ସୁତ୍ତନିପାତର ପବ୍‌ବଜ୍‌ଜା— ସୁତ୍ତରେ ବର୍ଣ୍ଣନା କରିଛନ୍ତି । ତାହାର ଅନୁବାଦ ତଳେ ଦିଆଗଲା ।

୧ । ବୋଧିସତ୍ତ୍ୱ ( 'ଚକ୍ଷୁଷ୍ମନ୍ତ' ଶବ୍ଦ ମୂଳରେ ପ୍ରଯୁକ୍ତ ) କାହିଁକି ପ୍ରବ୍ରଜ୍ୟା ଗ୍ରହଣ କଲେ ଏବଂ କି ବିଚାରରେ ତାଙ୍କୁ ତାହା ଭଲ ଲାଗିଲା, ତାହା କହି ମୁଁ ତାଙ୍କର ପ୍ରବ୍ରଜ୍ୟା ବର୍ଣ୍ଣନା କରୁଛି ।

୨ । ଗୃହସ୍ଥାଶ୍ରମ ବାଧାଯୁକ୍ତ ଏବଂ ଖତ କୁଢ଼ର ସ୍ଥାନ । ପ୍ରବ୍ରଜ୍ୟା ହେଉଛି ମୁକ୍ତ ବାୟୁ । ଏହା ଉପଲବ୍‌ଧି କରି ସେ ପ୍ରବ୍ରଜ୍ୟା ଗ୍ରହଣ କଲେ ।

୩ । ପ୍ରବ୍ରଜ୍ୟା ଗ୍ରହଣ କରି ସେ ଶାରୀରିକ ପାପକାର୍ଯ୍ୟ ପରିତ୍ୟାଗ କଲେ; ବାଚିକ ଦୁର୍ବ୍ୟବହାର ମଧ୍ୟ ତ୍ୟାଗ କଲେ ଓ ନିଜର ଜୀବିକା ଶୁଦ୍ଧ ମାର୍ଗରେ ପରିଚାଳିତ କଲେ ।

୪ । ବୁଦ୍ଧ ମଗଧର ଗିରିବ୍ରଜ (ରାଜଗୃହ) କୁ ଆସିଲେ । ସମଗ୍ର ଶରୀରରେ ଉତ୍ତମ ଲକ୍ଷଣ ଶୋଭିତ ସେହି ବୁଦ୍ଧ ଭିକ୍ଷାଟନ ସକାଶେ ରାଜଗୃହରେ ପ୍ରବେଶ କଲେ ।

୫ । ନିଜର ପ୍ରାସାଦ ଉପରୁ ବିମ୍ବିସାର ତାଙ୍କୁ ଦର୍ଶନ କଲେ । ତାଙ୍କଠାରେ ଲକ୍ଷଣମାନ ଦେଖି (ରାଜା) ବିମ୍ବିସାର କହିଲେ—

୬ । ଆହେ, ମୋ କଥା ଶୁଣ । ଏ (ଏହି ବ୍ୟକ୍ତି) ସୁନ୍ଦର, ଭବ୍ୟ, ଶୁଦ୍ଧ ଏବଂ ଆଚାର ସମ୍ପନ୍ନ ଅଟନ୍ତି । ନିଜ ପାଦଠାରୁ ଦୁଇ ହାତଯାଏ ଆଗକୁ ଦୃଷ୍ଟି ରଖି ଏ ଚାଲୁଅଛନ୍ତି । (ଯୁଗମତ୍ତଂଚ ପେକ୍‌ଖତି )

୭ । ନଜର ପାଦ ପାଖେ ଦୃଷ୍ଟିରଖି ଗ୍ଭଲୁ ଥିବା ଏହି ଜାଗ୍ରତ ଭିକ୍ଷୁ ନୀଚକୁଳ ଜାତ ବୋଲି ମନେ ହେଉନାହାନ୍ତି । ଏ କେଉଁଆଡ଼େ ଯାଉଛନ୍ତି, ରାଜଦୂତଙ୍କୁ ଦଉଡ଼ାଇ ବୁଝି ଆସିବାକୁ କହନ୍ତୁ ।

୮ । ସେହି ଭିକ୍ଷୁ ( ବୋଧିସତ୍ତ୍ୱ ) କେଉଁଆଡ଼େ ଯାଉଛନ୍ତି, ତାହା ବୁଝି ଆସିବା ପାଇଁ ( ରାଜା ବିମ୍ବିସାରଙ୍କ ପ୍ରେରିତ ) ଦୂତମାନେ ତାଙ୍କର ପଛେ ପଛେ ଗ୍ଭଲିଲେ ।

୯ । ଇନ୍ଦ୍ରିୟମାନଙ୍କୁ ସଂଯତ ରଖି, ଘରଘର ବୁଲି, ଭିକ୍ଷା କରି ବିବେକୀ ଏବଂ ଜାଗ୍ରତ ବୋଧିସତ୍ତ୍ୱ ଅବିଳମ୍ବେ ପାତ୍ର ପୂର୍ଣ୍ଣକରି ଭିକ୍ଷା ପାଇଗଲେ ।

୧୦ । ଭିକ୍ଷାଟନ ଶେଷ କରି ସେହି ମୁନି ନଗରର ବାହାରକୁ ଗଲେ ଓ ଅବସ୍ଥାନ କରିବା ଲକ୍ଷ୍ୟରେ ପାଣ୍ଡବ ପର୍ବତକୁ ଗଲେ ।

୧୧ । ସେ ଅବସ୍ଥାନ କରିବାର ଦେଖି ସେହି ଦୂତମାନେ ତାଙ୍କ ପାଖରେ ବସିଗଲେ ଓ ସେମାନଙ୍କ ମଧ୍ୟରୁ ଜଣେ ଯାଇ ରାଜାଙ୍କୁ କହିଲି—

୧୨ । ହେ ମହାରାଜ ! ସେହି ଭିକ୍ଷୁ ପାଣ୍ଡବ ପର୍ବତର ପୂର୍ବରେ, ବ୍ୟାଘ୍ର ପରି, ବୃଷଭ ପରି, ବା ଗିରି ଗହ୍ୱରରେ ରହୁଥିବା ସିଂହ ପରି ବସିଛନ୍ତି ।

୧୩ । ଦୂତ ମୁଖରୁ ସେ କଥା ଶୁଣି ସେହି କ୍ଷତ୍ରିୟ (ରାଜା) ଉତ୍ତମ ଯାନ ଆରୋହଣ କରି ଶୀଘ୍ର ପାଣ୍ଡବ ପର୍ବତ ନିକଟକୁ ଯିବାପାଇଁ ବାହାରିଲେ ।

୧୪ । ଯେଉଁ ପର୍ଯ୍ୟନ୍ତ ଯାନରେ ଯିବା ସମ୍ଭବପର ହେଲା ସେ ପର୍ଯ୍ୟନ୍ତ ଯାଇ, ସେହି କ୍ଷତ୍ରିୟ, ଯାନରୁ ଓହ୍ଲାଇଲେ । ତାପରେ ଗ୍ଭଲି ଗ୍ଭଲି ( ବୋଧିସତ୍ତ୍ୱଙ୍କ ନିକଟକୁ ) ଯାଇ ତାଙ୍କ ପାଖରେ ବସିଗଲେ ।

୧୫ । ସେଠାରେ ବସି ରାଜା ତାଙ୍କୁ କୁଶଳ ପ୍ରଶ୍ନାଦି ପଚାରିଲେ । ତାହା ପଚାରି ସାରି ଏହିପରି କହିଲେ—

୧୬ । "ତୁମେ ଯୁବକ ଓ ତରୁଣ; ମନୁଷ୍ୟର ପ୍ରଥମ ବୟଃ ପ୍ରାପ୍ତ ହୋଇଅଛ । ତୁମର କାନ୍ତି କୁଳୀନ କ୍ଷତ୍ରିୟର କାନ୍ତିପରି ଅତ୍ୟନ୍ତ ମନୋହର ଦେଖାଯାଉଛି ।

୧୭ । ତୁମେ ମୋର ସମସ୍ତ ହାତୀ ନେଇ ମୋ ସେନାର ଶୋଭା ବର୍ଦ୍ଧନ କର । ମୁଁ ତୁମକୁ ସମ୍ପତ୍ତି ଦେଉଛି, ତୁମେ ତାକୁ ଉପଭୋଗ କର । ଏବେ ମତେ କହ ଯେ ତୁମର ଜାତି କଣ ?

୧୮ । "ହେ ରାଜା ! ଏଠାରୁ ସିଧାସଳଖେ ଗଲେ ହିମାଳୟର ଉପତ୍ୟକାରେ ଧନ ଏବଂ ବୀର୍ଯ୍ୟ ସମ୍ପନ୍ନ ଗୋଟିଏ ଦେଶ ପଡ଼ିବ, ଯାହାକି କୋଶଳ ଦେଶରେ ମିଶିଯାଇଛି ।

୧୯ । ସେମାନଙ୍କର (ସେଠାର ମହାଜନ ବା ରାଜାମାନଙ୍କର) ଗୋତ୍ର ହେଉଛି ଆଦିତ୍ୟ ଓ ସେମାନଙ୍କ ଜାତିକୁ 'ଶାକ୍ୟ' ଜାତି କୁହାଯାଏ । ହେ ରାଜା ! ସେହି କୁଳରୁ ମୁଁ ଯାହା ପରିବ୍ରାଜକ ହୋଇଗଲି, ତାହା କାମ ଉପଭୋଗ ଇଚ୍ଛାରେ ନୁହେ ।

୨୦ । କାମୋପଭୋଗରେ ଦୋଷ ପୂରି ଥିଲା ପରି ମୋତେ ଲାଗିଲା ଏବଂ ଏକାନ୍ତ ବାସ ମତେ ସୁଖପୂର୍ଣ୍ଣବୋଧ ହେଲା । ଏବେ ମୁଁ ତପଶ୍ଚରଣ ପାଇଁ ଯାଉଛି । ସେ ଦିଗରେ ମୋର ମନ ଆସକ୍ତ ହୋଇଛି ।"

ଏହି ସୂତ୍ରର ୩ୟ ଗାଥାରେ କୁହାଯାଇଛି ଯେ ବୋଧିସତ୍ତ୍ୱ ନିଜର ଶରୀର, ବଚନ ଓ ଜୀବିକା, ଏଗୁଡ଼ିକର ସଂଶୋଧନ କଲେ । ଘରୁ ବାହାରିବା ପରେ, ଯିବା ରାସ୍ତାରେ ହିଁ ସେ ଏକଥା କରି-

ପାରିଥିଲେ ବୋଲି ମନେ ହୁଏ ନାହିଁ । ଆଲାର କାଲାମ ଓ ଉଦ୍ଦକ ରାମ ପୁତ୍ରଙ୍କ ନିକଟରେ ରହି ସେମାନଙ୍କ ଆଶ୍ରମ—ଶିଷ୍ୟରୂପେ ଯଥୋଚିତ ପରିପାଳନକରି ବୋଧିସତ୍ତ୍ୱ ଉକ୍ତ କାର୍ଯ୍ୟ କରିଥାଇ ପାରନ୍ତି; କିନ୍ତୁ ସେଥିକରେ ସେ ସନ୍ତୋଷ ଲାଭ କରି ପାରି ନଥିଲେ । ପ୍ରସିଦ୍ଧ ଶ୍ରମଣ ନାୟକମାନଙ୍କର ତତ୍ତ୍ୱ ଜାଣିବା ଉଦ୍ଦେଶ୍ୟରେ ସେ ରାଜଗୃହ ଯାଇଥିଲେ । ସେଠାରେ ସେ ସେହିସବୁ ସମ୍ପ୍ରଦାୟମାନଙ୍କର ତପସ୍ୟା ଦେଖି ଏକଥା ଅନୁଭବ କରିଥିଲେ ଯେ ସେ ନିଜେ ସେ ପ୍ରକାର ତପସ୍ୟା କରିବା ଉଚିତ । ଏହି ସୂତ୍ରର ଶେଷ ଗାଥାରେ ସେ କହିଛନ୍ତି, "ବର୍ତ୍ତମାନ ମୁଁ ତପସ୍ୟା କରିବାକୁ ଯାଉଛି ।" କହିବା ଅନାବଶ୍ୟକ ଯେ ପ୍ରଥମରୁ ହିଁ ତାଙ୍କର ମନ କାମ-ଉପଭୋଗ ଲାଲସାରୁ ନିବୃତ୍ତ ହୋଇଥିଲା । ତେଣୁ ମଗଧର ରାଜା ତାଙ୍କୁ ଯେଉଁ ଅଧିକାର ଦେବାକୁ ଚାହୁଁଥିଲେ ତାହା ତାଙ୍କୁ ଭଲ ଲାଗି ନଥିଲା ।

## ଉରୁବେଲାକୁ ଆଗମନ

ବୋଧିସତ୍ତ୍ୱ ରାଜଗୃହରୁ ଉରୁବେଲା ଗଲେ ଓ ତପସ୍ୟା କରିବାପାଇଁ ସେହି ସ୍ଥାନଟିକୁ ପସନ୍ଦ କଲେ । ଅରିୟ ପରି ଯେସନ ସୂତ୍ରରେ ତାହାର ବର୍ଣ୍ଣନା କରାଯାଇଛି ।

ଭଗବାନ୍ ବୁଦ୍ଧ କହୁଛନ୍ତି, "ହେ ଭିକ୍ଷୁଗଣ ! ଯେହି କୁଶଳତା ( ଶ୍ରେଷ୍ଠ ଶାନ୍ତ ମାର୍ଗ ) କଣ, ତାହା ଜାଣିବା ପାଇଁ, ଲୋକୋତ୍ତର ଶାନ୍ତିର ଶ୍ରେଷ୍ଠ ସ୍ଥାନ ଖୋଜି ଖୋଜି ମୁଁ କ୍ରମଶଃ ଯାଇ ଯାଇ ଉରୁବେଲାର 'ସେନା ନିଗମରେ' ପହଞ୍ଚିଗଲି । ସେଠାରେ ମୁଁ ରମଣୀୟ ଭୂଭାଗ ଦେଖିଲି, ସେଠାରେ ସୁଶୋଭିତ ବନ ଥିଲା ଓ ନଦୀ ଧୀରେ ଧୀରେ ପ୍ରବାହିତ ହେଉଥିଲା । ତାହାର ଦୁଇ ତୀରରେ ଶୁଭ୍ର

ବାଲୁକା ପୂର୍ଣ୍ଣ ପ୍ରାନ୍ତର ଥିଲା । ଗୋଡ଼ରେ ତାକୁ ସମତଳ କରିବା ସହଜ ସାଧ୍ୟ ଥିଲା ଏବଂ ସ୍ଥାନଟି ମନୋରମ ଥିଲା । ସେହି ବନର ଚତୁର୍ଦ୍ଦିଗରେ ଭିକ୍ଷାଟନ ନିମନ୍ତେ ଗ୍ରାମମାନ ଦେଖାଯାଉ ଥିଲା । ମୋ-ପରି କୁଳୀନ ବ୍ୟକ୍ତିର ତପଶ୍ଚରଣ ପାଇଁ ଏହି ରମଣୀୟ ଭୂଭାଗ ଏକାନ୍ତ ଉପଯୁକ୍ତ ବୋଲି ବୋଧ ହେଲା । ତେଣୁ ମୁଁ ସେଠାରେ ତପସ୍ୟା କଲି ।”

ରାଜଗୃହର ଚତୁର୍ଦ୍ଦିଗରେ ଯେଉଁ ପର୍ବତମାନ ଅଛି, ସେଗୁଡ଼ିକରେ ନିର୍ଗ୍ରନ୍ଥ ପ୍ରଭୃତି ଶ୍ରମଣମାନେ ତପସ୍ୟା କରୁଥିଲେ ବୋଲି ଅନେକ-ଠାରେ ଉଲ୍ଲିଖିତ ହୋଇଛି । କିନ୍ତୁ ବୋଧିସତ୍ତ୍ୱଙ୍କୁ, ତପଶ୍ଚରଣ ପାଇଁ ସେହି ରୁକ୍ଷ ପର୍ବତଗୁଡ଼ିକ ଭଲ ଲାଗି ନଥିଲା । ଉରୁବେଲାର ରମ୍ୟ ପ୍ରଦେଶ ତାଙ୍କର ମନୋମତ ହେଲା । ଏଥିରୁ ପ୍ରାକୃତିକ ସୌନ୍ଦର୍ଯ୍ୟ ପ୍ରତି ତାଙ୍କର କିପରି ପ୍ରୀତିଥିଲା, ବେଶ୍ ଜଣାଯାଉଛି ।

## ତିନୋଟି ଉପମା

ତପସ୍ୟା କରିବା ପୂର୍ବରୁ ତିନୋଟି ‘ଉପମା’ ବୋଧିସତ୍ତ୍ୱଙ୍କ ମନକୁ ଆସିଥିଲା । ମହାସଚ୍ଚକ ସୁତ୍ତରେ ସେଗୁଡ଼ିକର ବର୍ଣ୍ଣନା ହୋଇଛି । ଭଗବାନ୍ ବୁଦ୍ଧ କହିଛନ୍ତି “ହେ ଅଗ୍‌ଗିବେସ୍‌ସନ ! କୌଣସି ଓଦାକାଠ ପାଣିରେ ପଡ଼ିଥିବାବେଳେ କୌଣସି ଲୋକ ଯଦି ଉତ୍ତରାରଣି ନେଇ ତହିଁରୁ ନିଆଁ ବାହାର କରିବାକୁ ଚାହିଁବ, ତେବେ କଣ ତହିଁରୁ ନିଆଁ ବାହାରିବ ?”

ସଚ୍ଚକ—‘ହେ ଗୌତମ ! ସେ କାଠରୁ ନିଆଁ ବାହାରିବା ସମ୍ଭବ ନୁହେ । କାହିଁକିନା, ତାହା ପାଣିରେ ପଡ଼ି ଓଦା (ବତୁରି ଯାଇଛି) ହୋଇଯାଇଛି । ସେ ଲୋକର ପରିଶ୍ରମ ବୃଥା ହୋଇ ଯିବ, ସେ କେବଳ କଷ୍ଟ ପାଇବ ।’

ଭଗବାନ୍---'ହେ ଅଗ୍ଗିବେସ୍ସନ ! ସେହିପରି ଯେଉଁ ଶ୍ରମଣ ଓ ବ୍ରାହ୍ମଣମାନେ, ଶରୀର ଏବଂ ମନକୁ କାମୋପଭୋଗରୁ ଅଲିପ୍ତ ରଖି ପାରି ନାହାନ୍ତି ଏବଂ ଯେଉଁମାନଙ୍କର କାମ ବିକାର ଶାନ୍ତ ହୋଇନାହିଁ, ସେମାନେ ଯେତେ କଷ୍ଟ ସହିଲେ ମଧ୍ୟ ଜ୍ଞାନ ଦୃଷ୍ଟି ଓ ଲୋକୋତ୍ତର ସମ୍ବୋଧ ପାଇବେ ନାହିଁ । ହେ ଅଗ୍ଗିବେସ୍ସନ ! ଆଉ ଗୋଟିଏ ଉପମା ମୋ ମନକୁ ଆସୁଛି । କୌଣସି ଓଦା କାଠ ଯଦି ପାଣିରୁ ବାହାର ଦୂରରେ ପଡ଼ିଥାଏ ଓ ଉତ୍ତରାରଣି ସାହାଯ୍ୟରେ କୌଣସି ମନୁଷ୍ୟ ତହିଁରୁ ନିଆଁ ବାହାର କରିବାକୁ ଚେଷ୍ଟାକରେ ତାହାହେଲେ ତହିଁରୁ ନିଆଁ ବାହାରିବ କି ?"

ସଚ୍ଚକ—"ହେ ଗୌତମ ! ବାହାରିବ ନାହିଁ । ତାହାର ଚେଷ୍ଟା ବ୍ୟର୍ଥ ହେବ ଓ ସେ କେବଳ କଷ୍ଟ ପାଇବା ହିଁ ସାର ହେବ । କାରଣ, କାଠଟି ତ ପାଣିରେ ବତୁରି ଯାଇଛି ।

ଭଗବାନ୍—'ହେ ଅଗ୍ଗିବେସ୍ସନ ! ସେହି ପରି, କୌଣସି କୌଣସି ଶ୍ରମଣ ଓ ବ୍ରାହ୍ମଣ କାମୋପଭୋଗ ଛାଡ଼ି ଶରୀର ଏବଂ ଚିତ୍ତରେ ଅଲିପ୍ତ ରହିପାରନ୍ତି କିନ୍ତୁ ଯଦି ସେମାନଙ୍କ ମନରୁ କାମବିକାର ଶାନ୍ତ ହୋଇନାହିଁ, ଯେତେକଷ୍ଟ ସହିଲେ ମଧ୍ୟ ସେମାନେ ଜ୍ଞାନଦୃଷ୍ଟି ଏବଂ ଲୋକୋତ୍ତର ସମ୍ବୋଧ ପାଇବେ ନାହିଁ । ହେ ଅଗ୍ଗିବେସ୍ସନ ! ଆହୁରି ଗୋଟିଏ ଉପମା ମଧ୍ୟ ମୋର ମନେ ପଡ଼ିଯାଉଛି । କୌଣସି ଶୁଖିଲାକାଠ ଯଦି ପାଣିଠାରୁ ଦୂରରେ ପଡ଼ିଥାଏ ଏବଂ କୌଣସି ବ୍ୟକ୍ତି ଯଦି ତା ଉପରେ ଉତ୍ତରାରଣି ଘଷି ନିଆଁ ବାହାର କରିବାକୁ ଚେଷ୍ଟାକରେ ତେବେ ସେ ନିଆଁ ବାହାର କରିପାରିବ ନା ନାହିଁ ?"

ସଚ୍ଚକ—"ହେ ଗୌତମ ! ସେ ନିଆଁ ବାହାର କରି ପାରିବ । କାରଣ ସେହି କାଠତ ପୂରାପୂରି ଶୁଖିଲା ଓ ତାହା ପାଣିରେ ପଡ଼ିନାହିଁ ।"

ଭଗବାନ୍—"ହେ ଅଗ୍‌ଗିବେସ୍‌ସନ ! ସେହିପରି, ଯେଉଁ ଶ୍ରମଣ ଓ ବ୍ରାହ୍ମଣମାନେ କାୟା ଓ ଚିତ୍ତକୁ କାମୋପଭୋଗଠାରୁ ଦୂରରେ ରଖିଛନ୍ତି ଏବଂ ଯେଉଁମାନଙ୍କ ମନରୁ କାମବିକାର ସମ୍ପୂର୍ଣ୍ଣ ନଷ୍ଟ ହୋଇଯାଇଛି, ସେମାନେ ନିଜ ନିଜର ଶରୀରକୁ ଅତ୍ୟନ୍ତ କଷ୍ଟ ଦିଅନ୍ତୁ ବା ନ ଦିଅନ୍ତୁ, ସେମାନେ ଜ୍ଞାନଦୃଷ୍ଟି ଓ ଲୋକୋତ୍ତର ସମ୍ବୋଧ ପ୍ରାପ୍ତ ହେବା ସମ୍ଭବପର ।

ତପଶ୍ଚରଣ ପୂର୍ବରୁ ହିଁ ଏହି ତିନୋଟି ଉପମା ବୋଧିସତ୍ତ୍ୱଙ୍କ ମନରେ ଉଦିତ ହୋଇଥିଲା । ଯେଉଁ ଶ୍ରମଣ-ବ୍ରାହ୍ମଣମାନେ ଯାଗ ଯଜ୍ଞାଦିରେ ସନ୍ତୋଷ ଲାଭ କରନ୍ତି ସେମାନେ ସେହି ଅବସରରେ ତପସ୍ୟା କରି ଶରୀରକୁ କଷ୍ଟ ଦେଲେ ମଧ୍ୟ ସେମାନଙ୍କର ତତ୍ତ୍ୱବୋଧ ହୋଇପାରିବ ନାହିଁ । ଅନ୍ୟ ଶ୍ରମଣ-ବ୍ରାହ୍ମଣମାନେ ଯାଗ-ଯଜ୍ଞ-ମାର୍ଗରୁ ଦୂର ଅରଣ୍ୟରେ ରହିପାରନ୍ତି କିନ୍ତୁ ସେମାନଙ୍କ ମନରୁ ଯଦି କାମ ବିକାର ନଷ୍ଟ ହୋଇପାରିନାହିଁ ତାହାହେଲେ ସେମାନେ ତପସ୍ୟାରୁ କିଛି ହେଲେ ଫଳ ପାଇବେ ନାହିଁ । ଓଦା ହୋଇଥିବା କାଠଉପରେ ଉତ୍ତରାରଣି ଘଷି ନିଆଁ ବାହାର କରିବା ଯେପରି ଅସମ୍ଭବ ସେହିପରି ସେମାନଙ୍କର ଉଦ୍ୟମ ବିଫଳ ହେବ । କିନ୍ତୁ ଯଦି କୌଣସି ବ୍ୟକ୍ତି କାମୋପଭୋଗରୁ ଦୂରରେ ରହି ମନରୁ କାମ ବିକାରକୁ ସମ୍ପୂର୍ଣ୍ଣରୂପେ ନଷ୍ଟ କରି ଦେଇପାରେ ତାହାହେଲେ ଦେହକୁ କଷ୍ଟ ନଦେଇ ସୁଦ୍ଧା ସେ ତତ୍ତ୍ୱବୋଧ ଲାଭ କରିପାରେ ।

## ହଠଯୋଗ

ଯଦ୍ୟପି ଏହି ଉପମାଗୁଡ଼ିକ ବୋଧିସତ୍ତ୍ୱଙ୍କ ମନରେ ଜାତ ହେଲା, ତଥାପି ସେହି ସମୟର ଶ୍ରମଣମାନଙ୍କର ପଦ୍ଧତି ଅନୁସାରେ ସେ କଠୋର ତପସ୍ୟା କରିବାକୁ ସ୍ଥିର କଲେ । ପ୍ରଥମେ ହଠଯୋଗ ଉପରେ ସେ ବିଶେଷ ଗୁରୁତ୍ୱ ଦେଲେ । ଭଗବାନ୍ ସଚ୍ଚକଙ୍କୁ କହୁଛନ୍ତି—"ହେ ଅଗ୍‌ଗିବେସ୍‌ସନ ! ମୁଁ ଯେତେବେଳେ ଦାନ୍ତକୁ ଦାନ୍ତ ଚପି, ଜିଭକୁ ତାଳୁରେ ଲଗାଇ ଚିତ୍ତକୁ ଦମନ କରୁଥିଲି ସେତେବେଳେ ମୋ କାଖରୁ ଧାର ଧାର ହୋଇ ଝାଳ ବହିଯାଉଥିଲା । ଜଣେ ବଳୁଆ ଲୋକ ଆଉ ଜଣେ ଦୁର୍ବଳ ଲୋକର ମୁଣ୍ଡକୁ ବା କାନ୍ଧକୁ ଧରି ତାକୁ ମାଡ଼ି ବସିଲାପରି (ଦମନ କଲାପରି) ମୁଁ ମୋ ଚିତ୍ତକୁ ଦମନ କରୁଥିଲି । ହେ ଅଗ୍‌ଗିବେସ୍‌ସନ ! ତାପରେ ନିଃଶ୍ୱାସ ପ୍ରଶ୍ୱାସରୋଧ କରି ମୁଁ ଧ୍ୟାନ କରିବାକୁ ଲାଗିଲି । ସେତେବେଳେ ମୋ ଦୁଇକାନରୁ, ନିଃଶ୍ୱାସ ବାହାରିବା ସମୟର ଶବ୍ଦ ବାହାରୁଥିଲା । ଯେପରି କମାର ଶାଳର ଭାତି ଚୁଲେ, ସେହିପରି ମୋ କାନରୁ ଶବ୍ଦ ବାହାରୁଥିଲା । ତଥାପି, ହେ ଅଗ୍‌ଗିବେସ୍‌ସନ ! ମୁଁ ନିଃଶ୍ୱାସ ପ୍ରଶ୍ୱାସ ଓ କାନକୁ ବନ୍ଦ କରି ଧ୍ୟାନ କରିବାକୁ ଲାଗିଲି । ସେତେବେଳେ ମତେ ଜଣାଗଲା, ମୁନିଆଁ ଖଣ୍ଡାର ଅଗରେ କେହି ମୋ ମୁଣ୍ଡକୁ ଯେପରିକି ଫୋଡ଼ି ଦେଉଛି । ତାହା ସତ୍ତ୍ୱେ ମୁଁ ମୋ ଧ୍ୟାନରେ ଲାଗିଲି । ମତେ ଲାଗିଲା ଯେପରିକି କେହି ଜଣେ ଲୋକ ମୋ ମୁଣ୍ଡକୁ ଚମ ଦଉଡ଼ିରେ ଖୁବ୍ ଟାଣରେ ବାନ୍ଧିଦେଇଛି; ତଥାପି ମଧ୍ୟ ମୁଁ ମୋ ଧ୍ୟାନରେ ଲାଗି ରହିଲି । ଫଳରେ ମୋ ପେଟରେ ପୀଡ଼ା ହେଲା । କଂସେଇ ଯେପରି ଶସ୍ତ୍ରରେ ଗାଈର ପେଟ କୋରି ପକାଏ ସେହିପରି ମୋ ପେଟ କୋରି ହୋଇ ଯାଉଥିଲା ପରି ମୋତେ ଲାଗିଲା । ଏସବୁ ଅବସ୍ଥାରେ

ମୋର ଉତ୍ସାହ କମି ନ ଥିଲି, ସ୍ମୃତି ସ୍ଥିର ଭାବରେ ଥିଲି; କିନ୍ତୁ ଦେହରେ ବଳ କମି ଯାଇଥିଲି । ଏସବୁ ଭୟଙ୍କର ପୀଡ଼ା ସତ୍ତ୍ୱେ ମୋ ମନ ଦବିଯାଇ ନଥିଲି । ତୃତୀୟ ଅଧ୍ୟାୟରେ ଶ୍ରମଣ-ମାନଙ୍କର ନାନାବିଧ ତପସ୍ୟାର ବିବରଣୀ ଦିଆଯାଇଛି । ସେଠାରେ ହଠଯୋଗର ଉଲ୍ଲେଖ କରାଯାଇନାହିଁ । ତଥାପି ଏହା ସ୍ୱୀକାର କରିବାକୁ ପଡ଼ିବ ଯେ ଏହି ପ୍ରକାରର ହଠଯୋଗ ଅଭ୍ୟାସ କରୁଥିବା ସନ୍ନ୍ୟାସୀମାନେ ଥିଲେ । ତା ନ ହୋଇଥିଲେ ବୋଧିସତ୍ତ୍ୱ ସେହିପ୍ରକାର ଯୋଗାଭ୍ୟାସ କରି ନ ଥାନ୍ତେ ।

## ଉପୋଷଣ

ଏହିପରି ହଠଯୋଗ ଅଭ୍ୟାସ କରିବା ପରେ ବୋଧିସତ୍ତ୍ୱ ଅନୁଭବ କଲେ ଯେ ତଦ୍ୱାରା ବିଶେଷ କିଛି ଲାଭ ହେବ ନାହିଁ । ତହୁଁ ସେ ଉପୋଷଣ (ଉପବାସ) ଆରମ୍ଭ କରିଦେଲେ । ଅନ୍ନଜଳ ଗ୍ରହଣ ସମ୍ପୂର୍ଣ୍ଣରୂପେ ପରିତ୍ୟାଗ କରିବା ଉଚିତ ବୋଲି ସେ ମନେ କଲେନାହିଁ । ତେଣୁ ସେ ଅତ୍ୟନ୍ତ ଅଳ୍ପ ଆହାର ଗ୍ରହଣକଲେ । ଭଗବାନ୍ ବୁଦ୍ଧ ସଚ୍ଚକଙ୍କୁ କହିଅଛନ୍ତି—"ହେ ଅଗ୍‌ଗିବେସ୍‌ସନ ! ମୁଁ ଅଳ୍ପ ଅଳ୍ପଆହାର କରିବାକୁ ଲାଗିଲି । ମୁଗସିଝା, କୋଳଥ ସିଝା, ମଟର ସିଝା ଓ ଚଣା ସିଝାର ଝୋଳ ମାତ୍ର ଖାଇ ରହୁଥିଲି । ତାହା ମଧ୍ୟ ଖୁବ୍ କମ୍ ପରିମାଣରେ ହୋଇଥିବାରୁ ମୋ ଶରୀର ଅତ୍ୟନ୍ତ କୃଶ ହୋଇଗଲା । ଗଜପିପ୍‌ପଳୀ ଲତାର ଗଣ୍ଠି ପରି ମୋ ଶରୀରର ଗଣ୍ଠିଗୁଡ଼ିକ ବାହାରି ପଡ଼ିଲା । ଓଟର ପାଦ ପରି ମୋର କଟିବନ୍ଧ ଦେଖାଗଲା ଓ ଟାକୁଡ଼ି ମାଳାପରି ମୋର ମେରୁଦଣ୍ଡ ଦେଖାଗଲା । ଭଙ୍ଗାଘରର ଦଣ୍ଡା ଯେପରି ତଳ ଉପର ହୋଇଯାଏ, ମୋର ପଞ୍ଜରା ମଧ୍ୟ ସେହିପରି ହୋଇଗଲା । ଗଭୀର କୂପରେ ପଡିଥିବା

ନକ୍ଷତ୍ରର ପ୍ରତିବିମ୍ବ ପରି ମୋର ଆଖି ଦୁଇଟି ଭିତରକୁ ପଶିଗଲା । କଞ୍ଚା ଲାଉକୁ କାଟି ଖରାରେ ପକାଇଦେଲେ ତାହା ଯେପରି ଶୁଖିଯାଏ ମୋର ମୁଣ୍ଡର ଚମଡ଼ା ସେହିପରି ଶୁଖିଗଲା । ମୁଁ ପେଟ ଉପରେ ହାତ ବୁଲାଇଲା ବେଳେ ହାତକୁ ମେରୁଦଣ୍ଡ ଲାଗି ଯାଉଥିଲା ଓ ମେରୁଦଣ୍ଡ ଉପରେ ହାତ ବୁଲାଇଲା ବେଳେ ପେଟର ଚମଡ଼ା ହାତକୁ ଲାଗି ଯାଉଥିଲା । ମୋର ମେରୁଦଣ୍ଡର ଅବସ୍ଥା ଏହିପରି ଥିଲା । ମୁଁ ଶୌଚ ବା ପରିସ୍ରା କରିବାକୁ ବସିଲାବେଳେ ତଳେ ପଡ଼ୁଥିଲି । ଦେହ ଉପରେ ହାତ ବୁଲାଇଲା ବେଳେ ମୋର ଦୁର୍ବଳ ବାଳଗୁଡ଼ିକ ଆପେ ଆପେ ଝଡ଼ି ପଡ଼ୁଥିଲା ।

## ବିତର୍କ ଉପରେ ଅଧିକାର

ବୋଧିସତ୍ତ୍ୱ ସାତବର୍ଷ ପର୍ଯ୍ୟନ୍ତ ତପଶ୍ଚରଣ କରିଥିଲେ ବୋଲି ଅନେକ ସ୍ଥଳରେ ଉଲ୍ଲିଖିତ ହୋଇଛି । ଏହି ସମୟ ଭିତରେ ସେ ମୁଖ୍ୟତଃ 'ଦେହ ଦଣ୍ଡନ' କରୁଥିଲେ, କିନ୍ତୁ ସେ ଯେ ତା ସଙ୍ଗେ ସଙ୍ଗେ ଅନ୍ୟ କଥା ବିଚାର କରୁ ନ ଥିଲେ, ତା ନୁହେଁ । ଉପରେ କୁହା ଯାଇଥିବା ତିନୋଟି ଉପମାର ଆଲୋଚନା କଲେ ଜଣାଯିବ ଯେ କାମ ବିକାରକୁ ସମ୍ପୂର୍ଣ୍ଣଭାବରେ ବିନଷ୍ଟ କରିବା ପର୍ଯ୍ୟନ୍ତ କେବଳ କାୟ କଷ୍ଟରେ (ଦେହକୁ କଷ୍ଟ ଦେବା) କୌଣସି ସୁଫଳ ମିଳିବ ନାହିଁ ବୋଲି ସେ ସ୍ପଷ୍ଟ ଉପଲବ୍ଧି କରିଥିଲେ । ଏହାଛଡ଼ା ଆହୁରି ଅନେକ ସତ୍-ଚିନ୍ତା ତାଙ୍କ ମନରେ ଉଦିତ ହୋଇଥିବାର ଉଲ୍ଲେଖ ଅନ୍ୟ ଅନେକ ସୂତ୍ରରେ ଦେଖିବାକୁ ମିଳେ । ସେ ମଧ୍ୟରୁ ଏଠାରେ କେତୋଟିର ଅବତାରଣା କରା ଯାଉଛି ।

ମଜ୍ଝିମ ନିକାୟର 'ଦ୍ୱେଧା ବିତକ୍କ ସୁତ୍ତ'ରେ ଭଗବାନ୍ କହୁଅଛନ୍ତି, "ହେ ଭିକ୍ଷୁଗଣ ! ସମ୍ବୋଧି ପ୍ରାପ୍ତି ପୂର୍ବରୁ ମୁଁ ଯେତେବେଳେ

ବୋଧିସତ୍ତ୍ୱ ଥିଲି ସେତେବେଳେ, ମୁଁ ବିତର୍କକୁ ଦୁଇଭାଗରେ ବିଭକ୍ତ କରାଯାଇ ପାରେ ବୋଲି ଭାବୁଥିଲି । କାମ ବିତର୍କ (ବିଷୟ ବିତର୍କ), ବ୍ୟାପାଦ-ବିତର୍କ (ଦ୍ୱେଷ ବିତର୍କ) ଏବଂ ବିହିଂସା-ବିତର୍କ (ଅନ୍ୟକୁ ବା ନିଜକୁ କଷ୍ଟ ଦେବା-ବିତର୍କ) ଏହିପରି ତିନୋଟି ବିତର୍କର ମୁଁ ଗୋଟିଏ ବିଭାଗ କରିଥିଲି । ପୁଣି ଦ୍ୱିତୀୟ ବିଭାଗରେ ଆଉ ତିନୋଟି ବିତର୍କ ରଖିଥିଲି । ଯଥା—ନୈଷ୍କର୍ମ୍ୟ (ଏକାନ୍ତ ବାସ), ଅବ୍ୟାପାଦ (ମୈତ୍ରୀ) ଓ ଅବିହିଂସା (କଷ୍ଟ ନ ଦେବାର ଇଚ୍ଛା) । ଏହାଛଡ଼ା, ଅତ୍ୟନ୍ତ ସାବଧାନ ଓ ସତର୍କ ଭାବରେ ମୁଁ ରହୁଥିବା ବେଳେ ପ୍ରଥମ ତିନୋଟି ବିତର୍କରୁ ଯଦି କୌଣସି ଗୋଟିଏ ବିତର୍କ ମୋ ମନରେ ଜାତ ହେଉଥିଲା ମୁଁ ବିଚାରୁଥିଲି ଯେ, ମୋ ମନରେ ଏକ ମନ୍ଦ ବିତର୍କ ଉତ୍ପନ୍ନ ହେଲା । ତଦ୍ୱାରା ମୋର ଏବଂ ଅନ୍ୟର ମଧ୍ୟ ଦୁଃଖ ଜାତ ହେବ । ତାହା ପ୍ରଜ୍ଞାର ନିରୋଧ କରିବ ଓ ନିର୍ବାଣ ପ୍ରାପ୍ତିରେ ପ୍ରତିବନ୍ଧକ ହେବ । ଏହା ଭାବିବା ଫଳରେ ମୋ ମନରୁ ସେହି ବିତର୍କ ଦୂର ହୋଇ ଯାଉଥିଲା ।

"ହେ ଭିକ୍ଷୁଗଣ ! ଶରତ୍ ଋତୁରେ ଯେତେବେଳେ ଗୃହଆଡ଼େ ଫସଲ ପାଚିଯାଏ, ସେତେବେଳେ ଜଗାଳୀ ନିଜର ଗୋରୁ ଗାଈ ପ୍ରଭୃତି ଜନ୍ତୁ ମାନଙ୍କୁ ବଡ଼ ସାବଧାନରେ ରଖେ । ଦରକାର ହେଲେ ସେ ସେମାନଙ୍କୁ ବାଡ଼ିରେ ପିଟି ମଧ୍ୟ ଶସ୍ୟକ୍ଷେତ୍ରରୁ ଦୂରରେ ରଖେ । ତାର କାରଣ ହେଉଛି, ଜଗାଳି ଜାଣୁ ଥିଲା ଯେ ଯଦି ଜନ୍ତୁମାନଙ୍କୁ ସେ ସେଭଳି ନ କରେ, ତାହା ହେଲେ ସେମାନେ ଲୋକଙ୍କ ଫସଲ ଖାଇବାରେ ପଶିଯିବେ ଓ ତାକୁ ମଧ୍ୟ ଜରିମାନା ଦେବାକୁ ପଡ଼ିବ । ସେହିଭଳି ଭାବରେ ମୁଁ ମଧ୍ୟ ସ୍ପଷ୍ଟ ଅନୁଭବ କଲି ଯେ କାମ, ବ୍ୟାପାଦ ଓ ବିହିଂସା ଏହି ଅକୁଶଳ ମନୋବୃତ୍ତି ଗୁଡ଼ିକ ପରିଣାମରେ ବଡ଼ ଭୟଙ୍କର ।"

ସେ ସମୟରେ ମୁଁ ବଡ଼ ସାବଧାନ ଭାବରେ ଏବଂ ଉତ୍ସାହପୂର୍ଣ୍ଣ ପ୍ରାଣରେ ରହୁଥିଲି । ସେତେବେଳେ ନୈଷ୍କର୍ମ୍ୟ, ଅବ୍ୟାପାଦ ଓ ଅବିହିଂସା ଏହି କୁଶଳ ବିତର୍କମାନଙ୍କ ମଧ୍ୟରୁ କୌଣସିଟି ମୋ ମନରେ ଉଦିତ ହୋଇଥିଲା । ମୁଁ ଭାବୁଥିଲି, ସେହି ବିତର୍କ ମୋର କିମ୍ବା ଅନ୍ୟର, କାହାର ଦୁଃଖର କାରଣ ହେବ ନାହିଁ । ଏହା ପ୍ରଜାମାନଙ୍କର ଉନ୍ନତି ସାଧନ କରିବ ଓ ନିର୍ବାଣ-ପ୍ରାପ୍ତି କରାଇ ଦେବ । ସାରାଦିନ ବା ରାତି ତମାମ ଯଦି ମୁଁ ତାକୁ ଚିନ୍ତା କରେ, ତେବେ ମଧ୍ୟ ତହିଁରେ ଡରିବାର କିଛି ନାହିଁ । ତଥାପି ବହୁ ସମୟଧରି ଚିନ୍ତା କଲେ ଦେହ ଅବସନ୍ନ ହୋଇ ଯିବ ଓ ଚିତ୍ତ ସ୍ଥିର ରହିବ ନାହିଁ ଏବଂ ଚିତ୍ତ ଅସ୍ଥିର ହୋଇ ପଡ଼ିଲେ ସମାଧି ହୋଇ ପାରିବ ନାହିଁ—ଏହା ଭାବି ( କିଛି ସମୟ ପରେ) ମୁଁ ମୋ ଅଭ୍ୟନ୍ତରରେହିଁ ମନକୁ ସ୍ଥିର କରି ରଖୁଥିଲି । ଗ୍ରୀଷ୍ମକାଳର ଶେଷରେ ଯେତେବେଳେ ଲୋକେ କ୍ଷେତରୁ ଫସଲ କାଟି ଘରକୁ ନେଇଯାନ୍ତି, ସେତେବେଳେ ଜଗାଳୀମାନେ ଗୋରୁ ଗାଈ ପ୍ରଭୃତିଙ୍କୁ ଇଚ୍ଛା ଅନୁସାରେ ଖାଇବା ପାଇଁ ତହିଁରେ ଛାଡ଼ି ଦିଅନ୍ତି । ଜଗାଳୀ ଗଛ ଛାଇରେ ବସିଥାଉ ବା ପଡ଼ିଆରେ ଥାଉ, ଗାଈ ଉପରେ ଆଖି ରଖିବା ଛଡ଼ା ତାର ଆଉ କିଛି କାର୍ଯ୍ୟ ନଥାଏ । ସେହିପରି ନୈଷ୍କର୍ମ୍ୟ ପ୍ରଭୃତି କୁଶଳ ବିତର୍କ ଗୁଡ଼ିକ ମନରେ ଜାତ ହେବା ପରେ ମୋର କେବଳ ଏତିକି ଧାରଣା ରହିଲା ଯେ ତାହା ହେଉଛି କୁଶଳଧର୍ମ ( ତାହାର ନିରୋଧ ପାଇଁ ଚେଷ୍ଟା କରୁ ନ ଥିଲି ) ।

## ନିର୍ଭୟତା

କୁଶଳ ବିତର୍କମାନଙ୍କ ବଳରେ ଅକୁଶଳ ବିତର୍କ ଗୁଡ଼ିକ ପରାଭୂତ ହେଲେହେଁ, ଯେଉଁ ପର୍ଯ୍ୟନ୍ତ ଧାର୍ମିକ ବ୍ୟକ୍ତିର ମନରେ

ନିର୍ଭୟତା ଜାତ ହୋଇନାହିଁ, ସେ ପର୍ଯ୍ୟନ୍ତ ତାହାପକ୍ଷରେ ତତ୍ତ୍ୱବୋଧ ସମ୍ଭବପର ନୁହେଁ । ଉଦାହରଣ ବା ସୈନ୍ୟମାନେ ନିଜର ବିରୋଧୀଙ୍କ ଉପରେ ସାହସରେ ଆକ୍ରମଣ କରିଥାନ୍ତି । କିନ୍ତୁ ସେମାନଙ୍କର ନିର୍ଭୟତାର ମାତ୍ରା ଅତ୍ୟନ୍ତ ଅଳ୍ପ । ସେମାନେ ଅସ୍ତ୍ର ଶସ୍ତ୍ରରେ ଯେତେଦୂର ସଜ୍ଜିତ ହୋଇଥା'ନ୍ତି ପଛେ, ସେମାନଙ୍କ ମନରେ ଭୟ ଥାଏ । ସେମାନେ ଭାବୁଥାଆନ୍ତି, ଶତ୍ରୁ କେତେବେଳେ ଯେ ସେମାନଙ୍କ ଉପରେ ଆକ୍ରମଣ କରିଦେବ—ତାହା କିଏ କହିବ । ସୁତରାଂ ସେମାନଙ୍କ ନିର୍ଭିକତା ବାସ୍ତବ ନୁହେଁ । ଆଧ୍ୟାତ୍ମ ମାର୍ଗରୁହିଁ ପ୍ରକୃତ ନିର୍ଭୟତା ମିଳେ । ବୋଧିସତ୍ତ୍ୱ ସେହି ନିର୍ଭୟତା କିପରି ଲାଭକଲେ, ତାହା ନିମ୍ନ ପ୍ରଦତ୍ତ ଉଦାହରଣରୁ ଜଣାଯିବ ।

ଭଗବାନ୍ ବୁଦ୍ଧ, ବ୍ରାହ୍ମଣ ଜାନୁଶ୍ରୋଣୀଙ୍କୁ କହୁଅଛନ୍ତି "ହେ ବ୍ରାହ୍ମଣ ! ମୁଁ ଯେତେବେଳେ ସମ୍ବୋଧ ଲାଭ କରି ନଥିଲି ଓ କେବଳ ବୋଧିସତ୍ତ୍ୱ ଥିଲି, ସେତେବେଳେ ମତେ ଜଣାଯାଉଥିଲା ଯେ ଯେଉଁ ଶ୍ରମଣ ବା ବ୍ରାହ୍ମଣ ପରିଶୁଦ୍ଧ କାୟିକକର୍ମର ଆଚରଣ ନକରି ଅରଣ୍ୟରେ ରହନ୍ତି, ସେମାନେ ସେହି ଦୋଷରୁ ଭୟ ରୂପକ ଭୈରବଙ୍କୁ ନିମନ୍ତ୍ରଣ କରୁଅଛନ୍ତି । କିନ୍ତୁ ମୋର କର୍ମ ପରିଶୁଦ୍ଧ ଅଟେ । ମୁଁ ଯେତେବେଳେ ଦେଖିଲି, ପରିଶୁଦ୍ଧ କାୟିକକର୍ମ କରୁଥିବା ସଜ୍ଜନ (ଆର୍ଯ୍ୟ), ଜଙ୍ଗଲରେ ରହୁଛନ୍ତି ଓ ମୁଁ ସେମାନଙ୍କ ମଧ୍ୟରୁ ଜଣେ, ସେତେବେଳେ ଯାଇ ଅରଣ୍ୟ ବାସରେ ମୁଁ ନିର୍ଭୟତା ଅନୁଭବ କଲି । ଅନ୍ୟ ଅନେକ ଶ୍ରମଣ ବା ବ୍ରାହ୍ମଣ ଅପରିଶୁଦ୍ଧ ବାଚନିକ କର୍ମର ଆଚରଣ କରୁଛନ୍ତି, ଅପରିଶୁଦ୍ଧ ମାନସିକ କର୍ମ ଆଚରଣ କରୁଛନ୍ତି ଓ ଅପରିଶୁଦ୍ଧ ଆଜୀବ (ଉପଜୀବିକା) କରି ଅରଣ୍ୟରେ ରହୁଅଛନ୍ତି । କିନ୍ତୁ ମୋର ବାଚନିକ ଏବଂ ମାନସିକ କର୍ମ ଓ ଉପଜୀବିକା ପରିଶୁଦ୍ଧ ଅଟେ । ମୁଁ ଯେତେବେଳେ ଦେଖିଲି

ଯେ, ମୁଁ ମଧ୍ୟ ସେହି ପରିଶୁଦ୍ଧ କର୍ମ ଓ ଉପଜୀବିକା ସମ୍ପନ୍ନ ସଜ୍ଜନମାନଙ୍କ ମଧ୍ୟରୁ ଜଣେ, ସେତେବେଳେ ଅରଣ୍ୟବାସରେ ମୁଁ ଅତ୍ୟନ୍ତ ନିର୍ଭୟତା ଅନୁଭବ କଲି ।

"ହେ ବ୍ରାହ୍ମଣ ! ଯେଉଁ ଶ୍ରମଣ ବା ବ୍ରାହ୍ମଣ ଲୋଭୀ, ଦୁଷ୍ଟଚିତ୍ତ, ଆଳସ୍ୟପରିପୂର୍ଣ, ଭ୍ରାନ୍ତଚେତା ଅଥବା ସଂଶୟଗ୍ରସ୍ତ ହୋଇ ଅରଣ୍ୟରେ ରହୁଅଛନ୍ତି, ସେମାନେ ସେହି ଦୋଷରୁ ଭୟ ରୂପକ ଭୈରବକୁ ଡାକି ଆଣୁଛନ୍ତି । କିନ୍ତୁ ମୋର ଚିତ୍ତ କାମବିକାରରେ ଅଲିପ୍ତ, ଦୋଷ ମୁକ୍ତ (ଅର୍ଥାତ୍ ସବୁ ପ୍ରାଣୀଙ୍କ ବିଷୟରେ ମୋ ମନରେ ମୈତ୍ରୀ ଭାବ ଅଛି), ମୋର ମନ ଉତ୍ସାହ ପୂର୍ଣ୍ଣ, ସ୍ଥିର ଏବଂ ନିଃଶଙ୍କ । ମୁଁ ଯେତେବେଳେ ଦେଖିଲି ଯେ ଏ ପ୍ରକାର ଗୁଣଯୁକ୍ତ ଓ ଅରଣ୍ୟରେ ବାସ କରୁଥିବା ସଜ୍ଜନମାନଙ୍କ ମଧ୍ୟରୁ ମୁଁ ଜଣେ, ସେତେବେଳେ ଅରଣ୍ୟବାସରେ ମୁଁ ଅତ୍ୟନ୍ତ ନିର୍ଭୟତା ଅନୁଭବ କଲି ।

"ହେ ବ୍ରାହ୍ମଣ ! ଯେଉଁ ଶ୍ରମଣ ବା ବ୍ରାହ୍ମଣ ଆତ୍ମ ସ୍ତୁତି ଏବଂ ପରନିନ୍ଦା କରନ୍ତି, ଭୟାକ୍ରାନ୍ତ ହୁଅନ୍ତି, ମାନସମ୍ମାନ ଇଚ୍ଛାରେ ଅରଣ୍ୟରେ ବାସକରନ୍ତି······ଅଥବା ଜଡ଼ ବୁଦ୍ଧି ହୁଅନ୍ତି, ସେ, ସେହି ଦୋଷରୁ ଭୟ-ଭୈରବକୁ ଡାକିଆଣନ୍ତି । କିନ୍ତୁ ମୋ ଭିତରେ ଏ ଦୁର୍ଗୁଣ ନାହିଁ, ମୁଁ ଆତ୍ମସ୍ତୁତି ଏବଂ ପରନିନ୍ଦା କରେ ନାହିଁ । ମୁଁ ଭୀରୁ ନୁହେଁ । ମୁଁ ମାନ—ସମ୍ମାନ ଗ୍ରହଣ କରେ ନାହିଁ ।······ପୁଣି ମୁଁ ହେଉଛି ପ୍ରଜ୍ଞାବାନ୍ । ମୁଁ ଯେତେବେଳେ ଦେଖିଲି ଯେ, ଏହି ଗୁଣଯୁକ୍ତ ହୋଇ ଯେଉଁ ସଜ୍ଜନମାନେ ଅରଣ୍ୟରେ ବାସ କରନ୍ତି, ମୁଁ ସେମାନଙ୍କ ମଧ୍ୟରୁ ଅନ୍ୟତମ, ଅରଣ୍ୟବାସରେ ମୁଁ ନିର୍ଭୟତା ଅନୁଭବ କଲି ।

"ହେ ବ୍ରାହ୍ମଣ ! ଚତୁର୍ଦ୍ଦଶୀ, ପୂର୍ଣ୍ଣିମା, ଅମାବାସ୍ୟା ଏବଂ ଅଷ୍ଟମୀର ରାତି (ଭୟ ନିମନ୍ତେ) ଲୋକରେ ସୁବିଦିତ । ଯେଉଁ ବଗିଚାରେ, ଅରଣ୍ୟରେ ବା ବୃକ୍ଷମୂଳରେ, ଏସବୁ ରାତିରେ, ଲୋକେ ଦେବତାମାନଙ୍କ ପାଇଁ ବଳିଦାନ କରନ୍ତି କିମ୍ବା ଯେଉଁସ୍ଥାନ ଅତ୍ୟନ୍ତ ଭୟଙ୍କର ପ୍ରତୀତ ହୁଏ, ସେଠାରେ ମୁଁ (ଏକୁଟିଆ) ରହୁଥିଲି । ଭୟ-ଭୈରବ ପ୍ରକୃତରେ କଣ, ତାହା ଦେଖିବା ପାଇଁ ମୋର ଇଚ୍ଛା ହେଉଥିଲା । ସେପରି ସ୍ଥାନମାନଙ୍କରେ ରହିବା ସମୟରେ ଯଦି କୌଣସି ହରିଣ ସେବାଟେ ଚାଲିଯାଉଥିଲା, କୌଣସି ମୟୂର ଶୁଖିଲା କାଠି ତଳେ ପକାଇ ଦେଉଥିଲା, ଅଥବା ଗଛର ପତ୍ରଗୁଡ଼ିକ ପବନରେ ହଲଚଲ ହେଉଥିଲା—ସେତିକିବେଳେ ସେ ସବୁହିଁ ଭୟ-ଭୈରବ ବୋଲି ମତେ ଜଣା ଯାଉଥିଲା । ମୁଁ କହୁଥିଲି, 'ଭୟ-ଭୈରବ ଦେଖିବା ଇଚ୍ଛାରେ ମୁଁ ଏଠାକୁ ଆସିଛି, ଅତଏବ ଏହି ପରିସ୍ଥିତିରେ ତାହାର ବିନାଶ ଘଟାଇବା ଉଚିତ ।' ମୁଁ ଚାଲିବା ସମୟରେ ଯଦି ଭୟ-ଭୈରବ ଆସିଯାଉଥିଲା, ତେବେ ଚାଲିବା ସମୟରେହିଁ ମୁଁ ତାକୁ ନାଶ କରୁଥିଲି । ତାହାର ବିନାଶ ନ ହେବା ପର୍ଯ୍ୟନ୍ତ ମୁଁ ମୋର ଗତି ବନ୍ଦ କରୁ ନଥିଲି, ବସୁ ନଥିଲି କିମ୍ବା ବିଛଣା ଉପରେ ଗଡ଼ିଯାଉ ନଥିଲି । ଏହି ଭୟ-ଭୈରବ, ମୁଁ ଠିଆ ହେବା ବେଳେ ଯଦି ଆସି ଯାଉଥିଲା, ମୁଁ ତାକୁ ଠିଆରେହିଁ ନାଶକରି ଦେଉଥିଲି । ସେ ବିନଷ୍ଟ ନ ହେବା ପର୍ଯ୍ୟନ୍ତ ମୁଁ ଚାଲୁ ନଥିଲି, ବସୁ ନଥିଲି ବା ବିଛଣାରେ ଗଡ଼ିଯାଉ ନ ଥିଲି । ପୁଣି ମୁଁ ବସିବା ସମୟରେ ଯଦି ସେହି ଭୟ-ଭୈରବ ଆସି ଯାଉଥିଲା, ତାହାହେଲେ ମୁଁ ଶୋଉ ନଥିଲି, ଠିଆହେଉ ନଥିଲି ଓ ଚାଲୁ ନଥିଲି । ବସି ବସି ମୁଁ ତାହାକୁ ନାଶକରି ଦେଉଥିଲି । ମୁଁ ଶେଯରେ ଗଡ଼ୁଥିବା ବେଳେ ଯଦି ସେହି ଭୟ-ଭୈରବ ଆସି ଯାଉଥିଲା,

ତେବେ ମୁଁ ବସୁ ନଥିଲି, ଠିଆ ହେଉ ନଥିଲି କିମ୍ବା ଚାଲୁ ନଥିଲି। ବିଛଣାରେ ଗଡ଼ ଗଡ଼ହିଁ ମୁଁ ତାହାକୁ ନାଶକରି ଦେଉଥିଲି।"

## ରାଜ ଯୋଗ

ବୋଧିସତ୍ତ୍ୱ କେବଳ ଯେ ହଠଯୋଗ ଏବଂ ତପସ୍ୟାରେହିଁ ନିଜର ସମସ୍ତ ସମୟ କଟାଇ ଦେଉଥିଲେ, ତାହା ନୁହେ। ସେପରି କରିବା କୌଣସି ତପସ୍ୱୀ ପକ୍ଷରେ ସମ୍ଭବପର ନୁହେ। ମଝିମଝିରେ ସେ ସାରବାନ୍ ଖାଦ୍ୟମଧ ଖାଉଥିଲେ। ଶରୀରରେ ସାମାନ୍ୟ ଶକ୍ତି ଫେରିବା ପରେ ସେ ପୁଣି ଉପବାସ ପ୍ରଭୃତିରେ ଦେହଦଣ୍ଡନ କରିବାକୁ ଲାଗିଯାଉଥିଲେ। ସାତବର୍ଷ କାଳ ବୋଧିସତ୍ତ୍ୱ ପ୍ରଧାନତଃ ତପସ୍ୟା କରୁଥିଲେ। କିନ୍ତୁ ମଝି ମଝିରେ ସେ ଯେ ସାରବାନ୍ ଖାଦ୍ୟ ଗ୍ରହଣ କରୁଥିଲେ ଓ ଶାନ୍ତ-ସମାଧି ଅନୁଭବ କରୁଥିଲେ, ତହିଁରେ ସନ୍ଦେହ ନାହିଁ। ହଠଯୋଗ ଛାଡ଼ି ସେ 'ଆନାପାନ' ସ୍ମୃତିସମାଧିର ଭାବନା କିପରି କରୁଥିଲେ, ସେ ସମ୍ପର୍କରେ ନିଜେ ଭଗବାନ୍ ବୁଦ୍ଧ "ଆନାପାନସଂଯୁତ୍ତ" ପ୍ରଥମବଗ୍‌ଗର ଅଷ୍ଟମ ସୁତ୍ତରେ କହି ଅଛନ୍ତି।

ଭଗବାନ୍ କହୁଅଛନ୍ତି—"ହେ ଭିକ୍ଷୁଗଣ! ଆନାପାନ ସ୍ମୃତି-ସମାଧିର ଭାବନା କରିବା ଦ୍ୱାରା ଉପକାର ମିଳେ। କିପରି ଭାବରେ ଏହି ଭାବନାରୁ ଉପକାର ମିଳେ (ଜାଣ)? କୌଣସି ଭିକ୍ଷୁ ଅରଣ୍ୟରେ ବୃକ୍ଷମୂଳରେ ବା ଅନ୍ୟ କୌଣସି ଏକାନ୍ତ ସ୍ଥାନରେ ଆସନ ପାରି ବସିଯାଏ। ସେ ଯେତେବେଳେ ଦୀର୍ଘ ନିଃଶ୍ୱାସ ନିଏ, ସେ ଏକଥା ଜାଣେ ଯେ "ମୁଁ ଦୀର୍ଘନିଃଶ୍ୱାସ ନେଉଛି"। ସେ ଯେତେବେଳେ ଦୀର୍ଘନିଃଶ୍ୱାସ ଛାଡ଼େ, ସେତେବେଳେ ସେ ଜାଣେ ଯେ "ମୁଁ ଦୀର୍ଘ ନିଃଶ୍ୱାସ ଛାଡ଼ୁଛି।" ଯେତେବେଳେ ସେ ଲଘୁ

ନିଃଶ୍ୱାସ ନିଏ·····"(୧) ଇତ୍ୟାଦି । ଏହି ପ୍ରକାରେ ଆନାପାନ ସ୍ମୃତିସମାଧି କରିବାରେ ବିଶେଷ ଲାଭ ମିଳେ ।

ହେ ଭିକ୍ଷୁଗଣ ! ମୁଁ ମଧ୍ୟ ସମ୍ବୋଧିଜ୍ଞାନ ପ୍ରାପ୍ତିପୂର୍ବରୁ ବୋଧି-ସତ୍ତ୍ୱାବସ୍ଥାରେ ଥିଲାବେଳେ ଏହି ଭାବନା କରୁଥିଲି । ଏହାଦ୍ୱାରା ମୋର ଶରୀରରେ କମ୍ପା ଚକ୍ଷୁରେ ପୀଡ଼ା ଲାଗୁନଥିଲା ଏବଂ ମୋର ମନ ପାପ-ବିକାର ମାନଙ୍କରୁ ବିମୁକ୍ତ ରହୁଥିଲା ।"

ଏଥିରୁ ଏହା ସ୍ପଷ୍ଟ ଜଣାଯାଏ ଯେ ବୋଧିସତ୍ତ୍ୱ ସର୍ବଦା ହଠଯୋଗ ଅଭ୍ୟାସ କରୁ ନଥିଲେ । ମଝିମଝିରେ ସେ ଶାନ୍ତ ରାଜ-ଯୋଗର ଅଭ୍ୟାସ କରୁଥିଲେ ଓ ତହିଁରେ ତାଙ୍କୁ ଶାନ୍ତି ମିଳୁଥିଲା ।

## ଧ୍ୟାନମାର୍ଗର ଅବଲମ୍ବନ

ଏହି ପ୍ରକାର ଉପବାସ ଏବଂ ଖାଦ୍ୟ ଗ୍ରହଣ, ହଠଯୋଗ ଏବଂ ରାଜଯୋଗ ପ୍ରଭୃତି କଥାମାନଙ୍କ ମଧ୍ୟରେ ଦୋଳାୟମାନ ହୋଇ ଶେଷରେ ବୋଧିସତ୍ତ୍ୱ ଦୈବାତ୍ ଏକଥା ନିଶ୍ଚିତ ବୋଲି ଧରିନେଲେ ଯେ ତପଶ୍ଚରଣ ପୂରାପୂରି ନିରର୍ଥକ । ତାହା ବ୍ୟତିରେକେ ମଧ୍ୟ ମୁକ୍ତି ମିଳିପାରେ । ତେଣୁ ତପସ୍ୟା ବର୍ଜନ କରି ସେ ପୂର୍ଣ୍ଣଭାବରେ ଧ୍ୟାନମାର୍ଗ ଅବଲମ୍ବନ କଲେ । ତାହାର ସଂକ୍ଷିପ୍ତ ବର୍ଣ୍ଣନା ମହାସଚ୍ଚକ ସୁତ୍ତରେ ଦେଖିବାକୁ ମିଳେ ।

ଭଗବାନ୍ ସଚ୍ଚକଙ୍କୁ କହୁଅଛନ୍ତି—"ହେ ଅଗ୍‌ଗିବେସନ୍ ! ଯେତେବେଳେ ମୋର ପିତା ଶାକ୍ୟଙ୍କ ଜମିରେ କାମ ଚାଲିଥାଏ, ମୁଁ ଜାମୁଗଛର ଶୀତଳ ଛାଇରେ ବସି ପ୍ରଥମ ଧ୍ୟାନ ଶିଖିଯାଇଥିଲି ।

(୧) ବିଶେଷ ବିବରଣୀ ପାଇଁ ଦେଖ "ସମାଧି ମାର୍ଗ" ପୃ ୩—୬

ତାହା ମୋର ମନେପଡ଼ିଗଲା ଓ ସେହି ସ୍ମରଣ ଅନୁସାରେ ମୋର ଏହି ଧାରଣା ହେଲା ଯେ ତାହାହିଁ "ବୋଧ"ର ମାର୍ଗ ହେବା ବିଧେୟ । ପୁଣି ମୋ ମନରେ ଏହି ବିଚାର ଜନ୍ମିଲା ଯେ, ବିନା ବିଳାସ ସାମଗ୍ରୀରେ ଏବଂ କୁଶଳ ବିଚାରରୁ ଯେଉଁ ସୁଖମିଳେ, ସେହି ସୁଖ ଭୋଗ କରିବାକୁ ମୁଁ କାହିଁକି ଡରିବି । ତେଣୁ ସେ-ପ୍ରକାର ସୁଖକୁ ମୁଁ ଡରିବି ନାହିଁ ବୋଲି ପୁନର୍ବାର ମନରେ ବିଚାର କଲି; କିନ୍ତୁ ଅତ୍ୟନ୍ତ କୃଶ ଶରୀରରେ ସେହି ସୁଖ ମିଳିବା ଅସମ୍ଭବ । ତେଣୁ ଅଳ୍ପଅଳ୍ପ ଅନ୍ନ ଗ୍ରହଣକରିବା ବିଚାରକରି ମୁଁ ସେହି ଅନୁସାରେ କାର୍ଯ୍ୟକଲି । ସେହି ସମୟରେ ୫ଜଣ ଭିକ୍ଷୁ ମୋ ସେବାରେ ଲାଗିଥିଲେ । କାରଣ ହେଉଛି, ସେମାନେ ଭାବୁଥିଲେ ଯେ ମୁଁ ଯେଉଁ ଧର୍ମତତ୍ତ୍ୱ ଜାଣିବି, ମୁଁ ସେହି ଧର୍ମତତ୍ତ୍ୱ ସେମାନଙ୍କୁ ଶିକ୍ଷାଇ ଦେବି । କିନ୍ତୁ ମୁଁ ଯେତେବେଳେ ଅନ୍ନଗ୍ରହଣ କଲି ( ତପଶ୍ଚରଣ ଛାଡ଼ିଦେଲି ) ସେତେବେଳେ ସେମାନେ ମନେକଲେ, 'ଏହି ଗୌତମ ତପସ୍ୟାଭ୍ରଷ୍ଟ ହୋଇ ଖାଇବା ପିଇବାରେ ମନବଳାଇଲାଣି । ମୋ ଉପରେ ସେ ୫ଜଣ ଭିକ୍ଷୁ ବିରକ୍ତ ହୋଇ ଅନ୍ୟତ୍ର ଚାଲିଗଲେ ।'

ତଥାପି ବୋଧିସତ୍ତ୍ୱଙ୍କର ପ୍ରତିଜ୍ଞା ଅଟଳ ରହିଲା । ତପସ୍ୟା ମାର୍ଗ ପରିତ୍ୟାଗ କରି ସରଳ ଧ୍ୟାନ ମାର୍ଗରେ ହିଁ ତତ୍ତ୍ୱବୋଧ ଲାଭକରିବା ଉଚିତ—ଏ କଥାରେ ତାଙ୍କର ସମ୍ପୂର୍ଣ୍ଣ ବିଶ୍ୱାସ ଜନ୍ମିଗଲା ।

## ମାରଯୁଦ୍ଧ

ସେହି ସମୟରେ ବୋଧିସତ୍ତ୍ୱଙ୍କ ସହିତ 'ମାର'ର ଯୁଦ୍ଧ ହୋଇଥିବା ବିଷୟର କାବ୍ୟାତ୍ମକ ବର୍ଣ୍ଣନା ବୁଦ୍ଧଚରିତ ପ୍ରଭୃତି ଗ୍ରନ୍ଥରେ ଉପଲଭ୍ୟ । ଏକଥାର ମୂଳ, ସୁତ୍ତନିପାତର

'ପଧାନ ସୁତ୍ତ'ରେ ଦେଖିବାକୁ ମିଳେ । ସେହି ସୁତ୍ତର ଅନୁବାଦ ଏଠାରେ ଦିଆଯାଉଛି ।

(୧) ନୈରଂଜନ ନଦୀ କୂଳରେ ତପସ୍ୟା ଆରମ୍ଭକରି ନିର୍ବାଣ ପ୍ରାପ୍ତିଲାଗି ବଡ଼ ଉତ୍ସାହରେ ଧ୍ୟାନକରି ରହୁଥିଲାବେଳେ—

(୨) କରୁଣ ବେଦନ କରି 'ମାର' ମୋନିକଟକୁ ଆସିଲା । (ସେ କହିଲା) "ତୁମେ କୃଶ ଏବଂ ଦୁର୍ବଳ; ମୃତ୍ୟୁ ତୁମ ନିକଟବର୍ତ୍ତୀ ।"

(୩) ହଜାରେ ଭାଗ ପୂରିଲେ ଯାଇ ତୁମେ ମରିବ; ତୁମ ଜୀବନର କେବଳ ଗୋଟିଏ ଭାଗ ବାକୀଅଛି । ହେ ସଜ୍ଜନ ! ତୁମେ ଜୀଅଁ, ଜୀଇଁବା ଭଲ, ତୁମେ ଜୀଇଁବ ତ ପୁଣ୍ୟ କର୍ମ କରିବ ।

(୪) ତୁମେ ଯଦି ବ୍ରହ୍ମଚର୍ଯ୍ୟରେ ରହିବ ଓ ଅଗ୍ନିହୋତ୍ର କରିବ, ତେବେ ବିପୁଳ ପୁଣ୍ୟ ଅର୍ଜନ କରିବ । ଏହି ନିର୍ବାଣର ଚେଷ୍ଟା କରୁଛ କାହିଁକି ।

(୫) "ନିର୍ବାଣର ମାର୍ଗ ଅତ୍ୟନ୍ତ କଠିନ ଏବଂ ଦୁର୍ଗମ ।"ଏକଥା-ଗୁଡ଼ିକ କହି ମାର ବୁଦ୍ଧଙ୍କ ପାଖରେ ଠିଆ ହୋଇଗଲା ।

(୬) ଏ ସବୁର ଉପଦେଷ୍ଟା ମାରକୁ ଭଗବାନ କହିଲେ— "ଅସାବଧାନ ମନୁଷ୍ୟର ମିତ୍ର, ରେ ପାପି ! ତୁ ଏଠାକୁ ଆସିଲୁ କାହିଁକି ( ତାହା ମୁଁ ଜାଣେ ) ।"

(୭) ସେପ୍ରକାର ପୁଣ୍ୟ ମୋର ଆଦୌ ଆବଶ୍ୟକ ନୁହେ । ଯାହାର ସେ ପୁଣ୍ୟର ଆବଶ୍ୟକତା ଅଛି, ରେ ମାର ! ତାଙ୍କୁ ଯାଇ ଏକଥା ଶୁଣାଅ ।

(୮) ମୋଠାରେ ଶ୍ରଦ୍ଧାଅଛି, ବୀର୍ଯ୍ୟ ଅଛି ଏବଂ ପ୍ରଜ୍ଞାମଧ ଅଛି । ଯେତେବେଳେ ଏଭଳି ଭାବରେ ମୁଁ ମୋର ଧ୍ୟେୟ ଉପରେ

ଚିତ୍ତ ରଖିଛୁ, ସେତେବେଳେ ମତେ ଜୀଇଁବାକୁ ଉପଦେଶ କାହିଁକି ଦେଉଛୁ ?

(୯) ଏହି ପବନ, ନଦୀର ସ୍ରୋତକୁ ମଧ୍ୟ ଶୁଖାଇ ଦେଇ-ପାରେ; କିନ୍ତୁ ଧ୍ୟେୟ ଉପରେ ଚିତ୍ତ ରଖିଥିବା ମୋପରି ଲୋକଙ୍କ ( ପ୍ରେଷିତାତ୍ମା ) ରକ୍ତ ଶୁଖାଇ ପାରିବ ନାହିଁ ।

(୧୦) [ କିନ୍ତୁ ଯଦି ମୋର ଚେଷ୍ଟାରୁ ] ରକ୍ତ ଶୋଷିତ ହୋଇଯାଏ, ତାହାହେଲେ ତାହା ସହିତ ମୋର ଚିତ୍ତ ଏବଂ ଶ୍ଳେଷ୍ମା ବିକାର ମଧ୍ୟ ଶୁଖି ଯିବ । ପୁଣି ମୋର ମାଂସ ମଧ୍ୟ ଯଦି କ୍ଷୀଣ ହୋଇଯିବ, ତେବେ ଚିତ୍ତ ଅଧିକତର ପ୍ରସନ୍ନ ହୋଇ ସ୍ମୃତି, ପ୍ରଜ୍ଞା ଏବଂ ସମାଧି ଉତ୍ତରୋତ୍ତର ବୃଦ୍ଧିଲାଭ କରିବ ।

(୧୧) ଏହି ପ୍ରକାରେ ରହିପାରିଲେ ଉତ୍ତମ ସୁଖ ଲାଭହୁଏ । କାମୋପଭୋଗ ଆଡ଼କୁ ମୋହର ଚିତ୍ତ ଯାଉନାହିଁ । ମୋର ଏହି ଆତ୍ମ ଶୁଦ୍ଧି ଦେଖ ।

(୧୨) [ ରେ ମାର ] କାମୋପଭୋଗ ହେଉଛି ତୋର ପ୍ରଧାନ ସୈନ୍ୟ । ଦ୍ୱିତୀୟ ହେଉଛି ଅରତି । କ୍ଷୁଧା ଏବଂ ତୃଷା ହେଉଛି ତୃତୀୟ, ଓ ଚତୁର୍ଥ ସୈନ୍ୟ ହେଉଛି ତୃଷ୍ଣା ।

(୧୩) ପଞ୍ଚମ ସୈନ୍ୟ ହେଉଛି ଆଳସ୍ୟ, ଷଷ୍ଠ ହେଉଛି ଭୀତି, ସପ୍ତମ ହେଉଛି କୁଶଙ୍କା, ଅଷ୍ଟମ ହେଉଛି ଅଭିମାନ (ଅଥବା ଗର୍ବ) ।

(୧୪) ଲାଭ, ସତ୍କାର, ପୂଜା ( ଏହି ନବମ ) ଓ ଅସତ୍-ମାର୍ଗରୁ ପ୍ରାପ୍ତ ଯଶ ( ଦଶମ ସୈନ୍ୟ ଅଟେ )—ଯେଉଁମାନଙ୍କ ହେତୁ ମନୁଷ୍ୟ ଆତ୍ମସ୍ତୁତି ଓ ପରନିନ୍ଦା କରେ ।

(୧୫) ରେ "କଳା 'ନମୁଚି' ! ( ଲୋକଙ୍କୁ ) ପ୍ରହାର କରୁଥିବା ଏଗୁଡ଼ିକ ହେଉଛନ୍ତି ତୋର ସେନା । ଭୀରୁଲୋକ ଏହା

ଜାଣି ପାରେନାହିଁ । ଯେ ଏମାନଙ୍କୁ ଜୟ କରିପାରେ, ତାକୁ କେବଳ ସୁଖମିଳେ ।”

(୧୬) ମୁଁ ନିଜ ମୁଣ୍ଡଉପରେ ମୁଞ୍ଜତୃଣ ଧାରଣ କରିଅଛି (୧) । ମୁଁ ଯଦି ହାରିଯାଏ, ତାହାହେଲେ ମୋର ଜୀଇଁବା ବୃଥା । ପରାସ୍ତ ହୋଇ ଜୀଇଁବା ଅପେକ୍ଷା ଯୁଦ୍ଧରେ ମରିବା ଶ୍ରେୟସ୍କର ।

(୧୭) କେତେକ ଶ୍ରମଣ-ବ୍ରାହ୍ମଣ ତୋ ସୈନ୍ୟରେ ମିଶି-ଗଲେଣି । ତେଣୁ ସେମାନେ ଉରୁ ନାହାନ୍ତି ଓ ଯେଉଁମାର୍ଗରେ ସାଧୁ ପୁରୁଷମାନେ ଯାଆନ୍ତି ସେମାର୍ଗ ସେମାନଙ୍କୁ ଜଣାନାହିଁ ।

(୧୮) ଚତୁର୍ଦ୍ଦିଗରେ ମାରର ସେନା ଦେଖାଯାଉଛନ୍ତି ଏବଂ ମାର ନିଜର ବାହନ ସହିତ ସୁସଜ୍ଜିତ ହୋଇଗଲାଣି । ତାହା ସଙ୍ଗେ ଯୁଦ୍ଧ କରିବା ପାଇଁ ମୁଁ ଅଗ୍ରସର ହେଉଛି । ଲକ୍ଷ୍ୟ ହେଉଛି, ସେ ମତେ ସ୍ଥାନ ଭ୍ରଷ୍ଟ ନକରୁ ।

(୧୯) ଦେବତା ଓ ମନୁଷ୍ୟ ତୋର ସୈନ୍ୟ ସମ୍ମୁଖରେ ଠିଆହୋଇ ପାରନ୍ତି ନାହିଁ । ପଥରରେ ଯେପରିକି ମାଟିର ପାତ୍ରକୁ ଭାଙ୍ଗି ଦେଇ ହୁଏ, ସେହିପରି ମୁଁ ନିଜର ପ୍ରଜ୍ଞାବଳରେ ତୋର ସେହି ସୈନ୍ୟଙ୍କୁ ପରାସ୍ତ କରିଦେବି ।

(୨୦) ସଂକଳ୍ପକୁ ସ୍ୱାଧୀନ ରଖି ଏବଂ ସ୍ମୃତିକୁ ଜାଗ୍ରତ କରି ଅନେକ ଶ୍ରାବକଙ୍କୁ ଉପଦେଶ ଦେଇ ମୁଁ ଦେଶ ବିଦେଶରେ ଭ୍ରମଣ କରିବି ।

(୨୧) ସେହି (ଶ୍ରାବକ )ମାନେ ମୋ ଉପଦେଶ ଅନୁସାରେ ସାବଧାନ ଭାବରେ ଗତିକରି ଏବଂ ନିଜ ନିଜର ଧ୍ୟେୟ ଉପରେ ଚାଲିରହି ତୋର ଇଚ୍ଛା ବିରୁଦ୍ଧରେ ଏହିପରି ଏକସ୍ଥାନରେ ପହଞ୍ଚିବେ ଯେଉଁଠାରେ ଶୋକ କରିବାକୁ ପଡ଼ିବ ନାହିଁ ।

(୧) ଯୁଦ୍ଧରେ ପଛଘୁଞ୍ଚା ନଦେବାର ସଂକଳ୍ପ ସୂଚକ ।

(୨୨) ( ମାର କହିଲା ······ ) ସାତ ବର୍ଷ ଯାଏଁ ମୁଁ ଭଗବାନଙ୍କ ପଛେ ପଛେ ବୁଲିଲି ; କିନ୍ତୁ ସ୍ମୃତିବାନ୍ ବୁଦ୍ଧଙ୍କର କୌଣସି ବର୍ମ ମୁଁ ପାଇଲି ନାହିଁ ।

(୨୩) 'ଏଠାରେ କିଛି ନରମ ପଦାର୍ଥ ମିଳିବ, କିଛି ମିଠା ପଦାର୍ଥ ମିଳିବ'—ଏହି ଆଶାରେ କୁଆ କଳା ପଥର ପାଖେ ଯାଇ ପହଞ୍ଚିଲା ।

(୨୪) ଏହିପରି ଦୁଃଖ କରୁଥିବା ବେଳେ ମାରର କାଖରୁ ବୀଣା ଖସି ପଡ଼ିଲା ଓ ଦୁଃଖିତ ହୋଇ ସେ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲା ।

ଏହିସୂତ୍ରର ସମସ୍ତବିଷୟ ଲଳିତବିସ୍ତରର ଅଷ୍ଟାଦଶ ଅଧ୍ୟାୟରେ ପୂରାପୂରି ଅଛି । ତହିଁରୁ ଏହାର ପ୍ରାଚୀନତା ପ୍ରମାଣିତ ହେଉଛି । ଉପରେ କୁହାଯାଇଥିବା ଭୟ-ଭୈରବସୂତ୍ରର ଅଂଶମାନ ପଢ଼ିଲେ ଏହି ସରଳ ରୂପକର ଅର୍ଥ ସ୍ପଷ୍ଟ ଭାବରେ ବୁଝିହୁଏ । ମାନବଜାତିର କଲ୍ୟାଣ ଉଦ୍ଦେଶରେ ଯେବେ କେହି ଆଗୁଆ ହୁଏ, ତେବେ ତାକୁ ମାରର ସୈନ୍ୟମାନେ ଆକ୍ରମଣ କରନ୍ତି । ସେହି ମାରର ସେନା ହେଉଛି କାମୋପଭୋଗ ବାସନା । ତାକୁ ଦମନ କରି ଆଗକୁ ପାଦ ପକାଇଲେ ତହିଁରୁ ଅସନ୍ତୋଷ (ଅରତି) ଜାତ ହୁଏ । ତାହାପରେ ଭୋକ ଶୋଷ ପ୍ରଭୃତି ଗୋଟିକ ପରେ ଗୋଟିଏ ସୈନ୍ୟ ଉପସ୍ଥିତ ହୋଇଯାଆନ୍ତି । ସେହି ସବୁ ବାସନା ତଥା ବିକାରମାନଙ୍କୁ ଜୟ ନକଲେ, କଲ୍ୟାଣପ୍ରଦ ତତ୍ତ୍ୱର ସାକ୍ଷାତ୍କାର କଦାପି ହୋଇପାରିବ ନାହିଁ । ତେଣୁ ବୁଦ୍ଧଦେବ ମାରକୁ ପରାସ୍ତ କରିଥିଲେ । ଏଥିରୁ ଏହି ଅର୍ଥ ବୁଝିବା ଆବଶ୍ୟକ ଯେ ସେ ମନୋବିକାର-ମାନଙ୍କୁ ଜୟ କରିଥିଲେ ।

## ସୁଜାତାର ଭିକ୍ଷାଦାନ

ବୋଧିସତ୍ତ୍ୱ ବୈଶାଖ ପୂର୍ଣ୍ଣିମା ରାତ୍ରିରେ ସମ୍ବୋଧି ଜ୍ଞାନ ଲାଭ କରିଥିଲେ । ସେଦିନ ଦ୍ୱିପ୍ରହର ସମୟରେ ସୁଜାତାନାମକ ଜଣେ ଉଚ୍ଚ କୁଳ ସମ୍ଭୂତା ଯୁବତୀ ବୋଧିସତ୍ତ୍ୱଙ୍କୁ ଉତ୍ତମଅନ୍ନ ଭିକ୍ଷା ଦେଇଥିଲା । ସୁତ୍ତପିଟକର କୌଣସି କୌଣସି ସ୍ଥଳରେ ଏକଥାର ଉଲ୍ଲେଖ ଅଛି (୧) ଏ ପ୍ରସଙ୍ଗ ବ୍ୟତୀତ ଅନ୍ୟ କେଉଁଠାରେ ସୁଜାତାର ନାମ ଦେଖିବାକୁ ମିଳେ ନାହିଁ । ତଥାପି ବୌଦ୍ଧ ଚିତ୍ରକଳାରେ ସୁଜାତା ବିଶିଷ୍ଟ ସ୍ଥାନ ଲାଭକରିଅଛି ଓ ବୁଦ୍ଧଙ୍କ ଦୃଷ୍ଟିରେ ମଧ୍ୟ ଏହି ପ୍ରସଙ୍ଗ ଚିରସ୍ମରଣୀୟ ହୋଇରହିଛି । ଚୁନ୍ଦ କମାରଠାରୁ ଭିକ୍ଷା ଗ୍ରହଣ କରି ବୁଦ୍ଧଦେବ ଅସୁସ୍ଥ ହୋଇ ପଡ଼ିଥିଲେ । ସେ ଜାଣିପାରିଲେ ଯେ ସେହି ଅସୁସ୍ଥତାରେ ତାଙ୍କର ପରିନିର୍ବାଣ ହୋଇଯିବ । ଆହୁରି ମଧ୍ୟ ନିଜର ମୃତ୍ୟୁପରେ ଲୋକେ ଚୁନ୍ଦ ଉପରେ ଦୋଷାରୋପ ନକରନ୍ତୁ, ସେଥିପାଇଁ ଭଗବାନ ଆନନ୍ଦଙ୍କୁ କହିଥିଲେ—'ଯେଉଁଦିନୁ ମୁଁ ସମ୍ବୋଧି ଜ୍ଞାନ ପାଇଥିଲି ସେଦିନ ମିଳିଥିବା ଭିକ୍ଷା ଏବଂ ଆଜି ମିଳିଥିବା ଭିକ୍ଷା ସମାନ ଅଟେ, ତୁମେ ଚୁନ୍ଦକୁ ଏପରି ବୁଝାଇ ସାନ୍ତ୍ୱନା ଦିଅ ।'

## ବୋଧି ବୃକ୍ଷ ତଳେ ଆସନ

ସୁଜାତା ଦେଇଥିବା ଭିକ୍ଷା ଗ୍ରହଣକରି ବୋଧିସତ୍ତ୍ୱ ନୈରଞ୍ଜନ ନଦୀ କୂଳରେ ତାହା ଭୋଜନ କଲେ । ସେହି ରାତ୍ରିରେ ସେ ଯାଇ ଗୋଟିଏ ଅଶ୍ୱତ୍ଥ ବୃକ୍ଷତଳେ ବସିଲେ । ସେହି ବୃକ୍ଷଟି ଆଜିକାଲି

---

(୧) ଅଙ୍ଗୁତ୍ତରନିକାୟ, ଏକକ ନିପାତ, ବୌଦ୍ଧ ସଙ୍ଘାରୁ ପରିଚୟ ପୃ ୨୨୭ ଦ୍ରଷ୍ଟବ୍ୟ ।

ଆଉନାହିଁ । ରାଜା ଶଶାଙ୍କ ତାହା ନଷ୍ଟକରି ଦେଇଥିଲେ ବୋଲି କୁହାଯାଇଥାଏ । ଆଜିକାଲି ସେହି ସ୍ଥାନରେ ରୋପିତ ହୋଇଥିବା ଅଶ୍ୱତ୍ଥ ବୃକ୍ଷ ଓ ତାକୁ ଲାଗିକରି ବୁଦ୍ଧଗୟାର ପ୍ରସିଦ୍ଧ ମନ୍ଦିର ଅଛି । ସେହି ବୃକ୍ଷ ତଳେ ବୋଧିସତ୍ତ୍ୱ ବସିଥିବାବେଳେ ମାରଯୁଦ୍ଧ ହୋଇଥିବାର ବିଷୟ ଲଳିତ ବିସ୍ତରରେ ବର୍ଣ୍ଣିତ ହୋଇଛି । 'ସଂଯୁତ୍ତ ନିକାୟ'ର ସଗାଥାବଗ୍‌ଗରେ ବର୍ଣ୍ଣିତ ହୋଇଛି ଯେ, ବୁଦ୍ଧଙ୍କୁ ବଶକରିବା ପାଇଁ ମାର ବୋଧିବୃକ୍ଷ ତଳକୁ ନିଜର ତିନି କନ୍ୟାଙ୍କୁ ( ତୃଷ୍ଣା, ଅରତି, ଅନୁରକ୍ତି ) ପଠାଇଥିଲି । ଜାତକର ନିଦାନ କଥାରେ ଏଥିର ବିସ୍ତୃତ ବର୍ଣ୍ଣନା ଅଛି । ସେତେବେଳେ ମାରର ସୈନ୍ୟମାନେ, ବୁଦ୍ଧଦେବଙ୍କୁ ଚାରିଆଡ଼ୁ ଆକ୍ରମଣ କରିଥିଲେ ; ସେହି ସୈନ୍ୟମାନଙ୍କୁ ଦେଖି ବ୍ରହ୍ମା ପ୍ରଭୃତି ଦେବତାମାନେ ଛାଡ଼ି ପଳାଇଥିଲେ; କେବଳ ବୋଧିସତ୍ତ୍ୱ ରହି ଯାଇଥିଲେ—ଇତ୍ୟାଦି ବର୍ଣ୍ଣିତ ହୋଇଛି । ପୁଣି ମାର ବୁଦ୍ଧଙ୍କୁ କହୁଛି—"ଏହି ସ୍ଥାନ ମୋର ; ତୁମେ ଏଠାରୁ ଚାଲିଯାଅ ।" ସେହି ସ୍ଥାନ ଉପରେ ନିଜର ଅଧିକାର ପ୍ରମାଣ କରିବାଲାଗି, ମାର ନିଜ ସୈନ୍ୟମାନଙ୍କୁ ସାକ୍ଷୀ କରୁଛି । ସମସ୍ତ ଦେବତା ତ ଛାଡ଼ି ପଳାଇଥିଲେ । ଏଣୁ ସେହି ସମୟରେ ଭଗବାନଙ୍କ ପକ୍ଷରୁ ସାକ୍ଷ୍ୟଦେବାକୁ କେହି ହେଲେ ନ ଥିଲେ । ସେତେବେଳେ ବୁଦ୍ଧ ନିଜର ଡାହାଣ ହାତ ତଳକୁ କରି କହୁଛନ୍ତି—'ଏହି ସର୍ବଂସହା ବସୁନ୍ଧରା ମୋର ସାକ୍ଷୀ' । ପୁଣି ପୃଥିବୀ ଦେବୀ ବିରାଟ ଆକାର ଧାରଣ କରି ମାରର ସୈନ୍ୟମାନଙ୍କୁ ପରାସ୍ତ କରିଦେବା ପ୍ରଭୃତିର ପୁରାଣସୁଲଭ ବର୍ଣ୍ଣନା ଜାତକ ଅଟ୍‌ଠକଥାକାର କରିଅଛନ୍ତି ।

ଚିତ୍ରକରମାନେ ବୌଦ୍ଧ ଚିତ୍ରକଳାରେ ଏହି ପ୍ରସଙ୍ଗକୁ ବଡ଼ ସୁନ୍ଦର ଭାବରେ ଚିତ୍ରଣ କରି ଅଛନ୍ତି । ଲୋଭ, ଦ୍ୱେଷ, ମୋହ, ମଦ,

ମାତ୍ସର୍ଯ୍ୟ ପ୍ରଭୃତି ଦୁଷ୍ଟ ପ୍ରବୃତ୍ତି ଗୁଡ଼ିକୁ ମୂର୍ତ୍ତିମନ୍ତ ରୂପ ଦେବାରେ ସେମାନଙ୍କ ପ୍ରଚେଷ୍ଟା ପ୍ରଶଂସନୀୟ । ତେବେ ପ୍ରଥମେ କବିମାନେ ଏହି ପ୍ରସଙ୍ଗକୁ ବର୍ଣ୍ଣନା କଲେ ଓ ପରେ ତଦନୁସାରେ ଶିଳ୍ପକରମାନେ ତାହାକୁ ରୂପ ଦେବାକୁ ଚେଷ୍ଟା କଲେ ନା ଶିଳ୍ପକରମାନେ ସେଗୁଡ଼ିକୁ ରୂପଦେଲାପରେ କବିମାନେ ସେମାନଙ୍କର ଅନୁସରଣ କରି ବର୍ଣ୍ଣନା କଲେ—କହିବା କଷ୍ଟକର । ସେ ଯାହାହେଉ ଏତିକମାତ୍ର ପ୍ରକୃତକଥା ଯେ ଉପରେ କୁହାଯାଇଥିବା ସୈନ୍ୟମାନଙ୍କୁ ମୂର୍ତ୍ତିମନ୍ତ କରିବାର ଏ ଗୋଟାଏ ଚେଷ୍ଟାମାତ୍ର ।

## ତତ୍ତ୍ୱ ବୋଧ

ସେହି ବୈଶାଖ ପୂର୍ଣ୍ଣିମା ରାତ୍ରିରେ ବୋଧିସତ୍ତ୍ୱ ତତ୍ତ୍ୱବୋଧ ଲାଭକଲେ । ସେହି ଦିନଠାରୁ ତାଙ୍କୁ 'ବୁଦ୍ଧ' କୁହାଗଲା ଅର୍ଥାତ୍ ସେ-ପର୍ଯ୍ୟନ୍ତ ସେ ଥିଲେ ଗୌତମ ବୋଧିସତ୍ତ୍ୱ ଏବଂ ସେହିଦିନଠାରୁ ସେ ହେଲେ ଗୌତମ ବୁଦ୍ଧ । ବୁଦ୍ଧ ଯେଉଁ ତତ୍ତ୍ୱବୋଧ ଲାଭକଲେ, ତାହା ହେଉଛି ଚାରୋଟି ଆର୍ଯ୍ୟସତ୍ୟ ଓ ତଦନ୍ତର୍ଗତ ଅଷ୍ଟାଙ୍ଗିକ ମାର୍ଗ । ତାହାଁର ଉପଦେଶ ସେ ସର୍ବପ୍ରଥମେ ନିଜର ପାଞ୍ଚ ଜଣ ସଙ୍ଗୀଙ୍କୁ ଦେଇଥିଲେ । (୧)

## ବିମୁକ୍ତି ସୁଖ'ର ଆସ୍ୱାଦ

ତତ୍ତ୍ୱବୋଧ ପରେ ଭଗବାନ୍ ବୁଦ୍ଧ ସେହି ବୋଧି ବୃକ୍ଷ ତଳେ ସାତଦିନ କାଳ ବସିରହି ବିମୁକ୍ତିସୁଖ ଆସ୍ୱାଦନକଲେ । ସେ ସମୟରେ ରାତିର, ତିନି ପ୍ରହରରେ, ଏହାପରେ କୁହାଯାଉ ଥିବା ପ୍ରତୀତ୍ୟ ସମୁତ୍ପାଦକୁ ସେ ଏପଟ ସେପଟ କରି ମନରେ ଚିନ୍ତାକଲେ ବୋଲି

୧ । ପରେ କୁହାଯିବ, ଏଠାରେ ପୂର୍ଣ୍ଣଭାବରେ କହିବା ଅନାବଶ୍ୟକ ।

ମହାବଗ୍‌ଗରେ କୁହା ଯାଇଛି । କିନ୍ତୁ ବୁଦ୍ଧ ବୋଧିସତ୍ତ୍ୱ ଅବସ୍ଥାରେହିଁ ଏହି ପ୍ରତୀତ୍ୟ ସମୁତ୍ପାଦ ବୁଝିଥିବା କଥା ସଯୁତ୍ତନିକାୟର ଦୁଇଟି ସୁତ୍ତରେ କଥିତ ହୋଇଅଛି (୧) ସେହି ସୁତ୍ତ ଦୟ ସହିତ ମହାବଗ୍‌ଗର ବିବରଣୀ ଖାପଖାଉନାହିଁ । ମନେହେଉଛି, ଯେତେବେଳେ ମହାବଗ୍‌ଗ ଲେଖାଗଲା ସେତେବେଳକୁ ଏହି ପ୍ରତୀତ୍ୟ ସମୁତ୍ପାଦ ବଡ଼ ମହତ୍ତ୍ୱପୂର୍ଣ୍ଣ ବିବେଚିତ ହେଉଥିଲା । ନାଗାର୍ଜୁନଙ୍କ ପରି ମହାଯାନ ମାର୍ଗର ଆଚାର୍ଯ୍ୟ ମଧ୍ୟ ଏହି ପ୍ରତୀତ୍ୟ ସମୁତ୍ପାଦକୁ ନିଜ ଦର୍ଶନତତ୍ତ୍ୱର ଆଧାର ରୂପେ ଗ୍ରହଣ କରିଅଛନ୍ତି । (୨)

## ପ୍ରତୀତ୍ୟ ସମୁତ୍ପାଦ

ସଂକ୍ଷେପରେ ସେହି ପ୍ରତୀତ୍ୟ ସମୁତ୍ପାଦ ହେଉଛି ଏହିପରି :—

ଅବିଦ୍ୟାରୁ ସଂସ୍କାର, ସଂସ୍କାରରୁ ବିଜ୍ଞାନ, ବିଜ୍ଞାନରୁ ନାମରୂପ, ନାମରୂପରୁ ଷଡ଼ାୟତନ, ଷଡ଼ାୟତନରୁ ସ୍ପର୍ଶ, ସ୍ପର୍ଶରୁ ବେଦନା, ବେଦନାରୁ ତୃଷ୍ଣା, ତୃଷ୍ଣାରୁ ଉପାଦାନ, ଉପାଦାନରୁ ଭବ, ଭବରୁ ଜାତି ( ଜନ୍ମ ), ଜାତିରୁ ଜରା, ମରଣ, ଶୋକ, ପରିବେଦନ, ଦୁଃଖ, ଦୌର୍ମନସ୍ୟ ଓ ଉପାୟାସ ଜାତ ହୁଏ ।

ପୂର୍ଣ୍ଣ ବୈରାଗ୍ୟ ଦ୍ୱାରା ଅବିଦ୍ୟାର ନିରୋଧ କରାଯିବା ଫଳରେ ସଂସ୍କାରର ନିରୋଧ ହୁଏ । ସଂସ୍କାରର ନିରୋଧ ଦ୍ୱାରା ବିଜ୍ଞାନର ନିରୋଧ ହୁଏ । ବିଜ୍ଞାନର ନିରୋଧରୁ ନାମରୂପର ନିରୋଧ ହୁଏ । ନାମରୂପର ନିରୋଧରୁ ଷଡ଼ାୟତନର ନିରୋଧ, ଷଡ଼ାୟତନର ନିରୋଧରୁ ସ୍ପର୍ଶର ନିରୋଧ, ସ୍ପର୍ଶର ନିରୋଧରୁ ବେଦନାର ନିରୋଧ, ବେଦନାର ନିରୋଧରୁ ତୃଷ୍ଣାର ନିରୋଧ, ତୃଷ୍ଣାର ନିରୋଧରୁ

---

୧ । ନିଦାନବଗ୍‌ଗ ସଯୁତ୍ତ, ସୁତ୍ତ ୧୦ ଓ ୬୫ ଦେଖ ।

୨ । ମାଧ୍ୟମିକ କାରିକା ମୂଳ ଦେଖ ।

ଉପାଦାନର ନିରୋଧ, ଉପାଦାନର ନିରୋଧରୁ ଭବର ନିରୋଧ, ଭବର ନିରୋଧରୁ ଜନ୍ମର ନିରୋଧ, ଜନ୍ମର ନିରୋଧରୁ ଜରା, ମରଣ, ଶୋକ, ପରିବେଦନ ଦୁଃଖ, ଦୌର୍ମନସ୍ୟ ଓ ଉପାୟାସର ନିରୋଧ ହୁଏ ।

ଦୁଃଖ ପଛରେ ଏତେ ବିସ୍ତୃତ କାରଣ—ପରଂପରାକୁ ଯୋଡ଼ି ଦିଆଯିବାରୁ ସାଧାରଣ ଲୋକ ପକ୍ଷରେ ଏହାର ଅର୍ଥବୋଧ ବଡ଼ କଷ୍ଟକର ହୋଇ ପଡ଼ିଲା । ଏହି ପ୍ରତୀତ୍ୟ ସମୁତ୍ପାଦ ଧୀରେ ଧୀରେ ଗହନ ଦର୍ଶନରେ ପରିଣତ ହେଲା ଏବଂ ତାହାର ଉପରେ ବାଦ ବିବାଦ ଚାଲିଲା । ଏହି ପ୍ରତୀତ୍ୟ ସମୁତ୍ପାଦର ଭିତ୍ତି ଉପରେ ଆଚାର୍ଯ୍ୟ ନାଗାର୍ଜୁନ ସ୍ୱୀୟ 'ମାଧ୍ୟମିକକାରିକା' ପ୍ରଣୟନ କରିଅଛନ୍ତି । ପୁଣି ବୁଦ୍ଧଘୋଷାଚାର୍ଯ୍ୟ 'ବିଶୁଦ୍ଧି ମାର୍ଗ'ର ଷଷ୍ଠ ଭାଗରେ ( ପ୍ରାୟ ଶହେ ଦେଢ଼ଶ ପୃଷ୍ଠା ), କେବଳ ଏହାର ଆଲୋଚନା କରିଛନ୍ତି । ସେହି ସମସ୍ତ ଆଲୋଚନା ପଢିବା ପରେ ପଣ୍ଡିତ ଲୋକମଧ୍ୟ ବଡ଼ ଅଡୁଆରେ ପଡ଼େ । ଏପରି ସ୍ଥଳେ, ସାଧାରଣ ଲୋକେ ଏହି ଦର୍ଶନକୁ ବୁଝିପାରିବେ କପରି ? ଭଗବାନ୍ ବୁଦ୍ଧଙ୍କ ଧର୍ମ, ବ୍ରାହ୍ମଣ କ୍ଷତ୍ରିୟ ପ୍ରଭୃତି ଉଚ୍ଚ ବର୍ଣ୍ଣର ଲୋକଙ୍କ ମଧ୍ୟରେ ଅଧିକ ପରିମାଣରେ ପ୍ରସାରଲାଭ କରିବାର କାରଣ ଏହା ନୁହେଁଯେ, ଏହି ଦର୍ଶନ ହେଉଛି ଅତ୍ୟନ୍ତ ନିଗୂଢ଼ । ଚାରୋଟି ଆର୍ଯ୍ୟ ସତ୍ୟ ମୂଳକ ଦର୍ଶନ, ଏକାନ୍ତ ସରଳ । ତାହା ସକଳ ଶ୍ରେଣୀର ଲୋକେ ଯେ କଣ୍ଠସ୍ଥ କରିପାରିଲେ, ତହିଁରେ ଆଶ୍ଚର୍ଯ୍ୟ ହେବାର କାରଣ ନାହିଁ । ଅନ୍ୟତ୍ର ଏହାର ବିଚାର କରାଯାଇଛି ।

## ବ୍ରହ୍ମଦେବଙ୍କ ପ୍ରାର୍ଥନା

ତତ୍ତ୍ୱବୋଧ ଲାଭହେବା ପରେ ଭଗବାନ୍ ବୁଦ୍ଧ, ଏକ ସପ୍ତାହ ପର୍ଯ୍ୟନ୍ତ ବୋଧିବୃକ୍ଷତଳେ ( ଅର୍ଥାତ୍ ସେହି ଅଶ୍ୱତ୍ଥ ବୃକ୍ଷତଳେ )

ଅତିବାହିତ କରିଥିଲେ । ତାହାପରେ, ଦ୍ୱିତୀୟ ସପ୍ତାହଟି ଅଜପାଳ ନ୍ୟଗ୍ରୋଧ ବୃକ୍ଷ ତଳେ, ତୃତୀୟ ସପ୍ତାହ ମୁଚଲିନ୍ଦ ବୃକ୍ଷ ତଳେ ଓ ଚତୁର୍ଥ ସପ୍ତାହ ରାଜାୟତନ ବୃକ୍ଷତଳେ ଯାପନ କରିବା ପରେ ପୁଣି ଅଜପାଳ ମୂଳକୁ ଫେରିଆସିଲେ । ସେଠାରେ ତାଙ୍କ ମନରେ ଏହି ଭାବନା ଜାତ ହେଲା—"ବହୁ କଷ୍ଟ ସହି ମୁଁ ଏହି ଧର୍ମତତ୍ତ୍ୱ ଜାଣିଲି । ତେଣୁ ଲୋକଙ୍କୁ ତାହାର ଉପଦେଶ ଦେଇ ଆଉ ଅଧିକ କଷ୍ଟ ସହିବା ଭଲ ନୁହେ ।" ବ୍ରହ୍ମଦେବ ଏହାଜାଣି ପାରିଲେ ଏବଂ ଧର୍ମୋପଦେଶ ଦେବାପାଇଁ ଭଗବାନ୍ ବୁଦ୍ଧଙ୍କୁ ପ୍ରାର୍ଥନା କଲେ । ଏହି ଚରିତ ମହାବଗ୍‌ଗରେ ଓ ମଜ୍‌ଝିମ ନିକାୟର ଅରିୟ ପରିୟେସନ ସୁତ୍ତରେ ବିସ୍ତୃତ ଭାବେ ବର୍ଣ୍ଣିତ ହୋଇଛି । କିନ୍ତୁ ତାହା ଗୌତମ ବୁଦ୍ଧଙ୍କ ସମ୍ପର୍କରେ ହୋଇନପାରେ । କୌଣସି ପୁରାଣକାର ବିପସ୍‌ସୀ ବୁଦ୍ଧଙ୍କ ସମ୍ବନ୍ଧରେ ଏହା ଲେଖି ଅଛନ୍ତି ଓ ପରେ ସେହିପରି ଭାବରେ ତାହା ଗୌତମ ବୁଦ୍ଧଙ୍କ ଜୀବନୀରେ ଭର୍ତ୍ତି କରିଦିଆ ଯାଇଛି । ଏହି ରୂପକର ଅର୍ଥ ମୁଁ ମୋର "ବୁଦ୍ଧଧର୍ମ ଆଣି ସଙ୍ଘ" ( ପୃ ୧୬-୧୯ ) ନାମକ ଗ୍ରନ୍ଥରେ ବୁଝାଇବାକୁ ଚେଷ୍ଟା କରିଛି । ଏତଏବ ଏହାର ଆଲୋଚନା ଏଠାରେ ଆଉ କରୁନାହିଁ ।

## ପଞ୍ଚବର୍ଗୀୟ ଭିକ୍ଷୁଙ୍କ ଉପଦେଶ ଦେବାବିଚାର

ଭଗବାନ୍ ବୁଦ୍ଧ, (ପାଇଥିବା) ଚାରୋଟି ଆର୍ଯ୍ୟସତ୍ୟର ଉପଦେଶ ସର୍ବପ୍ରଥମେ କାହାକୁ ପ୍ରଦାନ କରିବେ, ସେ ବିଷୟରେ ଚିନ୍ତାମଗ୍ନ ହେଲେ । ବୋଧିସତ୍ତ୍ୱଙ୍କ ଗୁରୁଦ୍ୱୟ ଆଲାର୍‌କାଲାମ ଓ ଉଦ୍ଦକ ରାମପୁତ୍ର ଯଦି ଜୀବିତ ଥାଆନ୍ତେ, ତାହାହେଲେ ତାଙ୍କୁହିଁ ଏହି ନୂତନ ଧର୍ମମାର୍ଗ ଶିକ୍ଷା ଦିଆଯାଇଥାନ୍ତା । କିନ୍ତୁ ସେମାନେ ଜୀବିତ ନଥିଲେ । ତେଣୁ ନିଜର ୫ଜଣ ସଙ୍ଗୀଙ୍କୁ (ପଞ୍ଚବର୍ଗୀୟ ଭିକ୍ଷୁ)

ତତ୍ତ୍ୱ ଉପଦେଶ ଦେବାକୁ ଭଗବାନ ସ୍ଥିର କଲେ । ସେହି ଭିକ୍ଷୁମାନେ ସେ ସମୟରେ ବାରାଣସୀ ନିକଟବର୍ତ୍ତୀ ଋଷିପତ୍ତନରେ ରହୁଥିଲେ । ସେଠାକୁ ଯିବାକୁ ବୁଦ୍ଧଦେବ ବାହାରି ପଡ଼ିଲେ । ମାର୍ଗରେ ଉପକ ନାମକ ଜଣେ ଆଜୀବକ ଶ୍ରମଣଙ୍କୁ ସେ ଭେଟିଲେ ଏବଂ ତାଙ୍କୁ କହିଲେ—"ମୁଁ ତତ୍ତ୍ୱବୋଧ ଲାଭ କରିଛି ।" କିନ୍ତୁ ତହିଁରେ ଉପକଙ୍କର ବିଶ୍ୱାସ ଜନ୍ମିଲା ନାହିଁ । "ହୋଇପାରେ", କହି ସେ ନିଜ ମାର୍ଗରେ ଚାଲିଗଲେ । ଅନ୍ୟପନ୍ଥାର ଶ୍ରମଣମାନଙ୍କୁ ଉପଦେଶ ଦେବାର ନିରର୍ଥକତା, ଏହି ଗୋଟିକ ଘଟଣାରୁ ଭଗବାନ୍ ବୁଦ୍ଧ ବୁଝିଯାଇଥିବେ ।

## ପଞ୍ଚବର୍ଗୀୟଙ୍କ ସମାଧାନ

ଆଷାଢ଼ ପୂର୍ଣ୍ଣିମା ପୂର୍ବରୁ ଭଗବାନ୍ ବାରାଣସୀରେ ପହଞ୍ଚିଗଲେ । ଋଷିପତ୍ତନରେ ସେ ଉପସ୍ଥିତ ହେବାର ଦୂରରୁ ଦେଖି ପଞ୍ଚବର୍ଗୀୟ-ମାନେ ତାଙ୍କୁ ଆଦର-ସତ୍କାର କରିବେ ନାହିଁ ବୋଲି ସ୍ଥିର କଲେ । କିନ୍ତୁ ବୁଦ୍ଧ ଯେତିକି ସେମାନଙ୍କର ନିକଟବର୍ତ୍ତୀ ହେଲେ, ସେମାନଙ୍କର ସେହି ସ୍ଥିର ସେତିକି ସେତିକି ଶିଥିଳ ହୋଇ ପଡ଼ିଲା । ଶେଷରେ ସେମାନେ ବୁଦ୍ଧଦେବଙ୍କର ଯଥୋଚିତ ସତ୍କାର କଲେ । କିନ୍ତୁ ତାଙ୍କର ନୂତନ ଧର୍ମତତ୍ତ୍ୱ ଶୁଣିବାକୁ ସେମାନେ ପ୍ରସ୍ତୁତ ନଥିଲେ । ବୁଦ୍ଧଦେବ କହିଲେ—"ମୁଁ ଏକ ନୂତନ ଧର୍ମତତ୍ତ୍ୱ ପାଇଛି" ସେମାନେ କହିଲେ, "ଆୟୁଷ୍ମନ୍ ଗୌତମ ! ତୁମର ସେଭଳି ତପସ୍ୟାରେ ସୁଦ୍ଧା ତୁମକୁ ସଦ୍ଧର୍ମ ମାର୍ଗ ବୋଧ ହେଲାନାହିଁ । ବର୍ତ୍ତମାନ ତୁମେ ତପୋଭ୍ରଷ୍ଟ ହୋଇ ଖାଦ୍ୟ ପେୟ ଆରମ୍ଭ କରି ଦେଲଣି । ଏପରି ଅବସ୍ଥାରେ ତୁମର ସଦ୍ଧର୍ମ ବୋଧ କିପରି ଅବା ହୋଇପାରିବ ?"

ଭଗବାନ୍ କହିଲେ, "ହେ ଭିକ୍ଷୁଗଣ ! ଏହା ପୂର୍ବରୁ ମୁଁ କେବେହେଲେ ମିଥ୍ୟା ଆସ୍ଫାଳନ କରିଛି କି ? ତାହା ଯଦି ନୁହେଁ, ତେବେ ଆପଣମାନେ ମୋର କଥାରେ ଧ୍ୟାନ ଦିଅନ୍ତୁ । ଅମୃତମାର୍ଗ ମତେ ମିଳିଯାଇଛି । ଏହି ମାର୍ଗକୁ ଆଶ୍ରୟ କରିବା ଫଳରେ ଆପଣମାନଙ୍କୁ ଶୀଘ୍ର ବିମୁକ୍ତି ମିଳିଯିବ ।"

ଏହି ପ୍ରକାରେ ପଞ୍ଚବର୍ଗୀୟ ଭିକ୍ଷୁମାନଙ୍କୁ ବୁଝାଇ ଶୁଝାଇ, ଅଳ୍ପସମୟ ପରେ ଭଗବାନ୍ ବୁଦ୍ଧ ସେମାନଙ୍କୁ ନିଜର ନୂତନମାର୍ଗ ଶୁଣିବାକୁ ପ୍ରବୃତ୍ତ କରାଇଲେ । ସେହି ଅବସରରେ ସେମାନଙ୍କୁ ଦେଇଥିବା ଉପଦେଶ, 'ଧର୍ମଚକ୍ର ପ୍ରବର୍ତ୍ତନ' ନାମରେ ପରିଚିତ । ଏହି ସୂତ୍ର ସଂଯୁକ୍ତନିକାୟର ଦ୍ୱିତୀୟ ବର୍ଗରେ ଓ ବିନୟଗ୍ରନ୍ଥର ମହାବର୍ଗରେ ଅଛି । ଏହାର ସଂସ୍କୃତ ଅନୁବାଦ ଲଳିତବିସ୍ତରର ୨୬ଶ ଅଧ୍ୟାୟରେ ଦିଆଯାଇଛି । ମୂଳପାଳି ସୂତ୍ରର ଭାଷାନ୍ତର ଏଠାରେ ଦିଆଯାଉଛି ।

## ଧର୍ମଚକ୍ର ପ୍ରବର୍ତ୍ତନ

ମୁଁ ଏପରି ଶୁଣିଛି । ଥରେ ବାରାଣସୀର ଋଷିପତ୍ତନରେ, ମୃଗବନରେ ଭଗବାନ୍ ରହିଥିଲେ । ସେଠାରେ ଭଗବାନ୍ ପଞ୍ଚବର୍ଗୀୟ ଭିକ୍ଷୁଙ୍କୁ କହିଲେ—"ଭିକ୍ଷୁଗଣ ! ଧାର୍ମିକ ମନୁଷ୍ୟ (ପବ୍ବଜିତେନ) ଏହି ଦୁଇଟିର ଅନ୍ତ (ସୀମା) ଯାଏ ଯିବା ଉଚିତ ନୁହେଁ । ଏ ଦୁଇଟି ଅନ୍ତ କଣ ? ପ୍ରଥମ ହେଉଛି, କାମୋପଭୋଗରେ ସୁଖ ଲାଭର ଧାରଣା—ଏହା ହେଉଛି ଅନ୍ତହୀନ, ଗ୍ରାମ୍ୟ, ସାମାନ୍ୟ ଜନସେବିତ, ଅନାର୍ଯ୍ୟ ଏବଂ ଅନର୍ଥାବହ । ଦ୍ୱିତୀୟଟି ହେଉଛି, ଦେହ ଦଣ୍ଡନ କରିବା । ଏହା ଦୁଃଖ କାରକ, ଅନାର୍ଯ୍ୟ ଏବଂ ଅନର୍ଥାବହ; ଏହି ଦୁଇ ଅନ୍ତ ପର୍ଯ୍ୟନ୍ତ ନଯାଇ ବୁଦ୍ଧଦେବ ଜ୍ଞାନଚକ୍ଷୁ

ଉତ୍ପାଦକ ଓ ଉପଶମ, ପ୍ରଜ୍ଞା, ସମ୍ବୋଧ ତଥା ନିର୍ବାଣର କାରଣ ସ୍ୱରୂପ ମଧ୍ୟମ ମାର୍ଗ ଖୋଜି ବାହାର କଲେ । ସେ ମାର୍ଗ କଣ ? ସମ୍ୟକ୍ ଦୃଷ୍ଟି, ସମ୍ୟକ୍ ସଂକଳ୍ପ, ସମ୍ୟକ୍ ବଚନ, ସମ୍ୟକ୍ କର୍ମାନ୍ତ, ସମ୍ୟକ୍ ଆଜୀବ, ସମ୍ୟକ୍ ବ୍ୟାୟାମ, ସମ୍ୟକ୍ ସ୍ମୃତି, ସମ୍ୟକ୍ ସମାଧି, ଏ ହେଉଛି ଆର୍ଯ୍ୟ ଅଷ୍ଟାଙ୍ଗିକ ମାର୍ଗ ।

"ଭିକ୍ଷୁଗଣ ! ଦୁଃଖ ନାମକ ପ୍ରଥମ ଆର୍ଯ୍ୟ ସତ୍ୟ ହେଉଛି-- ଜନ୍ମ ଦୁଃଖ କାରକ, ଜରା ଦୁଃଖ କାରକ, ବ୍ୟାଧି ଦୁଃଖ କାରକ, ମରଣ ଦୁଃଖ କାରକ, ଅପ୍ରିୟର ସମାଗମ ଓ ପ୍ରିୟର ବିଯୋଗ ଦୁଃଖ କାରକ । ଇପ୍‌ସିତ ବସ୍ତୁର ଅପ୍ରାପ୍ତିରୁ ମଧ୍ୟ ଦୁଃଖ ଜାତ ହୁଏ । ସଂକ୍ଷେପରେ ଏ ପାଞ୍ଚୋଟି ଉପାଦାନ ସ୍କନ୍ଧ ଦୁଃଖ କାରକ । (୧)

"ଭିକ୍ଷୁଗଣ ! ବାରମ୍ବାର ଉତ୍ପନ୍ନ ହେଉଥିବା ଓ ଅନେକ ବିଷୟରେ ଆସକ୍ତ ରହୁଥିବା ତୃଷ୍ଣା ହେଉଛି । (ଯାହାକୁ କାମତୃଷ୍ଣା, ଭବତୃଷ୍ଣା ଏବଂ ବିନାଶ ତୃଷ୍ଣା କୁହାଯାଏ) 'ଦୁଃଖ ସମୁଦୟ' ନାମକ ଦ୍ୱିତୀୟ ଆର୍ଯ୍ୟ ସତ୍ୟ ।

"ବୈରାଗ୍ୟ ଦ୍ୱାରା ସେହି ତୃଷ୍ଣାର ପୂର୍ଣ୍ଣ ନିରୋଧ କରିବା, ତ୍ୟାଗ କରିବା, ତହିଁରୁ ମୁକ୍ତ ପାଇବା—ଏହା ହେଉଛି 'ଦୁଃଖ ନିରୋଧ' ନାମକ, ତୃତୀୟ ଆର୍ଯ୍ୟ ସତ୍ୟ ।

ପୁଣି (ଉପରେ କୁହାଯାଇଥିବା) ଆର୍ଯ୍ୟ ଅଷ୍ଟାଙ୍ଗିକ ମାର୍ଗହିଁ 'ଦୁଃଖ ନିରୋଧ ଗାମିନୀ ପ୍ରତିପଦା' ନାମକ ଚତୁର୍ଥ ଆର୍ଯ୍ୟ ସତ୍ୟ ।

(କ) 'ଏହା ହେଉଛି ଦୁଃଖ'--ଯେତେବେଳେ ମତେ ଏପରି ଜଣାଗଲା, ସେତେବେଳେ ମୋର ଏକ ନୂତନ ଦୃଷ୍ଟି ଉତ୍ପନ୍ନ ହେଲା । 'ଏହି ଦୁଃଖକୁ ଜାଣିବା ଉଚିତ'—ଯେତେବେଳେ ମତେ ଏପରି

---

(୧) ସ୍କନ୍ଧ ହେଉଛି ପାଞ୍ଚୋଟି । ବାସନାମସ୍ତ ସ୍କନ୍ଧର ନାମ ଉପାଦାନସ୍କନ୍ଧ ଦେଖନ୍ତୁ 'ବୁଦ୍ଧଧର୍ମ ଆଣି ସଙ୍ଘ' ପୃ ୯୦-୯୧ ।

ବୋଧହେଲା, ସେତେବେଳେ ମୋର ଏକ ନୂତନ ଦୃଷ୍ଟି ଜାତହେଲ ଇତ୍ୟାଦ·····ସେହ ଦୁଃଖକୁ ମୁଁ ଯେତେବେଳେ ଜାଣିଲ, ସେତେବେଳେ ମୋର·····ଇତ୍ୟାଦ ।

(ଖ) ମୁଁ ଜାଣିଲ ଯେ ଏହ 'ଦୁଃଖ ସମୁଦୟ' ହେଉଛୁ ଆର୍ଯ୍ୟସତ୍ୟ । ମୁଁ ଜାଣିଲ ଯେ, ତାକୁ ତ୍ୟାଗ କରବାକୁ ହେବ । ମୁଁ ଜାଣିଲ ଯେ, ମୁଁ ତାକୁ ତ୍ୟାଗ କରଛୁ—ସେତେବେଳେ ମୋର ଅଭନବ ଦୃଷ୍ଟି ଜାତ ହେଲ (ଇତ୍ୟାଦ ପୂର୍ବୋକ୍ତ)·····।

(ଗ) ମୁଁ ଜାଣିଲ ଯେ, ଏହ ଦୁଃଖ ନରୋଧ ହେଉଛୁ ଆର୍ଯ୍ୟ ସତ୍ୟ । ମୁଁ ଜାଣିଲ ଯେ, ଏହାର ସାକ୍ଷାତ୍କାର କରବା ଉଚତ । ମୁଁ ଜାଣିଲ ଯେ, ମୁଁ ଏହାର ସାକ୍ଷାତ୍କାର କରଛୁ । ସେତେବେଳେ ମୋର ଅଭନବ ଦୃଷ୍ଟି ଜାତ ହେଲ·····(ଇତ୍ୟାଦ ପୂର୍ବୋକ୍ତ)···।

(ଘ) ମୁଁ ଜାଣିଲ ଯେ, ଏହ ଦୁଃଖ ନରୋଧ ଗାମିନୀ ପ୍ରତପଦା ହେଉଛୁ ଆର୍ଯ୍ୟସତ୍ୟ । ମୁଁ ଜାଣିଲ ଯେ ଏହାର ଅଭ୍ୟାସ କରାଯିବା ଉଚତ । ମୁଁ ଜାଣିଲ ଯେ ମୁଁ ଏହା ଅଭ୍ୟାସ କରଛୁ । ସେତେବେଳେ ମୋର ଅଭନବ ଦୃଷ୍ଟି ଉତ୍ପନ୍ନ ହେଲ; ଜ୍ଞାନ ଉପଲବ୍ଧ ହେଲ, ବଦ୍ୟା ଜାତ ହେଲ ଓ ଆଲୋକ ଉତ୍ପନ୍ନ ହେଲ । ଯେଉଁ ପର୍ଯ୍ୟନ୍ତ, (ପ୍ରତ୍ୟେକର ତନୋଟି ହସାବରେ ମୋଟ ବାର ପ୍ରକାର) ଏହ ଚାରୋଟି ଆର୍ଯ୍ୟ ସତ୍ୟ ବଷୟକ ଜ୍ଞାନ ମୋର ଜନ୍ମି ନଥିଲ, ସେପର୍ଯ୍ୟନ୍ତ ମୁଁ ପୂର୍ଣ୍ଣ ସମ୍ବୋଧି ପାଇ ନଥିଲ ।

ବୁଦ୍ଧଙ୍କ ପ୍ରଦତ୍ତ ଅନେକ ଉପଦେଶ ସୁତ୍ତପିଟକରେ ସଂଗୃହୀତ ହୋଇଅଛୁ । କନ୍ତୁ ଏହାହିଁ ବୁଦ୍ଧଦେବଙ୍କ ଧର୍ମର ଆଧାରଭୂତ ଉପଦେଶ । କେବଳ ସଚ୍ଚ ସଂଯୁତ୍ତରେ ଏହ ଚାରୋଟି ଆର୍ଯ୍ୟ ସତ୍ୟ ସମ୍ବନ୍ଧରେ ୧୩୧ଟି ସୁତ୍ତଅଛୁ । ଏହା ଛଡ଼ା ଅନ୍ୟ ନକାୟ ମାନଙ୍କରେ ବାରମ୍ବାର ଏହାର ଉଲ୍ଲେଖ କରାଯାଇଛୁ । ବୁଦ୍ଧଦେବଙ୍କର

ଅନ୍ୟ ସମସ୍ତ ଉପଦେଶ ଏହି ଚାରୋଟି ଆର୍ଯ୍ୟ ସତ୍ୟ ଉପରେ ପ୍ରତିଷ୍ଠିତ ହୋଇଥିବାରୁ ଏଗୁଡ଼ିକ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ।

ଉପରେ ଯେଉଁ ଅନୁବାଦ ଦିଆଗଲା ତହିଁରେ 'କ' ଠାରୁ 'ଘ' ପର୍ଯ୍ୟନ୍ତ କଥା କେବଳ ସଇ ସଂଯୁତ୍ତର ଗୋଟିଏ ସୂତ୍ରରେ ଏବଂ ମହାବଗ୍‌ଗରେ ଦେଖିବାକୁ ମିଳେ । ଅନ୍ୟ କୌଣସି ସ୍ଥଳରେ ସେ ଗୁଡ଼ିକର ଉଲ୍ଲେଖ ଦେଖାଯାଏ ନାହିଁ । ଏଥିରୁ, ଏଗୁଡ଼ିକୁ ପଛେ ଯୋଡ଼ି ଦିଆଯାଇ ଥାଇପାରେ ବୋଲି ଘୋର ଆଶଂକା ହେଉଛି । ତଥାପି ଚାରୋଟି ଆର୍ଯ୍ୟ ସତ୍ୟର ସ୍ପଷ୍ଟୀକରଣରେ ଏସବୁର ସାହାଯ୍ୟ ଏକାନ୍ତ ଗ୍ରାହ୍ୟ । ସେ ଦୃଷ୍ଟିରୁ ସେ ଗୁଡ଼ିକୁ ଏଠାରେ ଉପସ୍ଥାପନ କରାଯାଇଛି ।

## ଚାରୋଟି ଆର୍ଯ୍ୟସତ୍ୟର ସ୍ପଷ୍ଟୀକରଣ

ଜଗତରେ ଯେ ଦୁଃଖ ଅଛି ଏହା କେହି ଅସ୍ୱୀକାର କରି ନପାରେ । ମୋର ଦୁଃଖ କିପରି ବିନଷ୍ଟ ହେବ, ପ୍ରତ୍ୟେକ ବ୍ୟକ୍ତି ଏକଥା ଚିନ୍ତା କରିଥାଏ । ତାହା ଫଳରେ ପ୍ରତ୍ୟେକ ବ୍ୟକ୍ତି ଅନ୍ୟକୁ ନାଶକରି ମଧ୍ୟ ନିଜେ ସୁଖୀ ହେବାକୁ ଚାହାନ୍ତି । ସେମାନଙ୍କ ମଧ୍ୟରେ ଯେଉଁମାନେ ହିଂସ୍ରକ ଓ ବୁଦ୍ଧିମାନ୍, ସେମାନେ ନେତା ହୁଅନ୍ତି ଓ ଅନ୍ୟମାନଙ୍କୁ ସେମାନଙ୍କ ଅଧୀନରେ ରହିବାକୁ ହୁଏ । ଏହି ହିଂସକ ବୁଦ୍ଧି ଥିବାରୁ ନେତାମାନଙ୍କ ମଧ୍ୟରେ ସୁଦ୍ଧା ସଂଗଠନ ରହିପାରେ ନାହିଁ । ସମସ୍ତଙ୍କ ଠାରୁ ଅଧିକ ହିଂସକ ଓ ବୁଦ୍ଧିମାନ୍ ବ୍ୟକ୍ତିକୁ ରାଜାକରି ତାଙ୍କର ଦୟାରେ ସେମାନଙ୍କୁ ପରିଚାଳିତ ହେବାକୁ ପଡ଼େ । ଅନ୍ୟ ରାଜା ନିଜ ରାଜ୍ୟ ଛଡ଼ାଇ ନେବ ବୋଲି ଏ ରାଜାଙ୍କର ମଧ୍ୟ ଭୟ ରହେ । ତେଣୁ ରାଜ୍ୟର ସୁରକ୍ଷା ପାଇଁ ସେ ଯାଗଯଜ୍ଞ କରି ପଶୁବଳି ଦିଅନ୍ତି । ଏହିପରି ଭବରେ ମନୁଷ୍ୟ

ଏବଂ ଅନ୍ୟ ପଶୁମାନଙ୍କର ଉପଦ୍ରବକାରୀ ସମାଜ ଗଠନକୁ ଭାଙ୍ଗି ତାହାର ସ୍ଥାନରେ ଅନ୍ୟ ଏକ ହିତସୁଖକାରୀ ସଂଗଠନ କରିବାକୁ ହେଲେ ପ୍ରତ୍ୟେକେ ଏହା ବୁଝିବା ଦରକାର ଯେ, ନିଜର ଓ ଅନ୍ୟର ଦୁଃଖ ମଧ୍ୟରେ କିଛି ପ୍ରଭେଦ ନାହିଁ । ଏହି ହେତୁ ଭଗବାନ୍ ବୁଦ୍ଧ, ପ୍ରଥମ ଆର୍ଯ୍ୟସତ୍ୟରେ ସର୍ବସାଧାରଣ-ଦୁଃଖକୁ ସମାବେଶିତ କଲେ ।

ଜନ୍ମ ଜରା ମରଣ ପ୍ରଭୃତି ସର୍ବସାଧାରଣ ଦୁଃଖକୁ ଶ୍ରମଣମାନେ ସ୍ୱୀକାର କରୁଥିଲେ; କେବଳ ସେତିକି ନୁହେ, ସେହି ଦୁଃଖର ବିନାଶ ପାଇଁ ସେମାନେ ତପଶ୍ଚରଣ କରୁଥିଲେ । କିନ୍ତୁ ଦୁଃଖର କାରଣସମ୍ପର୍କରେ ସେମାନଙ୍କ ମଧ୍ୟରେ ମତଭେଦ ଥିଲା । କେହି କେହି କହୁଥିଲେ, ଦୁଃଖର ଉତ୍ପତ୍ତି ହେଉଛି ସ୍ୱୟଂକୃତ ( ସୟଂକତଂ ଦୁକ୍ଖଂ ) । ଅନ୍ୟ କେହି କେହି କହୁଥିଲେ, ପର ବା ଅନ୍ୟ ଦ୍ୱାରା ଦୁଃଖ ଉତ୍ପନ୍ନ ହୁଏ (ପରକତଂ ଦୁକ୍ଖଂ) । ତୃତୀୟରେ ପୁଣି କେହି କେହି କହୁଥିଲେ ଯେ, କେତେକ ଅଂଶରେ ସ୍ୱୟଂ ଓ ଅନ୍ୟ କେତେକ ଅଂଶରେ 'ପର', ଏ ଦୁହେଁ ଦୁଃଖ ଉତ୍ପାଦନ କରନ୍ତି (ସୟଂକତଂ ପରକତଂ ଚ ଦୁଃଖଂ ) । ଚତୁର୍ଥରେ, ଦୁଃଖ, ଆତ୍ମକୃତ ନୁହେ ବା ପରଦ୍ୱାରା ଉତ୍ପନ୍ନ ହୁଏନାହିଁ, ତାହା ଆକସ୍ମିକ ବୋଲି ଅନ୍ୟ କେହି କେହି କହୁଥିଲେ ( ଅସୟଂକାରଂ ଅପରଂକାରଂ ଅଧିଚ୍ଚସମୁପ୍ପନଂ ଦୁକ୍ଖଂ ) । (୧)

ଏମାନଙ୍କ ମଧ୍ୟରୁ ନିର୍ଗ୍ରନ୍ଥ ( ଜୈନ ) ପ୍ରଭୃତି ଥିଲେ ପ୍ରଥମ ପ୍ରକାରର ଶ୍ରମଣ । ସେମାନେ ବିଶ୍ୱାସ କରୁଥିଲେ ଯେ, ପୂର୍ବ ଜନ୍ମରେ ଆତ୍ମା ପାପ କରିଥିବାରୁ ଦୁଃଖ ଜାତ ହେଲା । ତାହାର ପରିହାର

(୧) ନିଦାନବଗ୍ଗ ସଂଯୁତ୍ତ, ବର୍ଗ ୨ ସୂତ୍ର ୭ ଦେଖନ୍ତୁ ।

ପାଇଁ ସେମାନେ ଦେହ ଦଣ୍ଡନ ଦ୍ୱାରା ଆତ୍ମାକୁ କଷ୍ଟ ଦେଉଥିଲେ । ପୁଣି ଅନ୍ୟ ଏକ ଶ୍ରେଣୀର ଶ୍ରମଣ, ସାଂଖ୍ୟମାନଙ୍କ ପରି ଭାବୁଥିଲେ ଯେ, ଜଡ଼ ପ୍ରକୃତି ହେତୁରୁ ଦୁଃଖ ଉତ୍ପନ୍ନ ହେଉଛି । ତେଣୁ ନିଜ ନିଜ ଆତ୍ମାକୁ ପ୍ରକୃତିର ଶୃଙ୍ଖଳାରୁ ମୁକ୍ତ କରିବାପାଇଁ ସେମାନେ ଘୋର ତପସ୍ୟା କରୁଥିଲେ । ତୃତୀୟ ପ୍ରକାରର ଶ୍ରମଣମାନେ କହୁଥିଲେ ଯେ, ଆତ୍ମା ଏବଂ ପ୍ରକୃତି ଦୁହେଁ ମିଶି ଦୁଃଖ ଜାତ କରନ୍ତି । ତେଣୁ ଆତ୍ମାକୁ ମୁକ୍ତ କରିବା ପାଇଁ ସେମାନେ ଦେହ ଦଣ୍ଡନ କରୁଥିଲେ । ଚତୁର୍ଥ ପ୍ରକାରର ଶ୍ରମଣମାନେ ଦୁଃଖକୁ ଆକସ୍ମିକ ବୋଲି ଗ୍ରହଣ କରୁଥିବାରୁ ଅକ୍ରିୟାବାଦ ଆଡ଼କୁ ଚାଲି ଯାଉଥିଲେ । ଏ ଶ୍ରେଣୀର ଶ୍ରମଣମାନେ ହୁଏତ ନିଷ୍ଫଳ ତପସ୍ୟା କରୁଥିଲେ କିମ୍ବା ନିଷ୍କ୍ରିୟ ହୋଇ ଯାଉଥିଲେ । ବହୁ ଜନ-ସମାଜ ତାହାଁରୁ ଅତ୍ୟଳ୍ପ ଉପକାର ପାଉଥିଲା ।

ଭଗବାନ୍ ବୁଦ୍ଧ ପ୍ରଥମେ ଏହା ଦେଖାଇ ଦେଲେ ଯେ, ଆତ୍ମା ବା ପ୍ରକୃତି, ଦୁଃଖର ପ୍ରକୃତ କାରଣ ନୁହନ୍ତି—କିନ୍ତୁ ମନୁଷ୍ୟର ତୃଷ୍ଣା ହିଁ ଦୁଃଖର ଅସଲ କାରଣ । ପୂର୍ବଜନ୍ମର କିମ୍ବା ଏହି ଜନ୍ମର ତୃଷ୍ଣା ହେତୁରୁ ସମସ୍ତ ଦୁଃଖ ଉତ୍ପନ୍ନ ହେଉଛି । ତୃଷ୍ଣା କେଉଁଠାରୁ ଆସିଲା, ଏ ପ୍ରଶ୍ନ ନିରର୍ଥକ । ଯେଉଁ ପର୍ଯ୍ୟନ୍ତ ତୃଷ୍ଣା ଅଛି, ସେପର୍ଯ୍ୟନ୍ତ ଦୁଃଖ ଉତ୍ପନ୍ନ ହେବ ହିଁ ହେବ—ଏହା ହେଉଛି ଦ୍ୱିତୀୟ ଆର୍ଯ୍ୟସତ୍ୟ ।

ତୃତୀୟ ଆର୍ଯ୍ୟସତ୍ୟ ହେଉଛି ଏହି ଯେ, ତୃଷ୍ଣା ନାଶ କରିବା ଦ୍ୱାରା ହିଁ ମନୁଷ୍ୟ ଦୁଃଖରୁ ମୁକ୍ତ ହୁଏ ।

ପୁଣି ତୃଷ୍ଣା ନାଶର ଉପାୟ ହେଉଛି—ଦୁଇ 'ଅନ୍ତ'ର ମଧ୍ୟବର୍ତ୍ତୀ ଆର୍ଯ୍ୟ-ଅଷ୍ଟାଙ୍ଗିକ ମାର୍ଗ—ଏହାହିଁ ଚତୁର୍ଥ ଆର୍ଯ୍ୟସତ୍ୟ ।

## ଅଷ୍ଟାଙ୍ଗିକ ମାର୍ଗର ସ୍ପଷ୍ଟୀକରଣ

ସମ୍ୟକ୍ ଦୃଷ୍ଟି ହେଉଛି ଆର୍ଯ୍ୟ ଅଷ୍ଟାଙ୍ଗିକ ମାର୍ଗର ପ୍ରଥମ ସୋପାନ । ସମ୍ୟକ୍ ଦୃଷ୍ଟି ବୋଲନ୍ତେ ଚାରୋଟି ଆର୍ଯ୍ୟ ସତ୍ୟର ଯଥାର୍ଥ ଜ୍ଞାନ । ଜଗତରେ ଦୁଃଖ ପୂରି ରହିଛି । ମାନବଜାତିର ତୀବ୍ର ତୃଷ୍ଣାର କ୍ଷୟଦ୍ୱାରା ସମସ୍ତଙ୍କୁ ଶାନ୍ତି ମିଳିବା ସମ୍ଭବପର ; ଏବଂ ଜଣେ ଆଉ ଜଣକ ସହିତ କାୟମନୋବାକ୍ୟରେ ସଦାଚାର-ସତ୍ୟ-ପ୍ରେମ ଓ ବିଶ୍ୱାସ ପୂର୍ଣ୍ଣଭାବରେ ବ୍ୟବହାର କରିବା ହେଉଛି ଆର୍ଯ୍ୟ ଅଷ୍ଟାଙ୍ଗିକ ମାର୍ଗ—ତାହାହିଁ ଶାନ୍ତିର ମାର୍ଗ । ଯଦି ଏହିପରି ସମ୍ୟକ୍ ଦୃଷ୍ଟି ଲୋକଙ୍କ ମନରେ ଜାତ ନହୁଏ, ତାହାହେଲେ ଅହଂକାର ଏବଂ ସ୍ୱାର୍ଥ ଜନିତ ବାଦବିବାଦର ଅବସାନ ଘଟିବ ନାହିଁ । ଫଳରେ ବିଶ୍ୱଶାନ୍ତି ସୁଦୂରପରାହତ ହେବ ।

ନିଜର ଐଶ୍ୱର୍ଯ୍ୟ ଏବଂ ଅଧିକାର ବଢ଼ାଇବାକୁ ଯଦି ପ୍ରତ୍ୟେକ ବ୍ୟକ୍ତି ସଂକଳ୍ପ କରେ, ତେବେ ତାହାଫଳରେ ତାହାର ଓ ଅନ୍ୟମାନଙ୍କର ସମାନ ଭାବରେ କ୍ଷତି ହେବ । ସୁତରାଂ କାମୋପଭୋଗରେ ଆବଦ୍ଧ ନହୋଇ ଅନ୍ୟମାନଙ୍କ ସହିତ ପୂର୍ଣ୍ଣ ମିତ୍ରତା ସ୍ଥାପନ କରିବା ଏବଂ ଅନ୍ୟର ସୁଖ ସନ୍ତୋଷ ବୃଦ୍ଧି ରୂପକ ଶୁଦ୍ଧ ସଂକଳ୍ପ ମନରେ ପୋଷଣ କରିବା ବିଧେୟ ।

ମିଛ କହିବା, ଚୁଗୁଲି କରିବା, ଗାଳିଦେବା, ଭୁଲ୍କାଟାରେ ଉତ୍ତଭକ୍ତ ହେବା ପ୍ରଭୃତି ଅସତ୍ ବାଣୀ ଦ୍ୱାରା ସମାଜର ସଂଗଠନ ନଷ୍ଟଭ୍ରଷ୍ଟ ହୋଇଯାଏ; ତହିଁରୁ କଳହ ଉପସ୍ଥିତ ହୋଇ ତାହା ହିଂସାର କାରଣ ହୋଇପଡ଼େ । ସୁତରାଂ ସତ୍ୟ, ପରସ୍ପରର ସଖ୍ୟସାଧନକାରୀ ପ୍ରିୟ ଏବଂ ମିତ ଭାଷଣ ହିଁ କର୍ତ୍ତବ୍ୟ । ସମ୍ୟକ୍ ବଚନରେ ଏସବୁହିଁ ବୁଝିବାକୁ ହେବ ।

ପ୍ରାଣ-ଘାତ, ଚୋରି, ବ୍ୟଭିଚାର ପ୍ରଭୃତି କାର୍ଯ୍ୟ ଶରୀର ଦ୍ୱାରା ସାଧିତ ହୁଏ—ତଦ୍ଦ୍ୱାରା ସମାଜରେ ବହୁ ଅନର୍ଥ ସୃଷ୍ଟି ହୁଏ । ଏହି କାରଣରୁ ପ୍ରାଣଘାତ, ଚୋରି, ବ୍ୟଭିଚାର ପ୍ରଭୃତି କାର୍ଯ୍ୟରେ ଅଲିପ୍ତ ରହି, ଏଭଳି ଶାରୀରିକ କାର୍ଯ୍ୟ କରିବା ଉଚିତ, ଯାହାଦ୍ୱାରା ଲୋକଙ୍କର କଲ୍ୟାଣ ସାଧିତ ହେବ । ଏହାହିଁ ସମ୍ୟକ୍ କର୍ମାନ୍ତ ।

ନିଜେ ଏପରି ଉପଜୀବିକା ନିର୍ବାହ କରିବା ଉଚିତ, ଯାହାଦ୍ୱାରା ସମାଜର କ୍ଷତି ଘଟିବ ନାହିଁ—ଏହାହିଁ ହେଉଛି ସମ୍ୟକ୍ ଆଜୀବର ଅର୍ଥ । ଉଦାହରଣ ସ୍ୱରୂପ, ମଦ୍ୟବିକ୍ରୟ, ଜୀବଜନ୍ତୁର କ୍ରୟବିକ୍ରୟ ପ୍ରଭୃତି ବ୍ୟବସାୟ ଗୃହସ୍ଥ ପକ୍ଷରେ ଏକାନ୍ତ ଅନୁଚିତ । କାରଣ, ଏହାଦ୍ୱାରା ସମାଜକୁ କଷ୍ଟହେବ ବୋଲି ସ୍ପଷ୍ଟ ଜଣାଯାଉଛି । ଏପରି ବ୍ୟବସାୟ ବର୍ଜନ କରି ଶୁଦ୍ଧ ଏବଂ ସରଳ ବ୍ୟବହାର ଦ୍ୱାରା ନିଜର ଜୀବିକା ନିର୍ବାହ କରିବା ହେଉଛି ସମ୍ୟକ୍ ଆଜୀବ ।

ଯେଉଁ ମନ୍ଦ ବୃତ୍ତିର ମନରେ ଉଦିତ ହୁଏ, ତାକୁ ମନରେ ଉଦିତ ହେବା ପାଇଁ ପ୍ରଶ୍ରୟ ଦେବା ଉଚିତ ନୁହେ । ଯଦି କୌଣସି ମନ୍ଦ ବୃତ୍ତିର ମନରେ ପ୍ରବେଶ କରିଗଲା, ତାହାହେଲେ ତାକୁ ବିନାଶ କରିବାକୁ ହେବ । ଯଦି କୌଣସି ସୁବୃତ୍ତିର ମନରେ ଉତ୍ପନ୍ନ ନହେଉଛି, ତାହା ହେଲେ ମନରେ ତାକୁ ଉଦିତ କରାଇବା ପାଇଁ ଚେଷ୍ଟା କରିବାକୁ ପଡ଼ିବ । ପୁଣି ଯେଉଁ ସୁବୃତ୍ତିର ମନରେ ଜାତ ହୋଇ ଗଲାଣି, ତାକୁ ବଢ଼ାଇ ପୂର୍ଣ୍ଣ ଭାବରେ ବିକଶିତ କରିବା ପାଇଁ ଚେଷ୍ଟା କରିବାକୁ ହେବ । ଏହି ଚାରିଗୋଟି ମାନସିକ ପ୍ରଚେଷ୍ଟାକୁ ସମ୍ୟକ୍ ବ୍ୟାୟାମ କୁହାଯାଏ । (୧)

ଶରୀର ଅପବିତ୍ର ପଦାର୍ଥରେ ଗଠିତ—ଏହି ବୃତ୍ତିକୁ ଜାଗ୍ରତ କରିବାକୁ ହେବ । ଶରୀରର ସୁଖଦୁଃଖ ପ୍ରଭୃତି ଅନୁଭୂତି ଗୁଡ଼ିକୁ

(୧) ଶାରୀରିକ ବ୍ୟାୟାମ ସହିତ ଏହାର କିଛି ସମ୍ପର୍କ ନାହିଁ ।

ବାରମ୍ବାର ଅବଲୋକନ କରିବାକୁ ହେବ; ନିଜର ଚିତ୍ତକୁ ଅବଲୋକନ କରିବାକୁ ହେବ । ପୁଣି ଇନ୍ଦ୍ରିୟ ଓ ସେମାନଙ୍କ ହେତୁରୁ ଯେଉଁ ବନ୍ଧନ ଜାତ ହୁଏ ଓ ତାହାର ବିନାଶ କପରି ଘଟିବ ଇତ୍ୟାଦି ମନୋଧର୍ମର ଉତ୍ତମ ବିଗ୍ରହ କରିବା ଉଚିତ- ଏହାହିଁ ହେଉଛି ସମ୍ୟକ୍ ସ୍ମୃତି ।

ନିଜ ଶରୀର ଉପରେ, ମୃତ ଶରୀର ଉପରେ, ମୈତ୍ରୀ କରୁଣା ପ୍ରଭୃତି ମନୋବୃତ୍ତି ଉପରେ, ପୃଥିବୀ, ଅପ, ତେଜ ପ୍ରଭୃତି ପଦାର୍ଥ ଉପରେ ଚିତ୍ତକୁ ଏକାଗ୍ର ରଖି ଗୂଢ଼ଧ୍ୟାନ ସମ୍ପାଦନ କରିବା ହେଉଛି ସମ୍ୟକ୍ ସମାଧି । (୧)

ଦୁଇ 'ଅନ୍ତ' ପର୍ଯ୍ୟନ୍ତ ନଯାଇ ଏହି ମଧ୍ୟମ ମାର୍ଗର ଭାବନା କରିବା ଆବଶ୍ୟକ । ପ୍ରଥମ ଅନ୍ତ ହେଉଛି, କାମୋପଭୋଗରେ ସୁଖର ଅସ୍ତିତ୍ୱ ସ୍ୱୀକାର କରିବା । ତାହା ସହିତ ହୀନ ଗ୍ରାମ୍ୟ ସାମାନ୍ୟ-ଜନସେବିତ ଅନାର୍ଯ୍ୟ ଏବଂ ଅନର୍ଥାବହ ( ହୀନୋ- ଗମ୍ମୋ ପୋଥୁଜ୍ଜନିକୋ ଅନରିୟୋ ଅନତ୍ଥସଂହିତୋ ) ଏହି ପାଞ୍ଚୋଟି ବିଶେଷଣ ଯୋଗ କରାଯାଇଛି । ଯେତେବେଳେ ମାନବ ଜାତି ଦାରିଦ୍ର୍ୟ ଏବଂ ଅଜ୍ଞାନରେ ବୁଡ଼ିରହେ, ସେତେବେଳେ ଆମେ ମହା ସୁଖରେ ଆନନ୍ଦ ଉପଲବ୍ଧି କରୁଛୁ—ଏହାଠାରୁ ବଳି ଆଉ ହୀନକଥା କଣ ଥାଇପାରେ ? ଏହି 'ଅନ୍ତ', ଗ୍ରାମ୍ୟ ଅଟେ; ଅର୍ଥାତ୍ ମଫସଲି ଲୋକଙ୍କର ଆଚରଣ-ସୁଲଭ । ତାହା ହେଉଛି ସାଧାରଣ ଲୋକଙ୍କର । ଏହା ଆର୍ଯ୍ୟ ( ଧୀର ବୀରମାନଙ୍କ ) ପକ୍ଷରେ ଅଶୋଭନୀୟ ; ଆହୁରି ମଧ୍ୟ ଏହା ଅନର୍ଥକାରୀ । ଦ୍ୱିତୀୟ 'ଅନ୍ତ' ହେଉଛି, ଦେହ ଦଣ୍ଡନ । ଏହାକୁ ହୀନ ଏବଂ ଗ୍ରାମ୍ୟ, ଏହି ବିଶେଷଣ

(୧) "ସମାଧିମାର୍ଗ"ରେ ଏହି ସବୁ ପଦାର୍ଥ ଉପରେ ଧ୍ୟାନବିଧି କୁହାଯାଇଛି ।

ଦିଆଯାଇ ନାହିଁ । କିନ୍ତୁ ଏହା ହେଉଛି ଦୁଃଖଦାୟକ, ଏହା ଧୀର ବୀରଙ୍କ ପକ୍ଷରେ ଶୋଭନୀୟ ନୁହେ, ପୁଣି ଅନର୍ଥାବହ ମଧ୍ୟ ( ଦୁକ୍‌ଖୋ ଅନରିୟୋ ଅନତ୍ଥ ସଂହିତୋ ) ଅଷ୍ଟାଙ୍ଗିକ ମାର୍ଗର ସମସ୍ତ ଅଙ୍ଗ ଏହି ଦୁଇ ଅନ୍ତକୁ ବର୍ଜନ କରିଥାଏ ।

ଉଦାହରଣ ସ୍ୱରୂପ, ଖାଇବା ପିଇବା, ମଉଜ ମଜଲିସ କରିବା ହେଉଛି ବିଳାସୀ ଲୋକଙ୍କର ଦୃଷ୍ଟିଭଙ୍ଗୀ । କିନ୍ତୁ ଉପବାସାଦି ଦ୍ୱାରା ଶରୀରକୁ କଷ୍ଟଦେବା ତପସ୍ୱୀମାନଙ୍କର ଦୃଷ୍ଟିସିଦ୍ଧ । ଏ ଦୁଇ ସୀମାର ମଧ୍ୟବର୍ତ୍ତୀ ଦୃଷ୍ଟି ହେଉଛି—ଚାରିଗୋଟି ଆର୍ଯ୍ୟ ସତ୍ୟର ଜ୍ଞାନ । ଅନ୍ୟ ଅଙ୍ଗଗୁଡ଼ିକର ମଧ୍ୟବର୍ତ୍ତିତା ମଧ୍ୟ ଏହିପରି ଭାବରେ ବୁଝିବାକୁ ହେବ । (୧)



୧ । ଚାରି ଆର୍ଯ୍ୟ ସତ୍ୟର ପରିଚୟ "ବୌଦ୍ଧଧର୍ମ ଆଣି ସଂଘ"ର ତୃତୀୟ ପରିଶିଷ୍ଟ ( ପୃ: ୯୪-୯୯ ) ରେ ଦିଆଯାଇଛି ।

# ଷଷ୍ଠ ଅଧ୍ୟାୟ

# ଶ୍ରାବକ ସଂଘ

## ପଞ୍ଚବର୍ଗୀୟ ଭିକ୍ଷୁଙ୍କର ପରିଚୟ

ଯେଉଁ ପଞ୍ଚବର୍ଗୀୟ ଭିକ୍ଷୁମାନଙ୍କୁ ଭଗବାନ୍ ବୁଦ୍ଧ ପ୍ରଥମ ଧର୍ମୋପଦେଶ ଦେଇଥିଲେ ସେମାନଙ୍କର ବିଶେଷ ବିବରଣୀ ସୁତ୍ତପିଟକରୁ ଅତ୍ୟଳ୍ପ ମାତ୍ର ମିଳେ । ସଂଯୁତ୍ତ ନିକାୟର ବଙ୍ଗୀସ ସଂଯୁତ୍ତରେ ( ସଂ ୯ ) ଉଲ୍ଲିଖିତ ହୋଇଅଛି ଯେ, ସର୍ବପ୍ରଥମେ ବୌଦ୍ଧ ଧର୍ମର ତତ୍ତ୍ୱବୋଧ ଲାଭ କରିଥିବା ଆଜ୍ଞାତ କୌଣ୍ଡିନ୍ୟ ବହୁକାଳ ପରେ ରାଜଗୃହ ଆଗମନ କଲେ ଏବଂ ଭଗବାନ୍ ବୁଦ୍ଧଙ୍କୁ ସାଷ୍ଟାଙ୍ଗ ପ୍ରଣାମ କଲେ । ଦ୍ୱିତୀୟ ପଞ୍ଚବର୍ଗୀୟ ଭିକ୍ଷୁ ଅସ୍‌ସଜି (ଅଶ୍ୱଜିତ୍) ରାଜଗୃହରେ ପୀଡ଼ିତ ଥିଲେ ଏବଂ ଭଗବାନ୍ ବୁଦ୍ଧ ତାଙ୍କୁ ଉପଦେଶ ଦେଇଥିଲେ—ଏହି ପ୍ରକାର ବିବରଣୀ ଖନ୍ଧ ସଂଯୁତ୍ତର ୮୮ତମ ସୁତ୍ତରୁ ମିଳେ । ସୁତ୍ତପିଟକରେ ଏ ଦୁହିଙ୍କ ବ୍ୟତୀତ ଅନ୍ୟଙ୍କ ନାମ ମିଳେନାହିଁ ।

ଜାତକର ନିଦାନକଥା ଏବଂ ଅଟ୍‌ଠ କଥାମାନଙ୍କରେ ଏହି ପଞ୍ଚବର୍ଗୀୟ ଭିକ୍ଷୁଙ୍କର ସାମାନ୍ୟ ପରିଚୟ ମିଳେ । ତାହାର ସାରାଂଶ ହେଉଛି—

**ରାମୋ ଧଜୋ ଲକ୍‌ଖଣୋ ଚ୍ଛପି ମନ୍ତୀ ।**
**କୋଣ୍ଡଞ୍ଞ୍‌ଚଞ୍ଜୋଚ ଭୋଜୋ ସୁଯାମୋ ସୁଦତ୍ତୋ ॥**
**ଏତେ ତଦା ଅଟ୍‌ଠ ଅହେସୁଂ ବ୍ରାହ୍ମଣା ।**
**ଛଳଂଗବା ମନ୍ତଂ ବ୍ୟାକରିଂସୁ ॥**

ଅର୍ଥାତ୍, ରାମ, ଧ୍ୱଜ, ଲକ୍‌ଖଣ (ଲକ୍ଷ୍ମଣ), ମନ୍ତୀ (ମନ୍ତ୍ରୀ) କୋଣ୍ଡଞ୍ଞ (କୌଣ୍ଡିନ୍ୟ), ଭୋଜ, ସୁଯାମ ଓ ସୁଦତ୍ତ ଏହି ଷଡ଼ଙ୍ଗ ବେଦପାରଗ ଆଠଜଣ ବ୍ରାହ୍ମଣ ଥିଲେ; ଏମାନେ ବୋଧିସତ୍ତ୍ୱଙ୍କର ଭବିଷ୍ୟତ କଥା କହିଥିଲେ ।

ଏମାନଙ୍କ ମଧ୍ୟରୁ ସାତ ଜଣ ଏହିପରି ଦ୍ୱିବିଧ ଭବିଷ୍ୟତ କଥା କହିଥିଲେ । ଯଥା—ବୋଧିସତ୍ତ୍ୱ ଯଦି ଗୃହସ୍ଥାଶ୍ରମରେ ରହିବେ, ତାହା ହେଲେ ରାଜ ଚକ୍ରବର୍ତ୍ତୀ ହେବେ; କିନ୍ତୁ ଯଦି ଗୃହସ୍ଥାଶ୍ରମ ତ୍ୟାଗ କରି ସନ୍ନ୍ୟାସୀ ହେବେ ତାହାହେଲେ ସମ୍ବୁଦ୍ଧ ହୋଇଯିବେ । ଆଠ ଜଣ ବ୍ରାହ୍ମଣଙ୍କ ମଧ୍ୟରେ ସର୍ବାପେକ୍ଷା ତରୁଣ ଥିଲେ କୌଣ୍ଡିନ୍ୟ । ସେ ଏହି ଗୋଟିକ ମାତ୍ର ଭବିଷ୍ୟତ ବାଣୀ କହିଥିଲେ ଯେ ବୋଧିସତ୍ତ୍ୱ ସମ୍ପୂର୍ଣ୍ଣ ଭାବରେ ସମ୍ବୁଦ୍ଧ ହୋଇଯିବା ସୁନିଶ୍ଚିତ । ବୋଧିସତ୍ତ୍ୱଙ୍କ ଭବିଷ୍ୟତ ସମ୍ପର୍କରେ ଦୁଇପ୍ରକାର କଥା କହିଥିବା ଅନ୍ୟ ସାତଜଣ ବ୍ରାହ୍ମଣ ନିଜ ନିଜର ଘରକୁ ଫେରି ପୁତ୍ରମାନଙ୍କୁ କହିଲେ—"ବର୍ତ୍ତମାନ ଆମେ ବୁଢ଼ା ହୋଇ ଗଲୁଣି । ରାଜକୁମାର ସିଦ୍ଧାର୍ଥ ଯଦି 'ବୁଦ୍ଧ' ହେବେ ତାହାହେଲେ ତାଙ୍କୁ ଦର୍ଶନ କରିବାର ସୁଯୋଗ ଆମ ଭାଗ୍ୟରେ ଘଟିବ ନାହିଁ । ଯଦି ସେ 'ବୁଦ୍ଧ' ହୋଇଯାନ୍ତି, ତାହାହେଲେ ତୁମେମାନେ ତାଙ୍କ ସଂଘରେ ପ୍ରବେଶ କରିବ ।"

ବୋଧିସତ୍ତ୍ୱ ଯେତେବେଳେ ଗୃହ ତ୍ୟାଗ କଲେ, ସେତେବେଳକୁ କୌଣ୍ଡିନ୍ୟ ଜୀବିତ ଥିଲେ । ସେ ଅନ୍ୟ ସାତଜଣ

ବ୍ରାହ୍ମଣଙ୍କର ପୁତ୍ରମାନଙ୍କର ନିକଟକୁ ଯାଇ କହିଲେ—"ରାଜକୁମାର ସିଦ୍ଧାର୍ଥ ପରିବ୍ରାଜକ ହୋଇଗଲେଣି । ସେ ନିଶ୍ଚୟ 'ବୁଦ୍ଧ' ହେବେ । ତେଣୁ ଆମ୍ଭେମାନେ ମଧ୍ୟ ପରିବ୍ରାଜକ ହୋଇ ତାଙ୍କର ଅନୁଗମନ କରିବା । ସେହି ଯୁବକମାନଙ୍କ ମଧ୍ୟରୁ ଚାରିଜଣ କୌଣ୍ଡିନ୍ୟଙ୍କର କଥାକୁ ଗ୍ରହଣ କଲେ ଏବଂ ତାଙ୍କ ସହିତ ସେମାନେ ପ୍ରବ୍ରଜ୍ୟା ଗ୍ରହଣ ପୂର୍ବକ ବୋଧିସତ୍ତ୍ୱଙ୍କର ଅନୁଗମନ କଲେ । 'ପଞ୍ଚବର୍ଗୀୟ' ନାମରେ ଏହି ପାଞ୍ଚଜଣ ପରେ ପ୍ରସିଦ୍ଧି ଲାଭ କଲେ । ଏମାନଙ୍କର ନାମ ମହାବଗ୍‌ଗ ଏବଂ ଲଳିତ ବିସ୍ତରରେ ଉଲ୍ଲିଖିତ ହୋଇଛି । ଏମାନେ ହେଉଛନ୍ତି, କୋଣ୍ଡଞ୍ଞ (କୌଣ୍ଡିନ୍ୟ), ବପ୍‌ପ ( ବାପ୍‌ପ ), ଭଦ୍ଦିୟ ( ଭଦ୍ରିକ ), ମହାନାମ ଓ ଅସ୍‌ସଜି ( ଅଶ୍ୱଜିତ୍ )।

କିନ୍ତୁ ପଞ୍ଚବର୍ଗୀୟ ଭିକ୍ଷୁଙ୍କର ଉକ୍ତ ପରିଚୟ କିମ୍ବଦନ୍ତୀ ମୂଳକ ପରି ପ୍ରତୀତ ହୁଏ । ଯଦି ରାଜକୁମାର ଗୌତମ ନିଶ୍ଚୟ ବୁଦ୍ଧତ୍ୱ ଲାଭ କରିବେ ବୋଲି କୌଣ୍ଡିନ୍ୟଙ୍କର ଦୃଢ଼ ବିଶ୍ୱାସଥିଲା ତାହାହେଲେ, ଉରୁବେଲା ତ୍ୟାଗ କରି ସେ ବାରାଣସୀ ଚାଲିଗଲେ କାହିଁକି ? ଶରୀର ନିମନ୍ତେ ଆବଶ୍ୟକ ପରିମାଣରେ ଆହାର ଗ୍ରହଣ କରିବାକୁ ବୋଧିସତ୍ତ୍ୱ ଯେତେବେଳେ ସ୍ଥିର କଲେ, ତାଙ୍କ ପ୍ରତି କୌଣ୍ଡିନ୍ୟଙ୍କର ଶ୍ରଦ୍ଧା ପୂରାପୂରି କମି ଯାଇଥିଲା । ମତେ ଜଣା-ଯାଉଛି, ଏହି ପଞ୍ଚବର୍ଗୀୟ ଭିକ୍ଷୁ ପ୍ରଥମେ ଆଳାର କାଳାମ ପନ୍ଥୀ ଥିଲେ ଏବଂ ଶାକ୍ୟ କିମ୍ବା ସେମାନଙ୍କର ନିକଟବର୍ତ୍ତୀ ଦେଶରେ ରହୁଥିଲେ । ବୋଧିସତ୍ତ୍ୱଙ୍କ ସହିତ ସେମାନଙ୍କର ମିତ୍ରତା ଜାତ ହୋଇଥିଲା । ସେ ସମସ୍ତେ ବ୍ରାହ୍ମଣ ଥିଲେ ବୋଲି କହିବା ମଧ୍ୟ ଯୁକ୍ତି ଯୁକ୍ତ ନୁହେ । ଆଳାରକାଳାମ ଓ ଉଦ୍ଦକ ରାମ ପୁତ୍ରଙ୍କ ସମ୍ପ୍ରଦାୟରୁ କୌଣସି ତଥ୍ୟ ନ ପାଇବାରୁ, ଭବିଷ୍ୟତ ମାର୍ଗ

ଅନୁସନ୍ଧାନ ନିମନ୍ତେ ବୋଧିସତ୍ତ୍ୱ ରାଜଗୃହକୁ ଚାଲିଗଲେ ଏବଂ ସେତିକବେଳେ ଏହି ପଞ୍ଚବର୍ଗୀୟ ଭିକ୍ଷୁ ତାଙ୍କ ସହିତ ଯାଇଥିବେ । ସେମାନେ ଭାବିଥାଇ ପାରନ୍ତି ଯେ, ଯଦି ବୋଧିସତ୍ତ୍ୱ ନୂତନ ମାର୍ଗ ଲାଭ କରିବେ, ତାହାହେଲେ ସେମାନେ ମଧ୍ୟ ସେହି ମାର୍ଗରେ ଗତି କରିବେ । କିନ୍ତୁ ଯେତେବେଳେ ବୋଧିସତ୍ତ୍ୱ ତପସ୍ୟା ଏବଂ ଉପବାସ ତ୍ୟାଗ କଲେ, ତାଙ୍କ ଉପରୁ ସେମାନଙ୍କର ଆସ୍ଥା ଓ ବିଶ୍ୱାସ ଦୂର ହୋଇଗଲା ଓ ସେମାନେ ବାରାଣସୀ ଚାଲିଗଲେ ।

## ପଞ୍ଚବର୍ଗୀୟ ଭିକ୍ଷୁ ସଂଘ

ବୁଦ୍ଧ ଅବସ୍ଥାରେ ଗୌତମ ବୋଧିସତ୍ତ୍ୱ ଯେତେବେଳେ ବାରାଣସୀର ଋଷିପତ୍ତନରେ ଉପସ୍ଥିତ ହେଲେ, ସେତେବେଳେ ଏହି ପଞ୍ଚବର୍ଗୀୟ ଭିକ୍ଷୁଗଣ ତାଙ୍କର ଆଦରସତ୍କାର କରିବାକୁ ମଧ୍ୟ ପ୍ରସ୍ତୁତ ନଥିଲେ, ଇତ୍ୟାଦି କଥା ପଞ୍ଚମ ଅଧ୍ୟାୟରେ କୁହାଯାଇଛି । ଶେଷରେ ସେହି ପଞ୍ଚବର୍ଗୀୟ ଭିକ୍ଷୁମାନେ ବୋଧିସତ୍ତ୍ୱଙ୍କର ଧର୍ମ ମାର୍ଗ ଶ୍ରବଣ କଲେ ଏବଂ କେବଳ କୌଣ୍ଡିନ୍ୟ ତହିଁରେ ନିଜର ସମ୍ମତି ପ୍ରକାଶ କଲେ । ବୁଦ୍ଧଦେବ ସେତେବେଳେ କହି ପକାଇଲେ—"କୌଣ୍ଡିନ୍ୟ ଜାଣିପାରିଲେ ( ଅଞ୍ଞାସି ବତ ଭୋ କୋଣ୍ଡଞ୍ଞୋ ) ଏହି ହେତୁରୁ କୌଣ୍ଡିନ୍ୟଙ୍କ ନାମ ହୋଇଗଲା "ଅଞ୍ଞାସି କୋଣ୍ଡଞ୍ଞ" ( ଆଜ୍ଞାତ କୌଣ୍ଡିନ୍ୟ ) । ଏହି ଗୋଟିକ ଘଟଣାରେ, ବୌଦ୍ଧ ସାହିତ୍ୟରେ କୌଣ୍ଡିନ୍ୟ ପ୍ରତିଷ୍ଠା ଲାଭ କରିଛନ୍ତି । ଏହା ବ୍ୟତୀତ କୌଣ୍ଡିନ୍ୟଙ୍କ ସମ୍ପର୍କରେ ଅନ୍ୟ କୌଣସି ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟର ଉଲ୍ଲେଖ ଦେଖିବାକୁ ମିଳେ ନାହିଁ । କୌଣ୍ଡିନ୍ୟଙ୍କର ଏହା ହିଁ ପୁରୁଷାର୍ଥ ଯେ ସର୍ବ ପ୍ରଥମେ ସେ ଏକାକୀ ବୁଦ୍ଧଦେବଙ୍କର ନବୀନ ଧର୍ମ ମାର୍ଗକୁ ଅଭିନନ୍ଦନ ଜଣାଇଥିଲେ ।

ତାହାପରେ ଭଗବାନ୍ ବୁଦ୍ଧ ବପ୍ପ ଏବଂ ଭଦ୍ଦିୟଙ୍କୁ ନିଜ ତତ୍ତ୍ୱ ବୁଝାଇଥିଲେ ଏବଂ କିଛିଦିନ ପରେ ସେମାନେ ମଧ୍ୟ ତାଙ୍କର ନବୀନ ଧର୍ମମାର୍ଗ ( ତତ୍ତ୍ୱ ) ଉପଲବ୍ଧି କଲେ । ତାହାର କିଛି ସମୟ ପରେ, ମହାନାମ ଓ ଅସ୍ସଜି ମଧ୍ୟ ଏହି ନୂତନ ମାର୍ଗର ତତ୍ତ୍ୱବୋଧ କଲେ । ଏମାନେ ବୁଦ୍ଧଦେବଙ୍କର ଏକନିଷ୍ଠ ଭକ୍ତ ହୋଇ ଯାଇଥିଲେ । ଏ ସବୁ କାର୍ଯ୍ୟରେ କେତେ ସମୟ ବ୍ୟୟିତ ହୋଇ-ଥିଲା, ତାହାର କୌଣସି ଉଲ୍ଲେଖ କେଉଁଠାରେ ମିଳେନାହିଁ ; କିନ୍ତୁ ଏହି ପଞ୍ଚବର୍ଗୀୟ ଭିକ୍ଷୁ ପ୍ରଥମତଃ ବୁଦ୍ଧଦେବଙ୍କର ଶିଷ୍ୟ ହୋଇଥିଲେ ଓ ସେମାନେ 'ଭିକ୍ଷୁସଂଘ' ଗଠନ କରିଥିଲେ । ଏ ସମ୍ପର୍କରେ ସୁତ୍ତ ପିଟକ ଏବଂ ବିନୟ ପିଟକ ଏକମତ ।

## 'ଯଶ' ଓ ତାଙ୍କର ସଙ୍ଗୀ

ଭଗବାନ୍ ବୁଦ୍ଧ ଋଷିପତ୍ତନରେ ପଞ୍ଚବର୍ଗୀୟ ଭିକ୍ଷୁଙ୍କ ସହିତ ଅବସ୍ଥାନ କରୁଥିବାବେଳେ ଅନ୍ୟ ୫୫ ଜଣ ଭିକ୍ଷୁଙ୍କୁ ସେ କିପରି ପାଇଥିଲେ ଏବଂ ଚାତୁର୍ମାସ୍ୟାଯାପନ କରିବା ପରେ ରାଜଗୃହ ପର୍ଯ୍ୟନ୍ତ ଗମନ କରି ଭିକ୍ଷୁସଂଘର କଳେବର କିପରି ବୃଦ୍ଧି କରିଥିଲେ, ମହାବଗ୍ଗରେ ତାହା ବର୍ଣ୍ଣିତ ହୋଇଛି । ତଳେ ତହିଁର ସଂକ୍ଷିପ୍ତ ସାର ପ୍ରଦାନ କରାଯାଉଛି ।

ବାରାଣସୀରେ 'ଯଶ' ନାମକ ଜଣେ ସଙ୍ଗତିସମ୍ପନ୍ନ ଯୁବକ ଥିଲେ । ହଠାତ୍ ଗୃହସ୍ଥାଶ୍ରମ ପ୍ରତି ତାଙ୍କ ମନରେ ବିରକ୍ତି ଜାତ ହେଲା । ଶାନ୍ତିଲାଭର ସ୍ଥାନ ଖୋଜି ଖୋଜି ସେ ଯାଇ ଋଷିପତ୍ତନରେ ଉପସ୍ଥିତ ହେଲେ । ବୁଦ୍ଧଦେବ ତାଙ୍କୁ ଧର୍ମୋପଦେଶ ଦେଇ ସଂଘରେ ପ୍ରବେଶ କରାଇ ଦେଲେ । ଯଶଙ୍କର ପିତାମାତା ତାଙ୍କୁ ଖୋଜି ଖୋଜି ସେଠାରେ ଯାଇ ପହଞ୍ଚିଲେ । ବୁଦ୍ଧଦେବ ସେମାନଙ୍କୁ ମଧ୍ୟ ଧର୍ମ

ଉପଦେଶ ଦେଲେ । ଫଳରେ ସେମାନେ ମଧ୍ୟ ବୁଦ୍ଧଙ୍କର ଉପାସକ ହୋଇଗଲେ ।

ଯଶଙ୍କର ଚାରିଜଣ ସଙ୍ଗୀ ବାରାଣସୀରେ ଥିଲେ । ସେମାନଙ୍କ ନାମ—ବିମଳ, ସୁବାହୁ, ପୂର୍ଣ୍ଣଜି (ପୂର୍ଣ୍ଣଜିତ୍) ଓ ଗବଂପତି (ଗବାଂ ପତି) । 'ଯଶ', ସଂଘରେ ପ୍ରବେଶ କରିଥିବାର ସମ୍ବାଦ ପାଇ ଏମାନେ ମଧ୍ୟ ଋଷିପତ୍ତନ ଯାତ୍ରାକଲେ ଓ ବୁଦ୍ଧଙ୍କ ସଂଘରେ ଭୁକ୍ତ ହେଲେ । ସେ ସମସ୍ତଙ୍କର ୫୦ଜଣ ଯୁବକ ସଙ୍ଗୀ ଥିଲେ । ସେ ସମସ୍ତେ ମଧ୍ୟ ଋଷିପତ୍ତନ ଯାଇ ବୁଦ୍ଧଦେବଙ୍କର ଉପଦେଶ ଶ୍ରବଣ କଲେ ଓ ନିଜ ସଙ୍ଗୀମାନଙ୍କ ପରି ସଂଘରେ ପ୍ରବେଶ କଲେ । ଏହିପରି ୬୦ ଜଣ ଭିକ୍ଷୁଙ୍କର ଗୋଟିଏ ସଂଘ ଋଷିପତ୍ତନରେ ଗଠିତ ହେଲା ।

## ବହୁ ଜନହିତ ନିମନ୍ତେ ଧର୍ମ ପ୍ରଚାର

ଚାତୁର୍ମାସ୍ୟା ଶେଷ ହେବା ପରେ ଭଗବାନ୍ ବୁଦ୍ଧ ନିଜର ଏହି ଭିକ୍ଷୁ ସଂଘକୁ କହିଲେ—"ଗୃହସ୍ଥ ଓ ସ୍ୱର୍ଗ,—ଏ ଉଭୟ ପାଶରୁ ମୁଁ ମୁକ୍ତ ହୋଇ ଯାଇଛି ଓ ଆପଣମାନେ ମଧ୍ୟ ସେହି ପାଶରୁ ମୁକ୍ତ ହୋଇ ଯାଇଛନ୍ତି । ହେ ଭିକ୍ଷୁଗଣ । ଆପଣମାନେ ବର୍ତ୍ତମାନ ବହୁଲୋକଙ୍କର ହିତଲାଗି, ସୁଖଲାଗି, ଲୋକଙ୍କ ଉପରେ ଅନୁକମ୍ପା ପ୍ରଦର୍ଶନ ଲାଗି, ଦେବତା ତଥା ମନୁଷ୍ୟଙ୍କର କଲ୍ୟାଣ ଲାଗି ଧର୍ମୋପଦେଶ ଦେବାରେ ଲାଗି ଯାଆନ୍ତୁ । ଗୋଟିଏ ମାର୍ଗରେ ଦୁଇଜଣ ଯାଆନ୍ତୁ ନାହିଁ । ଆରମ୍ଭରେ କଲ୍ୟାଣ ପ୍ରଦ, ମଧ୍ୟରେ କଲ୍ୟାଣ ପ୍ରଦ ଓ ଶେଷରେ କଲ୍ୟାଣପ୍ରଦ ଏହି ଧର୍ମ ମାର୍ଗର ଉପଦେଶ ଲୋକମାନଙ୍କୁ ଦିଅନ୍ତୁ ।

ଭଗବାନ୍ ବୁଦ୍ଧ ଏହି ଅନୁସାରେ ନିଜର ୬୦ ଜଣ ଭିକ୍ଷୁଙ୍କୁ ଚତୁର୍ଦ୍ଦିଗରେ ପ୍ରେରଣ କଲେ । ସେମାନେ ଅନ୍ୟ ଜୀବକମାନଙ୍କୁ 'ଭଗବାନ'ଙ୍କ ନିକଟକୁ ନେଇଯାନ୍ତି ଓ ସେ ସେମାନଙ୍କୁ ପ୍ରବ୍ରଜ୍ୟା ପ୍ରଦାନକରି ନିଜ ସଙ୍ଘରେ ପ୍ରବେଶ କରାଇ ଦିଅନ୍ତି । ଏହିପରି କାର୍ଯ୍ୟ କ୍ରମ ଦ୍ୱାରା ୬୦ ଜଣ ଭିକ୍ଷୁ ତଥା ତରୁଣ ଶିଷ୍ୟମାନଙ୍କୁ ମଧ୍ୟ କଷ୍ଟ ବୋଧ ହେଲା । ତେଣୁ ବୁଦ୍ଧଦେବ ସେମାନଙ୍କୁ ଆଦେଶ ଦେଲେ ଯେ ସେମାନେ ନିଜେ ଲୋକମାନଙ୍କୁ ପ୍ରବ୍ରଜ୍ୟା ପ୍ରଦାନ କରି ସଙ୍ଘରେ ପ୍ରବେଶ କରାନ୍ତୁ । ତାହାପରେ ସେମାନେ ଉରୁବେଲା ଅଭିମୁଖରେ ଯାତ୍ରା କଲେ ।

## ଭଦ୍ରବର୍ଗୀୟ ଭିକ୍ଷୁ

'ଭଦ୍ର ବର୍ଗୀୟ' ନାମରେ ପରିଚିତ ତିରିଶ ଜଣ ଯୁବକ ନିଜ ନିଜର ସ୍ତ୍ରୀ ସହିତ କ୍ରୀଡ଼ାନିମନ୍ତେ ଗୋଟାଏ ଉଦ୍ୟାନକୁ ଯାଇଥିଲେ । ସେମାନଙ୍କ ମଧ୍ୟରୁ ଜଣେ ଯୁବକଙ୍କର ସ୍ତ୍ରୀ ନଥିଲା । ତେଣୁ ଜଣେ ବେଶ୍ୟାକୁ ତା ସ୍ଥାନରେ ନିଆ ଯାଇଥିଲା । ସମସ୍ତ ଯୁବକ ଓ (ବେଶ୍ୟା ବ୍ୟତୀତ ଅନ୍ୟ) ସ୍ତ୍ରୀମାନେ ଅତ୍ୟନ୍ତ ରତିକ୍ରୀଡ଼ା ସକ୍ତ ହୋଇ, କର୍ତ୍ତବ୍ୟ ଜ୍ଞାନଶୂନ୍ୟ ହୋଇ ପଡ଼ିଲେ । ସେହି ଅବସରରେ ବେଶ୍ୟାଟି ସମସ୍ତ ମୂଲ୍ୟ ବାନ୍ ପଦାର୍ଥ ନେଇ ସେଠାରୁ ଚାଲିଗଲା । ଭଗବାନ୍ ବୁଦ୍ଧ ସେତେବେଳେ କୌଣସି ଏକ ବୃକ୍ଷ ମୂଳରେ ବିଶ୍ରାମ ନେଇଥିଲେ । କିଛି ସମୟପରେ ଯୁବକମାନେ ଯାଇ ତାଙ୍କୁ ପଚାରିଲେ—"କୌଣସି ଯୁବତୀ ଚାଲିଯିବାର ଆପଣ ଦେଖିଛନ୍ତି କି ?"

ଭଗବାନ୍ ବୁଦ୍ଧ କହିଲେ—"ହେ ତରୁଣ ଗୃହସ୍ଥ ଗଣ ! କୌଣସି ତରୁଣୀର ଅନୁସନ୍ଧାନରେ ବୁଲିବା ଓ ଆତ୍ମବୋଧ ଲାଭ କରିବା ଏ ଦୁଇଟି ମଧ୍ୟରୁ ଆପଣ କେଉଁଟିକୁ ଶ୍ରେୟସ୍କର ମନେ

କରୁ ଅଛନ୍ତି ? ବୁଦ୍ଧଙ୍କର ଏହିକଥା ଶୁଣି ସମସ୍ତେ ସେଠାରେ ବସିଗଲେ । ସେମାନେ ବହୁ ମନସ୍ପୂଧରି ତାଙ୍କ ଉପଦେଶ ଶ୍ରବଣକଲେ ଓ ଶେଷରେ ଗୃହସ୍ଥାଶ୍ରମ ତ୍ୟାଗ କରି ଭିକ୍ଷୁସଂଘରେ ଯୋଗ ଦେଲେ ।

## କାଶ୍ୟପ-ଭ୍ରାତା

ସେହି ଉପବନରୁ ଯାଇ ବୁଦ୍ଧଦେବ ଉରୁବେଲାରେ ପହଞ୍ଚିଲେ । ସେଠାରେ ଉରୁବେଲ କାଶ୍ୟପ, ନଦୀ କାଶ୍ୟପ ଓ ଗୟା କାଶ୍ୟପ ନାମକ ତିନିଜଣ ଜଟାଧାରୀ-ଭ୍ରାତା ଯଥାକ୍ରମେ ପାଞ୍ଚଶତ, ତିନିଶତ ଓ ଦୁଇଶତ ଜଟାଧାରୀ ଶିଷ୍ୟଙ୍କ ସହିତ, ଅଗ୍ନିହୋତ୍ର, ଅନୁଷ୍ଠାନ ପୂର୍ବକ ତପସ୍ୟା କରୁଥିଲେ । ସେମାନଙ୍କ ମଧ୍ୟରୁ ଉରୁବେଲଙ୍କ ଆଶ୍ରମରେ ଭଗବାନ୍ ବୁଦ୍ଧ ଅବସ୍ଥାନ କଲେ । ସେ ସେଠାରେ ଅନେକ ଅଦ୍ଭୁତ କାର୍ଯ୍ୟ ଦେଖାଇ ଉରୁବେଲ କାଶ୍ୟପ ତଥା ତାଙ୍କର ପାଞ୍ଚଶତ ଶିଷ୍ୟଙ୍କୁ ନିଜ ସଂଘରେ ଭୁକ୍ତ କରାଇଲେ । ତାହା ପରେ ପରେ ତାଙ୍କର ଅନ୍ୟ ଦୁଇ ଭାଇ ନଦୀ କାଶ୍ୟପ ଓ ଗୟାକାଶ୍ୟପ ତାଙ୍କର ସମସ୍ତ ଶିଷ୍ୟ ମଧ୍ୟ ବୁଦ୍ଧ ଦେବଙ୍କର ଅନୁଗାମୀ ହେଲେ ।

## ବଡ଼ଭିକ୍ଷୁ ସଂଘ ସହିତ ରାଜଗୃହରେ ପ୍ରବେଶ

ଏହି ଏକହଜାର ତିନିଜଣ ଭିକ୍ଷୁଙ୍କୁ ସଙ୍ଗରେ ନେଇ ଭଗବାନ୍ ବୁଦ୍ଧ ରାଜଗୃହରେ ପ୍ରବେଶ ହେଲେ । ସେହି ବିଶାଳକାୟ ଭିକ୍ଷୁସଂଘ ଦେଖି ନାଗରିକମାନଙ୍କ ମଧ୍ୟରେ ଗୁଞ୍ଜନ ଖେଳିଗଲା । ରାଜା ବିମ୍ବିସାର ତଥା ତାଙ୍କର ସମସ୍ତ ସର୍ଦ୍ଦାର ବୁଦ୍ଧଦେବଙ୍କ ଅଭିନନ୍ଦନ ଜଣାଇବା ପାଇଁ ଆସିଗଲେ । ବିମ୍ବିସାର ତାହା ପରଦିନ ନିଜର ନବର ମଧ୍ୟରେ ଭିକ୍ଷାଗ୍ରହଣ କରିବା ପାଇଁ ବୁଦ୍ଧଦେବ ତଥା

ତାଙ୍କର ଶିଷ୍ୟମାନଙ୍କୁ ଆମନ୍ତ୍ରଣ କଲେ । ଭୋଜନାନ୍ତ ଶେଷରେ ସେମାନଙ୍କର ଅବସ୍ଥାନ ନିମନ୍ତେ ରାଜା ନିଜର 'ବେଣୁବନ' ନାମକ ଉଦ୍ୟାନ ପ୍ରଦାନ କଲେ ।

## ସାରିପୁତ୍ର ଓ ମୋଗ୍‌ଗଲ୍ଲାନ୍

ରାଜଗୃହ ନିକଟରେ ସଞ୍ଜୟ ନାମକ ଜଣେ ପ୍ରସିଦ୍ଧ ପ୍ରବ୍ରାଜକ ନିଜର ବହୁ ଶିଷ୍ୟଙ୍କୁ ନେଇ ଅବସ୍ଥାନ କରୁଥିଲେ । ସାରିପୁତ୍ର ଓ ମୋଗ୍‌ଗଲ୍ଲାନ୍ ତାଙ୍କର ଦୁଇଜଣ ପ୍ରଧାନ ଶିଷ୍ୟ । କିନ୍ତୁ ସେ ଦୁହେଁ ନିଜ ଗୁରୁଙ୍କ ସମ୍ପ୍ରଦାୟରେ ବିଶେଷ ଆସ୍ଥାବାନ୍ ନଥିଲେ । ଦୁହେଁ ମିଶି ଏକଥା ନିଶ୍ଚୟ କଲେ ଯେ, ଯଦି କୌଣସି ସତ୍-ଧର୍ମ ପ୍ରବର୍ତ୍ତକ ବ୍ୟକ୍ତି ଦୁହିଁଙ୍କ ମଧ୍ୟରୁ କାହାରି ଆଖିରେ ପଡ଼ନ୍ତି, ତାହାହେଲେ ଜଣେ ଅନ୍ୟଜଣକୁ ସମ୍ବାଦଦେବ ଓ ଦୁହେଁ ତାଙ୍କର ଧର୍ମମାର୍ଗ ଅନୁସରଣ କରିବେ ।

ଦିନେ ଭିକ୍ଷୁ ଅସ୍‌ସଜି ଭିକ୍ଷାଟନ କରୁ କରୁ ରାଜଗୃହରେ ଉପସ୍ଥିତ ହେଲେ । ତାଙ୍କର ପ୍ରଶାନ୍ତ ଓ ଗମ୍ଭୀର ମୁଖ-ସୌନ୍ଦର୍ଯ୍ୟ ଦେଖି ସେ ଜଣେ ନିର୍ବାଣମାର୍ଗର ପଥିକ-ପରିବ୍ରାଜକ ଅବଶ୍ୟ ହୋଇଥିବେ ବୋଲି ସାରିପୁତ୍ର ସ୍ଥିର କଲେ । ତାଙ୍କ ସହିତ ଆଳାପଆଲୋଚନା କଲାପରେ ସେ ଜାଣିପାରିଲେ ଯେ, ସେ ନିଜେ ହେଉଛନ୍ତି ବୁଦ୍ଧଦେବଙ୍କର ଶିଷ୍ୟ ଓ ବୁଦ୍ଧଦେବଙ୍କର ଧର୍ମମାର୍ଗ ହିଁ ପ୍ରକୃତ ଧର୍ମମାର୍ଗ । ଏହି ସମ୍ବାଦ ସେ ମୋଗ୍‌ଗଲ୍ଲାନ୍‌ଙ୍କୁ ଦେଲେ ଓ ଦୁହେଁ, ସଞ୍ଜୟଙ୍କର ଅନୁଗାମୀ ଅଢ଼େଇଶହ ପରିବ୍ରାଜକଙ୍କୁ ସଙ୍ଗରେ ନେଇ ବୁଦ୍ଧଙ୍କ ନିକଟକୁ ଗଲେ ଓ ଭିକ୍ଷୁ ସଂଘରେ ପ୍ରବେଶ କଲେ ।

## ଶୀତହାୟକ ପରୀକ୍ଷା

କୌଣସି ନା କୌଣସି ପ୍ରକାରେ ୫୪ ଜଣ ତରୁଣ, ଭିକ୍ଷୁ ହୋଇଯିବା କଥାଠାରୁ ଆରମ୍ଭ କରି ଏପର୍ଯ୍ୟନ୍ତ କୁହାଯାଇଥିବା

ସମସ୍ତ ବିଷୟ ମହାବଗ୍‌ଗର ବିବରଣୀରୁ ହିଁ ଗ୍ରହଣ କରାଯାଇଛି (୧) ବର୍ତ୍ତମାନ ଐତିହାସିକ କଷଟି ପଥରରେ ଏ ସମସ୍ତ କଥା ପରୀକ୍ଷା କରିବା ଉଚିତ । ବୋଧିସତ୍ତ୍ୱ ଉରୁବେଲାରେ ତପଶ୍ଚରଣ କଲେ ଏବଂ ତତ୍ତ୍ୱବୋଧ ଲାଭ କଲେ । ଏଥିରୁ ଜଣାଯାଉଛି, ଭଗବାନ୍ ବୁଦ୍ଧଙ୍କର ଉରୁବେଲା ପ୍ରଦେଶ ସଂପୂର୍ଣ୍ଣ ପରିଚିତ ଥିଲା । ଉରୁବେଲ କାଶ୍ୟପ ଏବଂ ତାଙ୍କର ସାନ ଭାଇ ଦୁଇଜଣ, ଏକହଜାର ଜଟାଧାରୀ ଶିଷ୍ୟଙ୍କ ସହିତ ସେଠାରେ ରହୁଥିଲେ ବୋଲି କୁହାଯାଇଛି । ଯଦି ବୁଦ୍ଧଦେବ ଅଦ୍‌ଭୁତ କାର୍ଯ୍ୟମାନ ଦେଖାଇ ସେମାନଙ୍କୁ ନିଜ ଶିଷ୍ୟ କରିବାକୁ ଚାହୁଁଥିଲେ, ତାହାହେଲେ ସେମାନଙ୍କୁ ଛାଡ଼ି କାଶୀ ପର୍ଯ୍ୟନ୍ତ ଚାଲିଗଲେ କାହିଁକି ? "ପଞ୍ଚବର୍ଗୀୟ" ଛଡ଼ା ତାଙ୍କ ଧର୍ମକୁ ଆଉ କେହି ବୁଝୁ ନଥିଲେ ବୋଲି କଣ ଧରି ନେବାକୁ ହେବ ? ତାହାହେଲେ କଣ ଆମେ ବୁଝିବା ଯେ, ସେ ସମୟରେ ବୁଦ୍ଧଦେବଙ୍କର ଅଦ୍‌ଭୁତ କଥା ଦେଖାଇବାର ଶକ୍ତି ନଥିଲା ଓ ପଞ୍ଚବର୍ଗୀୟ ଭିକ୍ଷୁଙ୍କୁ ଉପଦେଶ ଦେବାପରେ ସେ ସେହି ଶକ୍ତି ଲାଭ କଲେ ?

ଋଷିପତ୍ତନରେ ପଞ୍ଚବର୍ଗୀୟ ଭିକ୍ଷୁଙ୍କ ଛଡ଼ା, ଅନ୍ୟ ଯେଉଁ ୫୫ ଜଣ ଭିକ୍ଷୁ, ସଂଘରେ ଯୋଗଦେଇଥିଲେ, ସେମାନଙ୍କ ମଧ୍ୟରୁ ୫ ଜଣଙ୍କ ନାମ ମହାବଗ୍‌ଗରେ ଉଲ୍ଲିଖିତ ହୋଇଛି । ଅନ୍ୟ ୫୦ ଜଣଙ୍କ ମଧ୍ୟରୁ ଜଣକର ସୁଦ୍ଧା ନାମ ଦେଖିବାକୁ ମିଳେନାହିଁ । ଏଥିରୁ ପ୍ରତୀତ ହେଉଛି ଯେ, ଭିକ୍ଷୁମାନଙ୍କର ସଂଖ୍ୟା ବଢ଼ାଇବା ପାଇଁ ତହିଁରେ ୫୦ ଯୋଗକରାଯାଇଛି ମାତ୍ର ।

---

(୧) 'ବୁଦ୍ଧ ଲୀଳା ସାର ସଂଗ୍ରହ' ପୃଷ୍ଠା ୧୭୦-୧୭୫ଓ "ବୌଦ୍ଧ ସଂଘର ପରିଚୟ" ପୃ ୭-୮ ଦ୍ରଷ୍ଟବ୍ୟ ।

ଯେଉଁ ତିରିଶ ଜଣ ଯୁବକ, ମାର୍ଗରେ ସସ୍ତ୍ରୀକ କ୍ରୀଡ଼ାରତ ଥିଲେ, ଭଗବାନ୍ ବୁଦ୍ଧ ସେମାନଙ୍କୁ ଯେ କଥାକଥାରେ ଭିକ୍ଷୁକରି ନେଲେ, ଏକଥା ସମ୍ଭବପର ବୋଧହେଉନାହିଁ । ଯଦି ସେମାନଙ୍କୁ ସେପରି କରି ହେଲା, ତାହାହେଲେ ସେ ଉରୁବେଳାରୁ କାଶୀ ଯାତ୍ରା କରିବାର ଶ୍ରମ ସ୍ୱୀକାର କଲେ କାହିଁକି ? ତେବେ କଣ ଉରୁବେଳା ନିକଟରେ କ୍ରୀଡ଼ା ରତ ଅନ୍ୟଯୁବକ ତାଙ୍କୁ ମିଳୁ ନଥିଲେ ? ଏହି ତିରିଶ ଜଣ ଯୁବକଙ୍କ କଥା ଯେ ମଝିରେ କାହିଁକି ଭର୍ତ୍ତି କରି ଦିଆଯାଇଛି, ଜାଣିହେଉନାହିଁ ।

ଭଗବାନ୍ ବୁଦ୍ଧ ଯେତେବେଳେ ଏକ ସହସ୍ର ତିନିଜଣ ଜଟାଧାରୀ ଭିକ୍ଷୁଙ୍କ ସହିତ ରାଜଗୃହରେ ପହଞ୍ଚିଲେ, ସେତେବେଳେ ସେଠାରେ ଶୃଙ୍ଖଳା ଖେଳଯାଇଥିଲା । ଅଥଚ ବୁଦ୍ଧଙ୍କ ସମ୍ପର୍କରେ, ସାରିପୁତ୍ର କୌଣସି ସମ୍ବାଦ ପାଇ ନଥିଲେ । ଏ ସବୁ କଥା ସମ୍ଭବପର ହେଲା ବା କପରି ? ଅସ୍ସଜି ଥିଲେ ପଞ୍ଚବର୍ଗୀୟ-ମାନଙ୍କ ମଧ୍ୟରୁ ଅନ୍ୟତମ । ଅନ୍ୟ ପଞ୍ଚବର୍ଗୀୟଙ୍କ ସହିତ, କାଶୀର ନିକଟବର୍ତ୍ତୀ ଅଞ୍ଚଳରେ ଧର୍ମୋପଦେଶ ଦେବା ନିମନ୍ତେ ବୁଦ୍ଧଦେବ ତାଙ୍କୁ ପଠାଇଦେଇ ଉରୁବେଳ ଯାତ୍ରାକଲେ ଓ ସେଠାରୁ ରାଜଗୃହ ଗମନ କଲେ । ଏହା ଯଦି ଠିକ୍, ତାହାହେଲେ ଅସ୍ସଜି ହଠାତ୍ କପରି ରାଜଗୃହରେ ପହଞ୍ଚିଗଲେ ? ସାରକଥା ହେଉଛି ପଞ୍ଚବର୍ଗୀୟ, ଯଶ ଓ ତାଙ୍କର ଚାରିଜଣ ମିତ୍ର, ଭିକ୍ଷୁସଂଘରେ ଯୋଗଦାନ କଲାପରେ ଭଗବାନ୍ ବୁଦ୍ଧ କାଶୀରୁ ରାଜଗୃହ ପର୍ଯ୍ୟନ୍ତ ଯାତ୍ରାକରିଥିଲେ । ମହାବଗ୍‌ଗରେ ଯେଉଁ ବିବରଣୀ ମିଳେ, ତାହା ପ୍ରାୟ କିମ୍ବଦନ୍ତୀ ମୂଳକ ବୋଲି କହିଲେ ଚଳେ ।

# ଲଳିତ ବିସ୍ତରରେ ପ୍ରଦତ୍ତସୂଚୀ

ଯଦ୍ୟପି ପ୍ରକୃତ କଥା ନିରୂପଣ କରିବା କଷ୍ଟକର, ତଥାପି ଲଳିତବିସ୍ତରର ପ୍ରାରମ୍ଭରେ ଭିକ୍ଷୁମାନଙ୍କର ଯେଉଁ ସୂଚୀ ପ୍ରଦତ୍ତ ହୋଇଅଛି, ତହିଁରୁ ଭିକ୍ଷୁ ସଂଘ ସମ୍ପର୍କରେ କେତେକ ପରିମାଣରେ ପ୍ରାଥମିକ ଜ୍ଞାନ ଜନ୍ମେ । ତଳେ ସେହି ସୂଚୀ ଦିଆଗଲା—

(୧) ଜ୍ଞାନ କୌଣ୍ଡିନ୍ୟ, (୨) ଅଶ୍ୱଜିତ୍ (ଅସ୍ସଜି), (୩) ବାଷ୍ପ (ବପ୍ପ), (୪) ମହାନାମ, (୫) ଭଦ୍ରିକ (ଭଦ୍ଦିୟ), (୬) ଯଶୋଦେବ (ଯସ), (୭) ବିମଳ, (୮) ସୁବାହୁ, (୯) ପୂର୍ଣ୍ଣ (ପୁଣ୍ଣଜି) (୧୦) ଗବାଂପତି (ଗବଂପତି), (୧୧) ଉରୁବେଲ କାଶ୍ୟପ (ଉରୁବେଲ କସ୍ସପ), (୧୨) ନଦୀ କାଶ୍ୟପ, (୧୩) ଗୟା କାଶ୍ୟପ (୧୪) ଶାରିପୁତ୍ର (ସାରିପୁତ୍ତ), (୧୫) ମହା ମୌଦ୍ଗଲ୍ୟାୟନ (ମହା ମୋଗ୍ଗଲ୍ଲାନ), (୧୬) ମହାକାଶ୍ୟପ (ମହାକସ୍ସପ), (୧୭) ମହା କାତ୍ୟାୟନ (ମହାକଚ୍ଚାନ), (୧୮) କଫିଲ (?), (୧୯) କୌଣ୍ଡିନ୍ୟ (?), (୨୦) ଚୁନନ୍ଦ (ଚୁନ୍ଦ), (୨୧) ପୂର୍ଣ୍ଣ ମୈତ୍ରାୟଣୀ ପୁତ୍ର (ପୁଣ୍ଣମନ୍ତାଣି ପୁତ୍ତ), (୨୨) ଅନିରୁଦ୍ଧ (ଅନୁରୁଦ୍ଧ), (୨୩) ନନ୍ଦିକ (ନନ୍ଦକ), (୨୪) କସ୍ଫିଲ (କପ୍ପିନ), (୨୫) ସୁଭୂତି, (୨୬) ରେବତ, (୨୭) ଖଦିରବନିକ, (୨୮) ଅମୋଘରାଜ (ମୋଘରାଜ), (୨୯) ମହାପାରଣୀକ (?), (୩୦) ବକ୍କୁଲ, (୩୧) ନନ୍ଦ, (୩୨) ରାହୁଲ, (୩୩) ସ୍ୱାଗତ (ସାଗତ), (୩୪) ଆନନ୍ଦ ।

ଯଦି ମହାବଗ୍ଗରେ ନାମ ଉଲ୍ଲିଖିତ ହୋଇନଥିବା ଭିକ୍ଷୁମାନଙ୍କ ସଂଖ୍ୟା ଛାଡ଼ିଦିଆଯାଏ, ତାହାହେଲେ ଏଥିର ୧୫ ଜଣ ଭିକ୍ଷୁଙ୍କ ବିବରଣୀ ତାହା ସହିତ ମିଳିଯାଉଛି । ପଞ୍ଚବର୍ଗୀୟଙ୍କ ଛଡ଼ା

ବୁଦ୍ଧଦେବ, ଯଶ ଏବଂ ତାଙ୍କର ଚାରିଜଣ ବନ୍ଧୁଙ୍କୁ ପାଇଥିଲେ ବୋଲି ଅନୁମାନ କରାଯାଇପାରେ । ସେହି ଦଶଜଣଙ୍କୁ ନେଇ ସେ ଉରୁବେଲା ଯାତ୍ରା କରିଥିଲେ ଓ ସେଠାରେ ତିନିଜଣ 'କାଶ୍ୟପ' ସଂଘରେ ଯୋଗ ଦେଇଥିଲେ । ପୁଣି ଏହି ତେରଜଣ ଶିଷ୍ୟଙ୍କ ସହିତ, ସେ ରାଜଗୃହରେ ଉପସ୍ଥିତ ହେଲେ । ସେଠାରେ ସାରିପୁତ୍ର ଓ ମୋଗ୍‌ଗଲ୍ଲାନ, 'ସଞ୍ଜୟ'ଙ୍କର ସଂପ୍ରଦାୟ ତ୍ୟାଗକରି ତାଙ୍କର ଶିଷ୍ୟ ହେଲେ । ଏହି ଦୁଇଜଣଙ୍କର ଆଗମନ ଦ୍ୱାରା, ଭିକ୍ଷୁସଂଘର ମହତ୍ତ୍ୱ ବଢ଼ିଗଲା; କାରଣ ରାଜଗୃହରେ ସେମାନେ ବିଶେଷ ପ୍ରତିଷ୍ଠା ଅର୍ଜନ କରିଥିଲେ । ବୁଦ୍ଧଙ୍କ ଦର୍ଶନ ତତ୍ତ୍ୱର ବିଶ୍ଳେଷଣ ଏ ଦୁହେଁ କିପରି କରିଛନ୍ତି, ତାହା ସୁତ୍ତ ଏବଂ ବିନୟ ପିଟକରୁ ସ୍ପଷ୍ଟ ଜଣାଯାଏ । ପୁଣି ପ୍ରାୟ ସମଗ୍ର ଅଭିଧମ୍ମ ପିଟକ, ସାରିପୁତ୍ରଙ୍କ ଦ୍ୱାରା ଲିଖିତ ବୋଲି ଗୃହୀତ ହୋଇଥାଏ ।

ଏହାପରେ ଯେଉଁ ୧୯ ଜଣ ଭିକ୍ଷୁ, ସଂଘରେ ଯୋଗଦେଲେ, ସେମାନଙ୍କର ପରଂପରା ବା ଐତିହାସିକ ସଂକେତ ମିଳୁନାହିଁ । ଚୁଲ୍ଲ୍‌ବଗ୍‌ଗ ( ୭ମ ଭାଗ ) ରେ କୁହାଯାଇଛି ଯେ, ଆନନ୍ଦ ଓ ଅନୁରୁଦ୍ଧ ଏକ ସଙ୍ଗରେ ଭିକ୍ଷୁ ହୋଇଥିଲେ । କିନ୍ତୁ ପ୍ରଦତ୍ତ ସୂଚୀରେ ଅନୁରୁଦ୍ଧଙ୍କ ସଂଖ୍ୟା ହେଉଛି ଦ୍ୱାବିଂଶତି ଓ ଆନନ୍ଦଙ୍କ ନାମ ସର୍ବଶେଷରେ ଉଲ୍ଲିଖିତ । ଏ ଦୁହିଁଙ୍କ ସହିତ ଉପାଲି (ଭଣ୍ଡାରି) ପ୍ରବ୍ରଜ୍ୟା ଗ୍ରହଣ କରିଥିଲା ଓ ପରେ ସେ ବିନୟଧର ହୋଇ ଯାଇଥିଲା । ତଥାପି ଉପରର ସୂଚୀରେ ତାହାର ନାମ ମିଳୁନାହିଁ । ଏଠାରେ କୁହାଯାଇଥିବା ପ୍ରାୟ ସମସ୍ତ ଭିକ୍ଷୁଙ୍କ ଜୀବନୀ, "ବୌଦ୍ଧ ସଂଘାଚା ପରିଚୟ" (୧) ନାମକ ପୁସ୍ତକର ତୃତୀୟ ଭାଗରେ ପ୍ରଦାନ କରାଯାଇଛି । ଜିଜ୍ଞାସୁ ପାଠକମାନେ ତାହା ପଢ଼ିପାରନ୍ତି ।

(୧) ମରାଠୀ ଗ୍ରନ୍ଥ ।

## ଭିକ୍ଷୁମାନଙ୍କର ସଂଖ୍ୟା

ବର୍ତ୍ତମାନ ଏହା ସଂକ୍ଷେପରେ ବିଚାର୍ଯ୍ୟ ଯେ, ରାଜଗୃହ ପର୍ଯ୍ୟନ୍ତ ଯିବାବେଳକୁ ବୁଦ୍ଧଦେବ କେଉଁ ୧୫ ରୁ ଅଧିକ ସଂଖ୍ୟକ ଭିକ୍ଷୁ ପାଇଥିଲେ ? ବାରାଣସୀରେ ୬୦, ଉରୁବେଲା ଯିବା ମାର୍ଗରେ ୩୦, ଉରୁବେଲାରେ ୧୦୦୩—ଏପରି ଭାବରେ ବୁଦ୍ଧଦେବ ସର୍ବମୋଟ ୧୦୯୩ ଭିକ୍ଷୁଙ୍କ ସହିତ ବୁଦ୍ଧଦେବ ରାଜଗୃହରେ ପ୍ରବେଶ କରିଥିଲେ। ସେଠାରେ ସାରିପୁତ୍ର ଓ ମୋଗ୍‌ଗଲ୍ଲାନଙ୍କ ସହିତ, ପରିବ୍ରାଜକ ସଂଜୟଙ୍କର ୨୫୦ ଶିଷ୍ୟ ତାଙ୍କ ସଂଘରେ ଯୋଗଦେଇଥିଲେ ଅର୍ଥାତ୍ ସେତେବେଳେ ବୌଦ୍ଧ ଭିକ୍ଷୁଙ୍କର ସଂଖ୍ୟା ହୋଇଗଲା ୧୩୪୫ । କିନ୍ତୁ ଏହି ବିରାଟ ଭିକ୍ଷୁ ସଂଘଥିବାର ପ୍ରମାଣ ସୁତ୍ତପିଟକର କୌଣସି ସ୍ଥଳରେ ମିଳେନାହିଁ । ସାମଞ୍ଞଫଳସୁତ୍ତରେ କୁହାଯାଇଛି ଯେ, ପରିନିର୍ବାଣର ବର୍ଷେ ଦୁଇବର୍ଷ ପୂର୍ବରୁ ଭଗବାନ୍ ବୁଦ୍ଧ ଯେତେବେଳେ ରାଜଗୃହ ଯାଇଥିଲେ, ସେତେବେଳେ ତାଙ୍କ ସଙ୍ଗରେ ୧୨୫୦ ଜଣ ଭିକ୍ଷୁଥିଲେ । କିନ୍ତୁ ଦୀଘନିକାୟର ଅନ୍ୟ ଆଠୋଟି ସୁତ୍ତରେ ଭିକ୍ଷୁମାନଙ୍କ ସଂଖ୍ୟା ୫୦୦ ବୋଲି କୁହାଯାଇଛି । ମନେହୁଏ, ବୁଦ୍ଧଦେବଙ୍କର ଅନ୍ତିମ ଯାତ୍ରାରେ ମଧ୍ୟ ତାଙ୍କ ସହିତ ୫୦୦ ଭିକ୍ଷୁଥିଲେ । ତାଙ୍କର ପରିନିର୍ବାଣ ପରେ ଯେତେବେଳେ ଭିକ୍ଷୁମାନଙ୍କର ପ୍ରଥମ ଅଧିବେଶନ ରାଜଗୃହରେ ଅନୁଷ୍ଠିତ ହୋଇଥିଲା, ତହିଁରେ ମଧ୍ୟ ୫୦୦ ଭିକ୍ଷୁ ଯୋଗ ଦେଇଥିଲେ । ସୁତରାଂ ପରିନିର୍ବାଣ ପର୍ଯ୍ୟନ୍ତ ଭିକ୍ଷୁମାନଙ୍କର ସଂଖ୍ୟା ୫୦୦ରୁ ଅଧିକ ନଥିଲା ବୋଲି ଅନୁମାନ କରା ଯାଇପାରେ ।

ବୁଦ୍ଧଦେବଙ୍କର ପରିନିର୍ବାଣପରେ କୌଣସି ପ୍ରକାରେ ଏହି ସଂଖ୍ୟାକୁ ବଢ଼ାଇକରି କହିବାର ଉଦ୍ୟମ ଆରମ୍ଭ ହେଲା ।

ଲଳିତବିସ୍ତରର ମୂଳରେ, ଶ୍ରାବସ୍ତିରେ ଭଗବାନ୍ ବୁଦ୍ଧଙ୍କ ସଙ୍ଗେ ୧୨୦୦୦ ଭିକ୍ଷୁ ଏବଂ ୩୨୦୦୦ ବୋଧିସତ୍ତ୍ୱ ଥିଲେ ବୋଲି କୁହାଯାଇଛି । ନିଜ ସମ୍ପ୍ରଦାୟର ଗୌରବ ବୃଦ୍ଧି ନିମନ୍ତେ ତତ୍କାଳୀନ ଭିକ୍ଷୁମାନେ ନିଜର ପୂର୍ବକାଳୀନ ଭିକ୍ଷୁମାନଙ୍କର ସଂଖ୍ୟା ବଢ଼ାଇକରି କହିବାକୁ ଆରମ୍ଭ କଲେ । ପୁଣି ମହାଯାନ ମାର୍ଗର ଗ୍ରନ୍ଥକାରମାନେ ନିଜର ଇଚ୍ଛାନୁସାରେ ବୋଧିସତ୍ତ୍ୱମାନଙ୍କର ସଂଖ୍ୟା ବଢ଼ାଇକରି ଲେଖିଲେ । ବୌଦ୍ଧଧର୍ମର ଅବନତିର ଏହା ପ୍ରଧାନ କାରଣ । ନିଜ ଧର୍ମ ଓ ସଂଘର ମହତ୍ତ୍ୱ ବଢ଼ାଇବା ଲକ୍ଷ୍ୟରେ ବୌଦ୍ଧଭିକ୍ଷୁଗଣ ଏକାନ୍ତ ମିଥ୍ୟାପୂର୍ଣ୍ଣ ଗଳ୍ପମାନ ଯୋଡ଼ିଦେଇଲେ । ବ୍ରାହ୍ମଣମାନେ ମଧ୍ୟ ସେମାନଙ୍କ ଠାରୁ ବଳି ଅଦ୍ଭୁତ କଥାମାନ ସୃଷ୍ଟି କରି ସେମାନଙ୍କୁ ପରାସ୍ତ କଲେ ।

## ଛ'ଟି ପ୍ରସିଦ୍ଧ ଶ୍ରମଣ ସଂଘ

ବୁଦ୍ଧଦେବଙ୍କ ସମୟରେ ତାଙ୍କ ସଂଘ ଅପେକ୍ଷା ବିଶାଳକାୟ ଓ ପ୍ରସିଦ୍ଧ ଛ'ଟି ଶ୍ରମଣ ସଂଘ ଥିଲା । ସେହି ସଂଘଗୁଡ଼ିକର ନାୟକମାନଙ୍କର ନାମ, ଯଥାକ୍ରମେ, ହେଉଛି— ପୂରଣ କାସ୍ସପ, ମକ୍ଖଲି ଗୋସାଲ, ଅଜିତକେସକମ୍ବଲ, ପକୁଧ କଚ୍ଚାୟନ, ସଞ୍ଜୟ ବେଲଟ୍ଠିପୁତ୍ତ ଓ ନିଗଣ୍ଠନାଥପୁତ୍ତ । ସମାଜରେ ଏମାନଙ୍କର ବିଶେଷ ପ୍ରତିପତ୍ତି ଥିଲା । ମଜ୍ଝିମ ନିକାୟର ଚୂଳ ସାରୋପମସୁତ୍ତରେ ଏ ସମ୍ପର୍କରେ କୁହାଯାଇଛି :—

"ଯେ ଟ୍ଟମେ ଭୋ ଗୌତମ ସମଣ ବ୍ରାହ୍ମଣା ସଂଘିନୋ ଗଣିନୋ ଗଣା ଚରିୟା ଞାତା ଯସସ୍ସିନୋ ତିତ୍ଥକାର ସାଧୁ ସଂମତା ବହୁଜନସ୍ସ, ସେୟ୍ୟଥୀଦଂ ପୂରଣୋ କସ୍ସପୋ, ମକ୍ଖଲି ଗୋସାଲୋ,

ଅଜତୋ କେସ‌ଂକମ୍ବଲୋ, ପକୁଧୋକଚ୍ଚାୟନୋ ସଞ୍ଜୟୋ ବେଲଟ୍‌ଠ-ପୁତ୍ତୋ ନିଗଣ୍ଠୋନାଥ ପୁତ୍ତୋ ।"

ଅର୍ଥାତ୍ ( ପିଙ୍ଗଳ କୌତ୍ସ ବୁଦ୍ଧଦେବଙ୍କୁ କହୁଛନ୍ତି ) 'ହେ ଗୌତମ ! ଏ ଯେଉଁ ସଂଘୀ, ଗଣୀ, ଗଣାଚାର୍ଯ୍ୟ, ପ୍ରସିଦ୍ଧ, ଯଶସ୍ୱୀ, ତୀର୍ଥଙ୍କର ଓ ବହୁଜନ ପୂଜିତ ( ଛଅ ଜଣ ), ଏମାନେ କିଏ ? ପୂରଣକସ୍‌ସପ, ମକ୍‌ଖଲି ଗୋସାଲ, ଅଜିତ କେସକମ୍ବଲ, ପକୁଧ-କଚ୍ଚାୟନ, ସଂଜୟବେଲଟ୍‌ଠ ପୁତ୍ତ ଓ ନିଗଣ୍ଠ ନାଥପୁତ୍ତ ।

## ବୌଦ୍ଧ ସଂଘର କର୍ତ୍ତବ୍ୟ ନିଷ୍ଠା

ଏହି ଛଅ ଜଣ ଆଚାର୍ଯ୍ୟ ବୟସରେ ବୁଦ୍ଧଦେବଙ୍କଠାରୁ ବଡ଼ଥିଲେ ଏବଂ ଏମାନଙ୍କର ଭିକ୍ଷୁସଂଖ୍ୟା ମଧ୍ଯ ଖୁବ୍ ବେଶୀ ଥିଲି । ଏହି ଆଚାର୍ଯ୍ୟମାନଙ୍କ ମଧ୍ୟରେ ବୁଦ୍ଧଦେବ ସମସ୍ତଙ୍କଠାରୁ ସାନ ଏବଂ ତାଙ୍କର ଭିକ୍ଷୁ ସଂଘ ମଧ୍ଯ ଶ୍ରେଷ୍ଠ ଥିଲି । ତଥାପି ଏହି ଶ୍ରେଷ୍ଠ ଓ ନୂତନ ଭିକ୍ଷୁସଂଘ, ସବୁଠାରୁ ବିଶାଳ କାୟ ହୋଇଗଲା; ପୁଣି କେବଳ ଭାରତରେ ନୁହେ, ସମଗ୍ର ଏସିଆ ମହାଦେଶରେ ସ୍ୱପ୍ରଭାବ ବିସ୍ତାର କଲା । ଏହାର କାରଣ କଣ ?

ଏଥିର ଉତ୍ତର ଏହା ହୋଇପାରେ ଯେ, ଯଦ୍ୟପି ଉକ୍ତ ଛ' ଗୋଟି ଶ୍ରମଣସଂଘ ସଂଖ୍ୟା ଗରିଷ୍ଠ ଥିଲା, ତଥାପି ସଂଘଗୁଡ଼ିକ ଜନସାଧାରଣଙ୍କ ବିଷୟରେ ଚିନ୍ତା କରୁନଥିଲି । ତପଶ୍ଚର୍ଯ୍ୟାରୁ ଆରମ୍ଭକରି ମୋକ୍ଷ ପ୍ରାପ୍ତି ପର୍ଯ୍ୟନ୍ତ ଥିଲି ଅଧିକାଂଶଙ୍କର ଧ୍ୟେୟ । ସେହି ସବୁ ସଂଘର ଭିକ୍ଷୁମାନେ ଗ୍ରାମ ତଥା ନଗରମାନଙ୍କୁ ଯାଇ ଲୋକଙ୍କଠାରୁ ଭିକ୍ଷାଗ୍ରହଣ କରୁଥିଲେ ଓ ସମୟ ସମୟରେ ନିଜ ସଂପ୍ରଦାୟର ତତ୍ତ୍ୱଜ୍ଞାନ ଉପଦେଶ ଦେଉଥିଲେ । ତଥାପି

ଗୃହସ୍ଥମାନଙ୍କର ହିତ ଓ ସୁଖ ନିମନ୍ତେ ସେମାନେ ବିଶେଷ ପ୍ରଯତ୍ନଶୀଳ ନଥିଲେ ।

ଅନ୍ୟ ପକ୍ଷରେ, ବୌଦ୍ଧସଂଘର କାର୍ଯ୍ୟଥିଲା ଏହାର ଠିକ୍ ବିପରୀତ । ଆଗରୁ କୁହାଯାଇଛି, ବୁଦ୍ଧ ଉପଦେଶ ଦେଉଥିଲେ— "ଲୋକମାନଙ୍କର ହିତ ତଥା ସୁଖ ନିମନ୍ତେ ଆପଣମାନେ ଚତୁର୍ଦ୍ଦିଗରେ ଯାଆନ୍ତୁ । ଗୋଟିଏ ମାର୍ଗରେ ଦୁଇଜଣ ଯାଆନ୍ତୁ ନାହିଁ ।" ଏହି ଉପଦେଶ, 'ମହାବଗ୍‌ଗ' ଏବଂ 'ମାରସଂଯୁତ୍ତ'ରେ ଓ ଏହି ଅର୍ଥ ମୂଳକ ଉପଦେଶ, ସୁତ୍ତପିଟକର ଅନେକ ସ୍ଥଳରେ ଦେଖିବାକୁ ମିଳେ । ଭଗବାନ୍ ବୁଦ୍ଧଙ୍କର ଏହି ଉପଦେଶ ଅନୁଯାୟୀ ଆଚରଣ କରିବା ହେତୁ, ତାଙ୍କ ଭିକ୍ଷୁସଂଘ ବହୁଜନଙ୍କର ପ୍ରିୟ ଓ ମାନାସ୍ପଦ ହୋଇପାରିଥିଲା ଏବଂ ସବୁଲୋକଙ୍କ ଉପରେ ସେହି ସଂଘର ପ୍ରଭାବ ପଡ଼ୁଥିଲା । ଚତୁର୍ଥ ଅଧ୍ୟାୟରେ କୁହଯାଇଛି ଯେ, ପରସ୍ପର ମଧ୍ୟରେ ବାଦବିବାଦ କରୁଥିବା ଲୋକଙ୍କୁ ଦେଖି ବୋଧିସତ୍ତ୍ୱଙ୍କର ବୈରାଗ୍ୟ ଜନ୍ମିଥିଲା । ସେହି କଳହକୁ ରାଜଶକ୍ତି ସାହାଯ୍ୟରେ ଦମନ କରିବା ସମ୍ଭବପର ନଥିଲା । ଯେ ପର୍ଯ୍ୟନ୍ତ ଲୋକଙ୍କ ମନରେ ହିଂସାତ୍ମକ ବୁଦ୍ଧିଥିବ, ସେପର୍ଯ୍ୟନ୍ତ କଳହର ଅବସାନ ହେବା ସମ୍ଭବପର ନୁହେ । ଅତଏବ ରାଜଶକ୍ତିରୁ ନିବୃତ୍ତ ହୋଇ ଜନସାଧାରଣଙ୍କର ମୁକ୍ତିମାର୍ଗ ଅନୁସନ୍ଧାନ କରିବାକୁ ବୋଧିସତ୍ତ୍ୱ ପ୍ରବୃତ୍ତ ହେଲେ । ୭ ବର୍ଷ ବ୍ୟାପୀ ତପଶ୍ଚରଣର ନାନା ଅନୁଭୂତି ପରେ, ଗତ ଅଧ୍ୟାୟରେ କଥିତ ହୋଇଥିବା ପ୍ରକାରେ, ସେ "ମଧ୍ୟମ ମାର୍ଗ" ଲାଭକଲେ । ତାପରେ ଜନସମାଜରେ ତାହା ପ୍ରଚାର କରିବା ପାଇଁ ସେ ସ୍ଥିର କଲେ । ସେଥି ନିମନ୍ତେ ସେ ସଂଘ ସ୍ଥାପନ କଲେ । ତେଣୁ ଅନ୍ୟଶ୍ରମଣସଂଘ ଅପେକ୍ଷା, ବୁଦ୍ଧ-ସଂଘର ଶ୍ରମଣମାନେ ଜନସାଧାରଣଙ୍କର ହିତ ଓ ସୁଖପାଇଁ ବିଶେଷ ଚିନ୍ତିତ ଥିବାରେ ଆଶ୍ଚର୍ଯ୍ୟ ହେବାର କାରଣ ନାହିଁ ।

# ଆଧ୍ୟାତ୍ମିକ 'କୃଷି'ର ଆବଶ୍ୟକତା

ସମାଜରେ କୃଷି, ବାଣିଜ୍ୟ ଓ ବ୍ୟବସାୟ ଚାଲିଥାଏ ; କିନ୍ତୁ ଲୋକଙ୍କ ମଧ୍ୟରେ ଯଦି ସଙ୍ଗଠନ ନ ରହେ, ତାହାହେଲେ କୌଣସି ଲାଭ ହୁଏନାହିଁ । ଜଣେ କରିଥିବା ଫସଲ ଯଦି ଅନ୍ୟ ଜଣେ କାଟି ନିଏ, ବେପାରୀର ଧନ ଯଦି ଚୋର ନେଇଯାଏ ଓ ଏହିପରି ଅବ୍ୟବସ୍ଥା ଯଦି ସମାଜରେ ଲାଗିରହେ ତେବେ ପ୍ରତ୍ୟେକ ବ୍ୟକ୍ତିକୁ ଘୋର କ୍ଷତି ସହିବାକୁ ପଡ଼େ । ଲୋକଙ୍କ ମଧ୍ୟରେ, ଶସ୍ତ୍ର ବଳରେ ହୁଏତ ଏକତା ସ୍ଥାପନ କରାଯାଇପାରେ ; କିନ୍ତୁ ତାହା ଦୀର୍ଘକାଳ ସ୍ଥାୟୀ ହୋଇ ରହିବ ନାହିଁ । ପରସ୍ପରର ସୌଜନ୍ୟ ଓ ତ୍ୟାଗରୁ ଯେଉଁ ଏକତା ଜନ୍ମେ, ତାହାହିଁ ପ୍ରକୃତ ଏକତା । ସୁତ୍ତନିପାତର 'କାସିଭାରଦ୍ୱାଜ' ସୁତ୍ତରେ ପ୍ରତିପାଦିତ ହୋଇଛି ଯେ, ଜନସାଧାରଣଙ୍କ ମଧ୍ୟରେ ଏ ପ୍ରକାର ଏକତା ପ୍ରତିଷ୍ଠା କରିବା ଥିଲା ବୁଦ୍ଧଦେବଙ୍କ ଲକ୍ଷ୍ୟ । ସେହି ସୁତ୍ତର ସାରକଥା ଏଠାରେ କୁହାଯାଉଛି ।

ଦିନେ ଭିକ୍ଷାଟନ କରୁ କରୁ ଭଗବାନ୍ ବୁଦ୍ଧ ଯାଇ ଭାରଦ୍ୱାଜଙ୍କର କୃଷିକ୍ଷେତ୍ରରେ ଉପସ୍ଥିତ ହେଲେ । ସେଠାରେ ଭାରଦ୍ୱାଜ ନିଜର ମୂଲିଆମାନଙ୍କୁ ଖାଇବାକୁ ଦେଉଥିଲେ । ଭିକ୍ଷା ନିମନ୍ତେ ଭଗବାନ୍ ବୁଦ୍ଧ ଦଣ୍ଡାୟମାନ ହୋଇଥିବାର ଦେଖି ସେ କହିଲେ, "ତୁମେ ମଧ୍ୟ ମୋ ପରି କୃଷିକର, ବଳଦରେ ହଳ ଚଳାଅ, ମଞ୍ଜି ବୁଣ ଓ ଫସଲ କାଟି ଖାଅ, ଭିକ୍ଷାକରି ବୁଲୁଛ କାହିଁକି ?"

ଭଗବାନ୍ କହିଲେ, "ମୁ ମଧ୍ୟ ଜଣେ କୃଷକ ; ମୁଁ ଶ୍ରଦ୍ଧା-ବୀଜ ବୁଣେ ; ତାହାପରେ ତପଶ୍ଚର୍ଯ୍ୟା (ପ୍ରଯତ୍ନ) ର ବୃଷ୍ଟି ହୁଏ । ପ୍ରଜ୍ଞା ମୋର ହଳ ; ପାପ-ଲଜ୍ଜା ସେ ହଳର ମୁଠି ; ଚିତ୍ତ ହେଉଛି

ଦଉଡ଼ି ; ସ୍ମୃତି (ଜାଗୃତି) ସେହି ଲଙ୍ଗଳର ଲୁହା ଓ ଶୃବୁକ ମଧ୍ୟ । ଶରୀର ଏବଂ ବଚନରେ ମୁଁ ସଂଯମ ରକ୍ଷାକରେ । ଆହାରକୁ ନିୟମିତ କରି ମୁଁ ସତ୍ୟଦ୍ୱାରା (ମନ-ଦୋଷରୁ) ରକ୍ଷାକରେ । ସନ୍ତୋଷ ମୋର ଅବକାଶ; ଉତ୍ସାହ ମୋର ବଳଦ ; ମୋର ଯାନ ଏଭଳି ଦିଗକୁ ଯାଏ, ଯେଉଁଠାରେ ଶୋକ କରିବାକୁ ପଡ଼େ ନାହିଁ ।"

ଭାରଦ୍ୱାଜ ଅତିଶୀଘ୍ର ଏହି କଥାର ଅର୍ଥ ବୁଝିପାରିଲେ ଓ ବୁଦ୍ଧଦେବଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ ।

ଏହି ଉପଦେଶରେ ବୁଦ୍ଧଦେବ କୃଷିର ନିଷେଧ କରିନାହାନ୍ତି । ତାଙ୍କ ଉପଦେଶର ସାରମର୍ମ ହେଉଛି, ଯଦି ସେହି କୃଷିକୁ ମାନସିକ ଦିଗର ସମର୍ଥନ ନମିଳେ ତାହାହେଲେ ଜନସମାଜକୁ ସୁଖ ବଦଳରେ ଦୁଃଖହିଁ ମିଳେ । ଜଣେ କରୁଥିବା ଫସଲ ଯଦି ଅନ୍ୟ ଜଣେ କାଟିନିଏ, ତାହାହେଲେ କୃଷିକରିବାକୁ କୌଣସି ବ୍ୟକ୍ତି ମନବଳାଇବ ନାହିଁ, ଫଳରେ ସମାଜରେ ଘୋର ଅବ୍ୟବସ୍ଥା ଉପୁଜିବ । ସୁତରାଂ ପ୍ରତ୍ୟେକଙ୍କୁ ହିତଯୁକ୍ତ-ଅହିଂସାତ୍ମକ ହେବା ଆବଶ୍ୟକ । ଏହିପରି ମାନସିକ କୃଷି ବ୍ୟତୀତ ଏହି ଭୌତିକ କୃଷିର କୌଣସି ଉପଯୋଗିତା ନାହିଁ । ଏହା ଉପଲବ୍ଧି କରି ବୁଦ୍ଧଦେବ, ସମାଜରେ ନୈତିକ ଜାଗୃତି ଆଣିବା ନିମନ୍ତେ ନିଜ ସଂଘକୁ ପ୍ରବର୍ତ୍ତାଇ ଥିଲେ । ଏହି ହେତୁରୁ ଅଳ୍ପସଂଖ୍ୟକ ହୋଇଥିଲେ ମଧ୍ୟ, ଅତି ଅଳ୍ପ ସମୟ ମଧ୍ୟରେ ବୌଦ୍ଧସଂଘ ଜନସାଧାରଣଙ୍କର ପ୍ରିୟ ହୋଇଉଠିଲା ; ପୁଣି ନିଜର ପୁରୁଷାର୍ଥ ବଳରେ ଅନ୍ୟଶ୍ରମଣ ସଂଘମାନଙ୍କ ଅପେକ୍ଷା ବିଶେଷ ଅଗ୍ରଗତି କଲା ।

## ସଂଘର ସଙ୍ଗଠନ

ନିଜର ସଂଘକୁ କାର୍ଯ୍ୟକ୍ଷମ କରାଇବା ପାଇଁ ଭଗବାନ୍ ବୁଦ୍ଧ ଅତ୍ୟନ୍ତ ସାବଧାନ ଥିଲେ । ସଂଘର ସଙ୍ଗଠନ ଯେ ଏପରି ଭାବରେ

କରୁଥିଲେ, ଯଦ୍ଦ୍ୱାରା ତାଙ୍କ ପରେମଧ୍ୟ ତାହାର ଏକତା ଅକ୍ଷୁଣ୍ଣରହିବ ଏବଂ ଅବ୍ୟାହତ ଭାବରେ ଜନସେବା କାର୍ଯ୍ୟ ସାଧିତ ହୋଇ ପାରିବ । ବଜ୍ଜୀମାନଙ୍କର ଗଣରାଜ୍ୟରେ ନେତାମାନେ ଏକତ୍ର ହୋଇ ଭାବର ଆଦାନ ପ୍ରଦାନ କରୁଥିଲେ ଓ ପରସ୍ପରର ହିତପାଇଁ ନିୟମ ପ୍ରଣୟନ କରୁଥିଲେ । ସେହି ନିୟମର ଆଂଶିକ ପରିବର୍ତ୍ତନ କରି ବୁଦ୍ଧଦେବ ନିଜ ସଂଘରେ ତାହା ପ୍ରୟୋଗ କରିଥିବେ ବୋଲି ମହାପରିନିବ୍‌ବାନ ସୂତ୍ରର ପ୍ରାରମ୍ଭିକ ବିବରଣୀରୁ ଜଣାଯାଏ ।

ବ୍ରାହ୍ମଣ ବସ୍‌ସକାର, ଭଗବାନ୍ ବୁଦ୍ଧଙ୍କ ନିକଟକୁ ଯାଇ, ବଜ୍ଜୀମାନଙ୍କୁ ଆକ୍ରମଣ କରିବାକୁ ଅଜାତଶତ୍ରୁ ବିଚାରକରୁଛନ୍ତି ବୋଲି ଜଣାଇଥିଲେ । ସେତେବେଳେ ବସ୍‌ସକାରଙ୍କୁ ବୁଦ୍ଧଦେବ କହିଥିଲେ—"ଯେଉଁ ପର୍ଯ୍ୟନ୍ତ ମୁଁ ବତାଇଥିବା ସାତୋଟି ନିୟମ ମାନି ବଜ୍ଜୀମାନେ ଚଳୁଥିବେ, ସେପର୍ଯ୍ୟନ୍ତ ସେମାନଙ୍କୁ କେହି ଜିଣି ପାରିବ ନାହିଁ ।" ବସ୍‌ସକାର ଚାଲିଯିବାପରେ ବୁଦ୍ଧ, ସଂଘର ଭିକ୍ଷୁମାନଙ୍କୁ ଉନ୍ନତର ମାର୍ଗ ସମ୍ପର୍କରେ କହିଥିଲେ—(୧) ଯେଉଁ ପର୍ଯ୍ୟନ୍ତ ଭିକ୍ଷୁମାନେ ବହୁବାର ଏକତ୍ର ହେଉଥିବେ, ସେପର୍ଯ୍ୟନ୍ତ ସେମାନଙ୍କର ଅଭିବୃଦ୍ଧି ଘଟିବ, ଅବନତି ଘଟିବ ନାହିଁ । (୨)ଯେଉଁ ପର୍ଯ୍ୟନ୍ତ ଭିକ୍ଷୁମାନେ ଏକମତରେ ଉପସ୍ଥିତ ହେବେ ଓ ଏକ ମନରେ ନିଜ ସଂଘ-କାର୍ଯ୍ୟର ବିଚାର କରିବେ ସେ ପର୍ଯ୍ୟନ୍ତ ଭିକ୍ଷୁମାନଙ୍କର ଅଭିବୃଦ୍ଧି ହିଁ ଘଟିବ, ଅବନତି ଘଟିବ ନାହିଁ । (୩) ଯେଉଁ ପର୍ଯ୍ୟନ୍ତ ସଂଘଦ୍ୱାରା ଗଠିତ ନିୟମଗୁଡ଼ିକୁ, କୌଣସି ଭିକ୍ଷୁ 'ସଂଘ ସେଥା ଗଢ଼ି ଦେଇଛି' ବୋଲି କହିବେ ନାହିଁ ଓ ଯେଉଁ ପର୍ଯ୍ୟନ୍ତ ସଂଘଦ୍ୱାରା ଗଠିତ ନିୟମକୁ ଲଙ୍ଘନ କରିବେ ନାହିଁ, ନିୟମଗୁଡ଼ିକର ମର୍ମ ବୁଝି ଆଚରଣ କରିବେ, ସେ ପର୍ଯ୍ୟନ୍ତ ଭିକ୍ଷୁମାନଙ୍କର ଅଭିବୃଦ୍ଧି ହିଁ

ଘଟିବ ଅବନତ ଘଟିବ ନାହିଁ । (୪) ଯେଉଁ ପର୍ଯ୍ୟନ୍ତ ଭିକ୍ଷୁମାନେ ବୃଦ୍ଧ ଓ ଶୀଳବାନ୍ ନେତାମାନଙ୍କୁ ମାନ୍ୟ କରିବେ । (୫) ଯେଉଁ ପର୍ଯ୍ୟନ୍ତ ଭିକ୍ଷୁମାନେ ବାରମ୍ବାର ଜାତ ହେଉଥିବା ତୃଷ୍ଣାର ବଶୀଭୂତ ହେବେନାହିଁ । (୬) ଯେଉଁ ପର୍ଯ୍ୟନ୍ତ ଭିକ୍ଷୁମାନଙ୍କୁ ବିଜନବାସ ପ୍ରିୟ ବୋଧ ହେଉଥିବ । (୭) ଯେଉଁ ପର୍ଯ୍ୟନ୍ତ ଆସିନଥିବା ସୁଜ୍ଞ ସୁବ୍ରହ୍ମଚାରୀ ଆସୁଥିବେ ଓ ଆସିଥିବା ସୁଜ୍ଞ ବ୍ରହ୍ମଚାରୀ ସୁଖରେ ରହିଥିବେ ଓ ଏଥିପାଇଁ ଭିକ୍ଷୁମାନେ ସ୍ଥିର ଜାଗ୍ରତ ଥିବେ, ସେ ପର୍ଯ୍ୟନ୍ତ ଭିକ୍ଷୁମାନଙ୍କର ଅଭିବୃଦ୍ଧି ହିଁ ଘଟିବ, ଅବନତ ଘଟିବ ନାହିଁ ।

ଏଥିରୁ ଜଣାଯାଉଛି ଯେ, ସଂଘର ଭିକ୍ଷୁମାନେ ଏକତ୍ର ଉପସ୍ଥିତ ହେବା, ଏକମତରେ କାର୍ଯ୍ୟ କରିବା, ବୃଦ୍ଧ ଏବଂ ଶୀଳବାନ୍ ଭିକ୍ଷୁମାନଙ୍କର ମାନ ରକ୍ଷାକରିବା ପ୍ରଭୃତି ବିନୟପିଟକରେ ଉପଲଭ୍ୟ ନିୟମାବଳୀ, ବଜ୍ଜୀମାନଙ୍କ ଭଳି ସ୍ୱତନ୍ତ୍ର ଗଣରାଜ୍ୟରେ ପ୍ରଚଳିତ ପଦ୍ଧତିରୁ ଭଗବାନ୍ ବୁଦ୍ଧ ଗ୍ରହଣ କରିଥିଲେ ।

## ସଂଘର କେତେକ ନିୟମ ଲୋକଙ୍କ ଚଳଣିରୁ ଗୃହୀତ

କିନ୍ତୁ, ରାଜ୍ୟଶାସନର ସମସ୍ତ ନିୟମ, ସଂଘ ପରିଚାଳନାରେ ପ୍ରୟୋଗ କରିବା ସମ୍ଭବପର ନଥିଲା । ସଂଘର କୌଣସି ଭିକ୍ଷୁ ଯଦି କୌଣସି ଅପରାଧ କରୁଥିଲା ତେବେ, ଅତିବେଶୀ ହେଲେ ତାକୁ ଦଣ୍ଡ ସ୍ୱରୂପ କେବଳ ସଂଘରୁ ବହିଷ୍କାର କରିଦିଆ ଯାଉଥିଲା । ଏହାଠାରୁ ବଳି କଠୋର ଦଣ୍ଡ ଦିଆ ଯାଉ ନଥିଲା, କାରଣ ସଂଘର ସମସ୍ତ ନିୟମ ଥିଲା ଅହିଂସାତ୍ମକ । ତହିଁରୁ ଅଧିକାଂଶ ନିୟମ ଲୋକ ଚଳଣିରୁ ନିଆଯାଇଥିଲା । ଉଦାହରଣ ସ୍ୱରୂପ, ନିମ୍ନଲିଖିତ ନିୟମଟି ଦେଖାଯାଉ :—

ଭଗବାନ୍ ବୁଦ୍ଧ 'ଆଳଭୀ'ର ଅଗ୍‌ଗାଳବ ଚୈତ୍ୟରେ ରହୁଥିଲେ । ସେହି ସମୟରେ ଭିକ୍ଷୁ ଆଳବକ, ଭବନ ନିର୍ମାଣ ନିମନ୍ତେ ଖନନ କାର୍ଯ୍ୟରେ ବ୍ୟାପୃତ ଥିଲେ । ଲୋକେ ସେ ସଂପର୍କରେ ସମାଲୋଚନା କରିବାକୁ ଆରମ୍ଭକଲେ । ଏକଥା ଭଗବାନ୍ ବୁଦ୍ଧ ଜାଣିବା ପରେ ତାହା ନିଷିଦ୍ଧକରି ଭିକ୍ଷୁମାନଙ୍କ ପାଇଁ ଏହି ନିୟମ କରିଦେଲେ ଯେ, ଯେଉଁ ଭିକ୍ଷୁ ମାଟିଖୋଳେ ବା ଖୋଳାଏ ତାକୁ ପ୍ରାୟଶ୍ଚିତ୍ତ କରିବାକୁ ପଡ଼ିବ । (୧)

ସେ ପର୍ଯ୍ୟନ୍ତ ଭିକ୍ଷୁମାନଙ୍କୁ ଭଗବାନ୍ ବୁଦ୍ଧ ଏହି ଆଦେଶ ଦେଉଥିଲେ ଯେ ସେମାନେ କ୍ଷୁଦ୍ର କୁଟୀର ଏବଂ ସାଧାରଣ ବିହାର ନିର୍ମାଣ କରି ବାସକରିବେ । ସେହି ଉଦ୍ଦେଶ୍ୟରେ ନିଜେ ମାଟି ଖୋଳିବା ବା ଖୋଳାଇବା ପାପନୁହେ । କିନ୍ତୁ ଲୋକମାନଙ୍କର ସନ୍ତୋଷ ଲାଗି ଏହି ନିୟମ କରିବାକୁ ପଡ଼ିଥିଲା । ଶ୍ରେଷ୍ଠ ବଡ଼ ଜୀବାଣୁ ମଧ୍ୟ ଯେପରି ବିନଷ୍ଟ ନହୁଅନ୍ତି, ସେଥିପ୍ରତି ସମସ୍ତ ଶ୍ରମଣ ସାବଧାନ ଥିଲେ । ସେମାନେ ରାତିରେ ଦୀପ ସୁଦ୍ଧା ଜଳାଉ ନଥିଲେ, କାରଣ ଦୀପ ଉପରେ ପଡ଼ି ପତଙ୍ଗ ପ୍ରାଣହରାଇବାର ଆଶଙ୍କା ଥିଲା । ଲୋକେ ମଧ୍ୟ ସେମାନଙ୍କର ଏହି ଆଗ୍ରହରେ ଅଭ୍ୟସ୍ତ ଥିଲେ । ଏହି ପରିସ୍ଥିତିରେ, କୌଣସି ଶ୍ରମଣ ଯଦି କୋଦାଳ ଧରି ମାଟିଖୋଳିବାରେ ଲାଗୁଥିଲା, ତାହାହେଲେ ଜନସାଧାରଣଙ୍କ ମନରେ ସନ୍ଦେହ ଉପୁଜିବା ସ୍ୱାଭାବିକ କଥା । ସାଧାରଣ ଲୋକଙ୍କ ସହିତ ବାଦବିବାଦ କରି ସେମାନଙ୍କର ଦୃଷ୍ଟିଭଙ୍ଗି ବଦଳାଇବା ଆବଶ୍ୟକ ବୋଲି ବୁଦ୍ଧଦେବ ମନେ କରୁ ନଥିଲେ । ତପସ୍ୟାରେ ସମୟ ବ୍ୟୟ ନକରି, ଜନସାଧାରଣଙ୍କୁ ଧର୍ମୋପଦେଶ ଦେବାକୁ

୧ । ଦେଖନ୍ତୁ, ବୌଦ୍ଧସଂଘାର ପରିଚୟ ପୃ: ୧୭ ।

ଏବଂ ଧ୍ୟାନସମାଧି ଦ୍ୱାରା ଚିତ୍ତକୁ ଦମନ କରିବା ପାଇଁ ଭିକ୍ଷୁମାନଙ୍କୁ ସମସ୍ତ ମିଳିଗଲେ, ସଂଘର କାର୍ଯ୍ୟ ସାଧିତ ହେଲ୍‌ବୋଲି ସେ ଅନୁଭବ କରୁଥିଲେ । ତେଣୁ, ଯେଉଁ ରୀତି ନୀତି ନିରୁପଦ୍ରବ ଥିଲି ସେଗୁଡ଼ିକୁ ସଂଘରେ ପ୍ରଚଳିତ କରାଇବାରେ ତାଙ୍କର କୌଣସି ଆପତ୍ତି ନଥିଲି ।

## ଭିକ୍ଷୁ ସଂଘର ଆଡ଼ମ୍ବରହୀନତା

ଅନ୍ୟ ସଂଘମାନଙ୍କର ତପଶ୍ଚରଣ ବିଧି ବୁଦ୍ଧଦେବଙ୍କୁ ଆଦୌ ଭଲ ଲାଗୁନଥିଲି, ତଥାପି ସେସବୁ ସଂଘର ଭିକ୍ଷୁମାନେ ଯେପରି ନିରାଡ଼ମ୍ବର ଭାବରେ ରହନ୍ତି, ସେଥିପ୍ରତି ସେ ବିଶେଷ ଦୃଷ୍ଟି ଦେଉଥିଲେ । ସେମାନେ ଯଦି ପରିଗ୍ରହୀ ହୋଇଯିବେ, ତାହା-ହେଲେ ସେମାନେ ( ପରିଗ୍ରହ ସହିତ ) ଚତୁର୍ଦ୍ଦିଗକୁ ଯାଇ ପ୍ରଚାର କାର୍ଯ୍ୟ ଚଳାଇବେ କିପରି ? ସାମଞ୍ଜଫଲସୁତ୍ତରେ ଭଗବାନ୍ ବୁଦ୍ଧ ରାଜା ଅଜାତଶତ୍ରୁଙ୍କୁ କହିଅଛନ୍ତି—

ସେୟ୍ୟଥାପି ମହାରାଜା ପକ୍‌ଖୀ ସକୁଣୋ ଯେନ ଯେନେବ ଡେତି ସପତ୍ତଭାରୋବ ଡେତି । ଏବମେବ ମହାରାଜ ଭିକ୍‌ଖୁ ସଂତୁଟ୍‌ଠୋ ହୋତି । କାୟ ପରିହାରିକେନ ଚୀବରେନ, କୁଚ୍ଛି ପରିହାରିକେନ ପିଣ୍ଡପାତେନ । ସୋ ଯେନ ଯେନେବ ପକ୍‌କମତି ସମାଦାୟେବ ପକ୍‌କମତି ।

ଅର୍ଥାତ୍, ହେ ମହାରାଜ ! ଗୋଟିଏ ପକ୍ଷୀ ଯେଉଁ ଦିଗରେ ଉଡ଼ିପଡ଼େ, ନିଜର ପକ୍ଷ ସହିତ ହିଁ, ଉଡ଼ିଥାଏ । ଠିକ୍ ସେହିପରି ହେ ମହାରାଜ ! ଭିକ୍ଷୁ ନିଜ ଶରୀର ଲାଗି ଆବଶ୍ୟକ ଆଚ୍ଛାଦନ ଓ ପେଟ ପାଇଁ ଦରକାରୀ ଅନ୍ନରେ ସନ୍ତୁଷ୍ଟରହେ ଓ ସେ

ଯେଉଁ ସ୍ଥାନକୁ ଯାତ୍ରାକଲେ ମଧ୍ୟ ନିଜର ସେହି ଦ୍ରବ୍ୟଗୁଡ଼ିକୁ ସାଙ୍ଗରେ ଧରି ଯାଏ । ଭିକ୍ଷୁମାନଙ୍କ ନିକଟରେ, ଅତି ବେଶୀ ହେଲେ, ନିମ୍ନଲିଖିତ ଆଠୋଟି ପର୍ଯ୍ୟନ୍ତ ପଦାର୍ଥ ରହୁଥିଲା ।

**ତିଚୀବରଂଚ ପତ୍ତୋଚ ବାସି ସୂଚି ଚ ବନ୍ଧନଂ**
**ପରିସ୍ସାବନେନ ଅଟ୍ଠେତେ ଯୁତ୍ତ ଯୋଗସ୍ସ ଭିକ୍ଖୁନୋ ।**

ଅର୍ଥାତ୍, ତିନୋଟି ଚୀବର (ବସ୍ତ୍ର), ପାତ୍ର, ଛୋଟ କୁରାଢ଼ି (ଟାଙ୍ଗିଆ), ଛୁଞ୍ଚ, କଟି ବନ୍ଧନ ଓ ପାଣିଛାଣିବା ଗାମୁଛା, ଏହି ଆଠୋଟି ବସ୍ତୁ ଯୋଗୀ ଭିକ୍ଷୁମାନଙ୍କ ନିମନ୍ତେ ଯଥେଷ୍ଟ ।

## ଆଚାରର ନିୟମ

ଭଗବାନ୍ ବୁଦ୍ଧ, ଭିକ୍ଷୁମାନେ ଏହିପରି ନିରାଡ଼ମ୍ବର ଜୀବନ ଯାପନ କରନ୍ତୁ ବୋଲି ଉପଦେଶ ଦେଇଥିଲେ । କିନ୍ତୁ ସ୍ୱଭାବ ଅନୁସାରେ କେତେକ ଭିକ୍ଷୁ ଏହି ପଦାର୍ଥମାନଙ୍କୁ ଗ୍ରହଣ କରିବାରେ ମଧ୍ୟ ନିୟମଲଂଘନ କରୁଥିଲେ—ଯେପରିକି, ତିନୋଟି ବସ୍ତ୍ର ଅପେକ୍ଷା ଅଧିକ ବସ୍ତ୍ର ଗ୍ରହଣ କରୁଥିଲେ, ମାଟି ବା ଲୁହା ପାତ୍ର ବଦଳରେ ପିତ୍ତଳ ବା ତମ୍ବା ପାତ୍ର ଗ୍ରହଣ କରୁଥିଲେ । ପୁଣି ଖୁବ୍ ଲମ୍ବା ଲୁଗା ବ୍ୟବହାର କରୁଥିଲେ । ଏସବୁ ପରିଗ୍ରହ ପାଇଁ ଅବସର ମିଳିଯାଉଥିଲା । ଏହି ସବୁ କଥା ବନ୍ଦ କରିବା ପାଇଁ ବହୁ ନିୟମ ଗଠନ କରିବାକୁ ପଡ଼ିଥିଲା । ଏଭଳି ନିୟମ ସଂଖ୍ୟା ଅତ୍ୟଧିକ ଥିଲା ।

ବିନୟ ପିଟକରେ ଭିକ୍ଷୁମାନଙ୍କ ନିମନ୍ତେ ସର୍ବମୋଟ ୨୨୭ଟି ନିଷେଧାତ୍ମକ ନିୟମ ଦିଆ ଯାଇଛି । ଏ ଗୁଡ଼ିକୁ "ପାତିମୋକ୍ଖ"

କୁହାଯାଏ । ଏ ମଧ୍ୟରୁ ଦୁଇଟି ଅନିୟମିତ ଓ ଶେଷ ୭୫ଟି ଖାଇବା ପିଇବା, ରହା-ରହି କରିବା, କଥାବାର୍ତ୍ତା କରିବା ପ୍ରଭୃତି ଆଚରଣ ସଂପର୍କୀୟ ନିୟମ । ଏଗୁଡ଼ିକୁ ଛାଡ଼ି ବାକି ୧୫୦ଟି ନିୟମକୁହିଁ ଅଶୋକଙ୍କ ସମୟରେ 'ପାତିମୋକ୍‌ଖ' କୁହା ଯାଉଥିଲା ବୋଲି ଅନୁମାନ କରାଯାଉଛି । ତୃତ ପୂର୍ବରୁ ଏହି ସମସ୍ତ ନିୟମ ଗଠିତ ହୋଇ ନଥିଲା । ପୁଣି ଯେଉଁ ଗୁଡ଼ିକ ବା ଗଠିତ ହୋଇଥିଲା ମୌଳିକ ନିୟମକୁ ଛାଡ଼ି ଅନ୍ୟ ଗୁଡ଼ିକର ସମୁଚିତ ପରିବର୍ତ୍ତନ କରିବାର ଅଧିକାର ସଂଘ ଉପରେ ନ୍ୟସ୍ତ ଥିଲା । ପରିନିର୍ବାଣ ପୂର୍ବରୁ ଭଗବାନ୍ ବୁଦ୍ଧ ଆନନ୍ଦଙ୍କୁ କହି ଅଛନ୍ତି—"ହେ ଆନନ୍ଦ ! ସଂଘ ଯଦି ଇଚ୍ଛାକରେ, ତେବେ, ମୋର ମୃତ୍ୟୁ ପରେ ସାଧାରଣ ନିୟମ ଗୁଡ଼ିକୁ ଛାଡ଼ି ଦିଆଯାଇ ପାରେ ।" ଏଥିରୁ ସ୍ପଷ୍ଟ ଜଣା ଯାଉଛି ଯେ, ଛୋଟ ଛୋଟ ନିୟମ ଗୁଡ଼ିକୁ ଛାଡ଼ିଦେବା କିମ୍ବା ସାଧାରଣ ନିୟମଗୁଡ଼ିକୁ ଦେଶ କାଳ ଅନୁସାରେ ପରିବର୍ତ୍ତନ କରିବା ପାଇଁ ଭଗବାନ୍ ବୁଦ୍ଧ ସଂଘକୁ ସଂପୂର୍ଣ୍ଣ ଅନୁମତି ଦେଇଥିଲେ ।

## ଶରୀର ଉପଯୋଗୀ ପଦାର୍ଥ ବ୍ୟବହାରରେ ସତର୍କତା

ଭିକ୍ଷୁମାନଙ୍କର ଆବଶ୍ୟକୀୟ ବସ୍ତୁମାନଙ୍କ ମଧ୍ୟରେ ଚୀବର (ବସ୍ତ୍ର), ପିଣ୍ଡପାତ (ଅନ୍ନ), ଶୟନାସନ (ନିବାସ ସ୍ଥାନ) ଏବଂ ଔଷଧ, ଏହି ଚାରିଗୋଟି ଥିଲା ମୁଖ୍ୟ । ବୁଦ୍ଧଦେବଙ୍କର ଲକ୍ଷ୍ୟ ଥିଲା ଯେ 'ପାତିମୋକ୍‌ଖ'ର ନିୟମାନୁସାରେ ଏହି ପଦାର୍ଥ ଗୁଡ଼ିକୁ ବ୍ୟବହାର କଲାବେଳେ ମଧ୍ୟ ସାବଧାନ କାର୍ଯ୍ୟ କରିବାକୁ ପଡ଼ିବ ।

ବସ୍ତ୍ର ବ୍ୟବହାର କରିବା ସମୟରେ ଭିକ୍ଷୁମାନଙ୍କୁ କହିବାକୁ ପଡ଼ୁଥିଲା ଯେ—"ଭଲଭାବେ ବିଚାର କରି ମୁଁ ଏହି ବସ୍ତ୍ର ପିନ୍ଧୁଛି ।"

ଏହା କହିବାର ତାତ୍ପର୍ଯ୍ୟ ହେଉଛି, କେବଳ ଶୀତ, ଉତ୍ତାପ, ମଶା-ମାଛି, ଖରା-ପବନ ପ୍ରଭୃତିର କଷ୍ଟରୁ ରକ୍ଷା ପାଇବାପାଇଁ ଏବଂ ଗୁହ୍ୟ ଇନ୍ଦ୍ରିୟମାନଙ୍କୁ ଆଚ୍ଛାଦିତ କରିବା ନିମନ୍ତେ ବସ୍ତ୍ର ପରିଧାନ କରା ଯାଉଛି । ଅନ୍ନ ( ପିଣ୍ଡପାତ ) ସେବନ ସମୟରେ କହିବାକୁ ହେଉଥିଲା ଯେ, "ମୁଁ ଉତ୍ତମ ରୂପେ ବିଚାର କରି ଏହି ପିଣ୍ଡପାତ ସେବନ କରୁଅଛି । ଏହା କରିବାର ତାତ୍ପର୍ଯ୍ୟ ନୁହେ ଯେ, ମୋର ଶରୀର କ୍ରୀଡ଼ା ପାଇଁ ସମର୍ଥ ହେଉ, ଉନ୍ନତ ହେଉ, ପୁଷ୍ଟ ହେଉ ଅଥବା ସୁନ୍ଦର ଦେଖାଯାଉ । ଏହାର ଅର୍ଥ ଏତିକି ମାତ୍ର ଯେ, ( ମୋର ) ଏହି ଦେହ ରହୁ, କଷ୍ଟ ଦୂର ହେଉ ଏବଂ ବ୍ରହ୍ମଚର୍ଯ୍ୟ ଲାଗି ସହାୟତା ମିଳୁ । ଏହା ଦ୍ୱାରା ମୁଁ ( କ୍ଷୁଧାରୁ ଜାତ କଷ୍ଟକୁ) ନଷ୍ଟ କରିଦେବି ଏବଂ (ଅଧିକ ମାତ୍ରାରେ ଖାଇ) ଫେରେ କଷ୍ଟ ବଢ଼ାଇବି ନାହିଁ । ଏହା ଦ୍ୱାରା ମୋର ଶରୀର ଯାତ୍ରା ଚାଲିଯିବ, ଲୋକାପବାଦ ରହିବ ନାହିଁ, ଏବଂ ଜୀବନ ମଧ୍ୟ ସୁଖ ସମ୍ପନ୍ନ ହେବ ।"

ଶୟନାସନ ବ୍ୟବହାର କରିବା ବେଳେ କହିବାକୁ ପଡୁଥିଲା—"ମୁଁ ଭଲ ଭାବରେ ବିଚାର କରି ଏହି ଶୟନାସନ ବ୍ୟବହାର କରୁଛି ।" ଏହା କରିବାର ତାତ୍ପର୍ଯ୍ୟ ହେଉଛି ଶୀତ, ଉତ୍ତାପ, ମଶା ମାଛି ଖରା ଓ ସାପ ପ୍ରଭୃତିରୁ ମୋର କଷ୍ଟ ନ ହେଉ ଓ ଏକାନ୍ତ ବାସରେ ବିଶ୍ରାମ ମିଳୁ ।

ଔଷଧି ଗୁଡ଼ିକର ପ୍ରୟୋଗବେଳେ କହିବାକୁ ପଡୁଥିଲା ଯେ ମୁଁ ଉତ୍ତମ ରୂପେ ବିଚାର କରି ଔଷଧି ଗୁଡ଼ିକର ପ୍ରୟୋଗ କରୁଅଛି । ଜନ୍ମିଥିବା ରୋଗର ବିନାଶ ନିମନ୍ତେ ମୁଁ ଏହାର ପ୍ରୟୋଗ

କରିବ ଏବଂ ଆରୋଗ୍ୟ ଲାଭ ପର୍ଯ୍ୟନ୍ତହିଁ ଏହା ବ୍ୟବହାର କରିବ ।" (୧)

## ଦେବଦତ୍ତର କୂଟ-ସଂଘ-ଭେଦ

ସଂଘରେ ସରଳତା ଏବଂ ମୈତ୍ରୀ ଭାବ ସ୍ଥାୟୀ ରଖିବା ପାଇଁ ଭଗବାନ୍ ବୁଦ୍ଧ ଅତ୍ୟନ୍ତ ସାବଧାନ ରହୁଥିଲେ । କିନ୍ତୁ ମନୁଷ୍ୟର ସ୍ୱଭାବ ବଡ଼ ବିଚିତ୍ର । ଫଳରେ, ସମଷ୍ଟି ଭିତରେ ମତଭେଦ ହୋଇ ଦଳସୃଷ୍ଟି ହୋଇଯାଏ । ଏହାର ମୂଳ କାରଣ ହେଉଛି ଅଭିମାନ ଓ ତାହାର ଅନୁଗାମୀ ଅଜ୍ଞାନ । ମନୁଷ୍ୟ ଯେତେ ସରଳ ଭାବରେ ଜୀବନ ଯାପନ କରୁ ପଛେ, ସେ ଯଦି ନେତା ହେବାକୁ ଇଚ୍ଛାକରେ ତାହା ହେଲେ ଅନ୍ୟର ଗୁଣକୁ ଦୋଷରୂପେ ପ୍ରତିପାଦନ କରି ସେ ନିଜର ବଡ଼ ପଣ ପ୍ରକାଶ କରେ । ଏହି ଜାଲରେ ଯଦି କୌଣସି ଅଜ୍ଞାନ ବ୍ୟକ୍ତି ପ୍ରବେଶ କରେ, ତେବେ ସେ ଅତି ସହଜରେ ଏକ ସ୍ୱତନ୍ତ୍ର ସଂପ୍ରଦାୟ ସ୍ଥାପନ କରି ଦେଇପାରେ ।

ଦେବଦତ୍ତ ହେଉଛି ବୌଦ୍ଧସଂଘ ମଧ୍ୟରେ ଏହି ବିଚିତ୍ର ପ୍ରକାରର ସର୍ବ ପ୍ରଥମ ଭିକ୍ଷୁ । ସେ ଶାକ୍ୟ ବଂଶରେ ଜନ୍ମ ଗ୍ରହଣ କରିଥିଲି ଓ ବୁଦ୍ଧଦେବଙ୍କର ସମ୍ପର୍କୀୟ ମଧ୍ୟ ଥିଲି । ତାହାର ଅଧୀନରେ ସଂଘକୁ ପରିଚାଳିତ କରିବା ପାଇଁ ସେ ବୁଦ୍ଧଦେବଙ୍କୁ ବିନୀତ ଅନୁରୋଧ କରିଥିଲି, କିନ୍ତୁ ଭଗବାନ୍ ବୁଦ୍ଧ ତାହା ରକ୍ଷାକରି ନଥିଲେ । ଏଣୁ ତାଙ୍କୁ ହତ୍ୟା କରିବା ପାଇଁ ରାଜା ଅଜାତ ଶତ୍ରୁଙ୍କ ସାହାଯ୍ୟରେ ଦେବଦତ୍ତ ଘାତୁକଙ୍କୁ ପଠାଇଥିଲି । କିନ୍ତୁ ବୁଦ୍ଧ-ଦେବଙ୍କୁ ସେମାନେ ହତ୍ୟା କରିବା ଦୂରେ ଥାଉ, ବରଂ ତାଙ୍କର

(୧) ଏହି ଗୃହୀତି ଦେହୋପଯୋଗୀ ପଦାର୍ଥର ସୁଚିନ୍ତିତ ପ୍ରୟୋଗକୁ 'ପଚ୍ଚବେକ୍‌ଖଣ' (ପ୍ରତ୍ୟବେକ୍ଷଣ) କହନ୍ତି, ଏହା ଏବେ ମଧ୍ୟ ପ୍ରଚଳିତ ।

ଶିଷ୍ୟ ହୋଇଗଲେ । ତାପରେ ଦେବଦତ୍ତ ଗୃଧ୍ରକୂଟ ପର୍ବତ ଉପରୁ ବୁଦ୍ଧଙ୍କ ଉପରକୁ ଗୋଟାଏ ବଡ଼ ପଥର ଫିଙ୍ଗିଥିଲା । ଖଣ୍ଡେ ପଥର ବୁଦ୍ଧଙ୍କର ପାଦରେ ବାଜି ତାଙ୍କୁ ଖଣ୍ଡିଆ କରି ଦେଇଥିଲା । ସେହି ଘା' ଶୁଖିଯିବା ପରେ ଭିକ୍ଷାଟନରେ ବୁଦ୍ଧଦେବ ଯେତେବେଳେ ରାଜଗୃହରେ ଉପସ୍ଥିତ ହେଲେ, ଦେବଦତ୍ତ ସେତିକିବେଳେ ନାଳଗିରି ନାମକ ଏକ ମତ୍ତହସ୍ତୀକୁ ତାଙ୍କ ପାଖେ ଛାଡ଼ି ଦେଲା । କିନ୍ତୁ ହାତୀଟି ଭଗବାନଙ୍କର ପଦଧୂଳି ମୁଣ୍ଡରେ ଲଗାଇ ଶାନ୍ତ ଭାବରେ ହାତୀଶାଳାକୁ ଫେରିଗଲା । ଏହିପରି ସମସ୍ତ କୂଟ କାପଟ୍ୟ ବ୍ୟର୍ଥ ହୋଇ ଯିବାପରେ ଦେବଦତ୍ତ, ତପଶ୍ଚରଣର କଠୋର ନିୟମ ସଂଘରେ ପ୍ରୟୋଗ କରିବା ପାଇଁ ବୁଦ୍ଧଦେବଙ୍କୁ ସାନୁନୟ ଅନୁରୋଧ କଲା । କିନ୍ତୁ ସେ ତହିଁରେ ମଧ୍ୟ ସମ୍ମତ ହେଲେ ନାହିଁ । ଅତଏବ ସଂଘରେ ବିଭେଦ ସୃଷ୍ଟିକରି ଓ କେତେକ ଭିକ୍ଷୁଙ୍କୁ ସଙ୍ଗରେ ନେଇ ଦେବଦତ୍ତ ଗୟା ଚାଲିଗଲା ।

'ଚୂଲ୍ଲବଗ୍‌ଗ'ରେ ଦେବଦତ୍ତର ଏହି ଚରିତ ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଛି । (୧) କିନ୍ତୁ ତହିଁରେ ଐତିହାସିକ ତଥ୍ୟର ମାତ୍ରା ଅତ୍ୟନ୍ତ ଅଳ୍ପ । କାରଣ, ଦେବଦତ୍ତ ଯଦି ବୁଦ୍ଧଦେବଙ୍କୁ ହତ୍ୟା କରିବା ଭଳି ଦୁଷ୍ଟ ଲୋକ ହୋଇଥାନ୍ତା ତାହା ହେଲେ ଭିକ୍ଷୁସଂଘରେ ବିଭେଦ ସୃଷ୍ଟି କରିବା ପାଇଁ ସେ ସମର୍ଥ ହୋଇ ନଥାନ୍ତା । ଅଳ୍ପ କେତେଜଣ ଭିକ୍ଷୁ ମଧ୍ୟ ତାହାର ଅନୁଗାମୀ ହୋଇ ନ ଥାନ୍ତେ !

"ଲାଭ ସକ୍କାର ସଂଯୁତ୍ତ"ର ୩୬ଶ ସୂତ୍ତରୁ ଜଣାଯାଏ ଯେ, ଅଜାତଶତ୍ରୁ ଯୁବରାଜ ଥିଲାବେଳେ ଦେବଦତ୍ତ ସହିତ ତାଙ୍କର ମିତ୍ରତା ଜାତ ହୋଇଥିଲା । ସେହି ସମୟରୁ ସେ ନେତୃତ୍ୱ ପାଇବା ପାଇଁ ଯତ୍ନଶୀଳ ଥିଲା । ଉକ୍ତ ସୂତ୍ତର ସାରକଥା ତଳେ ଦିଆଯାଉଛି ।

(୧) ଦେଖନ୍ତୁ—'ବୁଦ୍ଧ ଲୀଳାସାର ସଂଗ୍ରହ' ପୃ: ୧୭୯—୧୮ ।

ଭଗବାନ୍ ବୁଦ୍ଧ ରାଜଗୃହର ବେଳୁବନରେ ରହୁଥିଲେ । ସେ ସମୟରେ ରାଜକୁମାର ଅଜାତଶତ୍ରୁ ପାଞ୍ଚଶହ ଯାନ ସଙ୍ଗରେ ନେଇ ସକାଳେ ଓ ସନ୍ଧ୍ୟାବେଳେ ଦେବଦତ୍ତଙ୍କୁ ଦେଖିବା ପାଇଁ ଯାଉଥିଲେ । ପୁଣି ତାହା ନିକଟକୁ ପାଞ୍ଚଶହ ଲୋକଙ୍କର ଖାଦ୍ୟ ପଠାଇ ଦେଉଥିଲେ । କେତେକ ଭିକ୍ଷୁ ଏହିକଥା ଭଗବାନ୍ ବୁଦ୍ଧଙ୍କୁ ଜଣାଇଲେ । ଭଗବାନ୍ କହିଲେ—"ହେ ଭିକ୍ଷୁଗଣ, ଆପଣମାନେ ଦେବଦତ୍ତର ଲାଭ-ସତ୍କାର ପ୍ରତି ସ୍ପୃହା ରଖନ୍ତୁ ନାହିଁ । ଲାଭ ଦ୍ୱାରା ଦେବଦତ୍ତର କ୍ଷତିହିଁ ଘଟିବ, ଅଭିବୃଦ୍ଧି ଘଟିବ ନାହିଁ ।" ଏହାଛଡ଼ା ଦେବଦତ୍ତ ସମ୍ପର୍କରେ ଭଗବାନ୍ ବୁଦ୍ଧ କହିଥିବା ତଳ ଲିଖିତ ଗାଥା ଦୁଇଟି ସ୍ଥାନରେ ଦେଖାଯାଏ :—

**ଫଳଂବେ କଦଲିଂହନ୍ତି ଫଳଂ ବେଳୁଂ ଫଳଂ ନଳଂ**
**ସକ୍କାରୋ କାପୁରିସଂହନ୍ତି ଗବ୍ଭୋ ଅସ୍ସତରିଂ ଯଥା (୧**

ଅର୍ଥାତ୍, ଫଳ କଦଳୀ ଗଛକୁ ନାଶକରେ । ଫଳ ବାଉଁଶ ତଥା ନଳକୁ ନାଶ କରେ । ଖଚରୀର ଗର୍ଭ ଖଚରୀକୁ ନାଶ କରେ । ସେହିପରି ସତ୍କାର ମଧ୍ୟ କାପୁରୁଷକୁ ନାଶ କରେ ।

ଏଥିରୁ ଜଣା ଯାଏ ଯେ, ଅଜାତଶତ୍ରୁଙ୍କ ସହାୟତାରେ ଅଧିକାର ପ୍ରାପ୍ତି ନିମନ୍ତେ ଦେବଦତ୍ତ ଚେଷ୍ଟାକରୁଥିଲା । ଅଜାତଶତ୍ରୁ ନିଜ ପିତାଙ୍କୁ ହତ୍ୟା କରି ରାଜ୍ୟ ପାଇଥିଲେ । ତଥାପି ମଧ୍ୟ ଦେବଦତ୍ତ ତାଙ୍କ ସଙ୍ଗେ ମିତ୍ରତା ତୁଟାଇ ନଥିଲା । ପୁଣି ତାଙ୍କର ସାହାଯ୍ୟରେ ସଂଘ

(୧) ସଂଯୁତ୍ତନିକାୟ ( P. T. S ) ୧ମଖଣ୍ଡ, ପୃ: ୧୫୧ ଓ ଅଙ୍ଗୁତ୍ତରନିକାୟ ( P.T.S. ) ୨ୟଖଣ୍ଡ, ପୃ: ୭୩ ।

ମଧ୍ୟରେ ବିଭେଦ ଭାବ ସୃଷ୍ଟି କରି ଭିକ୍ଷୁମାନଙ୍କୁ ନିଜ ପ୍ରତି ଟାଣି ଆଣି ଥିଲି । ସୁତରାଂ ତାହାର ଏସବୁ କାର୍ଯ୍ୟ ବୁଦ୍ଧଦେବଙ୍କୁ ଅନୁଚିତବୋଧ ହେବାରେ ବା ବିଚିତ୍ରତା କଣ ଅଛି ? କିନ୍ତୁ ଦେବଦତ୍ତ ଦ୍ୱାରା ଯେଉଁ ବିଭେଦ ସୃଷ୍ଟି ହେଲି, ତାହା ସଙ୍ଘପକ୍ଷରେ କ୍ଷତି କାରକ, ହେଲି ନାହିଁ ଓ ଏହି ସଙ୍କଟରୁ ସୁଫଳ ହିଁ ମିଳିଲି । (୧)

## ଭିକ୍ଷୁ ସଂଘରେ ଅନ୍ୟ ଏକ କଳହ

କୌଶାମ୍ବୀରେ, ଭିକ୍ଷୁସଙ୍ଘ ମଧ୍ୟରେ ଅନ୍ୟ ଏକ ସାଧାରଣ କଳହ ହୋଇଥିଲି । ମହା ବଗ୍‌ଗରେ ତହିଁର ବିସ୍ତୃତ ବିବରଣୀ ଦିଆ ଯାଇଛି । ମହା ବଗ୍‌ଗର ଲେଖକ ବା ଲେଖକଗଣ ଉକ୍ତ କଥାକୁ ଏହିପରି ଭାବରେ ବର୍ଣ୍ଣନା କରିଛନ୍ତି ଯେ ଏଭଳି ଅନ୍ୟ ପ୍ରସଙ୍ଗରେ ମଧ୍ୟ ଏହାର ଉପଯୋଗ କରା ଯାଇ ପାରିବ । ତାହାର ସାରାଂଶ ଏଠାରେ ଦିଆ ଯାଉଛି । ଦୁଇଜଣ ପଣ୍ଡିତଙ୍କ ମଧ୍ୟରେ ବିନୟର ଏକ ଛୋଟିଆ ନିୟମକୁ ନେଇ ମତଭେଦ ହେଲି ଓ ତହିଁରୁ କଳହର ସୂତ୍ରପାତ ହେଲି । ସେତେବେଳେ ଭଗବାନ୍ ବୁଦ୍ଧ ସେ ଦୁହିଁଙ୍କୁ 'ଦୀର୍ଘାୟୁ' ଚରିତ ଶୁଣାଇଥିଲେ । ତଥାପି ସେମାନେ ତାହା ଗ୍ରହଣ କଲେ ନାହିଁ । ସେ ମଧ୍ୟରୁ ଜଣେ ଭିକ୍ଷୁ କହିଲି "ହେ ଭଦନ୍ତ ! ଆପଣ ନୀରବ ରହନ୍ତୁ । କଳହ ଦ୍ୱାରା କଣ ହେବ, ସେକଥା ଆମେ ବୁଝିବୁ ।" ସମସ୍ତଙ୍କର ମନ ଦୂଷିତ ଥିବାର ଦେଖି ଭଗବାନ୍ ବୁଦ୍ଧ କୌଶାମ୍ବୀରୁ ପ୍ରାଚୀନ 'ବଂସ ଦାବ' ଉପବନକୁ ଚାଲିଗଲେ । ସେଠାରେ ଅନୁରୁଦ୍ଧ, ନଂଦିୟ ଓ କିମ୍ବିଲନାମକ ତିନି ଜଣ ଭିକ୍ଷୁ ଅବସ୍ଥାନ କରୁଥିଲେ । ସେମାନଙ୍କ ସଙ୍ଗଠନ ଦେଖି ଭଗବାନ ସେମାନଙ୍କୁ ଅଭିନନ୍ଦନ ଜଣାଇ ସେଠାରୁ ପାରିଲେୟ୍ୟକ ବନକୁ

(୧) ଦେଖନ୍ତୁ—"ବୁଦ୍ଧଲୀଳାସାର ସଂଗ୍ରହ" ପୃ: ୧୮୭-୧୮୮

ଯାତ୍ରା କଲେ । ସେହି ସମୟରେ ଗୋଟିଏ ହାତୀ ଦଳର ଏକ ଦନ୍ତା ହାତୀ ନିଜ ଦଳ ଉପରେ ବିରକ୍ତ ହୋଇ ସେହି ବଣରେ ଏକାକୀ ରହୁଥିଲା । ବୁଦ୍ଧ ଦେବଙ୍କୁ ସେ ସ୍ୱାଗତ ଜଣାଇଲା । ସେଠାରେ କିଛି ସମୟ ରହି ଭଗବାନ୍ ଶ୍ରାବସ୍ତୀ ଚାଲି ଗଲେ ।

ଏଣେ କୌଶାମ୍ବୀର ଉପାସକମାନେ କଳହକାରୀ ଭିକ୍ଷୁମାନଙ୍କୁ ଉପଯୁକ୍ତ ଶିକ୍ଷା ଦେବା ଉଦ୍ଦେଶ୍ୟରେ ସେମାନଙ୍କୁ ଆଦର ସତ୍କାର ନ କରିବାକୁ ଓ ଭିକ୍ଷା ନ ଦେବା ପାଇଁ ସ୍ଥିର କଲେ । ତାହା ଫଳରେ ସେହି ଭିକ୍ଷୁମାନେ ଠିକ୍ ବାଟକୁ ଆସିଗଲେ ଓ ସେମାନେ ମଧ୍ୟ ଶ୍ରାବସ୍ତୀ ଯାତ୍ରା କଲେ । ସେତିକି ବେଳେ କଳହ ତୁଟାଇବା ନିମନ୍ତେ ବୁଦ୍ଧ କେତେକ ନିୟମ ଗଠନ କଲେ ଓ ଉପାଳି ପ୍ରଭୃତି ଭିକ୍ଷୁମାନଙ୍କ ଦ୍ୱାରା ବିବାଦର ନିଷ୍ପତ୍ତି କରାଇଲେ । (୧)

'ମଜ୍‌ଝିମ ନିକାୟ'ର ଉପକ୍‌କିଲେସ ସୁତ୍ତରେ ( ସୂ-୧୨୮ ) ମହାବଗ୍‌ଗର ଅନେକ କଥା ଦେଖିବାକୁ ମିଳେ । କିନ୍ତୁ ସେ ମଧ୍ୟରେ ଦୀର୍ଘାୟୁ ଚରିତ ନାହିଁ । ଏହି ସୁତ୍ତ ପ୍ରାଚୀନ ବଂସ ଦାବ ବନରେ ହିଁ ସମାପ୍ତ ହୋଇଥିଲା । ଭଗବାନ୍ ବୁଦ୍ଧ, ପାରିଲେୟ୍ୟକ ବନକୁ ଯିବା କଥା ଏହି ସୁତ୍ତରେ ଉଲ୍ଲିଖିତ ହୋଇ ନାହିଁ । ଉଦାନ ବଗ୍‌ଗରେ ତାହା ଅଛି ।

'କୋସମ୍ବିୟ ସୁତ୍ତ'ରେ ଏହାଠାରୁ ଭିନ୍ନ ପ୍ରକାରେ ଚରିତଟି ବର୍ଣ୍ଣିତ ହୋଇଛି । ତହିଁର ସାରକଥା ହେଉଛି—

ଭଗବାନ୍ ବୁଦ୍ଧ କୌଶାମ୍ବୀର ଘୋଷିତା—ରାମରେ ଅବସ୍ଥାନ କରୁଥିଲେ । ସେହି ସମୟରେ କୌଶାମ୍ବୀର ଭିକ୍ଷୁମାନେ ପରସ୍ପର

(୧)ଦେଖନ୍ତୁ—''ବୌଦ୍ଧ ସଂଘାର ପରିଚୟ''ପୃଷ୍ଠା ୩୭-୪୩ ।

ମଧ୍ୟରେ କଳହ କରୁଥିଲେ । ଭଗବାନ୍ ବୁଦ୍ଧ ଏକଥା ଜାଣିବାପରେ ସେମାନଙ୍କୁ ଡକାଇ ଆଣି କହିଲେ—"ହେ ଭିକ୍ଷୁଗଣ" ଆପଣମାନେ ଯେତେବେଳେ ପରସ୍ପର ମଧ୍ୟରେ କଳହ କରୁଛନ୍ତି, ସେତେବେଳେ ଆପଣମାନଙ୍କର ପାରସ୍ପରିକ କାୟିକ, ବାଚିକ ଓ ମାନସିକ କର୍ମ କଣ ମୈତ୍ରୀମୟ ହୋଇପାରିବ ?"

"ଆଜ୍ଞା, ନୁହେ ।"—ଭିକ୍ଷୁମାନେ ଉତ୍ତର ଦେଲେ । ତାପରେ ଭଗବାନ୍ କହିଲେ, "ଏହା ଯଦି ଠିକ୍, ତାହା ହେଲେ ଆପଣମାନେ କଳହ କରୁଛନ୍ତି କାହିଁକି ? ନିରର୍ଥକ ମନୁଷ୍ୟ ! ଆପଣମାନଙ୍କ ପାଇଁ ଏହିପରି କଳହ ସର୍ବଦା ହାନିକାରକ ଓ ଦୁଃଖ ଦାୟକ ହେବ ।"

ଭଗବାନ ପୁଣି କହିଲେ—"ଏହି ଛଅଗୋଟି ସ୍ମରଣୀୟ କଥା କଳହ ଦୂର କରେ, ସଂଗଠନ ଏବଂ ଏକତାର କାରଣ ହୁଏ । ଏଗୁଡ଼ିକ କଣ ?

(୧) ମୈତ୍ରୀମୟ କାୟିକ କର୍ମ, (୨) ମୈତ୍ରୀମୟ ବାଚିକ କର୍ମ, (୩) ମୈତ୍ରୀମୟ ମାନସିକ କର୍ମ, (୪) ଉପାସକମାନଙ୍କଠାରୁ ପ୍ରାପ୍ତ ସମସ୍ତ ଦାନ ଧର୍ମ, ସଂଘରେ ସମାନ ଭାଗରେ ବଣ୍ଟନ ପୂର୍ବକ ଉପଭୋଗ, (୫) ନିଜ ଶୀଳରେ ଆଦୌ ତ୍ରୁଟି ନ ରଖିବା, (୬) ଏବଂ ଆର୍ଯ୍ୟ ଶ୍ରାବକଙ୍କ ଶୋଭାବର୍ଦ୍ଧକ ସମ୍ୟକ୍ ଦୃଷ୍ଟିରକ୍ଷା କରିବା ।

ଭଗବାନ୍ ବୁଦ୍ଧ ଏହି ସମ୍ୟକ୍ ଦୃଷ୍ଟିର ବିସ୍ତୃତ ବିସ୍ତର କରିଛନ୍ତି । ଏଠାରେ ତାହାଁର ବିବରଣୀ ଦେବା ଅନାବଶ୍ୟକ । ଏହି ଉପଦେଶ ଶେଷରେ ଭିକ୍ଷୁମାନେ ଭଗବାନଙ୍କ ଭାଷଣକୁ ଅଭିନନ୍ଦନ ଜଣାଇଥିଲେ ।

ଏହାର ଅର୍ଥ ହେଉଚି, ବିବାଦ ସେଠାରେ ହିଁ ସମାପ୍ତ ହୋଇଗଲା । ତା ନ ହୋଇଥିଲେ ଭଗବାନଙ୍କ ଭାଷଣକୁ ସେମାନେ ଅଭିନନ୍ଦନ କରିଥାନ୍ତେ କପରି ?'ମହାବଗ୍ଗ'ରେ ତଥା'ଉପକ୍କିଳେସ ସୁତ୍ତ'ରେ ଭିକ୍ଷୁମାନଙ୍କର ଏହି ଅଭିନନ୍ଦନର ଉଲ୍ଲେଖ ଦେଖା ଯାଏନାହିଁ । ଭିକ୍ଷୁମାନେ କଳହ କରୁଥିଲେ ଏବଂ ସେମାନଙ୍କ ପ୍ରତି ବିରକ୍ତ ହୋଇ ଭଗବାନ୍ ବଂସଦାବ ବନକୁ ଚାଲିଗଲେ, ତହିଁରେ କେବଳ ଏହିକଥା କୁହାଯାଇଛି । ଅତଏବ, ଏହି ପରସ୍ପର ବିରୋଧୀ ଉକ୍ତିର ସମନ୍ୱୟ କରାଯିବ କପରି ?

ଅଙ୍ଗୁତ୍ତର ନିକାୟ, ଚତୁକ୍କ ନିପାତର ୨୪୧ ତମ ସୁତ୍ତରେ ତଳ ଲିଖିତ କଥାଟି କୁହା ଯାଇଛି । ଥରେ, ଭଗବାନ୍ କୌଶାମ୍ବୀର ଘୋଷିତାରାମରେ ରହୁଥିଲେ । ସେତେବେଳେ ଆୟୁଷ୍ମାନ୍ ଆନନ୍ଦ ତାଙ୍କ ନିକଟକୁ ଯାଇ, ପ୍ରଣାମ କରି ଏକ ପାର୍ଶ୍ୱରେ ବସିଗଲେ । ଭଗବାନ ତାଙ୍କୁ ପଚାରିଲେ—"ଆନନ୍ଦ ! ସେହି କଳହ କଣ ତୁଟିଗଲା ?" ଆନନ୍ଦ କହିଲେ "ଭଦନ୍ତ ! କଳହ ତୁଟିବ କପରି ? ଅନୁରୁଦ୍ଧଙ୍କ ଶିଷ୍ୟ ବାହିୟ ସଂଘଭେଦରେ ପ୍ରବୃତ୍ତ ଥିଲା ପରି ଜଣା ଯାଉଛି ଏବଂ ଅନୁରୁଦ୍ଧ ତାଙ୍କୁ କିଛି କହୁନାହାନ୍ତି ।"

ଭଗବାନ—"ତେବେ, ଆନନ୍ଦ ! ସଂଘରେ ଲାଗିଥିବା କଳହର ସମାଧାନ କଣ କେବେ ଅନୁରୁଦ୍ଧ କରିଥାଏ ? ତୁମେ, ସାରିପୁତ୍ର ଓ ମୋଗ୍ଗଲ୍ଲାନ କଣ ସେହି କଳହ ତୁଟାଇ ଦେଇ ପାରିବ ନାହିଁ ?"

ଏଥିରୁ ଜଣାଯାଏ ଯେ, ସେହି କଳହ ବାହିୟଙ୍କ ହେତୁରୁ ଆରମ୍ଭ ହୋଇ ବଢ଼ି ଯାଇଥିଲା ଏବଂ ତାକୁ ତୁଟାଇବା ପାଇଁ ସ୍ୱୟଂ ଭଗବାନ ପ୍ରଯତ୍ନଶୀଳ ହୋଇଥିଲେ । ଭିକ୍ଷୁମାନଙ୍କ ସଭାରୁ

ଭଗବାନ୍ ବୁଦ୍ଧ କିଛି ସମୟ ଲାଗି ଦୂରକୁ ଚାଲି ଯାଇଥାଆନ୍ତି ପଛକେ, ମାତ୍ର କୌଶାମ୍ବୀରେ ହିଁ ସେହି କଳହ ତୁଟି ଯାଇଥିଲା ।

କଳହ କରୁଥିବା ଭିକ୍ଷୁମାନଙ୍କୁ ସଂଘରୁ ବହିଷ୍କାର କରିବା ଓ ସେମାନେ ଠିକ୍ ବାଟକୁ ଆସିଯିବା ପରେ ପୁଣି କୌଣସିପ୍ରକାରେ କଳହ ତୁଟାଇ ଦେବା କଥା ଦେଖାଇବା ଉଦ୍ଦେଶ୍ୟରେ 'ମହାବଗ୍‌ଗ'କାର ଏହିକଥା ବର୍ଣ୍ଣନା କରିଛନ୍ତି ବୋଲି ପ୍ରମାଣିତ ହେଉଛି । ଏହିପରି ସାଧାରଣ କଳହଦ୍ୱାରା ସଂଘ ଉପରେ ପ୍ରତିକୂଳ ପ୍ରଭାବ ପଡ଼ିବା ଆଦୌ ସମ୍ଭବପର ନଥିଲା ।

## ଭିକ୍ଷୁଣୀ ସଂଘ ସ୍ଥାପନା

'ଚୂଲ୍ଲବଗ୍‌ଗ'ରେ ଭିକ୍ଷୁଣୀ ସଂଘ ସ୍ଥାପନାର ଉଲ୍ଲେଖ ହୋଇଛି । ତଳେ ତାହାର ସାରକଥା ଦିଆ ଯାଉଛି—

ଭଗବାନ୍ ବୁଦ୍ଧ କପିଳବସ୍ତୁର ନିଗ୍ରୋଧାରାମରେ ରହୁଥିଲେ । ଥରେ ମହା ପ୍ରଜାପତି ଗୌତମୀ ଭଗବାନଙ୍କ ନିକଟକୁ ଯାଇ କହିଲେ—"ହେ ଭଦନ୍ତ ! ଆପଣ ନିଜ ସମ୍ପ୍ରଦାୟରେ ପ୍ରବ୍ରଜ୍ୟା ଗ୍ରହଣ ପାଇଁ ନାରୀମାନଙ୍କୁ ଅନୁମତି ଦିଅନ୍ତୁ ।" ଏହି ପ୍ରାର୍ଥନାକୁ ବୁଦ୍ଧ ତିନିଥର ଅସ୍ୱୀକାର କଲେ ଓ ସେଠାରୁ ବୈଶାଳୀ ଚାଲିଗଲେ । ମହାପ୍ରଜାପତି ଗୌତମୀ ନିଜ ଶିର ମୁଣ୍ଡନ କରି ଏବଂ ଶାକ୍ୟବଂଶୀୟ ବହୁ ନାରୀଙ୍କୁ ସଙ୍ଗରେ ନେଇ ଭଗବାନଙ୍କ ପଛେ ପଛେ ବୈଶାଳୀ ଯାତ୍ରା କଲେ । ତାହା ଫଳରେ ତାଙ୍କର ପାଦ ଫୁଲିଗଲା ଓ ଧୂଳିରେ ଦେହ ଧୂସରିତ ହୋଇଗଲା । ତାଙ୍କର ମୁଖ ମଣ୍ଡଳରେ ଉଦାସୀନତାର ଛାୟା ଦେଖା ଯାଉଥିଲା । ତାଙ୍କୁ ଦେଖି, ଆନନ୍ଦ ତାଙ୍କର ଉଦାସୀନତାର କାରଣ ପଚାରିବାରୁ ସେ କହିଲେ— "ବୌଦ୍ଧ ସଂପ୍ରଦାୟରେ ପ୍ରବ୍ରଜ୍ୟା ଗ୍ରହଣ କରିବାର ଅନୁମତି

ଭଗବାନ୍ ବୁଦ୍ଧ ନାରୀମାନଙ୍କୁ ଦେଇ ନାହାନ୍ତି । ସେହି ହେତୁରୁ ମୁଁ ଉଦାସୀନ ହୋଇ ପଡ଼ିଛି ।” ତାହା ପରେ ତାଙ୍କୁ ସେଠାରେ ରହିବାକୁ କହି ଆନନ୍ଦ, ସ୍ତ୍ରୀ ମାନଙ୍କୁ ପ୍ରବ୍ରଜ୍ୟା ଗ୍ରହଣ ପାଇଁ ଅନୁମତି ଦେବା ନିମନ୍ତେ ଭଗବାନଙ୍କୁ ଅନୁରୋଧ କଲେ; କିନ୍ତୁ ବୁଦ୍ଧଦେବ ସେ ଅନୁରୋଧ ରକ୍ଷା କଲେନାହିଁ । ତେଣୁ ଆନନ୍ଦ କହିଲେ— “ତେବେ କଣ ତଥାଗତଙ୍କର ପ୍ରତିଷ୍ଠିତ ଧର୍ମ ସଂପ୍ରଦାୟରେ କୌଣସି ସ୍ତ୍ରୀ, ଭିକ୍ଷୁଣୀ ହୋଇ ସ୍ରୋତ-ଆପତ୍ତି ଫଳ ସକୃଦାଗାମିଫଳ, ଅନାଗାମିଫଳ ଓ ଅର୍ହତ୍ତ୍ୱଫଳ (୧) ଲାଭ କରିବା ସମ୍ଭବ ନୁହେ ?” ଉତ୍ତରରେ ଭଗବାନ୍ ‘ହଁ ସମ୍ଭବ’ ବୋଲି କହିବାରୁ ଆନନ୍ଦ ପୁଣି କହିଲେ—“ମା ଛେଉଣ୍ଡ ଅବସ୍ଥାରେ ମାଉସୀ ଦୁଧ ପିଆଇ ଆପଣଙ୍କୁ ବଡ଼ କରିଛନ୍ତି— ତାଙ୍କର ଅନୁରୋଧରେ ଆପଣ ସ୍ତ୍ରୀମାନଙ୍କୁ ପ୍ରବ୍ରଜ୍ୟା ଦିଅନ୍ତୁ ।”

ଭଗବାନ କହିଲେ— “ମହାପ୍ରଜାପତି ଗୌତମୀ ଯଦି ଆଠୋଟି ଗୁରୁ ଦାୟିତ୍ୱପୂର୍ଣ୍ଣ ନିୟମ (ଅଟ୍‌ଠ ଗୁରୁ ଧମ୍ମା) ମାନନ୍ତି, ତାହା ହେଲେ ପ୍ରବ୍ରଜ୍ୟା ଗ୍ରହଣ କରିବାକୁ ମୁଁ ନାରୀମାନଙ୍କୁ ଅନୁମତି ଦେବି । (୧) ଜଣେ ଭିକ୍ଷୁଣୀ ଯେତେଦିନ ପର୍ଯ୍ୟନ୍ତ ସଂଘରେ ରହିବ ସେ ଶ୍ରେଷ୍ଠ ବଡ଼ ସମସ୍ତ ଭିକ୍ଷୁଙ୍କୁ ପ୍ରଣାମ କରିବ । (୨) ଯେଉଁ ଗ୍ରାମରେ ଭିକ୍ଷୁ ନଥିବେ, ସେଠାରେ ଭିକ୍ଷୁଣୀ ରହିବେ ନାହିଁ । (୩) ପ୍ରତ୍ୟେକ ପକ୍ଷରେ କେବେ ଉପବାସ କରିବାକୁ ହେବ ଓ ଧର୍ମ ଉପଦେଶ ଶୁଣିବାକୁ ହେବ, ଏହି ଦୁଇଟି କଥା ଭିକ୍ଷୁଣୀ ଭିକ୍ଷୁସଂଘକୁ ପଚାରି ବୁଝିବ । (୪) ଚତୁର୍ମାସ୍ୟାପରେ ଭିକ୍ଷୁସଂଘ ଓ ଭିକ୍ଷୁଣୀ ସଂଘର ପ୍ରବାରଣା (୧) ଭିକ୍ଷୁଣୀକୁ ହିଁ କରିବାକୁ

---

(୧) ସ୍ୱଦୋଷ ପ୍ରକାଶ ଲାଗି ସମସ୍ତଙ୍କୁ ପ୍ରାର୍ଥନା, ଦେଖନ୍ତୁ—“ବୌଦ୍ଧ ସଙ୍ଘାର୍ ପରିଚୟ” ପୃ: ୨୪—୨୬ ।

ପଡ଼ିବ । (୫) ଯେଉଁ ଭିକ୍ଷୁଣୀର 'ସଂଘାଦି ଶେଷ' ଆପତ୍ତି ହେବ, ତାକୁ ଦୁଇଟି ସଂଘରୁ ପନ୍ଦରଦିନ ପର୍ଯ୍ୟନ୍ତ ଗୃହରେ ବାହାରେ ରହିବାକୁ ପଡ଼ିବ (୧) । (୬) ଦୁଇବର୍ଷ ପର୍ଯ୍ୟନ୍ତ ଯେ ଅଧ୍ୟୟନ କରି ସାରିଛି ସେହିପରି ଶ୍ରାମଣେରୀକୁ ଉଭୟ ସଂଘ ଉପସଂପଦା ଦେଇଦେଉ । (୭) ଯେ କୌଣସି କାରଣରୁ ହେଉ ପଛେ, ଭିକ୍ଷୁଣୀ ଭିକ୍ଷୁଙ୍କୁ ଗାଳି ଗୁଲଜ କରି ପାରିବ ନାହିଁ ଏବଂ ଭିକ୍ଷୁ ତାକୁ ଉପଦେଶ ଦେବ ।"

ଆନନ୍ଦ, ମହା ପ୍ରଜାପତି ଗୌତମୀଙ୍କୁ ଏହି ଆଠୋଟି ନିୟମ କହିଲେ ଏବଂ ଗୌତମୀ ମଧ୍ୟ ସେ ଗୁଡ଼ିକୁ ଗ୍ରହଣ କଲେ । ଏସବୁ କଥା ଅଙ୍ଗୁତ୍ତର ନିକାୟର ଅଟ୍ଠ କଥାରେ ମଧ୍ୟ ଦେଖିବାକୁ ମିଳେ । ଏହାଛଡ଼ା, ଭଗବାନ ଆନନ୍ଦଙ୍କୁ କହି ଅଛନ୍ତି-"ହେ ଆନନ୍ଦ ! ଯଦି ସ୍ତ୍ରୀ ମାନଙ୍କୁ ଏହି ଧର୍ମ-ବିନୟରେ ପ୍ରବ୍ରଜ୍ୟା ନମିଳନ୍ତା ତାହାହେଲେ, ଏହି ଧର୍ମ (ବ୍ରହ୍ମଚର୍ଯ୍ୟ) ଏକ ହଜାର ବର୍ଷ ପର୍ଯ୍ୟନ୍ତ ବଳବତ୍ତର ରହନ୍ତା । କିନ୍ତୁ ସ୍ତ୍ରୀମାନଙ୍କୁ ବର୍ତ୍ତମାନ୍ ସଂନ୍ୟାସରେ ଅଧିକାର ମିଳୁଥିବାରୁ, ଏହି ସଦ୍-ଧର୍ମ ୫ ଶହ ବର୍ଷ ପର୍ଯ୍ୟନ୍ତ ରହିବ ।"

ଏହିପରି ଭାବରେ ବିନୟ ଓ ଅଙ୍ଗୁତ୍ତର ନିକାୟର ସାମଞ୍ଜସ୍ୟ ରହିଛି । ତଥାପି, ଅନୁମିତ ହେଉଛି ଯେ, ଏହି ଆଠୋଟି ଗୁରୁଧର୍ମ ପରବର୍ତ୍ତୀ କାଳର ସୃଷ୍ଟି । ଏହି ଅନୁମାନର କାରଣ ହେଉଛି ଏହି ଯେ, ବିନୟର ନିୟମ ଗଠନରେ ଭଗବାନ୍ ବୁଦ୍ଧ ଯେଉଁ ରୀତି ଅନୁସରଣ କରୁଥିଲେ, ଏହି ନିୟମ ସହିତ ତାହା ଖାପ ଖାଉନାହିଁ ।

ଭଗବାନ୍ ବୁଦ୍ଧ ବେରଂଞ୍ଜା ଗ୍ରାମ ନିକଟରେ ରହୁଥିଲେ । ସେହି ଗ୍ରାମର ନିକଟବର୍ତ୍ତୀ ଅଞ୍ଚଳ ମାନଙ୍କରେ ଦୁର୍ଭିକ୍ଷ ପଡ଼ିବାରୁ

(୧) ସମସ୍ତଙ୍କ ସନ୍ତୋଷ ଲାଗି 'ବିହାର' ବାହାରେ ରାତି କଟାଇବା; ଦେଖନ୍ତୁ—"ବୌଦ୍ଧ ସଂଘାର ପରିଚୟ" ପୃ: ୪୭ ।

ଭିକ୍ଷୁମାନଙ୍କୁ ଭୟଙ୍କର କଷ୍ଟ ହେଲା ତେଣୁ ; ଭିକ୍ଷୁମାନଙ୍କ ନିମନ୍ତେ ଆଚାରର ବ୍ୟବହାରର ନିୟମ ଗଠନ କରିବାପାଇଁ ସାରିପୁତ୍ର ଭଗବାନଙ୍କୁ ପ୍ରାର୍ଥନା କଲେ । ଭଗବାନ କହିଲେ—"ହେ ସାରିପୁତ୍ର ! ତୁମେ ଧୈର୍ଯ୍ୟ ଧର । କି ପରିସ୍ଥିତିରେ ନିୟମ ଗଠନ କରାଯାଏ, ତାହା ତଥାଗତଙ୍କୁ ଜଣା । ଯେତେଦିନ ପର୍ଯ୍ୟନ୍ତ ସଂଘରେ ପାପାଚାର ପ୍ରବେଶ କରିନାହିଁ, ତଥାଗତ ତାହାର ନିବାରଣ ଲାଗି ନିୟମ ଗଠନ କରିବେ ନାହିଁ ?" (୧)

ବୁଦ୍ଧଙ୍କର ଏହି ନୀତି ଅନୁସାରେ ସମସ୍ତ ନିୟମ ଗଠନ କରା ଯାଇଥିଲା । ପ୍ରଥମ କଥା, କୌଣସି ଭିକ୍ଷୁ କିଛି ଅପରାଧ ବା ଦୋଷ କଲାପରେ ସେ କଥା ଯେତେବେଳେ ଭଗବାନଙ୍କର ଦୃଷ୍ଟି ଗୋଚର ହୁଏ ସେତେବେଳେ ସେ ଭିକ୍ଷୁସଂଘ ଡକାଇ ନିୟମ ଗଠନ କରନ୍ତି । ପୁଣି, ଥିବା ନିୟମର ପ୍ରୟୋଗ ଉପଯୁକ୍ତ ଭାବରେ କରାଯାଉ ନାହିଁ ବୋଲି ଯଦି ଅନୁଭୂତ ହେଉଥିଲା, ତାହାହେଲେ ତାକୁ ମଧ୍ୟ ସଂଶୋଧନ କରି ଦେଉଥିଲେ ।

କିନ୍ତୁ ମହା ପ୍ରଜାପତି ଗୌତମୀଙ୍କ ସମ୍ପର୍କରେ ଏହି କ୍ରମ ଅନୁସୃତ ହୋଇ ନଥିଲା । ଭିକ୍ଷୁଣୀମାନଙ୍କର କୌଣସି ଦୋଷ ପରିଲକ୍ଷିତ ହେବା ପୂର୍ବରୁ ପୂର୍ବୋକ୍ତ ଆଠୋଟି ନିୟମ ସେମାନଙ୍କ ଉପରେ ଲଦି ଦିଆଯାଉ ଥିଲା, ଏହା ବଡ଼ ଆଶ୍ଚର୍ଯ୍ୟକର ବୋଧ ହେଉଛି । ଏହି ହେତୁରୁ ବିଶ୍ୱାସ କରା ଯାଉଛି ଯେ ନିଜ ହାତରେ ସମସ୍ତ ଅଧିକାର ରଖିବା ପାଇଁ, ଭିକ୍ଷୁସଂଘ, ପରେ ଏହି ନିୟମାବଳୀ ଗଠନ କରି ଅଙ୍ଗୁତ୍ତର ନିକାୟରେ ସମାବେଶିତ କରି ଦେଇଅଛନ୍ତି ।

(୧) ଦେଖନ୍ତୁ—"ବୌଦ୍ଧ ସଂଘାର ପରିଚୟ" ପୃଃ ୫୨—୫୩ ।

ସୁତ୍ତପିଟକ, ବିନୟପିଟକ ଅପେକ୍ଷା ପ୍ରାଚୀନତର । ତଥାପି ଏଥିରେ ମଧ୍ୟ କେତେକ ସୁତ୍ତ ପରେ ଯୋଡ଼ ଦିଆଯାଇଛି ଏବଂ ଯଥାସମ୍ଭବ ଏହି ସୁତ୍ତଟି ମଧ୍ୟ ସେ ମଧ୍ୟରୁ ଗୋଟିଏ । ଖ୍ରୀଷ୍ଟ ପୂର୍ବ ପ୍ରଥମ ବା ଦ୍ୱିତୀୟ ଶତାବ୍ଦୀରେ ଯେତେବେଳେ ମହାଯାନ ମାର୍ଗର ପ୍ରବଳ ପ୍ରସାର ହେଲା, ସେତେବେଳେ ଏହି ସୁତ୍ତ ରଚିତ ହୋଇ-ଥିବ । ଏଥିରେ ସଦ୍ଧର୍ମର ଲକ୍ଷ୍ୟ ହେଉଛି ସ୍ଥବିର-ବାଦ-ପନ୍ଥା । ସୂତ୍ରକାରଙ୍କର ଭବିଷ୍ୟତ୍ ବାଣୀ ଏହା ହୋଇଥିବ ଯେ ଭିକ୍ଷୁଣୀ ସଂଘର ସ୍ଥାପନା ହେତୁ ତାହା ପାଞ୍ଚଶହ ବର୍ଷ ପର୍ଯ୍ୟନ୍ତ ମାତ୍ର ବଞ୍ଚି ରହିବ ଓ ତାହାପରେ ସର୍ବତ୍ର ମହାଯାନ ସମ୍ପ୍ରଦାୟର ପ୍ରସାର ଘଟିବ । ଏହି ଭବିଷ୍ୟତ୍ କଥାରୁ ହିଁ ପ୍ରମାଣିତ ହେଉଅଛି ଯେ ଏହି ସୁତ୍ତ ଭଗବାନଙ୍କ ପରିନିର୍ବାଣର ପାଞ୍ଚଶହ ବର୍ଷ ପରେ ରଚିତ ହୋଇଥିବ ।

ଭାରତ ବର୍ଷରେ ବୁଦ୍ଧଦେବ ଯଦି ପ୍ରଥମ ଭିକ୍ଷୁଣୀ ସଂଘ ସ୍ଥାପିତ କରି ଥାଆନ୍ତେ, ତାହାହେଲେ ଉକ୍ତ ଅଷ୍ଟ ଗୁରୁ ଧର୍ମର ଉଲ୍ଲେଖ, ଅଳ୍ପମାତ୍ରାରେ ହେଲେ ମଧ୍ୟ, ଇତିହାସରେ ଦେଖିବାକୁ ମିଳୁଥାଆନ୍ତା କିନ୍ତୁ ପ୍ରକୃତ ଘଟନା ତା ନୁହେଁ । ଜୈନ ତଥା ଅନ୍ୟାନ୍ୟ ସମ୍ପ୍ରଦାୟ ବୌଦ୍ଧ ସମ୍ପ୍ରଦାୟର ଶହେଦୁଇଶହ ବର୍ଷ ପୂର୍ବରୁ ଆରମ୍ଭ ହୋଇଥିଲା ଏବଂ ସେହି ସମ୍ପ୍ରଦାୟମାନଙ୍କରେ ଭିକ୍ଷୁଣୀମାନଙ୍କର ବୃହଦାକାର ସଂଘମାନ ଥିଲା । କେତେକ ଭିକ୍ଷୁଣୀ ଚତୁର୍ଥ ଏବଂ ବିଦୁଷୀ ମଧ୍ୟଥିଲେ । ସେମାନଙ୍କର ଏପରି ବର୍ଣ୍ଣନା ପାଳି ସାହିତ୍ୟରେ ଅନେକ ସ୍ଥଳରେ ଦେଖିବାକୁ ମିଳେ । ସେହି ରୀତିର ଅନୁସରଣରେ ବୁଦ୍ଧଙ୍କର ଭିକ୍ଷୁଣୀ ସଂଘର ସ୍ଥାପନା ହୋଇ-ଥିଲା । ଗଣଶକ୍ତି ଚାଳିତ ରାଜ୍ୟରେ ଓ ଏକଛତ୍ରାଧିପତିଙ୍କ ରାଜ୍ୟରେ ମଧ୍ୟ ନାରୀମାନଙ୍କର ଯଥେଷ୍ଟ ମାନରକ୍ଷା କରାଯାଉଥିଲା । ତେଣୁ

ଭିକ୍ଷୁଣୀ ସଂଘର ରକ୍ଷା ନିମନ୍ତେ ଏହି ବଚନ ନିୟମ ରଚନାର କୌଣସି ଆବଶ୍ୟକତା ନ ଥିଲା । ଅଶୋକଙ୍କର ରାଜତ୍ୱପରେ ଏହି ପରିସ୍ଥିତି ପରିବର୍ତ୍ତିତ ହୋଇ ଗଲା । ଏହି ଦେଶ ଉପରେ ଯବନ ଓ ଶକମାନଙ୍କର ଆକ୍ରମଣ ଆରମ୍ଭ ହୋଇଗଲା । ବେଳକୁ ବେଳ ନାରୀମାନଙ୍କର ଆସନ ଅଧୋଗତ ହେଲା ଏବଂ ସମାଜରେ ସେମାନଙ୍କର ସମ୍ମାନ ରହିଲା ନାହିଁ । ସେହି ସମୟରେ ଯଦି ଭିକ୍ଷୁଣୀମାନଙ୍କ ପାଇଁ ଏପ୍ରକାର ନିୟମମାନ ଗଠନକରାଯାଇ ଥିବ ତାହାହେଲେ ତହିଁରେ ଆଶ୍ଚର୍ଯ୍ୟହେବାର କିଛି କାରଣ ନାହିଁ ।

## ରାହୁଲ ଶ୍ରାମଣେର

ଭିକ୍ଷୁ ସଂଘ ଏବଂ ଭିକ୍ଷୁଣୀ ସଂଘ ପ୍ରତିଷ୍ଠିତ ହୋଇ ସାରିବା ପରେ ତହିଁରେ ଶ୍ରାମଣେର ଏବଂ ଶ୍ରାମଣେରୀମାନଙ୍କୁ ପ୍ରବେଶ କରାଇବାକୁ ପଡ଼ିଲା । ପ୍ରଥମେ ବୁଦ୍ଧଦେବ ରାହୁଲକୁ ଶ୍ରାମଣେର କରିଥିବା କଥା ଏହିପରି ଭାବରେ 'ମହା ବଗ୍‌ଗରେ' ବର୍ଣ୍ଣିତ ହୋଇଅଛି ।

ଭଗବାନ ରାଜଗୃହରେ କିଛି ସମୟ ଅବସ୍ଥାନ କରି କପିଳବସ୍ତୁ ଯାତ୍ରା କଲେ । ସେଠାରେ ସେ ନିଗ୍ରୋଧାରାମରେ ଅବସ୍ଥାନ କରୁଥିଲେ । ଦିନେ ଶୁଦ୍ଧୋଦନଙ୍କ ଗୃହ ନିକଟରେ ଭିକ୍ଷାଟନ ଉଦ୍ଦେଶ୍ୟରେ ବୁଲୁଥିଲା ବେଳେ ରାହୁଲଙ୍କର ମାତା ତାଙ୍କୁ ଦେଖିଲେ । ରାହୁଲଙ୍କୁ ସେ କହିଲେ—"ଆରେ ପୁଅ ରାହୁଲା, ଏ ହେଉଛନ୍ତି ତୋର୍ ବାପା । ତାଙ୍କ ପାଖକୁ ଯାଇ ତୁ ତୋର ଭାଗ ( ଦାୟ ଭାଗ ) ମାଗି ଆଣ ।" ରାହୁଲ ମାତାଙ୍କର କଥା ଶୁଣି ଭଗବାନଙ୍କ ନିକଟକୁ ଗଲେ ଏବଂ କହିଲେ— "ହେ ଶ୍ରମଣ ! ଆପଣଙ୍କର ଛାୟା ବଡ଼ ସୁଖଦାୟକ ।" ଭଗବାନ ସେଠାରୁ ଅନ୍ୟତ୍ର

ଚାଲି ଗଲେ । ନିଜ ପୈତୃକ ସମ୍ପତ୍ତି ମାଗି ମାଗି ରାହୁଲ ମଧ୍ୟ ତାଙ୍କ ପଛେ ପଛେ ଚାଲିଲେ । ବିହାରକୁ ଫେରିବା ପରେ ନିଜ ଦାୟ ଭାଗ ରାହୁଲଙ୍କୁ ଦେବା ଉଦ୍ଦେଶ୍ୟରେ ଭଗବାନ୍ ସାରିପୁତ୍ରଙ୍କୁ ଡାକି ତାଙ୍କୁ ଶ୍ରାମଣେର କରିଦେଲେ । ଏକଥା ଶୁଦ୍ଧୋଦନଙ୍କୁ ଭଲ ଲାଗିଲା ନାହିଁ । ସେ ଭଗବାନଙ୍କୁ ବୁଝାଇଲେ ଯେ ଶିଶୁମାନଙ୍କୁ ପ୍ରବ୍ରଜ୍ୟା ଦାନ କଲେ ସେମାନଙ୍କର ଅଭିଭାବକମାନଙ୍କୁ ଭୟଙ୍କର କଷ୍ଟ ହୁଏ । ଆହୁରିମଧ୍ୟ, ସେ ଭଗବାନଙ୍କ ଦ୍ୱାରା ଏହି ନିୟମ ଗଠନ କରାଇନେଲେ ଯେ ଅଳ୍ପବୟସ୍କ ବ୍ୟକ୍ତିଙ୍କୁ ପ୍ରବ୍ରଜ୍ୟା ପ୍ରଦାନ କରାଯିବ ନାହିଁ ।

ଏହି ବିଷୟ କିନ୍ତୁ ଐତିହାସିକ ବିଚାରରେ ସତ୍ୟ ପରି ପ୍ରତୀତ ହେଉନାହିଁ । ପ୍ରଥମ କଥା, ଶାକ୍ୟ ଶୁଦ୍ଧୋଦନ କପିଳ-ବସ୍ତୁରେ ରହୁ ନଥିଲେ । ଦ୍ୱିତୀୟ କଥା, ବୁଦ୍ଧଦେବଙ୍କ ବୃଦ୍ଧାବସ୍ଥାରେ ନିଗ୍ରୋଧାରାମ ନିର୍ମାଣ କରି ଯାଇଥିଲା । ସେତେବେଳକୁ ରାହୁଲ ଅଳ୍ପ ବୟସ୍କ ନଥିଲେ । ଅତଏବ, ଏହା ବିଶ୍ୱାସ କରାଯାଉ ଅଛି ଯେ, କେତେ ଶତାବ୍ଦୀପରେ ଏହି କଥାଟି ମନରୁ ଗଢ଼ା ଯାଇ ମହାବଗ୍‌ଗରେ ଯୋଡ଼ି ଦିଆଯାଇଛି ।

'ଅମ୍ବଲଟ୍‌ଠିକ ରାହୁଲୋବାଦସୁତ୍ତ'ର ଅଟ୍‌ଠ କଥାରେ କୁହାଯାଇଛି ଯେ, ବୁଦ୍ଧଦେବ ଯେତେବେଳେ ରାହୁଲଙ୍କୁ ଶ୍ରାମଣେର ଦୀକ୍ଷା ଦେଲେ, ସେତେବେଳକୁ ତାଙ୍କର ବୟସ ହୋଇଥିଲା ସାତ ବର୍ଷ ମାତ୍ର । ବର୍ତ୍ତମାନ ପର୍ଯ୍ୟନ୍ତ ମଧ୍ୟ ବୌଦ୍ଧମାନଙ୍କର ଏହି ଧାରଣା ଅଛି । ଯଦି ବୁଦ୍ଧଦେବ ଗୃହ ତ୍ୟାଗ କରିବା ଦିନ ରାହୁଲ ଜନ୍ମ ହୋଇଥିଲେ ବୋଲି ଗ୍ରହଣ କରାଯାଏ, ତାହାହେଲେ ଶ୍ରାମଣେର ଦୀକ୍ଷା ଗ୍ରହଣ ସମୟରେ ରାହୁଲର ବୟସ ସାତବର୍ଷ ହୋଇଥିବା

ଅସମ୍ଭବ ପ୍ରତୀତ ହେଉଛି । ଗୃହତ୍ୟାଗ ପରେ ବୋଧିସତ୍ତ୍ୱ ସାତ-ବର୍ଷ ପର୍ଯ୍ୟନ୍ତ ତପଶ୍ଚରଣ କରିଥିଲେ ଓ ତତ୍ତ୍ୱବୋଧ ପରେ ପ୍ରଥମ ଚାତୁର୍ମାସ୍ୟ ବାରାଣସୀରେ କଟାଇ ଥିଲେ । ଏହାପରେ ସଂଘ ସ୍ଥାପନ କରିବା ପାଇଁ ଅତି କମ୍‌ରେ ବର୍ଷେ ସମୟ ଲାଗିଥିବ । ତେଣୁ, ଶ୍ରାମଣେର ଦୀକ୍ଷା ଗ୍ରହଣ ସମୟକୁ ରାହୁଲଙ୍କର ବୟସ ୭ ବର୍ଷ ହୋଇଥିବା ଆଦୌ ସମ୍ଭବପର ନୁହେଁ ।

ରାହୁଲଙ୍କୁ କିପରି ଶ୍ରାମଣେର କରାଯାଇଥିବ, ସୁତ୍ତନିପାତର ରାହୁଲ ସୁତ୍ତରୁ ତାହା ଅନୁମାନ କରିହେବ । ସେହି ସୁତ୍ତର ଅନୁବାଦ ଏଠାରେ ଦିଆଯାଉଛି ।

(ଭଗବାନ)— (୧) ନିରନ୍ତର ସମ୍ପର୍କ ହେତୁ ତୁମେ ପଣ୍ଡିତମାନଙ୍କୁ ଅବଜ୍ଞା କରୁନାହିଁ ତ ? ଲୋକମାନଙ୍କୁ ଜ୍ଞାନାଲୋକ ଦେଉଥିବା ସେହି ପଣ୍ଡିତଙ୍କର ଯଥୋଚିତ ସେବା ତୁମେ କରୁଛ ତ ?

(ରାହୁଲ)— (୨) ନିରନ୍ତର ସମ୍ପର୍କ ହେତୁ ମୁଁ ପଣ୍ଡିତଙ୍କୁ ଅବଜ୍ଞା କରୁନାହିଁ ! ଲୋକଙ୍କୁ ଜ୍ଞାନାଲୋକ ଦେଉଥିବା ସେହି ପଣ୍ଡିତଙ୍କର ମୁଁ ସବୁବେଳେ ସେବା କରୁଛି ।

( ଏହା ପ୍ରସ୍ତାବନାର ଗାଥା )

(ଭଗବାନ) — (୩) ସୁଖକର ବୋଧ ହେଉଥିବା ମନୋରମ ( ପଞ୍ଚ ଇନ୍ଦ୍ରିୟର ) ପଞ୍ଚବିଧ କାମୋପଭୋଗ ତ୍ୟାଗକରି ତୁମେ ଶ୍ରଦ୍ଧା ପୂର୍ବକ ଘରୁ ବାହାରି ଯାଅ ଓ ଦୁଃଖ ବିନାଶକ ହୁଅ ।

(୪) କଲ୍ୟାଣ କର ବନ୍ଧୁ ସହିତ ମିତ୍ରତା ସ୍ଥାପନକର । ତୁମର ନିବାସ ସ୍ଥାନ ଏପରି ଏକାନ୍ତ ହେଉ, ଯହିଁରେ ବିଶେଷ କୋଳାହଳ ହେଉ ନଥିବ । ତୁମେ ମିତାହାରୀ ହୁଅ ।

(୫) ଚୀବର (ବସ୍ତ୍ର), ପିଣ୍ଡପାତ (ଅନ୍ନ), ଔଷଧ ପଦାର୍ଥ ଏବଂ ନିବାସ ସ୍ଥାନରେ ତୃଷ୍ଣା ରଖନାହିଁ ଓ ପୁନର୍ଜନ୍ମ ପାଅନାହିଁ ।

(୬) ବିନୟର ନିୟମ ଅନୁସାରେ ପଞ୍ଚ ଇନ୍ଦ୍ରିୟର ସଂଯମ କର । କାୟଗତ ସ୍ମୃତି ରକ୍ଷା କର ଓ ବୈରାଗ୍ୟ ପୂର୍ଣ୍ଣ ହୁଅ ।

(୭) କାମ ବିକାର-ଯୁକ୍ତ ବିଷୟମାନଙ୍କରୁ ଶୁଭନିମିତ୍ତ ବର୍ଜନ କର ଏକାଗ୍ରତା ତଥା ସମାଧି ପ୍ରଦାୟକ ଅଶୁଭ ନିମିତ୍ତକୁ (୧) ଚିନ୍ତାକର ।

(୮) ଏବଂ ଅନିମିତ୍ତ (ନିର୍ବାଣ)ର ଭାବନା କର; ପୁଣି ଅହଙ୍କାର ତ୍ୟାଗ କର । ଅହଙ୍କାରକୁ ବିନାଶ କଲେ ତୁମେ ଶାନ୍ତିରେ ରହିବ ।

ଏହିପରି ଏହି ଗାଥାମାନଙ୍କରେ ଭଗବାନ ରାହୁଲଙ୍କୁ ବାରମ୍ବାର ଉପଦେଶ ଦେଇଅଛନ୍ତି ।

ଏହି ସୂତ୍ରରେ ସର୍ବମୋଟ ଆଠୋଟି ଗାଥାଅଛି । ଅଟ୍ଠ କଥାକାରଙ୍କ ମତରେ ଏ ମଧ୍ୟରୁ ଦ୍ୱିତୀୟ ଗାଥାଟି ହେଉଛି ରାହୁଲଙ୍କର ଓ ଅନ୍ୟ ଗାଥାଗୁଡ଼ିକ ଭଗବାନ ବୁଦ୍ଧଙ୍କର । ସେ ପୁଣି କହନ୍ତି, ପ୍ରଥମ ଗାଥାରେ ଭଗବାନ ଯାହାକୁ ପଣ୍ଡିତ ବୋଲି ସୂଚିତ କରିଅଛନ୍ତି ସେ ସାରିପୁତ୍ର ଛଡ଼ା ଅନ୍ୟ କେହି ନୁହନ୍ତି । ଏହା ପ୍ରକୃତ କଥା ପରି ଜଣା ଯାଉଛି । ବାଲ୍ୟାବସ୍ଥାରେ ବିଦ୍ୟାଶିକ୍ଷା ନିମନ୍ତେ ସେ ରାହୁଲଙ୍କୁ ସାରିପୁତ୍ରଙ୍କ ଦାୟିତ୍ୱରେ ଛାଡ଼ି ଦେଇଥିଲେ । ତାର ବର୍ଷେ ଦୁଇ ବର୍ଷପରେ ରାହୁଲ ବୟଃ ପ୍ରାପ୍ତ ହେବାରୁ ଭଗବାନ ତାଙ୍କୁ ଏହିଉପଦେଶ ଦେଇଥିବେ; କାରଣ, ଏହି ସୂତ୍ରରେ ଯେଉଁସବୁ

---

(୧) ଅଶୁଭ ଭାବନା ବିଷୟରେ ଦେଖନ୍ତୁ 'ସମାଧିମାର୍ଗ' ପୃ: ୪୧-୫୮ ।

ଉପଦେଶ ଦିଆ ଯାଉଛି, ଅଳ୍ପବୟସ୍କ ବାଳକ ପକ୍ଷରେ ସେଗୁଡ଼ିକ ବୋଧଗମ୍ୟ ନୁହେ । ରାହୁଲ ଯଦି ଶ୍ରାମଣେର ହୋଇସାରି ଥାଆନ୍ତି ତାହାହେଲେ "ତୁମେ ଘରୁ ବାହାରି ଯାଅ ଓ ଦୁଃଖ ବିନାଶକ ହୁଅ" ତାଙ୍କୁ ଏହି ଉପଦେଶ ଦେବାର ଆବଶ୍ୟକତା ନ ଥାନ୍ତା ।

ବ୍ରାହ୍ମଣ ଯୁବକମାନେ ରାଜଗୃହ ଯାଇ ବ୍ରହ୍ମଚର୍ଯ୍ୟ ପାଳନ ପୂର୍ବକ ବେଦାଧ୍ୟୟନ କରୁଥିଲେ । ତାହାପରେ ନିଜର ରୁଚି ଅନୁସାରେ ସେମାନେ ଗୃହସ୍ଥାଶ୍ରମ କିମ୍ବା ତପଶ୍ଚର୍ଯ୍ୟା କରୁଥିଲେ । ରାହୁଲଙ୍କପ୍ରତି ମଧ୍ୟ ଏହି ନୀତି ପ୍ରୟୋଗ କରି ଯାଇଥିବ । ତାଙ୍କର ସାଧାରଣ ଜ୍ଞାନ ଲଭ ଉଦ୍ଦେଶରେ ଭଗବାନ୍ ବୁଦ୍ଧ ତାଙ୍କୁ ସାରିପୁତ୍ରଙ୍କ ଦାୟିତ୍ୱରେ ଛାଡ଼ି ଦେଇଥିଲେ । ସେହି ହେତୁ ତାଙ୍କପକ୍ଷରେ ବ୍ରହ୍ମଚର୍ଯ୍ୟ ପାଳନ ଆବଶ୍ୟକ ହୋଇ ପଡ଼ିଥିଲା । 'ବୟଃପ୍ରାପ୍ତି ପରେ, ରାହୁଲ ଗୃହସ୍ଥା ଶ୍ରମରେ ପ୍ରବେଶ ନକରନ୍ତୁ'— ବୋଧହୁଏ ଏହି ଲକ୍ଷ୍ୟରେ ଭଗବାନ୍ ବୁଦ୍ଧ ତାଙ୍କୁ ଏହି ଉପଦେଶ ଦେଇଥିଲେ । ରାହୁଲଙ୍କ ବିଷୟରେ ଏହି ଚରିତ ଉପରେ ନିର୍ଭର କରି ମହାବଗ୍‌ଗକାର ଶ୍ରାମଣେରମାନଙ୍କ ସଂପର୍କରେ ନାନାକଥା ଲେଖି ଅଛନ୍ତି ।

## ଅନ୍ୟ ଶ୍ରାମଣେର

ଭଗବାନ୍ ବୁଦ୍ଧଙ୍କ ଜୀବଦ୍ଦଶାରେ ଅତି ଅଳ୍ପ ସଂଖ୍ୟାରେ କମ୍ ବୟସ୍କ ଶ୍ରାମଣେର ପ୍ରବେଶ କରିଥିଲେ । ଅନ୍ୟ ସଂପ୍ରଦାୟ ମାନଙ୍କରୁ ଯେଉଁ ପରିବ୍ରାଜକମାନେ ଆସୁଥିଲେ, ସେମାନଙ୍କୁ ଚାରିମାସ ପର୍ଯ୍ୟନ୍ତ ପ୍ରାର୍ଥୀରୂପେ ରହିବାକୁ ପଡ଼ୁଥିଲା । ଜଣାଯାଏ, ଏ ପ୍ରକାର ଶ୍ରାମଣେରମାନଙ୍କ ସଂଖ୍ୟା ଅତ୍ୟଧିକ ଥିଲା । ଦୀଘ ନିକାୟର

'ମହାସୀହ ନାଦ'-ସୂତ୍ରର ଶେଷରେ ଅଛି ଯେ, ଯେତେବେଳେ ପରିବ୍ରାଜକ କାଶ୍ୟପ ବୁଦ୍ଧଙ୍କର ଭିକ୍ଷୁସଂଘରେ ପ୍ରବେଶ କରିବାକୁ ଇଚ୍ଛାକଲେ, ସେତେବେଳେ ଭଗବାନ୍ ତାଙ୍କୁ କହିଲେ—"ହେ କାଶ୍ୟପ, ଏହି ସମ୍ପ୍ରଦାୟରେ ଯେ କୌଣସି ବ୍ୟକ୍ତି ପ୍ରବ୍ରଜ୍ୟା ଗ୍ରହଣକରି ସଂଘରେ ପ୍ରବେଶ କରିବାକୁ ଇଚ୍ଛାକଲେ ତାଙ୍କୁ ଚାରିମାସ ପର୍ଯ୍ୟନ୍ତ ପ୍ରାର୍ଥୀ ହୋଇ ଅପେକ୍ଷା କରିବାକୁ ପଡ଼େ । ଚାରିମାସପରେ, ଭିକ୍ଷୁ-ମାନଙ୍କର ବିଶ୍ୱାସ ଜନ୍ମିଲେ ସେମାନେ ତାଙ୍କୁ ପ୍ରବ୍ରଜ୍ୟା ଦେଇ ସଂଘରେ ପ୍ରବେଶ କରାନ୍ତି । ମୁଁ ଜାଣେ, ଏ ବିଷୟରେ କେତେକ ଅପବାଦ ମଧ୍ୟ ଅଛି ।"

ଏହି ଅନୁସାରେ, କାଶ୍ୟପ ପ୍ରାର୍ଥୀ ଅବସ୍ଥାରେ ଚାରିମାସ ପର୍ଯ୍ୟନ୍ତ ରହିଲେ ଏବଂ ଭିକ୍ଷୁମାନଙ୍କର ବିଶ୍ୱାସ ଜନ୍ମିବାପରେ ତାଙ୍କୁ ସଂଘରେ ପ୍ରବେଶ କରାଇ ଥିଲେ ।

## ଶ୍ରାମଣେରଙ୍କ ସଂଖ୍ୟା ବୃଦ୍ଧି

ଭଗବାନ୍ ବୁଦ୍ଧଙ୍କର ପରିନିର୍ବାଣ ପରେ ଶ୍ରାମଣେରମାନଙ୍କ ସଂଖ୍ୟା ବୃଦ୍ଧିଲାଭ କଲା, ଏପରିକି ବାଲ୍ୟ ବୟସରେ ହିଁ ଶ୍ରାମଣେର ହୋଇ ଭିକ୍ଷୁହେବା ଲୋକଙ୍କ ସଂଖ୍ୟା ସର୍ବାଧିକ ହୋଇ ଥିଲା । ଏହାଫଳରେ ସଂଘରେ ଅନେକ ଦୋଷ ପ୍ରବେଶ କଲା । ନିଜେ ଭଗବାନ୍ ବୁଦ୍ଧ ଏବଂ ତାଙ୍କର ଭିକ୍ଷୁସଂଘ ଯଥେଷ୍ଟ ପରିମାଣରେ ଗୃହସ୍ଥ ଜୀବନର ଅନୁଭୂତି ଲାଭକରି ଥିଲେ । ସୁତରାଂ, ଗୃହସ୍ଥ ଜୀବନ ପ୍ରତି ସେମାନଙ୍କ ମନ ଆକୃଷ୍ଟ ହେବାର କାରଣ ନଥିଲା । କିନ୍ତୁ ଯେଉଁମାନଙ୍କୁ ସନ୍ନ୍ୟାସ ଦୀକ୍ଷାଦେଇ ବାଲ୍ୟବୟସରୁ ହିଁ ଗୃହସ୍ଥ ଜୀବନରୁ ବାହାର କରିଦିଆ ଗଲା, ସେମାନଙ୍କର ତତ୍‌ପ୍ରତି ଆକର୍ଷଣ ରହିବା ସ୍ୱାଭାବିକ କଥା । ମାତ୍ର ଚଳଣି ତାଙ୍କର ପ୍ରତିବନ୍ଧକ

ହୋଇଥିଲା । ଫଳରେ, ନାନା ମାନସିକ ଦୋଷ ସେମାନଙ୍କୁ ସ୍ପର୍ଶ କରୁଥିଲା । ସଙ୍ଘର ବିନାଶର ବହୁ କାରଣ ମଧ୍ୟରୁ ଏହା ମଧ୍ୟ ଗୋଟିଏ କାରଣ ବୋଲି ବୁଝିବାକୁ ହେବ ।

ଶ୍ରାମଣେରମାନଙ୍କର ଆଦର୍ଶ ଅନୁସାରେ ହିଁ ଶ୍ରାମଣେରୀ ସଂସ୍ଥା ଗଠିତ ହୋଇଥିଲା । ପ୍ରଭେଦ ଏତିକିମାତ୍ର ଥିଲା ଯେ, ଭିକ୍ଷୁମାନଙ୍କ ଆଶ୍ରମରେ ଶ୍ରାମଣେରମାନେ ରହୁଥିଲେ କିନ୍ତୁ ଶ୍ରାମଣେରୀମାନେ ଭିକ୍ଷୁଣୀମାନଙ୍କର ଆଶ୍ରମରେ ରହୁଥିଲେ ।

## ଶ୍ରାବକ ସଂଘର ବିଭାଗ

ସଙ୍ଘର ଚତୁର୍ବିଧ ବିଭାଗ ମଧ୍ୟରେ ଶ୍ରାମଣେର ଓ ଶ୍ରାମଣେରୀ-ମାନଙ୍କୁ ଗଣନାକରାଯାଉ ନଥିଲା । ଭଗବାନ୍ ବୁଦ୍ଧଙ୍କର ଜୀବଦ୍ଦଶାରେ ଏହାକୁ ଆଦୌ ସ୍ୱୀକୃତି ଦିଆ ନ ଯାଉଥିବା ଏଥିରୁ ସ୍ପଷ୍ଟ ଜଣାଯାଉଛି । କେବଳ ଭିକ୍ଷୁ, ଭିକ୍ଷୁଣୀ, ଉପାସକ ଏବଂ ଉପାସିକା-ଏହିମାନେହିଁ ବୁଦ୍ଧଙ୍କ ଶ୍ରାବକ ସଂଘର ବିଭାଗ ଚତୁଷ୍ଟୟ ।

ଭିକ୍ଷୁସଂଘର କାର୍ଯ୍ୟ ଯେ ସୁବିଶାଳ ଥିଲା, ଏଥିରେ ସନ୍ଦେହର ଅବକାଶ ନାହିଁ । ତଥାପି ତ୍ରିପିଟକ ସାହିତ୍ୟର କେତେକ ସ୍ଥଳରୁ ଜଣାଯାଏ ଯେ, ଭିକ୍ଷୁଣୀ, ଉପାସକ ଏବଂ ଉପାସିକାମାନେ ଭିକ୍ଷୁସଙ୍ଘର ଅଭ୍ୟୁନ୍ନତିରେ ଯଥେଷ୍ଟ ସାହାଯ୍ୟ କରିଥିଲେ ।

## ସ୍ତ୍ରୀମାନଙ୍କର ସ୍ଥାନ

ମାର ସହିତ ସୋମା ଭିକ୍ଷୁଣୀଙ୍କର କଥୋପକଥନ ନିମ୍ନଲିଖିତ ପ୍ରକାରେ ହୋଇଥିଲା । ତହିଁରୁ ସ୍ପଷ୍ଟ ଜଣାଯିବ ଯେ, ବୁଦ୍ଧଦେବଙ୍କ ଧର୍ମମାର୍ଗରେ ସ୍ତ୍ରୀମାନଙ୍କର ସ୍ଥାନ ପୁରୁଷମାନଙ୍କ ସ୍ଥାନର ସମକକ୍ଷ ଥିଲା ।

ମଧ୍ୟାହ୍ନ ସମୟରେ ସୋମା ଭିକ୍ଷୁଣୀ ଯେତେବେଳେ ଶ୍ରାବସ୍ତୀ ନିକଟବର୍ତ୍ତୀ ଅନ୍ଧ ବନରେ ଧ୍ୟାନ କରିବାକୁ ବସିଗଲେ, ସେତେବେଳେ ମାର ତାଙ୍କ ନିକଟକୁ ଯାଇ କହିଲା ।

**ଯନ୍ତଂ ଇସୀହି ପତ୍ତବ୍‌ବଂ ଠାନଂ ଦୁରଭିସଂଭବଂ**
**ନତଂ ଦ୍ୱଂଗୁଲ ପଞ୍ଞାୟ ସକ୍‌କା ପପେପା ତମିତ୍‌ଥିୟା**

ଅର୍ଥାତ୍‌ ଯେଉଁ (ନିର୍ବାଣ) ସ୍ଥାନ ଋଷିମାନଙ୍କୁ ମଧ୍ୟ ମିଳିବା ଅସମ୍ଭବ ଏବଂ ଯାହାର ପ୍ରଜ୍ଞା, ଦୁଇ ଆଙ୍ଗୁଠି ମଧ୍ୟରେ ସୀମାବଦ୍ଧ (ଅର୍ଥାତ୍‌ ଭାତ ରାନ୍ଧିଲା ବେଳେ ଦୁଇ ଆଙ୍ଗୁଠି ମଧ୍ୟରେ ଚାଉଳ ଚିପି ଦେଖିବା ହେଉଛି ଯାହାର ଏକମାତ୍ର ବୁଦ୍ଧି ମତ୍ତାର କାର୍ଯ୍ୟ) ।

ସୋମା ଭିକ୍ଷୁଣୀ କହିଲା :—

**ଇତ୍‌ଥିଭାବୋ କିଂ କୟିରା ଚିତ୍ତମ୍ହି ସୁସମାହିତେ**
**ଞାଣମ୍ହି ବତ୍ତମାନମ୍ହି ସମ୍ମା ଧମ୍ମଂ ବିପସ୍‌ସତୋ**
**ଯସ୍‌ସ ନୂନ ସିୟା ଏବଂ ଇତ୍‌ଥାହଂ ପୁରିସୋତିବା**
**କିଞ୍ଚିବା ପନ ଅସ୍ମୀତି ତଂମାରୋ ବତ୍ତୁମରହତି (୧)**

ଅର୍ଥାତ୍‌ ଯାହାର ଚିତ୍ତ ଭଲ ଭାବରେ ସନ୍ତୁଷ୍ଟ ହୋଇଯାଇଛି ଏବଂ ଯେ ଜ୍ଞାନ ଲାଭ କରିଅଛି, ଏହିପରି ଉତ୍ତମରୂପେ ଧର୍ମକୁ ଜାଣିଥିବା ଲୋକ ପକ୍ଷରେ (ନିର୍ବାଣ ମାର୍ଗରେ) ନାରୀତ୍ୱ କିପରି ପ୍ରତିବନ୍ଧକ ହେବ ? ମାର ଏସବୁ କଥା ତାଙ୍କୁ କହିଥିଲା, ସର୍ବାଁରୁ

(୧) ଭିକ୍ଷୁଣୀ ସଂଯୁକ୍ତ ୨ ସୁତ୍ତ ।

ଏହି ଅହଙ୍କାର (୧) ଜନ୍ମିଲା ଯେ 'ମୁଁ ସ୍ତ୍ରୀ' 'ମୁଁ ପୁରୁଷ' ବା 'ମୁଁ ଅନ୍ୟ କେହି।'

ମାର ଜାଣିପାରିଲା ଯେ, ସୋମାଭିକ୍ଷୁଣୀ ତାଙ୍କୁ ଚିହ୍ନି ପାରିଛି । ତେଣୁ, ଦୁଃଖରେ ସେ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲା । ଏହି ଆଳାପ ହେଉଛି କାବ୍ୟାତ୍ମକ । ଆଦ୍ଯର ମଧ୍ଯ, ବୌଦ୍ଧ ସଂଘରେ ସ୍ତ୍ରୀମାନଙ୍କର ସ୍ଥାନ କ'ଣ ଥିଲା, ଏଥିରୁ ସ୍ପଷ୍ଟ ହୋଇଯାଉଛି ।

## ନିର୍ବାଣ ମାର୍ଗରେ ଶ୍ରାବକଙ୍କର ଚାରି ବିଭାଗ

ନିର୍ବାଣ ମାର୍ଗରେ ଶ୍ରାବକମାନଙ୍କର ଚାରୋଟି ବିଭାଗ ଥିଲା— ସୋତାପନ୍ନ, ସକଦାଗାମୀ, ଅନାଗାମୀ ଏବଂ ଅରହା । ସକ୍କାୟ ଦିଟ୍‌ଠି (ଆତ୍ମାକୁ ଭିନ୍ନ ବସ୍ତୁ ବୋଲି ସ୍ୱୀକାର କରି ତାକୁ ନିତ୍ୟରୂପେ ଅନୁଭବ କରିବାର ଦୃଷ୍ଟି), ବିଚିକିଚ୍ଛା (ବୁଦ୍ଧ, ଧର୍ମ ଏବଂ ସଂଘ ପ୍ରତି ଶଙ୍କା ବା ଅବିଶ୍ୱାସ), ସୀଲବ୍ବତପରାମାସ (ସ୍ନାନ ପ୍ରଭୃତି ବ୍ରତ ଏବଂ ଉପବାସ ଦ୍ୱାରା ମୁକ୍ତି ପ୍ରାପ୍ତିରେ ବିଶ୍ୱାସ) ଏହି ତିନୋଟି ସଂଯୋଜନ ବା ବନ୍ଧନ ନାଶ କଲା ପରେ ଶ୍ରାବକ 'ସୋତାପନ୍ନ' ହୁଏ । ସେ ଯଦି ସେହି ମାର୍ଗରେ ସ୍ଥିର ହୁଏ, ତାହାହେଲେ ତାକୁ 'ସୋତାପତ୍ତିଫଲଟ୍‌ଠୋ (୨) କୁହାଯାଏ । ଏହାଛଡ଼ା, କାମରାଗ (କାମ ବାସନା) ଏବଂ ପଟିଘ (କ୍ରୋଧ) ଏହି ଦୁଇଟି ସଂଯୋଜନ ଶିଥିଳ ହେବାପରେ ଅଜ୍ଞାନ କମିଯାଏ ଓ ତେବେଯାଇ ସେ ବ୍ୟକ୍ତି ସକଦାଗାମୀ ରୂପେ ଅଭିହିତ ହୁଏ । ଏହି ମାର୍ଗରେ ସ୍ଥିରତା ଲାଭକଲେ ତାକୁ ସକଦାଗାମିଫଲଟ୍‌ଠୋ କୁହାଯାଏ । ଏହାପରେ

(୧) ଅହଂକାର ତିନି ପ୍ରକାର-'ମୁଁ ଶ୍ରେଷ୍ଠ' 'ମୁଁ ସଦୃଶ' 'ମୁଁ ହୀନ'- ବିଭଙ୍ଗ (P. T. S.) ପୃ: ୩୪୬ ଓ ୩୬୭ ।

(୨) ଫଲଟ୍‌ଠୋ-ଫଲସ୍ଥଃ ।

ରୂପରାଗ (ବ୍ରହ୍ମ ଲୋକ ପ୍ରଭୃତି ପାଇବା ଇଚ୍ଛା), ଅରୂପରାଗ (ଅରୂପ ଦେବଲୋକ ପାଇବା ଇଚ୍ଛା), ମାନ (ଅହଙ୍କାର), ଉଦ୍ଧଚ (ଭ୍ରାନ୍ତ ଚିତ୍ତତା) ଓ ଅବିଜ୍ଜା (ଅବିଦ୍ୟା)—ଏହି ପାଞ୍ଚଟି ସଂଯୋଜନ କ୍ଷୟ କଲାପରେ, ସେ ଅରହା (ଅର୍ହନ୍) ହୁଏ । ସେହି ମାର୍ଗରେ ସ୍ଥିରତା ଲାଭକଲେ, ତାଙ୍କୁ ଅରହତ୍ତଫଳଟ୍ଠୋ (ଅର୍ହଫଳ ସ୍ଥ) କୁହାଯାଏ । ଏପରି ଶ୍ରାବକମାନଙ୍କୁ ଛଅ ବା ଆଠ ଭାଗରେ ବିଭକ୍ତ କରାଯାଏ । ଚିତ୍ର ଏବଂ ବିଶାଖ, ଦୁହେଁ ଗୃହସ୍ଥ ହୋଇ ମଧ୍ୟ ଅନାଗାମୀ ଥିଲେ ଏବଂ ଆନନ୍ଦ ଭିକ୍ଷୁ ହୋଇ ମଧ୍ୟ ବୁଦ୍ଧଙ୍କର ଜୀବଦ୍ଦଶାରେ କେବଳ ସୋତାପନ୍ନ ଥିଲେ । କ୍ଷେମା ଓ ଉତ୍ପଳବର୍ଣ୍ଣା ପ୍ରଭୃତି ଭିକ୍ଷୁଣୀମାନେ ଅର୍ହତ ପଦ ପର୍ଯ୍ୟନ୍ତ ଯାଇପାରିଥିଲେ । ଅନ୍ୟଭାବରେ କହିଲେ, ନିର୍ବାଣ ମାର୍ଗରେ ଗତିଶୀଳ ହେବାପାଇଁ ନାରୀତ୍ୱ କିମ୍ବା ଗୃହସ୍ଥତ୍ୱ ପ୍ରତିବନ୍ଧକ ନଥିଲା ।

## ସଂଘର ପ୍ରତିଷ୍ଠା

**ବୁଦ୍ଧଂ ସରଣ ଗଚ୍ଛାମି ।**
**ଧମ୍ମଂ ସରଣଂ ଗଚ୍ଛାମି ।**
**ସଂଘଂ ସରଣଂ ଗଚ୍ଛାମି ।**

ଏହାକୁ ଶରଣ-ଗମନ କହନ୍ତି । ଆଜି ମଧ୍ୟ ବୌଦ୍ଧ-ଧର୍ମାବଲମ୍ବୀମାନେ ଏହି ତ୍ରିଶରଣ ଉଚ୍ଚାରଣ କରନ୍ତି । ଏହି ପ୍ରଥା ବିଶେଷ ଭାବରେ ବୁଦ୍ଧଦେବଙ୍କର ଜୀବଦ୍ଦଶାରେ ହିଁ ଆରମ୍ଭ ହୋଇଯାଇଥିଲା । ଏକଥା ସ୍ପଷ୍ଟ ମନେ ରଖିବା ଉଚିତ ଯେ ଭଗବାନ୍ ବୁଦ୍ଧ ନିଜ ଧର୍ମର ସମସ୍ତ ମହତ୍ତ୍ୱ ସଂଘକୁ ଅର୍ପଣ କରିଯାଇ ଥିଲେ । ଅନ୍ୟ କୌଣସି ଧର୍ମରେ ଏହି କଥା ଦୃଷ୍ଟି ଗୋଚର

ହୁଏନାହିଁ । ଯିଶୁଖ୍ରୀଷ୍ଟ କହିଅଛନ୍ତି—"ହେ ଦୁଃଖୀ, ଏବଂ ଭାରାକ୍ରାନ୍ତ ମନୁଷ୍ୟ, ତୁମେସବୁ ମୋ ନିକଟକୁ ଆସ ଏବଂ ମୁଁ ତୁମକୁ ବିଶ୍ରାମ ଦେବି (୧) । ପୁଣି ଭଗବାନ୍ ଶ୍ରୀକୃଷ୍ଣ ମଧ୍ୟ କହି ଅଛନ୍ତି :—

**ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂବ୍ରଜ**
**ଅହଂତ୍ୱାଂ ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମାଶୁଚଃ(୨)**

ଅର୍ଥାତ୍ "ସମସ୍ତ ଧର୍ମ ପରିତ୍ୟାଗ କରି ତୁମେ କେବଳ ମୋଠାରେ ଶରଣ ପଶ । ମୁଁ ତୁମକୁ ସମସ୍ତ ପାପରୁ ମୁକ୍ତ କରିଦେବି । ତୁମେ ଶୋକ କରନାହିଁ ।" କିନ୍ତୁ ଭଗବାନ୍ ବୁଦ୍ଧ କହି ଅଛନ୍ତି—"ତୁମେ, 'ବୁଦ୍ଧ', 'ଧର୍ମ' ଏବଂ 'ସଙ୍ଘ'ର ଆଶ୍ରୟ ନେଇ ନିଜ ପରିଶ୍ରମଦ୍ୱାରା ନିଜର ଏବଂ ଅନ୍ୟର ମଧ୍ୟ ଦୁଃଖ ବିନାଶ କର । ସଂସାରର ଦୁଃଖ କମାଇ ଦିଅ ।"

ଯଦି ଆମେ ସଂସାରର ସୁଜ୍ଞ ଏବଂ ଶୀଲବାନ୍ ନରନାରୀଙ୍କର ଏକ ବିଶାଳ ସଂଘ ଗଠନ କରି ତାହାର ଶରଣ ପଶିବା, ତାହାହେଲେ କଣ ଦୁଃଖ ବିନାଶର ମାର୍ଗ ସୁଗମ ହେବନାହିଁ ?

## ସଂଘହିଁ ସମସ୍ତଙ୍କର ନେତା

ଭଗବାନ୍ ବୁଦ୍ଧ ନିଜପରେ ଅନ୍ୟ କାହାରିକୁ ହେଲେ ସଂଘର ନେତାରୂପେ ନିଯୁକ୍ତ କରି ନାହାନ୍ତି । ବରଂ ଏହି ନିୟମ କରି ଅଛନ୍ତି ଯେ, ସଂଘର ସମସ୍ତେ ମିଳିମିଶି ସଂଘର କାର୍ଯ୍ୟ କରିବା ବିଧେୟ । ଏକଛତ୍ର ଶାସକଦ୍ୱାରା ଯେଉଁମାନେଶାସିତ, ସେମାନଙ୍କୁ

(୧) Matthew, 11, 28.
(୨) ଭଗବଦ୍ ଗୀତା ୧୮-୬୬ ।

ବୁଦ୍ଧଙ୍କର ଏହି ପଦ୍ଧତି ଯଦି ବଚନ ଜଣାଯାଏ, ତାହାହେଲେ ତହିଁରେ ବସିତ ହେବାର କାରଣନାହିଁ ।

ଭଗବାନଙ୍କର ପରିନିର୍ବାଣ ହେବାର ବେଶୀଦିନ ହୋଇ ନଥାଏ—ଏପରି ସମୟରେ ଆନନ୍ଦ ରାଜଗୃହରେ ଅବସ୍ଥାନ କରୁଥିଲେ । ପ୍ରଦ୍ୟୋତଙ୍କ ଭୟରେ ରାଜା ଅଜାତଶତ୍ରୁ ରାଜ-ଗୃହର ମରାମତି ଆରମ୍ଭକରି ଦେଇଥିଲେ । ଉକ୍ତ କାର୍ଯ୍ୟରେ ବ୍ରାହ୍ମଣ ଗୋପକ ମୋଗ୍‌ଗଲ୍ଲାନଙ୍କୁ ନିଯୁକ୍ତ କରାଯାଇଥିଲା । ଆୟୁଷ୍ମାନ୍ ଆନନ୍ଦ ଭିକ୍ଷା ଉଦ୍ଦେଶ୍ୟରେ ରାଜଗୃହ ଅଭିମୁଖେ ଯାତ୍ରା ଆରମ୍ଭ କରୁଥିଲେ । କିନ୍ତୁ ଭିକ୍ଷାଟନ ପାଇଁ ଯଥେଷ୍ଟ ସମୟ ଥିଲା । ତେଣୁ ସେ ଗୋପକ ମୋଗ୍‌ଗଲ୍ଲାନଙ୍କ ନିକଟକୁ ଗଲେ । ବ୍ରାହ୍ମଣ ତାଙ୍କୁ ଆସନ ଦେଇ ନିଜେ ନିମ୍ନଆସନରେ ବସିଲେ ଏବଂ ପଚାରିଲେ—"କଣ ଭଗବାନଙ୍କ ପରି ଅନ୍ୟ କେହି ଗୁଣବାନ୍‌ଭିକ୍ଷୁ ଅଛନ୍ତି ।

ଆନନ୍ଦ ଉତ୍ତର ଦେଲେ ନା, 'ଆଉ କେହି ନାହାନ୍ତି ।'

ଏହିପରି କଥାବାର୍ତ୍ତା ଚାଲିଥିବା ସମୟରେ ମଗଧ ଦେଶର ପ୍ରଧାନ ମନ୍ତ୍ରୀ ବ୍ରାହ୍ମଣ ବସ୍‌ସକାର ସେଠାରେ ଉପସ୍ଥିତ ହେଲେ । ଆନନ୍ଦଙ୍କର କଥାଶୁଣି ସେ ପଚାରିଲେ—"ଭଗବାନ୍ ଏପରି କୌଣସି ଭିକ୍ଷୁଙ୍କୁ ନିଯୁକ୍ତ କରିଛନ୍ତିକି, ଭଗବାନଙ୍କ ଅଭାବରେ ସଂଘ ଯାହାଙ୍କର ଶରଣ ପଶି ପାରିବ ?" ଆନନ୍ଦ କହିଲେ—"ଆଜ୍ଞା ! ନାହିଁ ।"

"ତେବେ, ଏପରି ଭିକ୍ଷୁ କଣ ଅଛନ୍ତି, ଯେ ଭଗବାନଙ୍କର ଅଭାବ ପୂର୍ତ୍ତି କରି ପାରିବେ ?" ବ୍ରାହ୍ମଣ ବସ୍‌ସକାର ପଚାରିଲେ ।

"ଆଜ୍ଞା, ନାହିଁ", ଆନନ୍ଦ ଉତ୍ତର ଦେଲେ ।

"ତାହାହେଲେ, ଆପଣଙ୍କର ସଙ୍ଘର କେହି ନେତା ନାହାନ୍ତି । ତେବେ ସଙ୍ଘର ସଂଗଠନ ରହିଛି କିପରି ?" ବସ୍‌ସକାର ପଚାରିଲେ ।

ଆନନ୍ଦ ଉତ୍ତର ଦେଲେ—"ଆମର କେହି ନେତା ନାହାନ୍ତି ବୋଲି ବୁଝିବା ଠିକ୍ ହେବନାହିଁ । ଭଗବାନ୍ 'ବିନୟ'ର ନିୟମ ପ୍ରଣୟନ କରି ଯାଇଛନ୍ତି । ଗୋଟିଏ ଗ୍ରାମରେ ଆମେ ଯେତେଜଣ ଭିକ୍ଷୁ ରହୁ, ସମସ୍ତେ ଏକତ୍ରିତ ହୋଇ ସେହି ନିୟମକୁ ଆବୃତ୍ତି କରୁ । ଯେ ଦୋଷ କରିଥାଏ ସେ ନିଜ ଦୋଷ ପ୍ରକାଶ କରେ ଏବଂ ତାହାର ପ୍ରାୟଶ୍ଚିତ୍ତ ମଧ୍ୟ କରେ····· । କୌଣସି ଭିକ୍ଷୁ ଯଦି ଶୀଳ ପ୍ରଭୃତି ଗୁଣ ସଂପାଦନ କରେ ତାହାହେଲେ ଆମେ ତାଙ୍କୁ ସମ୍ମାନ କରୁ ଓ ତାଙ୍କର ପରାମର୍ଶ ନେଉ । (୧)

ବ୍ରାହ୍ମଣ ବସ୍‌ସକାର ଥିଲେ ରାଜା ଅଜାତଶତ୍ରୁଙ୍କର ମନ୍ତ୍ରୀ । ଯଥାସମ୍ଭବ ତାଙ୍କର ଏହି ଦୃଢ଼ଧାରଣା ଥିଲା ଯେ, କୌଣସି ସର୍ବାଧିକାର ସଂପନ୍ନ ବ୍ୟକ୍ତି ବ୍ୟତିରେକେ ରାଜ୍ୟର ପରିଚାଳନା ଠିକ୍ ଭାବରେ ହୋଇ ପାରିବ ନାହିଁ । ତାଙ୍କର ଏକଥା କହିବାର ତାତ୍ପର୍ଯ୍ୟ ଥିଲା—ଯଦି କୌଣସି ବ୍ୟକ୍ତିଙ୍କୁ ବୁଦ୍ଧଦେବ ନିଜ ସ୍ଥାନରେ ପ୍ରତିଷ୍ଠିତ କରି ଯାଇ ନାହାନ୍ତି, ତାହାହେଲେ ଅନ୍ତତଃ ସଙ୍ଘ କୌଣସି ବ୍ୟକ୍ତିଙ୍କୁ ନିର୍ବାଚନ କରି ତାଙ୍କ ଆସନରେ

(୧) ମଜ୍‌ଝିମ ନିକାୟ, ଗୋପକମୋଗ୍‌ଗଲ୍ଲାନ ସୁତ୍ତ ( ସଂ: ୧୦୮ ) ଦେଖନ୍ତୁ ।

ବିମାଇବା ଉଚିତ । କିନ୍ତୁ ଏପରି କୌଣସି ସର୍ବାଧିକାରୀ ବ୍ୟକ୍ତି ବ୍ୟତୀତ, ବୁଦ୍ଧଙ୍କ ପରେ ମଧ୍ୟ ସଂଘର କାର୍ଯ୍ୟ ସୁରୁଚିରୂପେ ଚାଲିତ ହୋଇ ଥିଲା । ଅତଏବ, ବୁଦ୍ଧଙ୍କ ସଂଘ ଯେ ଯଥା ଯୋଗ୍ୟ ଭାବରେ ଗଠିତ ହୋଇଥିଲା ଏକଥା ମୁକ୍ତ କଣ୍ଠରେ ସ୍ୱୀକାର କରିବାକୁ ହେବ ।



## ସପ୍ତମ ଅଧ୍ୟାୟ

# ଆତ୍ମବାଦ

## ଆତ୍ମବାଦୀ ଶ୍ରମଣ

'ନିବାପସୂତ୍ର'ରେ ବୁଦ୍ଧଙ୍କର ସମକାଳୀନ ଶ୍ରମଣ ବ୍ରାହ୍ମଣମାନଙ୍କୁ ସ୍ଥୂଳତଃ ଚାରିଶ୍ରେଣୀରେ ବିଭକ୍ତ କରାଯାଇଛି । ଯାଗଯଜ୍ଞ ଅନୁଷ୍ଠାନ ପୂର୍ବକ ସୋମରସ ପାନକରିବା ବ୍ରାହ୍ମଣମାନେ ପ୍ରଥମ ବର୍ଗ ବା ଶ୍ରେଣୀର ଅନ୍ତର୍ଗତ । ସେପରି ବିଳାସ ଦ୍ୱାରାହିଁ ମୋକ୍ଷଲାଭ ହୁଏ ବୋଲି ସେମାନେ ବିଶ୍ୱାସ କରୁଥିଲେ । ଯାଗଯଜ୍ଞ ଓ ସୋମରସ ପାନରେ ବିରକ୍ତ ହୋଇ ଯେଉଁ ମୁନିଋଷିଗଣ ଅରଣ୍ୟରେ ତପଶ୍ଚର୍ଯ୍ୟା କରୁଥିଲେ, ସେମାନେ ଦ୍ୱିତୀୟ ଶ୍ରେଣୀର ଅନ୍ତର୍ଗତ । ଚିରକାଳ ପର୍ଯ୍ୟନ୍ତ ସେମାନେ ଅରଣ୍ୟରେ ରହିପାରୁ ନଥିଲେ । ଗୃହସ୍ଥାଶ୍ରମକୁ ଫେରିଆସି ସେମାନେ ବିଳାସ ବ୍ୟସନରେ ଲିପ୍ତ ରହୁଥିଲେ । ପରାଶର ଋଷ୍ୟଶୃଙ୍ଗ ପ୍ରଭୃତି ଏହି ଶ୍ରେଣୀର ଉଦାହରଣ । ଯେଉଁମାନେ ଜନବସତି ନିକଟରେ ରହି ପରିମିତ ଭୋଜନ କରୁଥିଲେ, ସେମାନେ ତୃତୀୟ ଶ୍ରେଣୀର ଶ୍ରମଣ ବ୍ରାହ୍ମଣ । କିନ୍ତୁ ସେମାନେ ଆତ୍ମବାଦର ଅନୁସରଣ କରୁଥିଲେ । ଆତ୍ମା ଶାଶ୍ୱତ ବୋଲି କେହି ମତ ପୋଷଣ କଲାବେଳେ, ଅନ୍ୟ କେହି କେହି

ଅଶାଶ୍ୱତ ବୋଲି କହୁଥିଲି । ଏହିପରି 'ବାଦ'ରେ ଲାଗିରହି ସେମାନେ ମାରର ଜାଲରେ ଆବଦ୍ଧ ହୋଇ ରହୁଥିଲେ । ଭଗବାନ୍ ବୁଦ୍ଧ ଏହି ଆତ୍ମବାଦ ପରିତ୍ୟାଗ କଲେ ଏବଂ ସତ୍ୟ ଭିତ୍ତି ଉପରେ ନିଜଦର୍ଶନ ତତ୍ତ୍ୱ ପ୍ରତିଷ୍ଠା କଲେ । ତେଣୁ ତାଙ୍କର ଶ୍ରାବକ ମାନେ ମାରର ଜାଲରେ ଆବଦ୍ଧ ହେଲେ ନାହିଁ । ଏମାନେ ଚତୁର୍ଥ ଶ୍ରେଣୀର ଶ୍ରମଣ ବ୍ରାହ୍ମଣମାନଙ୍କ ମଧ୍ୟରେ ପରିଗଣିତ । (୧)

ବୁଦ୍ଧଦେବ କାହିଁକି ଆତ୍ମବାଦ ପରିତ୍ୟାଗ କଲେ, ତାହା ବିଚାର କରିବା ପୂର୍ବରୁ, ସେ ସମୟରେ ଶ୍ରମଣ ବ୍ରାହ୍ମଣମାନଙ୍କ ଆତ୍ମବାଦର ସ୍ୱରୂପ କ'ଣ ଥିଲା, ତାହା ଆଲୋଚନା କରିବା ବିଧେୟ । ତୃତୀୟ ଅଧ୍ୟାୟରେ କୁହାଯାଇଛି ଯେ, ସେ ସମୟରେ ସର୍ବମୋଟ ବାଷଠିଟି ଶ୍ରମଣ ସଂପ୍ରଦାୟ ଥିଲା । (୨) ସେ ଗୁଡ଼ିକ ମଧ୍ୟରୁ କୌଣସି ସଂପ୍ରଦାୟ ଆତ୍ମବାଦରୁ ମୁକ୍ତ ନଥିଲା । କିନ୍ତୁ ସେ ସମସ୍ତଙ୍କର ଦର୍ଶନ ଆଜି ଉପଲଭ୍ୟ ନୁହେଁ । ସେ ମଧ୍ୟରୁ ଛଅଗୋଟି ବିଶିଷ୍ଟ ସଂପ୍ରଦାୟର ଦର୍ଶନ ତତ୍ତ୍ୱର ବହୁଅଂଶ ପାଲି ସାହିତ୍ୟରେ ବଞ୍ଚି ରହିଛି । ତହିଁରୁ ଅନ୍ୟ ଶ୍ରମଣ ବ୍ରାହ୍ମଣମାନଙ୍କର ଆତ୍ମବାଦର ସ୍ୱରୂପ ସଂପର୍କରେ ଅନୁମାନ କରାଯାଇ ପାରେ । ଅତଏବ, ପ୍ରଥମେ ସେମାନଙ୍କର ଦର୍ଶନ ତତ୍ତ୍ୱର ବିଚାର କରିବା ଆବଶ୍ୟକ ।

## ଅକ୍ରିୟବାଦ

ଏହି ଛଅଟି ମଧ୍ୟରେ ପୂରଣ କସ୍ସପ 'ଅକ୍ରିୟବାଦ'ର ସମର୍ଥକ ଥିଲେ । ତାଙ୍କ ମତରେ—ଯଦି କେହି କିଛି କରେ ବା କରାଏ, କାଟେ ବା କଟାଏ, କଷ୍ଟ ଦିଏ ବା ଦିଆଏ, ଶୋକ କରେ

(୧) ଦେଖନ୍ତୁ—ଏ ଗ୍ରନ୍ଥର ତୃତୀୟ ଅଧ୍ୟାୟ ।
(୨) ଦେଖନ୍ତୁ— " "

ବା କରାଏ, କାହାକୁ କିଛି ଦୁଃଖ ଦେଉ ବା କେହି ଦିଆଉ, ଭସ୍ମ ହେଉ ବା ଡରାଏ, ପ୍ରାଣୀମାନଙ୍କୁ ମାରିଦେଉ, ଚୋରିକରୁ, ଘରେ ସିନ୍ଧ କରୁ, ଡକାୟତି କରୁ, କୌଣସି ଘର ଉପରେ ଆକ୍ରମଣ କରୁ, ଠକାମି କରୁ, ପରଦାର ଗମନ କରୁ, ଅସତ୍ୟ କହୁ—ତେବେ ମଧ୍ୟ ତାକୁ ପାପ ସ୍ପର୍ଶ କରିବ ନାହିଁ । ତା'ର ଆଚରଣ ଦ୍ୱାରା ଯଦି କେହି ସଂସାରର ପଶୁମାନଙ୍କୁ ମାରି ମାଂସ ଗଦାକରେ, ତେବେ ମଧ୍ୟ ତହିଁରେ ଆଦୌ ପାପ ଲାଗିବ ନାହିଁ । ସେଥିରେ କୌଣସି ଦୋଷ ନାହିଁ । ଗଙ୍ଗାନଦୀର ଦକ୍ଷିଣ ତୀରକୁ ଯାଇ ଯଦି କେହି ମରାମରି କରେ, କାଟେ ବା କଟାଏ, କଷ୍ଟଦିଏ ବା ଦିଆଏ, ତାହାହେଲେ ମଧ୍ୟ ତହିଁରେ ଆଦୌ ପାପ ହେବ ନାହିଁ । ଗଙ୍ଗାନଦୀର ଉତ୍ତର ତୀରରେ ଯଦି କେହି ଦାନ କରେ ବା କରାଏ, ଯଜ୍ଞ କରେ ବା କରାଏ, ତାହାହେଲେ ମଧ୍ୟ ସେଥିରେ କୌଣସି ପୁଣ୍ୟଲାଭ ହୁଏ-ନାହିଁ । ଦାନ, ଧର୍ମ, ସଂଯମ ଓ ସତ୍ୟଭାଷଣ ଦ୍ୱାରା ପୁଣ୍ୟ ଲାଭ ହୁଏ-ନାହିଁ ।

## ନିୟତିବାଦ

ମକ୍ଖଲି ଗୋସାଳ 'ସଂସାର—ଶୁଦ୍ଧିବାଦୀ' ବା 'ନିୟତି ବାଦୀ' ଥିଲେ । ସେ କହୁଥିଲେ, ପ୍ରାଣୀର ଅପବିତ୍ରତା ନିମନ୍ତେ କୌଣସି ହେତୁ ନାହିଁ ; କୌଣସି କାରଣ ନାହିଁ । ବିନା ହେତୁ ଓ ବିନା କାରଣରେ ପ୍ରାଣୀ ଅପବିତ୍ର ହୁଏ । ପ୍ରାଣୀର ଶୁଦ୍ଧି ପାଇଁ କୌଣସି ହେତୁ ନାହିଁ ; କୌଣସି କାରଣ ନାହିଁ । ବିନା ହେତୁରେ ଓ ବିନା କାରଣରେ ପ୍ରାଣୀ ଶୁଦ୍ଧ ହୁଏ । ନିଜର ସାମର୍ଥ୍ୟ ବଳରେ କିଛି ହୁଏ ନାହିଁ । ଅନ୍ୟର ସାମର୍ଥ୍ୟ ଦ୍ୱାରା କିଛି ହୁଏ ନାହିଁ । ପୁରୁଷର ସାମର୍ଥ୍ୟ ଦ୍ୱାରା ହୁଏ ନାହିଁ (କାହାଠାରେ) ବଳନାହିଁ, ବୀର୍ଯ୍ୟନାହିଁ,

ପୁରୁଷଶକ୍ତି ନାହିଁ, ପୁରୁଷ-ପରାକ୍ରମ ନାହିଁ । ସର୍ବ ସତ୍ତ୍ୱ, ସର୍ବପ୍ରାଣୀ ସର୍ବଭୂତ, ଓ ସର୍ବଜୀବ ହୋଇଛନ୍ତି ଅବଶ, ଦୁର୍ବଳ ଏବଂ ନିର୍ବୀର୍ଯ୍ୟ । ସେମାନେ ନିୟତି (ଭାଗ୍ୟ), ସଂଗତି ଏବଂ ସ୍ୱଭାବର ପରିଣତି ମାତ୍ର ହୁଅନ୍ତି । ପୁଣି, ଛଅଟି ମଧ୍ୟରୁ କୌଣସି ଗୋଟିଏ ଜାତି (ବର୍ଗ) ରେ ରହି ସୁଖଦୁଃଖ ଉପଭୋଗ କରନ୍ତି । ବୁଦ୍ଧିମାନ୍ ଏବଂ ମୂର୍ଖ-ସମସ୍ତଙ୍କୁ ଚଉରାଅଶି ଲକ୍ଷ ମହାକଳ୍ପର ଚକ୍ରରେ ଭ୍ରମିବାକୁ ହୁଏ । ତେବେ ଯାଇ ସେମାନଙ୍କର ଦୁଃଖ ନାଶ ହୁଏ । ଯଦି କେହି କହେ ଯେ—ଏହି ଶୀଳ ଦ୍ୱାରା, ଏହି ବ୍ରତ ଦ୍ୱାରା, ଏହି ତପସ୍ୟା ଦ୍ୱାରା ଅଥବା ବ୍ରହ୍ମଚର୍ଯ୍ୟ ଦ୍ୱାରା ମୁଁ ଅପରିପକ୍ୱ କର୍ମକୁ ପରିପକ୍ୱ କରିଦେବି, ଅଥବା ପରିପକ୍ୱ କର୍ମର ଫଳ ଉପଭୋଗ କରି ତାକୁ ନଷ୍ଟ କରିଦେବି, ତାହାହେଲେ ସେପରି ହୋଇ ପାରିବନାହିଁ ବୋଲି ସେ ବୁଝିବା ଉଚିତ । ଏହି ସଂସାରରେ ସୁଖ ଓ ଦୁଃଖ ଏଭଳି ନିଶ୍ଚିତ ଯେ ତାକୁ କୌଣସି ନିର୍ଦ୍ଦିଷ୍ଟ ମାପ ପାତ୍ରରେ ମପା ଯାଇପାରିବ ନାହିଁ । ତାକୁ କମାଇ ହେବ ନାହିଁ, କି ବଢ଼ାଇ ହେବ ନାହିଁ । କୌଣସି ସୂତା ବଣ୍ଡାକୁ ଫିଙ୍ଗି ଦେଲେ ପୂରାପୂରି ଫିଟିଯିବା ପର୍ଯ୍ୟନ୍ତ ସେ ଯେପରି ଗଡ଼ି ଚାଲିଥାଏ, ଠିକ ସେହିପରି ସମଗ୍ର ସଂସାର ଚକ୍ର ପୂରା ପୂରି ଘୂରି ଆସିଲେ ହିଁ ବୁଦ୍ଧିମାନ୍ ତଥା ମୂର୍ଖମାନଙ୍କର ଦୁଃଖର ବିନାଶ ଘଟିବ ।

## ଉଚ୍ଛେଦ ବାଦ

ଅଜିତ କେସକମ୍ବଳ ଥିଲେ ଉଚ୍ଛେଦବାଦୀ । ତାଙ୍କ ମତ ହେଉଛି—ଦାନ, ଯଜ୍ଞ ଓ ହୋମରେ କୌଣସି ତତ୍ତ୍ୱ ନାହିଁ । ପୁଣି ଭଲ ବା ମନ୍ଦ କର୍ମର ଫଳ ବା ପରିଣାମ କିଛି ନାହିଁ । ଇହ ଲୋକ, ପରଲୋକ, ମାତା ପିତା କିମ୍ବା ଔପପାତିକ (ଦେବତା ବା ନରକ ବାସୀ) ବୋଲି କିଛିନାହିଁ । ଇହଲୋକ ଏବଂ ପରଲୋକର

ସମ୍ପର୍କରେ ପୂର୍ଣ୍ଣ ଜ୍ଞାନ ଲଭ କରି ତାହା ଅନ୍ୟକୁ ଦାନ କରିବା ଦାର୍ଶନିକ ଏବଂ ଉପଯୁକ୍ତ ମାର୍ଗରେ ଗତି କରୁଥିବା ଶ୍ରମଣ ବ୍ରାହ୍ମଣ ଏହି ସଂସାରରେ ନାହାନ୍ତି । ମନୁଷ୍ୟ ଭୂତ ଚତୁଷ୍ଟୟ ଦ୍ୱାରା ଗଠିତ । ସେ ଯେତେବେଳେ ମରିଯାଏ, ତାହାର ପାର୍ଥିବ ଅଂଶ ପୃଥିବୀରେ, ଅପ୍ ଅଂଶ ଜଳରେ, ତେଜ ଅଂଶ ତେଜରେ ଓ ବାୟୁ ଅଂଶ ବାୟୁରେ ମିଶିଯାଏ । ଇନ୍ଦ୍ରିୟମାନେ ଆକାଶରେ ଲୀନ ହୋଇ-ଯାଆନ୍ତି । ଚାରିଜଣ ଲୋକ ଶବଟି ବହନ କରି ଶ୍ମଶାନକୁ ନେଇଯାଆନ୍ତି । ତାହାର ସୁଗୁଣ ବା ଦୁର୍ଗୁଣର ଚର୍ଚ୍ଚା ହୁଏ । କିନ୍ତୁ ତାହାର ଅସ୍ଥି ଧଳା ପାଉଁଶରେ ପରିଣତ ହୋଇଯାଏ । ଦାନ-ଧର୍ମାଦି ବିବାଦ ମୂର୍ଖ ଲୋକମାନଙ୍କ ହେତୁରୁ ଜାତ ହୁଏ । ଯେ କେହି ଆସ୍ତିକ ବାଦ ବୁଝାଇଲେ ମଧ୍ୟ ତାଙ୍କ କଥା ସଂପୂର୍ଣ୍ଣ ମିଥ୍ୟା ଓ ବ୍ୟର୍ଥ ପ୍ରଳାପ ମାତ୍ର । ଶରୀର ନଷ୍ଟ ହେବାପରେ ବିଦ୍ୱାନ୍ ଏବଂ ମୂର୍ଖମାନଙ୍କର ଉଚ୍ଛେଦ ହୁଏ । ସେମାନେ ବିନଷ୍ଟ ହୋଇଯାଆନ୍ତି । ମୃତ୍ୟୁ ପରେ ସେମାନଙ୍କର କୌଣସି ଅବଶେଷ ରହେ ନାହିଁ ।

## ଅନ୍ୟୋନ୍ୟ ବାଦ

ପକୁଧ କଚ୍ଚାୟନ ଥିଲେ ଅନ୍ୟୋନ୍ୟ ବାଦୀ । ତାଙ୍କ ମତରେ "କେହି କରିବା ବା କରାଇବା ଦ୍ୱାରା, ଗଢିବା ବା ଗଢ଼ାଇବା ଦ୍ୱାରା ସାତଟି ପଦାର୍ଥର ସୃଷ୍ଟି ହୋଇନାହିଁ । ସେଗୁଡ଼ିକ ବନ୍ଧ୍ୟ, କୂଟସ୍ଥ ଓ ନଗର ଦ୍ୱାରର ସ୍ତମ୍ଭ ସଦୃଶ ଅଚଳ (୧) । ସେ ଗୁଡ଼ିକ ହଲଚଲ

(୧) ଯୁଦ୍ଧରେ ଶତ୍ରୁ ପକ୍ଷର ହାତୀ ନଗର ଦ୍ୱାର ଉପରେ ସିଧା ଆଘାତ କରିପାରେ, ଏହି ଆଶଂକାରେ ସେହି ଦ୍ୱାର ଆଗରେ ଏକ ଚାଣ୍ଠିଆ ସ୍ତମ୍ଭ ତିଆରି କରାଯାଇଥାଏ । ପାଲି ଭାଷାରେ ତାର ନାମ 'ଏସିକା' ବା 'ଇନ୍ଦଖୀଳ' ।

ହୁଅନ୍ତି ନାହିଁ, ବଦଳନ୍ତି ନାହିଁ । ଗୋଟିଏ ଅନ୍ୟକୁ କଷ୍ଟ ଦିଏ ନାହିଁ, ଗୋଟିଏ ଅନ୍ୟର ସୁଖ ଦୁଃଖ ଜନ୍ମାଇବା ପାଇଁ ଅସମର୍ଥ ! ଏଗୁଡ଼ିକ କଣ ? ଏଗୁଡ଼ିକ ହେଉଛି, ପୃଥିବୀ, ଅପ, ତେଜ, ବାୟୁ, ସୁଖ, ଦୁଃଖ ଏବଂ ଜୀବ । ଏଗୁଡ଼ିକୁ ମାରିବା ବା ମରାଇବା ବ୍ୟକ୍ତି, ଶୁଣିବା ବା ଶୁଣାଇବା ବ୍ୟକ୍ତି, ଜାଣିବା ବା ବର୍ଣ୍ଣନା କରିବା ବ୍ୟକ୍ତି ସଂସାରରେ କେହି ନାହିଁ । କୌଣସି ବ୍ୟକ୍ତି ଯଦି ତୀକ୍ଷ୍ଣ ଅସ୍ତ୍ର ଦ୍ୱାରା କାହାର ଶିର ଛେଦ କରେ, ତାହା ହେଲେ ସେ ତାର ପ୍ରାଣ ନାଶ କରେ ନାହିଁ, ସେଥିରୁ ଏତିକି ମାତ୍ର ବୁଝିବା ଉଚିତ ଯେ ସାତୋଟି ପଦାର୍ଥର ମଧ୍ୟବର୍ତ୍ତୀ ଅବକାଶରେ ଶସ୍ତ୍ର ପଶିଯାଇଛି ।"

## ବିକ୍ଷେପ ବାଦ

ସଂଜୟ ବେଲଟ୍ଠି ପୁତ୍ର ଥିଲେ ବିକ୍ଷେପ ବାଦୀ । ସେ କହୁଥିଲେ, ମତେ ଯଦି କେହି ପଚାରେ, ପରଲୋକ ଅଛି କି ଏବଂ ମତେ ଯଦି ଜଣାଯାଏ ଯେ, ପର ଲୋକ ଅଛି ତାହାହେଲେ ମୁଁ ହଁ କହିବି । କିନ୍ତୁ ମତେ ସେ ପରିଜଣାଯାଉନାହିଁ । ଆହୁରି ମଧ୍ୟ, ପରଲୋକ ନାହିଁ ବୋଲି ମୁଁ ବୋଧକରୁ ନାହିଁ । ଔପପାତିକ ପ୍ରାଣୀ ଅଛି କି ନାହିଁ, ଭଲ ବା ମନ୍ଦ କର୍ମରଫଳ ଅଛି କି ନାହିଁ, ମୃତ୍ୟୁପରେ ତଥାଗତ ରହିବେ କି ନାହିଁ, ଏହି ବିଷୟରେ ମୋର କୌଣସି ନିଶ୍ଚିତ ଧାରଣା ନାହିଁ । (୧)

## ଚାତୁର୍ଯ୍ୟାମସମ୍ବର ବାଦ

ନିଗଣ୍ଠନାଥପୁତ୍ର ଥିଲେ ଚାତୁର୍ଯ୍ୟାମସମ୍ବରବାଦୀ । ଏହି ଚାରି ଯାମର ଯେଉଁ ପରିଚୟ ସାମଞ୍ଞ ଫଳ ସୂତ୍ରରେ ମିଳେ, ତାହା

(୧) ସାମଞ୍ଞ ଫଳ ସୂତ୍ରରେ ନିଗଣ୍ଠନାଥ ପୁତ୍ରଙ୍କ ଚାତୁର୍ଯ୍ୟାମ ସମ୍ବରବାଦ ବିକ୍ଷେପବାଦର ଆଗେ ଦିଆଯାଇଛି । କିନ୍ତୁ ମଜ୍ଝିମନିକାୟର ଚୂଳସାରୋପମ ସୂତ୍ର ଓ ଅନ୍ୟ ଅନେକ ସୂତ୍ରରେ ନାଥପୁତ୍ରଙ୍କ ଉଲ୍ଲେଖ ଶେଷରେ ହୋଇଛି ।

ସଂପୃକ୍ତି ନୁହେଁ । ପାର୍ଶ୍ୱମୁନି, ଅହିଂସା, ସତ୍ୟ ଅସ୍ତେୟ ଓ ଅପରିଗ୍ରହ, ଏହି ଚତୁର ଯାମର ଉପଦେଶ ଦେଇଥିଲେ ବୋଲି ଜୈନ ଗ୍ରନ୍ଥମାନଙ୍କରୁ ଜଣାଯାଏ । ମହାବୀର ସ୍ୱାମୀ ଏଥିରେ ବ୍ରହ୍ମଚର୍ଯ୍ୟକୁ ଯୋଡ଼ିଦେଲେ ତଥାପି ବୁଦ୍ଧ ଦେବଙ୍କର ସମସାମୟିକ ନିର୍ଗ୍ରନ୍ଥ (ଜୈନ)ମାନେ ଏହି ଚତୁର ଯାମର ମହତ୍ତ୍ୱହିଁ ଗ୍ରହଣ କରୁଥିଲେ । ଏହି ଚତୁର୍ଯାମ ତଥା ତପଶ୍ଚରଣ ଦ୍ୱାରା ପୂର୍ବଜନ୍ମ କୃତ ପାପର ନିରସନ ପୂର୍ବକ କୈବଲ (ମୋକ୍ଷ) ଲାଭ କରାଯାଉ, ଏହାହିଁ ଥିଲା ଜୈନଧର୍ମର ସାରତତ୍ତ୍ୱ ।

## ଅକ୍ରିୟବାଦ ଓ ସାଂଖ୍ୟମତ

ପୂରଣ କାଶ୍ୟପଙ୍କର ଅକ୍ରିୟବାଦ ସାଂଖ୍ୟଦର୍ଶନର ମତପରି ପ୍ରଥିତ ହୁଏ । ସାଂଖ୍ୟବାଦୀମାନଙ୍କ ମତରେ ଆତ୍ମା, ପ୍ରକୃତିଠାରୁ ଭିନ୍ନ ଏବଂ ମାରିବା, ମରାଇବା ପ୍ରଭୃତିର କୌଣସି ପରିଣାମ ତାହାଠାରେ ଘଟେନାହିଁ । ଭଗବଦ୍ ଗୀତାର ବିଭିନ୍ନ ସ୍ଥାନରେ ଏହି କଥା ପ୍ରତିଧ୍ୱନିତ ହୋଇଛି । ଯଥା:—

> ପ୍ରକୃତେଃ କ୍ରିୟମାଣାନି ଗୁଣୈଃ କର୍ମାଣି ସର୍ବଶଃ
> ଅହଂକାର ବିମୂଢାତ୍ମା-କର୍ତ୍ତାହମିତି ମନ୍ୟତେ (୩-୨୭)

ଅର୍ଥାତ୍ ସମସ୍ତ କର୍ମ, ପ୍ରକୃତିର ଗୁଣମାନଙ୍କ ଦ୍ୱାରାହିଁ କରାଯାଉଛି । କିନ୍ତୁ ଅହଂକାର—ବିମୂଢ଼ ଆତ୍ମା, "ମୁଁ କର୍ତ୍ତା" ବୋଲି ଭାବେ ।

> ଯ ଏନଂ ବେତ୍ତି ହନ୍ତାରଂ ଯଶ୍ଚୈନଂ ମନ୍ୟତେ ହତମ୍
> ଉଭୌ ତୌ ନ ବିଜାନୀତୋ ନାୟଂହନ୍ତି ନ ହନ୍ୟତେ (୨।୧୯)

"ଆତ୍ମା ମାରେ" (ହନ୍ତା) ବୋଲି ଯେ ଭାବୁଛି, କିମ୍ବା "ଆତ୍ମା ମରି ଯାଏ" (ହତହୁଏ) ବୋଲି ଯେ ଭାବୁଛି, ଉଭୟେ ପ୍ରକୃତ କଥା ଜାଣନ୍ତି ନାହିଁ । ଆତ୍ମା ମାରେ ନାହିଁକି ମରି ହୁଏନାହିଁ ।

ଯସ୍ୟ ନାହଂକୃତୋଭାବୋ ବୁଦ୍ଧିର୍ଯସ୍ୟ ନ ଲିପ୍ୟତେ
ହତ୍ୱାଽପି ସ ଇମାଁ ଲ୍ଲୋକାନ୍ ନହନ୍ତି, ନନିବଧ୍ୟତେ (୧୮।୧୭)

ଅର୍ଥାତ୍ "ମୁଁ କରୁଛି" ବୋଲି ଯାହାର ଅହଂକାର ନାହିଁ, ଯାହାର ବୁଦ୍ଧି (ତହିଁରେ) ଲିପ୍ତନୁହେ, ସେ ଲୋକମାନଙ୍କୁ ମାରିଦେଲେ ମଧ୍ୟ (ପ୍ରକୃତରେ) ମାରେ ନାହିଁ କି ସେ ବନ୍ଧନରେ ପଡ଼େନାହିଁ ।

## ଅକ୍ରିୟବାଦ ଓ ସଂସାର-ଶୁଦ୍ଧିବାଦ

ମକ୍ଖଲିଗୋସାଲଙ୍କର 'ସଂସାର ଶୁଦ୍ଧିବାଦ' ଅକ୍ରିୟବାଦଠାରୁ ବିଶେଷ ଭିନ୍ନ ନୁହେଁ । ତାଙ୍କ ମତରେ, ଯଦ୍ୟପି ଆତ୍ମା ପ୍ରକୃତରେ ଲିପ୍ତ ନୁହେଁ ତଥାପି ସେ ନିର୍ଦ୍ଦିଷ୍ଟ ଜନ୍ମଗ୍ରହଣ କରିବାକୁ ପଡ଼େ ଓ ତାହାପରେ ସେ ନିଜେ ନିଜେ ମୁକ୍ତ ହୋଇଯାଏ । ଏବେ ମଧ୍ୟ ହିନ୍ଦୁ ସମାଜରେ ଏହି ଧାରଣା ପ୍ରଚଳିତ ଥିବାର ଦେଖାଯାଏ ଯେ ୮୪ ଲକ୍ଷ ଜନ୍ମ ଗ୍ରହଣ କଲାପରେ ପ୍ରାଣୀ ଉନ୍ନତ ସ୍ତରରେ ଉପନୀତ ହୁଏ । ମକ୍ଖଲି ଗୋସାଲଙ୍କ ସମୟରେ ଏହି ମତବାଦ ବିଶେଷ ଭାବରେ ପ୍ରଚଳିତ ଥିବାର ଅନୁମିତ ହୁଏ ।

ଅଙ୍ଗୁତ୍ତର ନିକାୟର ଛକ୍କ ନିପାତର ଗୋଟିଏ ସୁତ୍ତରେ (ସୂ:୫୭) ଦେଖିବାକୁ ମିଳେ ଯେ, ପୂରଣ କାଶ୍ୟପଙ୍କର ସମ୍ପ୍ରଦାୟ ଶେଷରେ ମକ୍ଖଲି ଗୋସାଲଙ୍କ ଆଜୀବକ ସମ୍ପ୍ରଦାୟର ଅନ୍ତର୍ଭୁକ୍ତ ହୋଇ ଯାଇଥିଲା । ଏହି ସୁତ୍ତରେ ଆନନ୍ଦ ଭଗବାନଙ୍କୁ କହୁଛନ୍ତି—"ଭଦନ୍ତ, ପୂରଣ କାସ୍ସପ, କୃଷ୍ଣ, ନୀଳ, ଲୋହିତ, ପୀତ, ଶୁକ୍ଳ ଓ

ପରମ ଶୁକ୍ଳ, ଏହିପରି ଛଅ ପ୍ରକାର ଅଭିଜାତି କଥା କହୁଛନ୍ତି । ବ୍ୟାଧ ପ୍ରଭୃତି ଶ୍ରେଣୀୟ ଲୋକଙ୍କୁ କୃଷ୍ଣାଭି ଜାତିରେ ଅନ୍ତର୍ଭୁକ୍ତ କରାଯାଇଛି । ଭିକ୍ଷୁ ପ୍ରଭୃତି କର୍ମବାଦୀ ଲୋକଙ୍କର ନୀଳ ଜାତିରେ ସମାବେଶ କରାଯାଇଛି । ଏକବସ୍ତ୍ର ପରିଧାନ କରୁଥିବା ନିର୍ଗ୍ରନ୍ଥ ମାନଙ୍କୁ ଲୋହିତାଭି ଜାତିରେ, ଶୁଭ୍ର ବସ୍ତ୍ର ପରିଧାନ କରୁଥିବା ଅଚେଲକ ଶ୍ରାବକମାନଙ୍କୁ (ଆଜୀବକ) ହରିଦ୍ରାଭି ଜାତିରେ ଏବଂ ଆଜୀବକମାନଙ୍କୁ ଓ ଆଜୀବକଭିକ୍ଷୁଣୀମାନଙ୍କୁ ଶୁକ୍ଳାଭିଜାତିରେ ତଥା ନନ୍ଦିବଚ୍ଛ, କିସସଂକିଚ ତଥା ମକ୍ଖଲି ଗୋସାଳଙ୍କୁ ପରମ ଶୁକ୍ଳାଭିଜାତିରେ ସମାବେଶ କରାଯାଇଛି ।” ଏଥିରୁ ଜଣାଯାଏ ଯେ, ପୂରଣ କସ୍ସପଙ୍କର ସମ୍ପ୍ରଦାୟ ଏବଂ ଆଜୀବକ ମାନଙ୍କର ସମ୍ପ୍ରଦାୟ ଏକ ହୋଇ ଯାଇଥିଲା । ନନ୍ଦ ବଚ୍ଛ ପ୍ରଭୃତି ତିନିଜଣ ଆଚାର୍ଯ୍ୟ ଆଜୀବକ ପରମ୍ପରାର ନେତା ଥିଲେ । ଏଥିରୁ ଏହା ମଧ୍ୟ ସ୍ପଷ୍ଟ ପ୍ରମାଣିତ ହୋଇଯାଉଛି ଯେ, କାସ୍ସପଙ୍କର ଏବଂ ଏମାନଙ୍କର ଆତ୍ମବାଦରେ କୌଣସି ପାର୍ଥକ୍ୟ ନ ଥିଲା ପୁଣି, ଏମାନଙ୍କର ଦେହ ଦଣ୍ଡନ ମାର୍ଗ କସ୍ସପଙ୍କର ଅନଭିମତ ନଥିଲା ।

## ଅଜିତ କେସକମ୍ବଲଙ୍କ ନାସ୍ତିକ ବାଦ

ଅଜିତ-କେସକମ୍ବଲଙ୍କର ଉଚ୍ଛେଦ ବାଦ ଉପରେ ଦୃଷ୍ଟିପାତ କଲାମାତ୍ରେ ସେ ସମ୍ପୂର୍ଣ୍ଣ ନାସ୍ତିକ ଥିବା ଜଣାଯାଏ । ସର୍ବ-ଦର୍ଶନ ସଂଗ୍ରହରେ ସମାବେଶିତ ଚର୍ବାକ ମତର ସେ ସଂସ୍ଥାପକ ନଥିଲେ । କିନ୍ତୁ ସେ ଜଣେ ତାହାର ସମର୍ଥକ ଥିବା ବିଶେଷ ସମ୍ଭବପର । ବ୍ରାହ୍ମଣମାନଙ୍କର ଯାଗଯଜ୍ଞ ପ୍ରଭୃତିକୁ ସେ ଯେପରି ହୀନ ଦୃଷ୍ଟିରେ ଦେଖୁଥିଲେ, ସେହିପରି ଆଜୀବକ ପ୍ରଭୃତି ଶ୍ରମଣମାନଙ୍କର

ତପଶ୍ଚରଣକୁ ମଧ୍ୟ ଅଗ୍ରାହ୍ୟ କରୁଥିଲେ । 'ସର୍ବ ଦର୍ଶନ ସଂଗ୍ରହ'ରେ ଲୁହାଯାଇଛି ।

ଅଗ୍ନିହୋତ୍ରଂ ତ୍ରୟୋବେଦାଃ ତ୍ରିଦଣ୍ଡଂ ଭସ୍ମଗୁଣ୍ଠନମ୍
ବୁଦ୍ଧି ପୌରୁଷ ହୀନାନାଂ ଜୀବିକା ଧାତୃ ନିର୍ମିତା ।

ଅର୍ଥାତ୍—ଅଗ୍ନିହୋତ୍ର, ବେଦତ୍ରୟ, ତ୍ରିଦଣ୍ଡ ଧାରଣ ଏବଂ ଭସ୍ମ ବିଲେପନ—ଏଗୁଡ଼ିକୁ ବୁଦ୍ଧିହୀନ ଏବଂ ପୌରୁଷହୀନ ଲୋକମାନଙ୍କର ଜୀବିକା ନିମନ୍ତେ ବ୍ରହ୍ମାସୃଷ୍ଟି କରିଅଛନ୍ତି ।

ଏପରି ହେଲେ ମଧ୍ୟ, ଶ୍ରମଣମାନଙ୍କ ମଧ୍ୟରେ ଅଜିତଙ୍କୁ ପରିଗଣନା କରାଯାଉଥିଲା କାରଣ ସେ ବୈଦିକ ହିଂସାକୁ ଆଦୌ ସ୍ୱୀକାର କରୁ ନଥିଲେ ଏବଂ ନିଜେ ତପଶ୍ଚର୍ଯ୍ୟା ନକଲେ ମଧ୍ୟ ଶ୍ରମଣମାନଙ୍କର ଆଚାର ବିଚାର ପ୍ରଭୃତି ପାଳନ କରୁଥିଲେ । ଶ୍ରମଣମାନଙ୍କର ଆତ୍ମବାଦରେ ମଧ୍ୟ ସେ ଅଳିପ୍ତ ନଥିଲେ । ଆତ୍ମାସଂପର୍କରେ ତାଙ୍କର ଧାରଣା ହେଉଛି ଏହାଯେ, ଭୂତଚତୁଷ୍ଟୟରୁ ଆତ୍ମା ଉତ୍ପନ୍ନ ହୁଏ ଏବଂ ମୃତ୍ୟୁପରେ ସେହି ମହାଭୂତମାନଙ୍କରେ ବିଲୀନ ହୋଇ ଯାଏ । ଏହି କାରଣରୁ ତାଙ୍କ ମତ ଏପରି ହେବା ସ୍ୱାଭାବିକ—

ଯାବଜ୍ଜୀବଂ ସୁଖଂ ଜୀବେ ନାସ୍ତିମୃତ୍ୟୋରଗୋଚରଃ
ଭସ୍ମୀଭୂତସ୍ୟ. ଦେହସ୍ୟ ପୁନରାଗମନଂ କୁତଃ ।

ଅର୍ଥାତ୍ ଜୀଇଁ ଥିବା ପର୍ଯ୍ୟନ୍ତ ସୁଖରେ ରହିବା ଉଚିତ । କାରଣ, ମୃତ୍ୟୁର ଅଗୋଚରରେ କୌଣସି ପ୍ରାଣୀ ରହିନପାରେ । ଆହୁରି ମଧ୍ୟ, ଦେହ ଥରେ ଭସ୍ମହୋଇ ଗଲାପରେ ସେ ପୁଣି ଫେରି ଆସିବ କୁଆଡ଼ୁ ।

କେସକମ୍ବଳଙ୍କର ଏହି ଦର୍ଶନରୁ ହିଁ ଲୋକାୟତ ଅର୍ଥଶାସ୍ତ୍ର ଗଢ଼ି ଉଠିଲା । କୌଟିଲ୍ୟଙ୍କ ପରି ଆଚାର୍ଯ୍ୟମାନେ ତାହାର ବିକାଶ ସାଧନ କଲେ ।

## ଅନ୍ୟୋନ୍ୟବାଦ ଓ ବୈଶେଷିକ ଦର୍ଶନ

ପକୁଧ କଚ୍ଚାୟନଙ୍କର ଅନ୍ୟୋନ୍ୟ ବାଦ ହେଉଛି ବୈଶେଷିକ ଦର୍ଶନ ପରି । କିନ୍ତୁ ତାଙ୍କର ସପ୍ତପଦାର୍ଥ ଓ ବୈଷେଶିକ ଦର୍ଶନର ସପ୍ତପଦାର୍ଥ ମଧ୍ୟରେ ଅତି ଅଳ୍ପ ସାମ୍ୟ ଦେଖାଯାଏ । କଚ୍ଚାୟନଙ୍କର ଶ୍ରମଣ ସଂଘ ବୃହଦାକାର ଥିଲେ ମଧ୍ୟ ତାଙ୍କର ପରଂପରା ଦୀର୍ଘସ୍ଥାୟୀ ହୋଇ ପାରିଲା ନାହିଁ । ଅର୍ବାଚୀନ ବୈଶେଷିକ ଦର୍ଶନ ତାଙ୍କର ଚିନ୍ତନରୁ ଉତ୍ପନ୍ନ ହୋଇ ଥାଇ ପାରେ କିନ୍ତୁ ସେ ପ୍ରକାର ଚିନ୍ତମାନ ଗ୍ରହଣ କରୁଥିବା ଶ୍ରମଣ ସଂପ୍ରଦାୟ ବୁଦ୍ଧଙ୍କ ସମୟପରେ ଆଉ ରହିନଥିବ ।

## ବିକ୍ଷେପବାଦ ଓ ସ୍ୟାଦ୍‌ବାଦ

ସଂଜୟ ବେଲଟ୍‌ଠପୁତ୍ରଙ୍କର ବିକ୍ଷେପବାଦ ଓ ଜୈନମାନଙ୍କର ସ୍ୟାଦ୍‌ବାଦ ମଧ୍ୟରେ ସାମଞ୍ଜସ୍ୟ ଦେଖାଯାଏ । ପୁଣି କେତେ କାଳପରେ ଜୈନମାନେ ଉକ୍ତମତକୁ ନିଜ ଦର୍ଶନର ଅନ୍ତର୍ଭୁକ୍ତ କରି ଦେଇଥିଲେ । "ଏପରି ହେବ, ଏପରି ହେବନାହିଁ" ( ସ୍ୟାଦସ୍ତି, ସ୍ୟାନ୍ନାସ୍ତି···ହୋଇପାରେ, ହୋଇ ନପାରେ ) ପ୍ରଭୃତି ହେଉଛି ସ୍ୟାଦ୍‌ବାଦ । ବେଲଟ୍‌ଠ ପୁତ୍ରଙ୍କ ବିକ୍ଷେପ ବାଦ ଏହାଠାରୁ ବିଶେଷ ଭିନ୍ନ ନୁହେଁ । ଅତଏବ ଜୈନ ସଂପ୍ରଦାୟ ବିକ୍ଷେପ ବାଦକୁ ନିଜର ମୁଖ୍ୟ ଦର୍ଶନ ତତ୍ତ୍ୱରୂପେ ଗ୍ରହଣ କରିନେଲେ ବୋଲି କହିବାରେ ବିଶେଷ ଆପତ୍ତି ଥାଇ ନପାରେ ।

## ନିର୍ଗ୍ରନ୍ଥ ଓ ଆଜୀବକ

ଜୈନ ଗ୍ରନ୍ଥମାନଙ୍କରୁ ଜଣାଯାଏ ଯେ, ବୁଦ୍ଧଦେବଙ୍କର ସମସାମୟିକ ଓ ଜୈନମାନଙ୍କର ଚତୁର୍ବିଂଶ ତୀର୍ଥଙ୍କର ମହାବୀର ସ୍ୱାମୀ (ଯାହାଙ୍କୁ ନିଗଣ୍ଠ ନାଥ ପୁତ୍ର କୁହାଯାଏ) ଏବଂ ମକ୍ଖଲି ଗୋସାଳ ଦୁହେଁ ଛଅ ବର୍ଷ ପର୍ଯ୍ୟନ୍ତ ଏକାଠି ରହି ତପସ୍ୟା କରୁଥିଲେ । ଆଜୀବକ ଏବଂ ନିର୍ଗ୍ରନ୍ଥମାନଙ୍କୁ ମିଶାଇଦେଇ ଗୋଟିଏ ସଂପ୍ରଦାୟ ଗଢ଼ିବାକୁ ଦୁହେଁ ପ୍ରଯତ୍ନ କରୁଥିଲେ । ପାର୍ଶ୍ୱମୁନିଙ୍କର ସନ୍ୟାସୀମାନେ ନିଜ ପାଖରେ ଗୋଟିଏ କମ୍ବା ତିନୋଟି ବସ୍ତ୍ର ରଖୁଥିଲେ; କିନ୍ତୁ ମହାବୀର ସ୍ୱାମୀ, ମକ୍ଖଲି ଗୋସାଳଙ୍କର ଦିଗମ୍ବର ବ୍ରତ ଗ୍ରହଣ କଲେ । ସେହି ସମୟରୁ ନିର୍ଗ୍ରନ୍ଥମାନେ ନିର୍ବସ୍ତ୍ର ହୋଇଗଲେ । ତଥାପି ନିର୍ଗ୍ରନ୍ଥ ଓ ଆଜୀବକମାନଙ୍କର ଦର୍ଶନରେ ମେଳ ରହିପାରିଲା ନାହିଁ । ମହାବୀର ସ୍ୱାମୀ ଯଦି ୮୪ ଲକ୍ଷ ଦର୍ଶନ ସ୍ୱୀକାର କରନ୍ତି, ତାହାହେଲେ ନିର୍ଗ୍ରନ୍ଥମାନଙ୍କ ପରଂପରାରେ ପ୍ରଚଳିତ ଚତୁର୍ଯ୍ୟାମର କୌଣସି ମହତ୍ତ୍ୱ ରହିବ ନାହିଁ । ଯଦି ନିର୍ଯାତ (ଭାଗ୍ୟ) ସଙ୍ଗତି (ପରିସ୍ଥିତି) ଏବଂ ସ୍ୱଭାବ ହେତୁ ପ୍ରାଣୀର ପରିଣତି ଘଟେ ବୋଲି ଧରାଯାଏ, ତେବେ ଅହିଂସା, ସତ୍ୟ, ଅସ୍ତେୟ ଏବଂ ଅପରିଗ୍ରହ, ଏହି ଚାରି ଯାମର ଉପଯୋଗିତା ଅବା କଣ ରହିବ ? ଏହି କାରଣରୁ ଏ ଦୁଇ ଆଚାର୍ଯ୍ୟ ଏକ ମତ ହୋଇ ପାରିଲେ ନାହିଁ ।

ଆଜୀବକମାନଙ୍କର ୮୪ ଲକ୍ଷ ଦର୍ଶନ ତୁଳନାରେ ନିର୍ଗ୍ରନ୍ଥମାନଙ୍କର ଚତୁର୍ଯ୍ୟାମ ସମ୍ବରବାଦ ଲୋକମାନଙ୍କର ବିଶେଷ ମନୋନୀତ ହେଲା । ଏପରି ହେବାରେ ବିଶେଷ କିଛି ନୂତନତା ନାହିଁ ; କାରଣ, ଏହାଦ୍ୱାରା ଓ ତପଶ୍ଚରଣଦ୍ୱାରା ପୂର୍ବ ଜନ୍ମକୃତପାପକୁ ପ୍ରକ୍ଷାଳିତ କରାଯାଇପାରେ ଓ ଗୋଟିଏ ଜନ୍ମରେ ମଧ୍ୟ ମୋକ୍ଷ ମିଳି ପାରେ ।

## ନିର୍ଗ୍ରନ୍ଥମାନଙ୍କର ପରିଚୟ

ନିର୍ଗ୍ରନ୍ଥମାନଙ୍କ ସମ୍ପର୍କରେ ଅନେକ କଥା ସୁତ୍ତପିଟକରୁ ଉତ୍ତମରୂପେ ଜଣାଯାଏ । ମଜ୍ଝିମନିକାୟର, 'ଚୂଳଦୁକ୍ଖକ୍ଖନ୍ଧ ସୁତ୍ତ'ରେ ବୁଦ୍ଧ ଏବଂ ନିର୍ଗ୍ରନ୍ଥମାନଙ୍କର ସଂଳାପ ଦିଆଯାଇଛି । ତାର ସାରକଥା ହେଉଛି :—

ରାଜଗୃହରେ କେତେକ ନିର୍ଗ୍ରନ୍ଥ ଠିଆ-ଠିଆ ହୋଇ ତପଶ୍ଚରଣ କରୁଥିଲେ । ଭଗବାନ୍ ବୁଦ୍ଧ ସେମାନଙ୍କ ପାଖକୁ ଯାଇ କହିଲେ "ବନ୍ଧୁଗଣ, ଆପଣମାନେ ନିଜ ନିଜର ଶରୀରକୁ ଏପରି କଷ୍ଟ ଦେଉଛନ୍ତି କାହିଁକି ?"

ସେମାନେ କହିଲେ "ନିର୍ଗ୍ରନ୍ଥ ନାଥ ପୁତ୍ତ ହେଉଛନ୍ତି ସର୍ବଜ୍ଞ । ସେ କହୁଛନ୍ତି, ଚାଲିବା ବେଳେ, ଠିଆହେଲା ବେଳେ, ଶୋଇବା ବେଳେ, ଜାଗ୍ରତ ଥିବା ବେଳେ—ସମସ୍ତ ସ୍ଥିତିରେ ମୋର ଜ୍ଞାନ ଦୃଷ୍ଟି ରହେ ।" ସେ ଆମମାନଙ୍କୁ ଉପଦେଶ ଦେଇଅଛନ୍ତି—"ହେ ନିର୍ଗ୍ରନ୍ଥ ଗଣ, ତୁମ୍ଭେମାନେ ପୂର୍ବ ଜନ୍ମରେ ଯେଉଁ ପାପ କରିଅଛ ତାକୁ ଏହି ପ୍ରକାର ଦେହ ଦଣ୍ଡନ ଦ୍ୱାରା ଜୀର୍ଣ୍ଣ କରିଦିଅ (ନିଜ୍ଜରେଥ) ଏବଂ ଇହଜନ୍ମରେ ମନ, ବଚନ ତଥା ଶରୀରରେ କୌଣସି ପାପକର ନାହିଁ । ଏହି ପ୍ରକାର ତପସ୍ୟା ଦ୍ୱାରା ପୂର୍ବଜନ୍ମର ପାପ ବି ନଷ୍ଟ ହୋଇଯିବ ଏବଂ ଆଉ ପାପ ନକରିବା ହେତୁ ଅନ୍ୟ ଜନ୍ମରେ କର୍ମକ୍ଷୟ ହୋଇଯିବ । ଏହା ଦ୍ୱାରା ସମସ୍ତ ଦୁଃଖ ବିନଷ୍ଟ ହେବ ।" ତାଙ୍କର ଏହିକଥା ଆମମାନଙ୍କୁ ରୁଚିକର ବୋଧ ହେଉଛି ।

ଭଗବାନ୍ କହିଲେ—"ହେ ନିର୍ଗ୍ରନ୍ଥ ଗଣ, କ'ଣ, ଆପଣମାନେ ପୂର୍ବ ଜନ୍ମରେ ଥିଲେ କି ନାହିଁ, ଆପଣମାନେ ଜାଣନ୍ତି ?

ନିର୍ଗ୍ରନ୍ଥ—ଆମେ ଜାଣି ନାହୁଁ ।

ଭଗବାନ୍—ଆଚ୍ଛା, କଣ ଆପଣମାନେ ପୂର୍ବ ଜନ୍ମରେ ପାପ କରିଛନ୍ତି କି ନାହିଁ ଜାଣନ୍ତି ?

ନିର୍ଗ୍ରନ୍ଥ—ସେ କଥା ମଧ୍ୟ ଆମେ ଜାଣି ନାହୁଁ ।

ଭଗବାନ୍—ଆପଣମାନେ ଜାଣୁଛନ୍ତି କି, କେତେ ଦୁଃଖ କ୍ଷୟ ହେଲା ଓ ଆଉ କେତେ ବାକି ଅଛି ?

ନିର୍ଗ୍ରନ୍ଥ—ସେ କଥା ମଧ୍ୟ ଆମେ ଜାଣୁ ନାହୁଁ ।

ଭଗବାନ୍—ଯଦି ସେସବୁ କଥା ଆପଣମାନଙ୍କୁ ଜଣା ନାହିଁ, ତାହାହେଲେ ଗତ ଜନ୍ମରେ ଆପଣମାନେ ବ୍ୟାଧ ସଦୃଶ କ୍ରୂର କର୍ମୀ ଥିଲେ ଓ ଏହି ଇହଜନ୍ମରେ ସେହି ପାପର ବିନାଶ ଲାଗି ତପସ୍ୟା କରୁଛନ୍ତି ବୋଲି ଧରିନେବା ଠିକ୍ ହେବ ନାହିଁକି ?

ନିର୍ଗ୍ରନ୍ଥ—ଆୟୁଷ୍ମାନ୍ ଗୌତମ, ସୁଖଦ୍ୱାରା ସୁଖ ମିଳେନାହିଁ । ଦୁଃଖ ଦ୍ୱାରାହିଁ ସୁଖମିଳେ । ଯଦି ସୁଖରୁ ସୁଖ ମିଳୁ ଥାଆନ୍ତା ତାହାହେଲେ ଆୟୁଷ୍ମାନ୍ ଗୌତମଙ୍କ ଅପେକ୍ଷା ରାଜା ବିମ୍ବିସାରଙ୍କୁ ଅଧିକ ସୁଖ ମିଳୁ ଥାଆନ୍ତା ।

ଭଗବାନ୍—ହେ ନିର୍ଗ୍ରନ୍ଥ ଗଣ, ଆପଣମାନେ ନବୁଝି ନଶୁଝି ଏକଥା କହୁଛନ୍ତି । ମୁଁ ଆପଣଙ୍କମାନଙ୍କୁ ଏତିକି ପଚାରୁଛି ଯେ, ରାଜା ବିମ୍ବିସାର କଣ ସାତଦିନ ପର୍ଯ୍ୟନ୍ତ ସିଧା ସଳଖେ ବସି, ମୁହଁରେ ପଦେ କଥା ନକହି ଏକାନ୍ତ ସୁଖ ଅନୁଭବ କରି ପାରିବେ । ସାତଦିନ କଥା ଛାଡ଼ନ୍ତୁ, ଦିନକପାଇଁ କ'ଣ ସେ ଏପରି ସୁଖ ଅନୁଭବ କରି ପାରିବେ ?

ନିର୍ଗ୍ରନ୍ଥ—ଆୟୁଷ୍ମାନ୍, ତାଙ୍କ ପକ୍ଷରେ ସମ୍ଭବ ନୁହେଁ ।

ଭଗବାନ୍—ମୁଁ କେବଳ ଦିନକ ପାଇଁ ନୁହେଁ ସାତଦିନ ପର୍ଯ୍ୟନ୍ତ ସେ ସୁଖ ଅନୁଭବ କରି ପାରୁଛି । ମୁଁ ଆପଣମାନଙ୍କୁ

ପର୍ଯ୍ୟନ୍ତ, ରାଜା ବିମ୍ବିସାର ( ନିଜ ବିଭବ ବଳରେ ) ବେଶି ସୁଖୀ ନା ମୁଁ ।

ନିର୍ଗ୍ରନ୍ଥ—ଏପରି ହେଲେ, ଆୟୁଷ୍ମାନ୍ ଗୌତମ ହିଁ ରାଜା ବିମ୍ବିସାରଙ୍କ ଅପେକ୍ଷା ଅଧିକ ସୁଖୀ ।

ବୌଦ୍ଧ ମତର ବିଶେଷତ୍ୱ ପ୍ରତିପାଦନ କରିବା ପାଇଁ ଏହି କଥାବାର୍ତ୍ତା ଗଢ଼ା ଯାଇଛି । ତଥାପି ଏଥିରେ ଜୈନ ମତର ବିପର୍ଯ୍ୟାସ କରି ଯାଇନାହିଁ । ତାଙ୍କର ବକ୍ତବ୍ୟ ଏହି ଯେ, ତପଶ୍ଚର୍ଯ୍ୟା ଏବଂ ବ୍ରହ୍ମଚର୍ଯ୍ୟାଦିର ଅଭ୍ୟାସ ଦ୍ୱାରା ପୂର୍ବ ଜନ୍ମକୃତ କର୍ମ କ୍ଷୟ କରାଯାଇପାରେ । ଏବେ ମଧ୍ୟ ସେ ପରଂପରା ଚାଲିଛି ।

## ଆତ୍ମା-ବିଷୟକ କଳ୍ପନା

ଏହି ଆଚାର୍ଯ୍ୟମାନେ ଏବଂ ସେହି ସମୟର ଅନ୍ୟ ଶ୍ରମଣମାନେ ଆତ୍ମା ବିଷୟରେ କିପରି ଅଦ୍ଭୁତ କଳ୍ପନାମାନ କରିଥିଲେ, ତାହାର କେତେକ ନମୁନା ଉପନିଷଦ୍ ମାନଙ୍କରୁ ମିଳେ । ଉଦାହରଣ ସ୍ୱରୂପ ଏହି କଳ୍ପନାଟି ଦେଖନ୍ତୁ—କୁହାଯାଇଛି, ଆତ୍ମା ଚାଉଳ ଏବଂ ଯବଧାନ ଅପେକ୍ଷା ମଧ୍ୟ ଆକାରରେ କ୍ଷୁଦ୍ର ଓ ସେ ହୃଦୟ ଭିତରେ ରହେ ।

"ଏଷ ମ ଆତ୍ମାନ୍ତର୍ହୃଦୟେଽଣୀୟାନ୍ବ୍ରୀହେର୍ବା ଯବାଦ୍ବା,
ସର୍ଷପାଦ୍ବା ଶ୍ୟାମାକାଦ୍ବା ଶ୍ୟାମାକତଣ୍ଡୁଳାଦ୍ବା" (୧)

ଅର୍ଥାତ୍, ଏହି ମୋର ଆତ୍ମା ହୃଦୟର ମଧ୍ୟରେ (ରହେ), ସେ ଚାଉଳଠାରୁ, ଯବଠାରୁ, ସୋରିଷଠାରୁ ଏବଂ ସୁଆଁଠାରୁ ମ... ଶ୍ରେଷ୍ଠ । ପୁଣି ସେ ଏଡ଼େ ବଡ଼ ଯେ –

(୧) ଛାନ୍ଦୋଗ୍ୟ ଉପନିଷଦ୍ ୩।୧୪।୩।

ମନୋମୟୋଽୟଂ ପୁରୁଷୋ ଭାଃ ସତ୍ୟସ୍ତସ୍ମିନ୍ନନ୍ତ ହୃର୍ଦୟେ
· ଯଥା ବ୍ରୀହିର୍ବା ଯବୋବା” (୧)

ଅର୍ଥାତ୍, ଏହି ପୁରୁଷରୂପୀ ଆତ୍ମା ମନୋମୟ, ଦୀପ୍ତିମନ୍ତ ଓ ସତ୍ୟ ସ୍ୱରୂପ ଅଟେ । ଗ୍ରୁଜଲ ଏବଂ ଯବର ଦାନା ପରି ସେ ହୃଦୟ ଭିତରେ (ଅନ୍ତର୍ହୃଦୟରେ) ରହେ । ଏହାପରେ ଆତ୍ମା ଅଙ୍ଗୁଷ୍ଠ ଆକାରର ବୋଲି ଅନ୍ୟ ଏକ କଳ୍ପନା ମଧ୍ୟ ଉଦ୍ଭୂତ ହୋଇଥିଲା ।

ଅଙ୍ଗୁଷ୍ଠମାତ୍ରଃ ପୁରୁଷୋ ମଧ୍ୟ ଆତ୍ମନ ତିଷ୍ଠତି (୨)

ଅର୍ଥାତ୍, ଅଙ୍ଗୁଷ୍ଠ ପରିମିତ ସେହି ପୁରୁଷ ଆତ୍ମା ମଧ୍ୟରେ ରହେ । ପୁଣି ମନୁଷ୍ୟ ଶୋଇ ପଡ଼ିବା ପରେ ସେ ବୁଲିବା ପାଇଁ ଶରୀରରୁ ବାହାରି ଚାଲିଯାଏ—

ସ ଯଥା ଶକୁନିଃ ସୂତ୍ରେଣ ପ୍ରବଦ୍ଧୋ ଦିଶଂ ଦିଶଂ ପତିତ୍ୱାନ୍ୟ- ତ୍ରାୟତନମଲବ୍ଧ୍ୱା ବନ୍ଧନ ମେବୋ ପଶ୍ରୟତ ଏବମେବ ଖଳୁ ସୋମ୍ୟ ତନ୍ମନୋ ଦିଶଂ ଦିଶଂ ପତିତ୍ୱାନ୍ୟତ୍ରାୟତନମଲବ୍ଧ୍ୱା ପ୍ରାଣମେବୋ ପଶ୍ରୟତେ ପ୍ରାଣବନ୍ଧନଂ ହି ସୋମ୍ୟ ମନ ଇତି ” (୩)

ଅର୍ଥାତ୍, ଯେଉଁପରି ଦଉଡ଼ିରେ ବନ୍ଧା ହୋଇଥିବା ପକ୍ଷୀ ଚାରି ଦିଗରେ ବୁଲେ ଓ ସେଠାରେ ରହିବାକୁ ସ୍ଥାନ ନପାଇ ବନ୍ଧନ ଭିତରକୁ ଚାଲିଆସେ ଆତ୍ମା ମଧ୍ୟ ସେହିପରି; ହେ ସୌମ୍ୟ ! ମନ ହେତୁ ଆତ୍ମା ଚତୁର୍ଦ୍ଦିଗରେ ଭ୍ରମଣ କରେ ଏବଂ ସେଠାରେ ସ୍ଥାନ ନ ପାଇ ପ୍ରାଣର ଆଶ୍ରୟ ଗ୍ରହଣ କରେ, ଯେହେତୁ ପ୍ରାଣ ହେଉଛି ମନର ବନ୍ଧନ ।

---

(୧) ବୃହଦାରଣ୍ୟକ ଉପନିଷଦ୍ ୫।୬।୧।
(୨) କଠୋପନିଷଦ୍ ।୪।୧୨
(୩) ଛାନ୍ଦୋଗ୍ୟ ଉପନିଷଦ୍ ୬।୮।୨

## ଶାଶ୍ୱତବାଦ ଓ ଉଚ୍ଛେଦବାଦ

ଆତ୍ମା-ବିଷୟକ ଏହିପରି ନାନାବିଧ ବିଚିତ୍ର କଳ୍ପନା ବୁଦ୍ଧଦେବଙ୍କ ସମୟରେ ଶ୍ରମଣ ବ୍ରାହ୍ମଣମାନଙ୍କ ମଧ୍ୟରେ ପ୍ରସାର ଲାଭ କରିଥିଲା । ସେସବୁ ଦୁଇଟି ବର୍ଗରେ ବିଭକ୍ତ କରାଯାଇପାରେ । ସେ ମଧ୍ୟରୁ ଏକ ଶ୍ରେଣୀର ମତ ହେଉଛି—

ସସ୍ସତୋ ଅତ୍ତା ଚ ଲୋକୋ ଚ ବଂଝୋ କୂଟଟ୍ଠୋ ଏସିକଟ୍ଠାୟୀ ଠିତୋ

ଅର୍ଥାତ୍, ଆତ୍ମା ଏବଂ ଜଗତ୍ ଶାଶ୍ୱତ ଅଟେ । ସେ (ଆତ୍ମା) ବନ୍ଧ୍ୟ, କୂଟସ୍ଥ ଏବଂ ନଗର ଦ୍ୱାରସ୍ଥ ସ୍ତମ୍ଭ ପରି ଅଚଳ । (୧)

ଏହି ମତବାଦରେ ପୂରଣ କସ୍ସପ, ମକ୍ଖଳି ଗୋସାଳ, ପକୁଧ କଚ୍ଚାୟନ ଏବଂ ନିଗଣ୍ଠ ନାଥପୁତ୍ତଙ୍କ ମତ ସମାବେଶିତ ହୋଇଥିଲା ।

ଅନ୍ୟ ଶ୍ରମଣ ବ୍ରାହ୍ମଣମାନେ ଉଚ୍ଛେଦବାଦ ପ୍ରତିପାଦନ କରୁଥିଲେ । ସେମାନଙ୍କର ମତ ହେଉଛି—

ଅୟଂ ଅତ୍ତା ରୂପୀ ଚାତୁମ୍ମହାଭୂତିକୋ ମାତାପେତ୍ତିସମ୍ଭବୋ କାୟସ୍ସ ଭେଦା ଉଚ୍ଛିଜ୍ଜତି ବିନସ୍ସତି ନ ହୋତି ପରଂମରଣା

ଅର୍ଥାତ୍, ଏହି ଆତ୍ମା ହେଉଛି ଜଡ, ଚାରି ମହାଭୂତରେ ଗଠିତ ଓ ମାତାପିତାଙ୍କ ଦ୍ୱାରା ସୃଷ୍ଟ ହୋଇଛି । ଶରୀର ନାଶ ପରେ ସେ ଛିନ୍ନ ହୁଏ, ତାହାର ବିନାଶ ଘଟେ, ମୃତ୍ୟୁ ପରେ ତାହାର ଅସ୍ତିତ୍ୱ ରହେ ନାହିଁ ।

---

(୧) ଏହି ଓ ଅନ୍ୟ ଅନେକ ଆତ୍ମବାଦ ଦୀଘନିକାୟର ବ୍ରହ୍ମଜାଲ ସୁତ୍ତରେ ଦିଆଯାଇଛି । ଅନ୍ୟ ନିକାୟମାନଙ୍କରେ ବିଭିନ୍ନ ଆତ୍ମାବାଦର ଉଲ୍ଲେଖ ହୋଇଛି ।

ଏହିମତ ପ୍ରତିପାଦନ କରୁଥିବା ଶ୍ରମଣମାନଙ୍କ ମଧ୍ୟରେ ମୁଖ୍ୟଥିଲେ ଅଜିତ କେସକମ୍ବଳ । ଏହି ଦୁଇ ମତର ମଧ୍ୟବର୍ତ୍ତୀ ଆଉ ଦଳେ ଶ୍ରମଣ ବ୍ରାହ୍ମଣ ଥିଲେ । ସେମାନଙ୍କ ମତରେ ଆତ୍ମା କୟଦଂଶରେ ଶାଶ୍ୱତ ଓ କୟଦଂଶରେ ଅଶାଶ୍ୱତ । ସଞ୍ଜୟ ବେଲଟ୍ଠି ପୁତ୍ରଙ୍କର ମତବାଦ ଏ ପ୍ରକାରର ଥିବା ଜଣାଯାଏ । ପରେ ଜୈନମାନେ ଏହି ଦର୍ଶନ ତତ୍ତ୍ୱ ଗ୍ରହଣ କରିଥିଲେ ।

## ଆତ୍ମବାଦମ ନଙ୍କର ପରିଣାମ

ଏହିସବୁ ଆତ୍ମବାଦଗୁଡ଼ିକର ପରିଣାମ ମୁଖ୍ୟତଃ ଦୁଇ ପ୍ରକାର । ଗୋଟିକରେ, ବିଳାସରେ ସୁଖ ପ୍ରାପ୍ତି ସ୍ୱୀକୃତ ହେଉଥିଲା, ଅନ୍ୟଟିରେ ତପସ୍ୟା ଦ୍ୱାରା ଶରୀରକୁ କଷ୍ଟ ଦିଆଯାଉଥିଲା । ପୂରଣ କସ୍ସପଙ୍କ ମତରେ, ଆତ୍ମା ଯଦି କାହାକୁ ମାରେ ନାହିଁ ତାହାହେଲେ ସୁଖୋପଭୋଗ ନିମନ୍ତେ ଅନ୍ୟକୁ ହତ୍ୟା କରିବାରେ କି ଆପତ୍ତି ଥାଇପାରେ ? ଜୈନମାନଙ୍କ ମତ ଅନୁସାରେ, ସେହି ଆତ୍ମା ପୂର୍ବ-ଜନ୍ମର କର୍ମରେ ଆବଦ୍ଧ ହୁଏ । ଫଳରେ ସେହି କର୍ମରୁ ମୁକ୍ତି ପାଇବା ପାଇଁ କଠୋର ତପସ୍ୟାର ଆବଶ୍ୟକ ହେବା ସ୍ୱାଭାବିକ । ଯଦି ଆତ୍ମାଅଶାଶ୍ୱତ ଓ ମୃତ୍ୟୁପରେ ତାହାର ସତ୍ତା ରହେ ନାହିଁ ବୋଲି ଗ୍ରହଣ କରାଯାଏ ତେବେ ତହିଁରୁ ଦୁଇଟି ମତ ପ୍ରତିପାଦନ କରାଯାଇପାରେ । ଯଥା:—ଆମେ ବଞ୍ଚିଥିବା ପର୍ଯ୍ୟନ୍ତ ବିଳାସରେ ବୁଡ଼ିରହିବା କିମ୍ବା ଭୋଗକୁ ଅଶାଶ୍ୱତ ବୋଲି ବୁଝି ତପଶ୍ଚରଣ କରିବା ।

## ଆତ୍ମବାଦ ବର୍ଜିତ ହେଲା

ତପଶ୍ଚରଣ ଏବଂ ସୁଖୋପଭୋଗ, ଏ ଉଭୟମାର୍ଗ ଭଗବାନ୍ ବୁଦ୍ଧଙ୍କୁ ବର୍ଜନୀୟ ବୋଲି ପ୍ରତୀତ ହେଉଥିଲା । କାରଣ, ଏହା

ଦ୍ୱାରା ମାନବଜାତିର ଦୁଃଖ ଲଘୁହେଉ ନଥିଲା । ପରସ୍ପର ମଧ୍ୟରେ ବିବାଦ ରତ ଲୋକଙ୍କୁ ଏ ଉଭୟମାର୍ଗ ଅନ୍ତିମ ଶାନ୍ତି ଦେଇ ପାରିବ ନାହିଁ । ବୋଧିସତ୍ୱଙ୍କର ଏହି ବିଶ୍ୱାସ ଜନ୍ମିଲା ଯେ, ଏହାର ଶେଷ କାରଣ ହେଉଛି ଆତ୍ମବାଦ । ତେଣୁ ସେ ଏହି ଆତ୍ମବାଦକୁ ଦୂର କରି ଏକ ନୂତନମାର୍ଗ ଖୋଜି ବାହାର କଲେ । ଆତ୍ମା ଶାଶ୍ୱତ ହେଉ ବା ଅଶାଶ୍ୱତ ହେଉ, ଏହି ସଂସାରରେ ଦୁଃଖ ନିଶ୍ଚୟ ଅଛି । ଏହି ଦୁଃଖ ହେଉଛି ମାନବଜାତିର ତୃଷ୍ଣାର ଫଳ । ଆର୍ଯ୍ୟ ଅଷ୍ଟାଙ୍ଗିକ ମାର୍ଗରୁ ଏହି ତୃଷ୍ଣାର କ୍ଷୟ ହେବ ଓ ମନୁଷ୍ୟକୁ ଶାନ୍ତି ସନ୍ତୋଷ ମିଳିବ । ଆତ୍ମବାଦକୁ ତ୍ୟାଗ ନ କଲେ ଏହି ନୂତନ ମାର୍ଗରେ ମନ ଲାଗିବା ସମ୍ଭବପର ନୁହେ । ଏହି ହେତୁ 'ଖନ୍ଧ ସଂଯୁତ୍ତ'ରେ ଏହା କୁହାଯାଇଛି ଯେ, ଭଗବାନ୍ ବୁଦ୍ଧ ପଞ୍ଚବର୍ଗୀୟ ଭିକ୍ଷୁମାନଙ୍କୁ ଚତୁରାର୍ଯ୍ୟସତ୍ୟ ପରେ ଅନାତ୍ମବାଦର ଉପଦେଶ ଦେଇଥିଲେ । (୧)

ଭଗବାନ୍ ବୁଦ୍ଧ ବାରାଣସୀର ଋଷିପତନରେ ମୃଗଦାବରେ ରହୁଥିଲେ । ସେଠାରେ ପଞ୍ଚବର୍ଗୀୟ ଭିକ୍ଷୁମାନଙ୍କୁ ସମ୍ବୋଧନ କରି ସେ କହିଥିଲେ—ହେ ଭିକ୍ଷୁଗଣ ! ଜଡ଼ଶରୀର ହେଉଛି ଅନାତ୍ମା । ଶରୀର ଯଦି ଆତ୍ମା ହୋଇ ଥାନ୍ତା, ତାହା ହେଲେ ସେ ଉପଦ୍ରବକାରୀ ହୋଇ ପାରି ନଥାନ୍ତା । ଆହୁରି ମଧ୍ୟ, 'ମୋର ଶରୀରର ଏପରି ହେଉ ବା ଏପରି ନ ହେଉ', ଏହା ମଧ୍ୟ କୁହା ଯାଇ ପାରନ୍ତା, କିନ୍ତୁ ଶରୀର ଅନାତ୍ମା ହୋଇଥିବାରୁ ସେ ହେଉଛି ଉପଦ୍ରବକାରୀ ଏବଂ "ଏପରି ହେଉ ବା ଏପରି ନ ହେଉ" ଏଭଳି କୁହାଯାଇ ପାରିବ ନାହିଁ ।

---

(୧) ମହାବଗ୍‌ଗରେ ମଧ୍ୟ ଏ ସୂତ୍ର ଅଛି ।

ହେ ଭିକ୍ଷୁଗଣ ! ବେଦନା ଅନାତ୍ମା ଅଟେ । ଯଦି ତାହା ଆତ୍ମା ହୋଇଥାନ୍ତା, ତାହାହେଲେ ଉପଦ୍ରବକାରୀ ହୋଇ ନଥାନ୍ତା । ପୁଣି "ମୋର ବେଦନା ଏପରହେଉ ବା ଏପର ନ ହେଉ" ଏପର ମଧ୍ୟ କୁହାଯାଇ ପାରନ୍ତା । କିନ୍ତୁ ବେଦନା ହେଉଛି ଅନାତ୍ମା, ଅତଏବ ଉପଦ୍ରବକାରୀ । "ଏପର ହେଉ ବା ଏପର ନ ହେଉ", ଏହା ମଧ୍ୟ କୁହାଯାଇ ପାରିବ ନାହିଁ । ସଞ୍ଜ୍ଞା, ସଂସ୍କାର ଏବଂ ବିଜ୍ଞାନ ମଧ୍ୟ ଅନାତ୍ମା ଅଟେ । ବିଜ୍ଞାନ ଯଦି ଆତ୍ମା ହୋଇଥାନ୍ତା ତାହାହେଲେ ଉପଦ୍ରବକାରୀ ହୋଇ ନ ଥାନ୍ତା । ପୁଣି ଆମେ ମଧ୍ୟ କହି ପାରନ୍ତେ ଯେ—"ମୋର ବିଜ୍ଞାନ ଏପର ହେଉ ବା ଏପର ନ ହେଉ", କିନ୍ତୁ ବିଜ୍ଞାନ ଅନାତ୍ମା ଅଟେ । ଅତଏବ "ମୋର ବିଜ୍ଞାନ ଏପର ହେଉ ବା ଏପର ନହେଉ" ଏହା ମଧ୍ୟ ଆମେ କହିପାରୁ ନାହିଁ ।

ହେ ଭିକ୍ଷୁଗଣ ! ଜଡ଼ଶରୀର, ବେଦନା, ସଞ୍ଜ୍ଞା, ସଂସ୍କାର ଏବଂ ବିଜ୍ଞାନ, ନିତ୍ୟ ନା ଅନିତ୍ୟ ?

ଭିକ୍ଷୁ—ଭଦନ୍ତ ! ସେ ଗୁଡ଼ିକ ଅନିତ୍ୟ ।

ଭଦନ୍ତ—ଯାହା ଅନିତ୍ୟ ତାହା ଦୁଃଖ କାରକ ନା ସୁଖ କାରକ ?

ଭିକ୍ଷୁ—ଭଦନ୍ତ, ତାହା ଦୁଃଖ କାରକ ।

ଭଦନ୍ତ—ପୁଣି ଯାହା ଦୁଃଖ କାରକ ଓ ବିପରୀତ ଗାମୀ ତା ସଂପର୍କରେ, ତାହାମୋର, ମୁଁ ସେ, ତାହା ମୋର ଆତ୍ମା ବୋଲି ବୁଝିବା ଠିକ୍ ହେବ କି ?

ଭିକ୍ଷୁ—ନୁହେଁ, ଭଦନ୍ତ !

ଭଦନ୍ତ—ଅତଏବ, ହେ ଭିକ୍ଷୁଗଣ ! ଯଥାର୍ଥ ଏବଂ ସମ୍ୟକ୍ ଜ୍ଞାନ ଦ୍ୱାରା ଯେ କୌଣସି ଜଡ଼ବସ୍ତୁ ଅତୀତ, ଅନାଗତ, ପ୍ରତ୍ୟୁତ୍ପନ୍ନ ! ନିଜ ଶରୀର ଭିତରର ବା ବାହାରର, ସ୍ଥୂଳ, ସୂକ୍ଷ୍ମ, ହୀନ, ଉତ୍କୃଷ୍ଟ

ଦୂରର କିମ୍ବା ନିକଟର ହେଉ-ସେସବୁ ମୋର ନୁହେ, ମୁଁ ସେପ୍ରା ନୁହେ, ତାହା ମୋର ଆତ୍ମା ନୁହେ ବୋଲି ବୁଝିବା ଉଚିତ । ଏପରି ଯଥାର୍ଥ ସମ୍ୟକ୍ ଜ୍ଞାନ ଦ୍ୱାରା ଉପଲବ୍ଧି କରିବା ଉଚିତ ଯେ, କୌଣସି ବେଦନା, କୌଣସି ସଞ୍ଜ୍ଞା, ସଂସ୍କାର, କୌଣସି ବିଜ୍ଞାନ, ଅତୀତ, ଅନାଗତ, ପ୍ରତ୍ୟୁତ୍ପନ୍ନ, ଶରୀର ଭିତରର ବା ବାହାରର ସ୍ଥୂଳ, ସୂକ୍ଷ୍ମ, ହୀନ, ଉତ୍କୃଷ୍ଟ, ଦୂରର ବା ନିକଟର— ସେ ସବୁ ମୋର ନୁହେ, ମୁଁ ସେପ୍ରା ନୁହେ, ତାହା ମୋର ଆତ୍ମା ନୁହେ । ହେ ଭିକ୍ଷୁଗଣ ! ଏପରି ଉପଲବ୍ଧି କରୁଥିବା ବିଦ୍ୱାନ୍ ଆର୍ଯ୍ୟ ଶ୍ରାବକ ଜଡ଼ ପଦାର୍ଥ, ବେଦନା, ସଞ୍ଜ୍ଞା ସଂସ୍କାର ଓ ବିଜ୍ଞାନ ବିଷୟରେ ବିରକ୍ତ ହୁଏ ଏବଂ ସେହି ବିରାଗ ହେତୁ ବିମୁକ୍ତ ହୁଏ ।

## ଆତ୍ମାର ପଞ୍ଚ ବିଭାଗ

ଆତ୍ମା ଶାଶ୍ୱତ କି ଅଶାଶ୍ୱତ, ଏହି ପ୍ରଶ୍ନର ସିଧା ସଳଖ ଉତ୍ତର ଦେବା ସହଜ ସାଧ୍ୟ ନ ଥିଲା । ତେଣୁ ଭଗବାନ୍ ବୁଦ୍ଧ ଆତ୍ମାର ସ୍ୱରୂପ ଯଥାର୍ଥ ଭାବେ ବୁଝାଇବା ପାଇଁ ଏହି ପଞ୍ଚ ସ୍କନ୍ଧରୁ ତାହାର ପୃଥକ୍ କରଣ କରିଅଛନ୍ତି । ଜଡ଼ପଦାର୍ଥ, ବେଦନା, ସଞ୍ଜ୍ଞା, ସଂସ୍କାର ଓ ବିଜ୍ଞାନ, ଏହି ପ୍ରକାରେ ଆତ୍ମାକୁ ପାଞ୍ଚ ଭାଗରେ ବିଭକ୍ତ କରାଯାଇ ପାରେ । ଏହି ବିଭାଗରୁ ସ୍ପଷ୍ଟ ଜଣାଯିବ ଯେ ଆତ୍ମା ଶାଶ୍ୱତ କିମ୍ବା ଅଶାଶ୍ୱତ ନୁହେ, କାରଣ, ଏହି ପଞ୍ଚସ୍କନ୍ଧ ସତତ ପରିବର୍ତ୍ତନଶୀଳ— ଅର୍ଥାତ୍, ଅନିତ୍ୟ ଓ ଦୁଃଖ କାରକ । ଏହି କାରଣରୁ ସେଗୁଡ଼ିକ ମୋର କିମ୍ବା ସେ ମୋର ଆତ୍ମା" ବୋଲି କହିବା ଉଚିତ ହେବ ନାହିଁ । ଏହା ହେଉଛି ବୁଦ୍ଧଙ୍କର ଅନାତ୍ମବାଦ । ଏହା ଶାଶ୍ୱତବାଦ ବା ଅଶାଶ୍ୱତ ବାଦର ସୀମା ପର୍ଯ୍ୟନ୍ତ ସ୍ପର୍ଶ କରୁ ନାହିଁ ।

କାତ୍ୟାୟନ ଗୋତ୍ରୀ ଭିକ୍ଷୁଙ୍କୁ ଭଗବାନ୍ ବୁଦ୍ଧ କହୁଅଛନ୍ତି, "ହେ କାତ୍ୟାୟନ ! ଜନ ସାଧାରଣ ପ୍ରାୟ ଅସ୍ତିତା ବା ନାସ୍ତିତାର ଶେଷ ସୀମା ପର୍ଯ୍ୟନ୍ତ ଚାଲି ଯାଇଛନ୍ତି । କିନ୍ତୁ ତଥାଗତ ଏ ଦୁଇଟି ସୀମା ପରିତ୍ୟାଗ କରି ମଧ୍ୟମ ମାର୍ଗର ଧର୍ମୋପଦେଶ ଦେଉଛନ୍ତି ।"

## 'ବାଦ' ଅନାବଶ୍ୟକ

ଏତେ ପ୍ରାଞ୍ଜଳଭାବରେ ବୁଝାଇବାପରେ କେହି ହୁଏ ତ ଧରି ବସି ପଚାରି ପାରେ " ଶରୀର ଏବଂ ଆତ୍ମା ଏକ ନା ଭିନ୍ନ ? ଏକଥା କହନ୍ତୁ ।" ଭଗବାନ୍ ବୁଦ୍ଧ କହିଛନ୍ତି—"ମୁଁ ଏହି ଉହାପୋହରେ ପଡ଼ିବ ନାହିଁ କାରଣ, ଏହା ଦ୍ୱାରା ମାନବ ଜାତିର କଲ୍ୟାଣ ସାଧିତ ହେବ ନାହିଁ । "ଚୂଳ ମାଲୁଂକ୍ୟ ପୁତ୍ର ସୂତ୍ର"ର ଶେଷଭାଗରେ ଏଥିର କେତେକ ଉଦାହରଣ ମିଳେ । ଏହି ସୂତ୍ରର ସାରକଥା ତଳେ ଦିଆ ଯାଉଛି ।

ଭଗବାନ୍ ବୁଦ୍ଧ ଶ୍ରାବସ୍ତୀରେ, ଅନାଥ ପିଣ୍ଡିକର ଆଶ୍ରମରେ ଅବସ୍ଥାନ କରୁଥିବା ବେଳେ ମାଲୁଂକ୍ୟ ପୁତ୍ର ନାମକ ଜଣେ ଭିକ୍ଷୁ ତାଙ୍କ ନିକଟକୁ ଗଲେ ଓ ତାଙ୍କୁ ନମସ୍କାର କରି ଏକ ପାର୍ଶ୍ୱରେ ବସିଗଲେ । ସେ ଭଗବାନଙ୍କୁ କହିଲେ, "ଭଦନ୍ତ ! ଏକାନ୍ତରେ ବସି ମୁଁ ଏକଥା ବିଚାର କରୁଥିଲି 'ଏହି ଜଗତ ଶାଶ୍ୱତ କି ଅଶାଶ୍ୱତ', ଏହା ଆପଣଙ୍କ ଦ୍ୱାରା ସ୍ପଷ୍ଟୀକୃତ ହୋଇନାହିଁ । ପୁଣି ଶରୀର ଏବଂ ଆତ୍ମା ଏକ କି ଭିନ୍ନ । ତଥାଗତ ମୃତ୍ୟୁ ପରେ ଜନ୍ମ ଗ୍ରହଣ କରିବେ କି ନାହିଁ ଇତ୍ୟାଦିର ମଧ୍ୟ ସ୍ପଷ୍ଟୀକରଣ ହୋଇ ନାହିଁ । ଭଗବାନ (ଆପଣ)ଙ୍କୁ ହିଁ ମୁଁ ଏହିପ୍ରଶ୍ନ ପଚାରିବି ଏବଂ ଭଗବାନ ଯଦି ଏ ପ୍ରଶ୍ନର ସମାଧାନ କରି ଦିଅନ୍ତି ତାହାହେଲେ ମୁଁ ଶିଷ୍ୟ ଶାଖାଭୁକ୍ତ

ହେବ । କିନ୍ତୁ ଭଗବାନ ଯଦି ଏହାର ସ୍ପଷ୍ଟୀକରଣ କରି ନ ପାରିବେ ତାହା ହେଲେ ସେ କଥା ମଧ୍ୟ ସ୍ପଷ୍ଟକରି କହିଦେବା ଉଚିତ ।

ଭଦନ୍ତ—ହେ ମାଲୁଂକ୍ୟପୁତ୍ର ! ମୁଁ ତୁମକୁ କେବେ କହିଥିଲି କି ଯେ,ଯଦି ତୁମେ ମୋର ଶିଷ୍ୟ ହେବ ତାହାହେଲେ ମୁଁ ଏହି ପ୍ରଶ୍ନର ସ୍ପଷ୍ଟ ଉତ୍ତର ଦେବି ।

ମାଲୁଂକ୍ୟପୁତ୍ର—ଆଦୌ ନୁହେଁ, ଭଦନ୍ତ !

ଭଦନ୍ତ—ଆଚ୍ଛା, ତୁମେ କଣ ମତେ କେବେ କହିଥିଲ କି ଯେ ଯଦି ଭଗବାନ ଏହି ପ୍ରଶ୍ନ ଗୁଡ଼ିକର ସ୍ପଷ୍ଟ ଉତ୍ତର ଦେବେ ତାହା ହେଲେ ଯାଇ ମୁଁ ଭଗବାନଙ୍କର ଭିକ୍ଷୁ ସଂଘରେ ଯୋଗ ଦେବି ?

ମାଲୁଂକ୍ୟପୁତ୍ର—କଦାପି ନୁହେ ଭଦନ୍ତ ।

ଭଦନ୍ତ—ତାହା ହେଲେ ଏହି ପ୍ରଶ୍ନ ଗୁଡ଼ିକର ସ୍ପଷ୍ଟୀକରଣ ବ୍ୟତିରେକେ ମୁଁ ଭଗବାନଙ୍କର ଶିଷ୍ୟ ହେବି ନାହିଁ ବୋଲି କହିବାର କି ଅର୍ଥ ଅଛି ? ହେ ମାଲୁଂକ୍ୟପୁତ୍ର ! ଯଦି କୌଣସି ମନୁଷ୍ୟର ଦେହରେ ବିଷାକ୍ତ ଶଲ୍ୟ ପ୍ରବେଶ କରେ ଏବଂ ତାହାର ପୀଡ଼ାରେ ସେ ଛଟପଟ ହୁଏ, ତେବେ ତାହାର ବନ୍ଧୁ ଶଲ୍ୟ ଚିକିତ୍ସକଙ୍କୁ ଡାକି ଆଣେ । କିନ୍ତୁ ଯଦି ସେହି ରୋଗୀ ବୈଦ୍ୟଙ୍କୁ କହିବ, 'ଯେତେବେଳ ପର୍ଯ୍ୟନ୍ତ ମୋର ଏହି ପ୍ରଶ୍ନ ଗୁଡ଼ିକର ଉତ୍ତର ନ ମିଳିଛି ମୁଁ ସେହି ଶଲ୍ୟକୁ ଛୁଆଁଇ ଦେବି ନାହିଁ,' ତାହାହେଲେ ହେ ମାଲୁଂକ୍ୟପୁତ୍ର ! ସେହି ପରିସ୍ଥିତିରେ ସେ ସବୁ କଥା ଜାଣିବା ପୂର୍ବରୁ ହିଁ ଲୋକଟି ମରିଯିବ । ତାହାର ପ୍ରଶ୍ନଗୁଡ଼ିକ ହେଉଛି—"ଶର କିଏ ମାରିଲା ? ମାରିବା ଲୋକ ବ୍ରାହ୍ମଣ ନା କ୍ଷତ୍ରିୟ, ବୈଶ୍ୟ ନା ଶୂଦ୍ର, କଳା ନା ଗୋରା, କିପରି ଧନୁ ଧରିଥିଲା, ଧନୁର ଗୁଣ କେଉଁଥିରେ ତିଆରି ହୋଇଥିଲା" ଇତ୍ୟାଦି ।

ସେହିପରି ଜଗତ୍ ଶାଶ୍ୱତ ନା ଅଶାଶ୍ୱତ, ଏହିକଥା ଜାଣିବା ପୂର୍ବରୁ ବ୍ରହ୍ମଚର୍ଯ୍ୟ ପାଳନ କରିବି ନାହିଁ ବୋଲି ଯଦି କେହି ଜିଦ୍ ଧରେ, ତେବେ ସେ ସବୁକଥା ଜାଣିବା ପୂର୍ବରୁ ହିଁ ସେ ମରିଯିବ ।

"ହେ ମାଲୁଂକ୍ୟପୁତ୍ର ! ଜଗତ୍ ଶାଶ୍ୱତ କି ଅଶାଶ୍ୱତ, ଏହି ଦୃଷ୍ଟି ବା ବିଶ୍ୱାସ ଜାତ ହୋଇଗଲେ ମଧ୍ୟ ଯେ ତଦ୍ୱାରା ଧାର୍ମିକ ଆଚରଣରେ ସହାୟତା ମିଳିବ ସେ କଥା ନୁହେ । ଜଗତ ଶାଶ୍ୱତ ବୋଲି ବିଶ୍ୱାସ ଜନ୍ମିଲେ ମଧ୍ୟ ଜରା ମରଣ, ଶୋକ ପରିଦେବ ପ୍ରଭୃତିରୁ ମୁକ୍ତି ନାହିଁ । ସେହି ପ୍ରକାରର ଜଗତ ଶାଶ୍ୱତ ନୁହେ । ଶରୀର ଏବଂ ଆତ୍ମା ଏକ ଅଥବା ଭିନ୍ନ, ମୃତ୍ୟୁପରେ ତଥାଗତଙ୍କର ପୁନର୍ଜନ୍ମ ଅଛି କି ନାହିଁ, ଇତ୍ୟାଦି ବିଷୟରେ ଆମେ ବିଶ୍ୱାସ ରଖି ବା ନ ରଖି ଜନ୍ମ, ଜରା, ମରଣ ଓ ପରିଦେବ ତ ନିଶ୍ଚୟ ରହିବ । ଏହି ହେତୁରୁ, ହେ ମାଲୁଂକ୍ୟପୁତ୍ର ! ମୁଁ ଏସବୁ କଥାର ଚର୍ଚ୍ଚା ମଧ୍ୟ କରିନାହିଁ । ଏହି ବାଦ ବିବାଦ ଦ୍ୱାରା ବ୍ରହ୍ମଚର୍ଯ୍ୟର କୌଣସି ସ୍ଥିରତା ଆସିବ ନାହିଁ । ଏହି ବାଦ ଦ୍ୱାରା ବୈରାଗ୍ୟ ଜନ୍ମିବ ନାହିଁ, ପାପର ନିରୋଧ ହେବନାହିଁ ଏବଂ ଶାନ୍ତି, ପ୍ରଜ୍ଞା, ସମ୍ବୋଧ ଏବଂ ନିର୍ବାଣ ମିଳିବ ନାହିଁ ।

"କିନ୍ତୁ, ହେ ମାଲୁଂକ୍ୟପୁତ୍ର ! ମୁଁ ସ୍ପଷ୍ଟରୂପେ ଦେଖାଇ ଦେଇଛି ଯେ ଏହା ହେଉଛି ଦୁଃଖ, ଏହା ହେଉଛି ଦୁଃଖ ସମୁଦାୟ, ଏହା ହେଉଛି ଦୁଃଖର ନିରୋଧ ଏବଂ ଏହା ହେଉଛି ଦୁଃଖ ନିରୋଧର ମାର୍ଗ । ଏହି ଚାରୋଟି ଆର୍ଯ୍ୟ ସତ୍ୟ ବ୍ରହ୍ମଚର୍ଯ୍ୟର ସ୍ଥିରତା ସଂପାଦନ କରନ୍ତି । ଏଗୁଡ଼ିକ ଦ୍ୱାରା ବୈରାଗ୍ୟ ଜାତ ହୁଏ, ପାପର ନିରୋଧ ହୁଏ, ଶାନ୍ତି, ପ୍ରଜ୍ଞା, ସମ୍ବୋଧ ଏବଂ ନିର୍ବାଣ ମିଳେ । ହେ ମାଲୁଂକ୍ୟପୁତ୍ର ! ମୁଁ ଯେଉଁ କଥା ଗୁଡ଼ିକର ଚର୍ଚ୍ଚା କରିନାହିଁ,

ତୁମେ ସେ ଗୁଡ଼ିକର ଚର୍ଚ୍ଚା କରନାହିଁ । ଯେଉଁକଥା ଗୁଡ଼ିକୁ ମୁଁ ସ୍ପଷ୍ଟ କରିଦେଇଛି ସେହି କଥାଗୁଡ଼ିକ ସ୍ପଷ୍ଟୀକରଣ ଯୋଗ୍ୟ ବୋଲି ବୁଝ ।”

ଏ ସବୁର ଅର୍ଥ ହେଉଛି, ଆତ୍ମା ଯଦ୍ୟପି ପଞ୍ଚସ୍କନ୍ଧ ଦ୍ୱାରା ଗଠିତ, ତଥାପି ତାହାର ଆକାର ପ୍ରକାର କପରି, ସେ ସେହି ରୂପରେ ପରଲୋକ ଗମନକରେ କି ନାହିଁ, ପ୍ରଭୃତି ବିଷୟର ଚର୍ଚ୍ଚାକଲେ ହିଁ ଭ୍ରମରେ ପଡ଼ିବାକୁ ହୁଏ । ଜଗତରେ ଦୁଃଖ ପ୍ରତିଷ୍ଠିତଃ ରହିଛି । ମାନବ ଜାତିର ତୃଷ୍ଣା ଦ୍ୱାରା ଦୁଃଖ ଉତ୍ପାଦିତ ହେଉଥିବାରୁ ଅଷ୍ଟାଙ୍ଗିକ ମାର୍ଗ ଦ୍ୱାରା ତୃଷ୍ଣାର ନିରୋଧ କରି ସଂସାରରେ ସୁଖ ଶାନ୍ତି ସ୍ଥାପନ କରିବା ପ୍ରତ୍ୟେକ ବ୍ୟକ୍ତିର କର୍ତ୍ତବ୍ୟ । ଏହାହିଁ ସରଳମାର୍ଗ ଓ ଏହାହିଁ ବୁଦ୍ଧଙ୍କର ଦର୍ଶନ ।

## ଈଶ୍ୱର ବାଦ

କେତେ ଲୋକଙ୍କର ଧାରଣା ଯେ ଭଗବାନ୍ ବୁଦ୍ଧ ଈଶ୍ୱରଙ୍କୁ ମାନୁ ନଥିଲେ, ଅତଏବ ସେ ଥିଲେ ନାସ୍ତିକ ; କିନ୍ତୁ ବୌଦ୍ଧ ସାହିତ୍ୟ କଥା 'ପ୍ରାଚୀନ ଉପନିଷଦ୍‌ମାନଙ୍କୁ ଆଲୋଚନା କଲେ ଏ ଧାରଣାର ଅମୂଳକତା ସ୍ପଷ୍ଟ ଜଣାଯାଏ । ତଥାପି ଲୋକଙ୍କର ଭ୍ରମ ଧାରଣା ଦୂର କରିବାପାଇଁ ବୁଦ୍ଧଙ୍କ ସମୟରେ ପ୍ରଚଳିତ ଈଶ୍ୱର ବାଦର ଦିଗ୍‌ଦର୍ଶନ କରାଇବା ଉଚିତ ବୋଧ ହେଉଛି । ଅଙ୍ଗୁତ୍ତର ନିକାୟର ତିକ ନିପାତ ( ସୁତ୍ତ ସଂ-୬୧ ) ଏବଂ ମଜ୍‌ଝିମ ନିକାୟର ଦେବଦହରେ ( ସୁତ୍ତ ସଂ-୧୦୧ ) ଈଶ୍ୱର ଶବ୍ଦର ସ୍ପଷ୍ଟ ଉଲ୍ଲେଖ ଅଛି । ଏଥିରେ, ପ୍ରଥମ ସୁତ୍ତରେ ଈଶ୍ୱରଙ୍କ ସଂପର୍କରେ ଚଳିଲିଖିତ କଥା ଅଛି ।

ଭଗବାନ କହୁଛନ୍ତି—“ହେ ଭିକ୍ଷୁଗଣ ! ଯେଉଁମାନେ କହନ୍ତି ବା ମାନନ୍ତି ଯେ, ମନୁଷ୍ୟ (ପ୍ରାଣୀ) ଯାହା କିଛି ସୁଖ ଦୁଃଖ ବା

ଉତ୍ପନ୍ନ ଶ୍ରେଣୀର ଲୋକଙ୍କ ପାଇଁ କରନ୍ତି ସେ ସବୁ ଈଶ୍ୱରଙ୍କ ସୃଷ୍ଟି ( ଈଶ୍ୱରଙ୍କ ନିର୍ମାଣ ହେତୁ ) । ସେମାନଙ୍କୁ ମୁଁ ପଚାରୁଛି ଯେ, ଏ ବିଷୟରେ ସେମାନଙ୍କର ମତ କଣ ? ଯଦି ସେମାନେ 'ହଁ' ବୋଲି କହନ୍ତି ତେବେ ମୁଁ ସେମାନଙ୍କୁ ପଚାରୁଛି, "ତୁମେମାନେ କ'ଣ ଈଶ୍ୱରଙ୍କ ଦ୍ୱାରା ସୃଷ୍ଟ ହୋଇଥିବାରୁ ପ୍ରାଣଘାତୀ, ଚୋର, ଅବ୍ରହ୍ମଚାରୀ, ଅସତ୍ୟବାଦୀ, ବ୍ୟଙ୍ଗ ବଚନ ପକାଉଥିବା, ଗାଳି ଦେଉଥିବା, ପ୍ରଳାପୀ, ପରାର୍ଥ ଲୋଭୀ, ଦ୍ୱେଷୀ ଓ ମିଥ୍ୟା ଦୃଷ୍ଟିକ ହୋଇ ଯାଉଛ । ହେ ଭିକ୍ଷୁଗଣ ! ଯଦି ଈଶ୍ୱର ହିଁ ଏସବୁର ଉତ୍ପାଦକ ବୋଲି ସ୍ୱୀକାର କରାଯାଏ ତାହାହେଲେ ( ସତ୍‌କର୍ମପ୍ରତି ) ନିଷ୍ଠା ଓ ଉତ୍ସାହ ରହିବ ନାହିଁ । ପୁଣି ଆମର କର୍ତ୍ତବ୍ୟ କଣ ଓ କର୍ତ୍ତବ୍ୟ କଣ ନୁହେଁ ତାହା ମଧ୍ୟ ବୁଝି ହେବ ନାହିଁ ।"

ଏହି ଈଶ୍ୱର ସୃଷ୍ଟି କଥା 'ଦେବଦହନ ସୁତ୍ତ'ରେ ମଧ୍ୟ ଉଲ୍ଲିଖିତ ହୋଇଛି । ତଥାପି ଏସବୁ ଅଂଶ ପ୍ରକ୍ଷିପ୍ତ ବୋଲି ପ୍ରବଳ ଆଶଙ୍କା ହେଉଛି । କାରଣ ଅନ୍ୟ କୌଣସି ସୁତ୍ତରେ ଏହିପରି କଥା ଦେଖିବାକୁ ମିଳେ ନାହିଁ । ବୁଦ୍ଧଙ୍କ ସମୟରେ ବ୍ରହ୍ମା ଥିଲେ ସବୁଠାରୁ ବଡ଼ ଦେବତା । କିନ୍ତୁ ସେଥିଲେ ଅନ୍ୟ ପ୍ରକାରର କର୍ତ୍ତା— ବାଇବଲର ଦେବତାଙ୍କ ପରି ନୁହେଁ । ଜଗତର ସୃଷ୍ଟି ପୂର୍ବରୁ ସେ ନିଜେ ନ ଥିଲେ । ବିଶ୍ୱର ସୃଷ୍ଟି ହେବା ପରେ ସେ ପ୍ରଥମେ ଅବତୀର୍ଣ୍ଣ ହେଲେ ଓ ପରେ ଅନ୍ୟ ପ୍ରାଣୀମାନେ ଉତ୍ପନ୍ନ ହେଲେ । ଏଥିରୁ ତାଙ୍କୁ ଭୂତ ଭବିଷ୍ୟର କର୍ତ୍ତା ବୋଲି କୁହାଗଲା । ବ୍ରହ୍ମଜାଲ ସୁତ୍ତରେ ପ୍ରଦତ୍ତ ଏହାଙ୍କ ବର୍ଣ୍ଣନାର ସାରକଥା ତଳେ ଦିଆଯାଇଛି ।

"ବହୁକାଳ ପରେ, ଏହି ସଂସାରର ସମ୍ବର୍ତ୍ତ (ବିନାଶ) ହୁଏ ଓ ଏଥିର ଅଧିକାଂଶ ପ୍ରାଣୀ ଜ୍ୟୋତିର୍ମୟ ଦେବଲୋକକୁ ଯାନ୍ତି । ତାହାର

ବହୁକାଳ ପରେ ସଂସାରର ବିବର୍ତ୍ତ (ବିକାଶ) ହୁଏ । ସେତେବେଳେ ପ୍ରଥମତଃ ଶୂନ୍ୟ ବ୍ରହ୍ମବିମାନ ଉତ୍ପନ୍ନ ହୁଏ । ତା'ପରେ ଜ୍ୟୋତିର୍ମୟ ଦେବଲୋକରୁ ଚ୍ୟୁତ ହୋଇ ଏକ ପ୍ରାଣୀ ସେହି ବିମାନରେ ଜନ୍ମଲାଭ କରେ । ସେ ମନୋମୟ, ପ୍ରୀତିଭକ୍ଷ୍ୟ, ସ୍ୱୟଂ ପ୍ରଭ, ଅନ୍ତରୀକ୍ଷଚର, ଶୁଭସ୍ଥାୟୀ ଓ ଦୀର୍ଘଜୀବୀ ହୁଏ । ଏହାପରେ ଅନ୍ୟ ଅନେକ ପ୍ରାଣୀ ଜ୍ୟୋତିର୍ମୟ ଦେବଲୋକରୁ ବିଚ୍ୟୁତ ହୋଇ ସେହି ବିମାନରେ ଜନ୍ମ ହୁଅନ୍ତି । ସେମାନଙ୍କୁ ଏପରି ଜଣାଯାଏ ଯେ, ଏ ହେଉଛନ୍ତି ଭଗବାନ୍ ବ୍ରହ୍ମା, ମହାବ୍ରହ୍ମା ; ସେ ଅଭିଭୂ, ସର୍ବଦର୍ଶୀ, ବଶବର୍ତ୍ତୀ, ଈଶ୍ୱର, କର୍ତ୍ତା, ନିର୍ମାତା, ଶ୍ରେଷ୍ଠ, ସର୍ଜିତା, ବଶୀ ଓ ଭୂତ ଭବିଷ୍ୟତର ପିତା ।

ବ୍ରହ୍ମା ଦେବାନାଂ ପ୍ରଥମଃ ସଂବଭୂବ ବିଶ୍ୱସ୍ୟକର୍ତ୍ତା ଭୁବନସ୍ୟ ଗୋପ୍ତା (୧)

ଏହି ବାକ୍ୟରେ ବ୍ରହ୍ମଦେବଙ୍କ ବିଷୟରେ ଉପରୋକ୍ତ କଳ୍ପନା ସଂକ୍ଷେପରେ ପ୍ରକାଶ ପାଇଛି । ବ୍ରହ୍ମଦେବଙ୍କୁ ଜଗତର କର୍ତ୍ତା ରୂପେ ପ୍ରତିପାଦନ କରିବାରେ ବ୍ରାହ୍ମଣମାନଙ୍କ ଚେଷ୍ଟା ଏଥିରେ ସ୍ପଷ୍ଟ ପ୍ରକଟିତ । କିନ୍ତୁ ସେ ସମୟରେ ଶ୍ରମଣ ସଂସ୍କୃତି ସମକ୍ଷରେ ସେମାନେ ସାଫଲ୍ୟ ଲାଭ କରି ନଥିଲେ । ସ୍ୱୟଂ ବ୍ରାହ୍ମଣମାନଙ୍କୁ ହିଁ ଏହି ଚେଷ୍ଟା ତ୍ୟାଗ କରି "ବ୍ରହ୍ମ" ପରି ନପୁଂସକ ଲିଙ୍ଗର ଶବ୍ଦକୁ ଗ୍ରହଣ କରିବାକୁ ପଡ଼ିଥିଲା । ପ୍ରାୟ ସମସ୍ତ ଉପନିଷଦ୍‌ରେ ଏହି ବ୍ରହ୍ମ ଶବ୍ଦ ଉପରେ ହିଁ ଗୁରୁତ୍ୱ ସ୍ଥାପିତ ହୋଇଛି । 'ବ୍ରହ୍ମ'ରୁ ବା ଆତ୍ମାରୁ କିପରି ସଂସାରର ଉତ୍ପତ୍ତି ହେଲା, ତହିଁର ଏକ କଳ୍ପନା ବୃହଦାରଣ୍ୟକ ଉପନିଷଦରେ ଦେଖାଯାଏ । ତାହା ହେଉଛି:—

(୧) ମୁଣ୍ଡକୋପନିଷଦ୍ ୧ । ୧

ଆତ୍ମୈବେଦମଗ୍ର ଆସୀତ୍ ପୁରୁଷ ବଧଃ........ସବୈ ନୈବରେମେ

ତସ୍ମାଦେକାକୀ ନ ରମତେ । ସ ଦ୍ୱିତୀୟ ମୈଚ୍ଛତ୍ । ସ ହୈତାବାନାସ ଯଥା ସ୍ତ୍ରୀ ପୁମାଂସୌ ସଂପରିଷ୍ୱକ୍ତୌ । ସ ଇମମେବାତ୍ମାନଂ ଦ୍ୱେଧା ପାତୟତ୍ତତଃ ପତିଶ୍ଚ ପତ୍ନୀ ଚ ଗୃଭବତାଂ ତସ୍ମାଦିଦମର୍ଦ୍ଧବୃଗଲ ମିବ ସ୍ୱ ଇତି ।

ଅର୍ଥାତ୍, ସର୍ବ ପ୍ରଥମେ କେବଳ ପୁରୁଷରୂପୀ ଆତ୍ମା ହିଁ ଥିଲେ.....ତାଙ୍କର ମନ ଲଗିଲା ନାହିଁ । ତେଣୁ (ମନୁଷ୍ୟ) ଏକୁଟିଆ ରମଣ କରେ ନାହିଁ । ସେ ଅନ୍ୟକୁ ଇଚ୍ଛା କଲେ । ଯେପରି ସ୍ତ୍ରୀ ପୁରୁଷ ଆଲିଙ୍ଗନ କରନ୍ତି ସେ ସେପରି ହୋଇ ରହିଲେ । ସେ ନିଜକୁ ଦୁଇ ଭାଗରେ ବିଭକ୍ତ କଲେ । ତହିଁରୁ ପତି ଓ ପତ୍ନୀ ସୃଷ୍ଟି ହେଲା । ତେଣୁ ଏହି ଶରୀର (ଦ୍ୱିଦଳ ଧାନ୍ୟର) ଦଳ ତୁଲ୍ୟ ହେଲା । ବର୍ତ୍ତମାନ ବାଇବଲ୍‌ର ଦ୍ୱିତୀୟ ଅଧ୍ୟାୟରେ ପ୍ରଦତ୍ତ ସୃଷ୍ଟି କଥା ଦେଖାଯାଉ ।

"ପୁଣି ପରମେଶ୍ୱର ଦେବ ଭୂମିର ମାଟିରେ ମନୁଷ୍ୟକୁ ତିଆର କଲେ । ତାହା ପରେ ଦେବ ଆଦମ୍ (ସେହି ମନୁଷ୍ୟ ଉପରେ) ଗାଢ଼ ନିଦ୍ରା ପ୍ରୟୋଗ କଲେ । ତାହାର ଗୁଣ୍ଡିରୁ ହାଡ଼ ବାହାର କରି ତହିଁରେ ସ୍ତ୍ରୀ ନିର୍ମାଣ କଲେ.....ତେଣୁ ପୁରୁଷ ନିଜ ପିତାମାତାଙ୍କୁ ଗୁଡ଼ି ନିଜ ସ୍ତ୍ରୀ ସହିତ ଜଡ଼ିତ ରହିବ । ସେ ଦୁହେଁ ଏକ ଶରୀର ହୋଇଯିବେ ।"

ଏ ଦୁଇକଥା ମଧ୍ୟରେ କି ପ୍ରଭେଦ ! ଏଠାରେ ଦେବତା ସମଗ୍ର ପୃଥିବୀକୁ ନିର୍ମାଣ କରି ପରେ ମନୁଷ୍ୟକୁ ଓ ତାପରେ ସ୍ତ୍ରୀକୁ ସୃଷ୍ଟି କରୁଛି ; ଦେବ ଜଗତଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଅଥଚ ସେଠାରେ

ପୁରୁଷରୂପୀ ଆତ୍ମା ସ୍ୱୟଂ ଦ୍ୱିଧା ବିଭକ୍ତ ହୋଇ ସ୍ତ୍ରୀ ଏବଂ ପୁରୁଷ ହୋଇଛି ।

## ପ୍ରଜାପତିଙ୍କ ଉତ୍ପତ୍ତି

ବୃହଦାରଣ୍ୟକ ଉପନିଷଦରେ ପ୍ରଜାପତି ଅର୍ଥାତ୍ ଜଗତ୍‌କର୍ତ୍ତା ବ୍ରହ୍ମଙ୍କ ଉତ୍ପତ୍ତି ଏହିପରି ଭାବରେ ବର୍ଣ୍ଣିତ ହୋଇଛି :—

ଆପ ଏବେଦମଗ୍ର ଆସୁସ୍ତାଃ ଆପଃ ସତ୍ୟମସୃଜନ୍ତ,
ସତ୍ୟଂ ବ୍ରହ୍ମ, ବ୍ରହ୍ମ ପ୍ରଜାପତିଂ, ପ୍ରଜାପତି-
ର୍ଦେବାଂସ୍ତେ ଦେବାଃ ସତ୍ୟ ମେବୋ ପାସତେ"

ଅର୍ଥାତ୍ ସର୍ବ ପ୍ରଥମେ କେବଳ ଜଳଥିଲା । ସେହି ଜଳ ସତ୍ୟକୁ, ସତ୍ୟ ବ୍ରହ୍ମଙ୍କୁ, ବ୍ରହ୍ମ ପ୍ରଜାପତିଙ୍କୁ, ପ୍ରଜାପତି ଦେବତାମାନଙ୍କୁ ଉତ୍ପନ୍ନ କଲେ; ସେହି ସମସ୍ତ ଦେବତା ସତ୍ୟକୁ ହିଁ ଉପାସନା କରନ୍ତି ।

ବାଇବେଲ୍‌ରେ ମଧ୍ୟ, ୭ମ ଅଧ୍ୟାୟରେ ଜଳପ୍ରଳୟ ପରେ ସୃଷ୍ଟିର ଉତ୍ପତ୍ତି ହୋଇଥିବା ବର୍ଣ୍ଣିତ ଅଛି । କିନ୍ତୁ ସେଠାରେ, ଭଗବାନ୍ ପ୍ରଥମେ ନୋହା (ହଜରତ ନୂହ) ନିଜ ପରିବାର ଏବଂ ପଶୁପକ୍ଷୀଙ୍କର ଯୁଗଳ (ସ୍ତ୍ରୀ-ପୁରୁଷ) ଜାହାଜରେ ପୂର୍ଣ୍ଣକରି ରଖିବାର ବ୍ୟବସ୍ଥା କରି ଜଳ-ପ୍ରଳୟ କଲେ । ଜଳ ପ୍ରଳୟ ପୂର୍ବେ କଣ ଥିଲା ତାହା ଉପନିଷଦରେ କୁହାଯାଇନାହିଁ । କେବଳ ଏତିକି ନୁହେଁ ସତ୍ୟକୁ ବ୍ରହ୍ମଦେବ ଏବଂ ବ୍ରହ୍ମତତ୍ତ୍ୱଠାରୁ ମଧ୍ୟ ଉଚ୍ଚ ଆସନରେ ପ୍ରତିଷ୍ଠା କରାଯାଇଛି । ବ୍ରହ୍ମଜାଲ ସୂତ୍ରରେ ବ୍ରହ୍ମୋତ୍ପତ୍ତି କଥା ଯେପରି ବର୍ଣ୍ଣିତ ତହିଁରେ ଏଥିର ସାମ୍ୟ ଦେଖାଯାଏ ।

'ଈଶ୍ୱର ଜଗତଠାରୁ ଭିନ୍ନ ଓ ସେ ହେଉଛନ୍ତି ସୃଷ୍ଟିକର୍ତ୍ତା'— ଯଥାସମ୍ଭବ ଶକମାନେ ଏହି ଧାରଣା ଭାରତବର୍ଷକୁ ଆଣିଥିଲେ । କାରଣ, ତତ୍ ପୂର୍ବବର୍ତ୍ତୀ ସାହିତ୍ୟରେ ଏହା ଦେଖିବାକୁ ମିଳୁନାହିଁ । ଅତଏବ, 'ବୁଦ୍ଧଦେବ ଈଶ୍ୱରଙ୍କୁ ମାନୁନଥିଲେ ଏବଂ ସେ ନାସ୍ତିକ ଥିଲେ' ଏହା କହି ତାଙ୍କ ଉପରେ ଦୋଷାରୋପ କରିବା ଠିକ୍ ହେବନାହିଁ । ସେ ବେଦନିନ୍ଦୁକ ଓ ନାସ୍ତିକ ବୋଲି ବ୍ରାହ୍ମଣମାନେ ତାଙ୍କ ଉପରେ ଦୋଷାରୋପ କରନ୍ତି କିନ୍ତୁ ବୁଦ୍ଧ କୌଣସିଠାରେ ବେଦର ନିନ୍ଦା କରିଥିବା ଦେଖାଯାଏ ନାହିଁ । ବ୍ରାହ୍ମଣମାନଙ୍କର ସମ୍ମାନିତ 'ସାଂଖ୍ୟକାରିକା' ଭଳି ଗ୍ରନ୍ଥରେ କ'ଣ ବେଦର କମ ନିନ୍ଦା କରାଯାଇଛି ?

ଦୃଷ୍ଟବଦାନୁ ଶ୍ରମିକଃ
ସ ହ୍ୟବିଶୁଦ୍ଧିକ୍ଷୟାତିଶୟ ଯୁକ୍ତଃ

ଅର୍ଥାତ୍ ଦୃଷ୍ଟ ଉପାୟ ସଦୃଶ ବୈଦିକ ଉପାୟ ମଧ୍ୟ (ନିରୁପଯୋଗୀ) । କାରଣ, ତାହା ଅବିଶୁଦ୍ଧି, ନାଶ ଏବଂ ଅତିଶଯ୍ୟତା ଯୁକ୍ତ ଅଟେ । ପୁଣି "ତ୍ରୈଗୁଣ୍ୟ ବିଷୟା ବେଦାଃ" ପ୍ରଭୃତି ବେଦ ନିନ୍ଦା କ'ଣ ଭଗବଦ୍ ଗୀତାରେ ମିଳୁନାହିଁ ? କିନ୍ତୁ ବ୍ରାହ୍ମଣମାନଙ୍କର ଜାତିଭେଦ ଉପରେ 'ସାଂଖ୍ୟ' ପ୍ରହାର କରି ନଥିଲି । ଭଗବଦ୍ ଗୀତା ତ ପ୍ରକାଶ୍ୟରେ ଜାତି ଭେଦର ସମର୍ଥନ କରିଛି । ତେଣୁ ସେମାନଙ୍କ କୃତ ବେଦ ନିନ୍ଦା ସହ୍ୟ ହୋଇଗଲି । ଅନ୍ୟପକ୍ଷରେ ବୁଦ୍ଧ ବେଦନିନ୍ଦା କରି ନଥିଲେ । କିନ୍ତୁ ସେ ଜାତି ଭେଦ ଉପରେ କଠୋର ଆଘାତ ଦେଇଥିଲେ । ସେଥିପାଇଁ ବେଦନିନ୍ଦୁକ ବୋଲି ତାଙ୍କୁ କୁହାଗଲି । ବେଦହିଁ ଜାତିଭେଦ ଓ ଜାତି ଭେଦହିଁ ବେଦ । ଏ ଦୁଇଟିର ଏହିପରି ସମ୍ବନ୍ଧ ଅଛି ।

ଜାତିଭେଦ ନରହିଲେ ବେଦରହିବ କପରି ? ପୁଣି ଜାତିଭେଦ ଥାଇ ବେଦର ଗୋଟିଏ ଅକ୍ଷର ମଧ୍ୟ କେହି ନବୁଝୁ ପଛେ, ତଥାପି ବେଦ ପ୍ରାମାଣ୍ୟବୁଦ୍ଧି ସ୍ଥିର ରହିବା ହେତୁ ବେଦର ଗୌରବ ଅକ୍ଷୁଣ୍ଣ ରହିଲା ବୋଲି ବୁଝିବାକୁ ହେବ ।

ଉପରୋକ୍ତ କଥାରୁ ଏହା ସ୍ପଷ୍ଟ ଜଣାଯିବ ଯେ, ବୁଦ୍ଧଦେବଙ୍କର ସମସାମୟିକ ଶ୍ରମଣ ବ୍ରାହ୍ମଣମାନଙ୍କ ମଧ୍ୟରେ ଈଶ୍ୱର ବାଦର କୌଣସି ଗୁରୁତ୍ୱ ନଥିଲା । ସେମାନଙ୍କ ମଧ୍ୟରୁ କେତେକ ଲୋକ ଈଶ୍ୱରଙ୍କ ସ୍ଥାନରେ 'କର୍ମ'କୁ ମାନୁଥିଲେ । ବେଳେ ବେଳେ, 'ବୁଦ୍ଧଦେବ କର୍ମବାଦୀ ନୁହନ୍ତି, ଅତଏବ ସେ ନାସ୍ତିକ', ଏହିପରି ଦୋଷାରୋପ ତାଙ୍କ ଉପରେ କରୁଥିଲେ । ପରବର୍ତ୍ତୀ ଅଧ୍ୟାୟରେ ଏହି ମତର ଖଣ୍ଡନ କରାଯାଇଛି ।



# ଅଷ୍ଟମ ଅଧ୍ୟାୟ

# କର୍ମଯୋଗ

## ବୁଦ୍ଧ ନାସ୍ତିକ ନା ଆସ୍ତିକ ?

ଥରେ ଭଗବାନ୍ ବୁଦ୍ଧ ବୈଶାଳୀ ନିକଟବର୍ତ୍ତୀ ମହାବନରେ ଅବସ୍ଥାନ କରୁଥିଲେ । ସେତିକିବେଳେ କେତେଜଣ ପ୍ରସିଦ୍ଧ ଲିଚ୍ଛବୀ-ରାଜା ନିଜ ସନ୍ଥାଗାରରେ ଏକତ୍ରିତ ହୋଇଥିଲେ । ବୁଦ୍ଧଦେବଙ୍କ ବିଷୟରେ ସେଠାରେ ଆଲୋଚନା ହେଲା । ପ୍ରାୟ ସମସ୍ତେ 'ବୁଦ୍ଧ' 'ଧର୍ମ' ଓ 'ସଙ୍ଘ'ର ପ୍ରଶଂସା ଗାନକଲେ । ତାହା ଶୁଣି, ସେନାପତି 'ସିଂହ'ଙ୍କର, ବୁଦ୍ଧଦେବଙ୍କୁ ଦର୍ଶନ କରିବାକୁ ଇଚ୍ଛା ହେଲା ; ସେ ନିର୍ଗ୍ରନ୍ଥ-ମାନଙ୍କର ଉପାସକ ଥିଲେ । ତେଣୁ, ନିଜର ପ୍ରଧାନ ଗୁରୁ 'ନାଥପୁତ୍ର'ଙ୍କୁ ସାକ୍ଷାତ କରି କହିଲେ, "ଭଦନ୍ତ, ମୁଁ ଶ୍ରମଣ ଗୌତମଙ୍କୁ ଦେଖା କରିବାକୁ ଚାହୁଁଛି ।"

ନାଥପୁତ୍ର କହିଲେ—"ହେ ସିଂହ, ତୁମେ ତ କ୍ରିୟା ବାଦୀ, ତୁମେ ପୁଣି ଅକ୍ରିୟ ବାଦୀ ଗୌତମଙ୍କୁ ଦେଖା କରିବାକୁ ଚାହୁଁଛ କାହିଁକ ?"

ଗୁରୁଙ୍କଠାରୁ ଏହି କଥା ଶୁଣି ସେନାପତି ସିଂହ, ବୁଦ୍ଧଙ୍କୁ ଦେଖା କରିବାର ଇଚ୍ଛା ପରିତ୍ୟାଗ କଲେ । ପୁଣି, ଥରେ ଦୁଇଥର,

ସେହି ଲିଚ୍ଛବି ମାନଙ୍କର ସସ୍ଥାଗାରରେ 'ବୁଦ୍ଧ' 'ଧର୍ମ' ଓ 'ସଂଘ'ର ପ୍ରଶଂସା ଶୁଣିଲେ । ତେବେ ସୁଦ୍ଧା ନାଥପୁତ୍ରଙ୍କର କଥା ଅନୁସାରେ ବୁଦ୍ଧଙ୍କୁ ଦର୍ଶନ କରିବାକୁ ଇଚ୍ଛା କଲେନାହିଁ । ପରିଶେଷରେ ନାଥପୁତ୍ରଙ୍କୁ ନପଚ୍ଚରି ବୁଦ୍ଧଙ୍କୁ ଦେଖା କରିବାକୁ ସେ ସ୍ଥିରକଲେ । ତା'ପରେ ସେ ନିଜର ଦଳବଳ ସହିତ ମହାବନକୁ ଗଲେ; ଭଗବାନଙ୍କୁ ନମସ୍କାର କରି ଏକ ପାର୍ଶ୍ୱରେ ବସିଲେ । ସେ ତାଙ୍କୁ ସମ୍ବୋଧନ କରି କହିଲେ, "ଭଦନ୍ତ, ଏକଥା କଣ ସତ ଯେ, ଆପଣ ହେଉଛନ୍ତି ଅକ୍ରିୟାବାଦୀ ଏବଂ ଶ୍ରାବକମାନଙ୍କୁ ଅକ୍ରିୟାବାଦ ଶିକ୍ଷା ଦେଉଛନ୍ତି ?"

ଭଗବାନ ଉତ୍ତର ଦେଲେ, "ହଁ ଏପରି ଏକ ପର୍ଯ୍ୟାୟ ଅଛି, ଯହିଁରେ ସତ୍ୟବାଦୀ ଲୋକ କହିପାରିବ ଯେ, ଶ୍ରମଣ ଗୌତମ ହେଉଛନ୍ତି ଅକ୍ରିୟାବାଦୀ । ସେ କିଭଳି ପର୍ଯ୍ୟାୟ ? ହେ ସିଂହ, ମୁଁ କାୟ ଦୁଶ୍ଚରିତ, ବାଗ୍‌ଦୁଶ୍ଚରିତ ଓ ମନୋଦୁଶ୍ଚରିତ, ଏହି ଅକ୍ରିୟା ଗୁଡ଼ିକର ଉପଦେଶ ଦେଉଛି ।

"ହେ ସିଂହ, ଏପରି ମଧ୍ୟ ଏକ ପର୍ଯ୍ୟାୟ ଅଛି, ଯହିଁରେ ସତ୍ୟବାଦୀ ଲୋକ କହି ପାରିବ ଯେ, ଶ୍ରମଣ ଗୌତମ ହେଉଛନ୍ତି କ୍ରିୟାବାଦୀ । ସେ କିଭଳି ପର୍ଯ୍ୟାୟ ? ମୁଁ କାୟସୁଚରିତ ବାକ୍-ସୁଚରିତ ଓ ମନଃ-ସୁଚରିତ, ଏହି କ୍ରିୟାର ଉପଦେଶ ଦେଉଛି ।

"ଅନ୍ୟଏକ ପର୍ଯ୍ୟାୟ ମଧ୍ୟ ଅଛି, ଯହିଁରେ ସତ୍ୟବାଦୀ ଲୋ[କ] ମତେ ଉଚ୍ଛେଦ ବାଦୀ କହିପାରିବ । ସେ କିଭଳି ପର୍ଯ୍ୟାୟ ? ହେ ସିଂହ, ମୁଁ ଲୋଭ, ଦ୍ୱେଷ, ମୋହ, ପ୍ରଭୃତି ସବୁ ପାପକାରକ ମନୋବୃତ୍ତି ମାନଙ୍କର ଉଚ୍ଛେଦ ନିମନ୍ତେ ଉପଦେଶ ଦେଉଛି ।

"ଏପରି ମଧ୍ୟ ଆତ୍ମର ଏକ ପର୍ଯ୍ୟାମ୍ଣ ଅଛି, ଯହିଁରେ ସତ୍ୟବାଦୀ ଲୋକ ମତେ ଜୁଗୁପ୍‌ସୀ ବୋଲି କହି ପାରିବ । ସେ ପର୍ଯ୍ୟାୟ କିଭଳି ? ମୁଁ କାୟଦୁଶ୍ଚରିତ, ବାଗ୍ ଦୁଶ୍ଚରିତ ଓ ମନୋଦୁଶ୍ଚରିତ, ଏଗୁଡ଼ିକୁ ଜୁଗୁପ୍‌ସା (ଘୃଣା) କରିବାର ଉପଦେଶ ଦେଉଛି । ପାପକାରକ କର୍ମପ୍ରତି ମୁଁ ବଡ଼ ବିରକ୍ତ ହୁଏ ।

"ଏଭଳି ଆତ୍ମର ଏକ ପର୍ଯ୍ୟାୟ ଅଛି, ଯହିଁରେ ସତ୍ୟବାଦୀ ଲୋକ ମତେ ବିନାଶକ କହିପାରେ । ସେ ପର୍ଯ୍ୟାୟ କିପରି ? ମୁଁ ଲୋଭ, ଦ୍ୱେଷ ଓ ମୋହ ବିନାଶର ଉପଦେଶ ଦେଉଛି ।

"ପୁଣି, ହେ ସିଂହ, ଏପରି ମଧ୍ୟ ଏକ ପର୍ଯ୍ୟାୟ ଅଛି, ଯହିଁରେ ସତ୍ୟବାଦୀ ଲୋକ ମତେ ତପସ୍ୱୀ ବୋଲି କହିପାରିବ । ସେ ପର୍ଯ୍ୟାୟ କିଭଳି ? ହେ ସିଂହ, ମୁଁ କହେ ଯେ, ପାପକାରକ ଅକୁଶଳ ଧର୍ମ ଗୁଡ଼ିକୁ ଝାଣଖିଆରେ ଜଳାଇ ଦିଆଯାଉ । ଫଳରେ, ସେ ସବୁ ତରଳି ନଷ୍ଟ ହୋଇଗଲେ ପୁଣି ଥରେ ଜାତ ହେବନାହିଁ । ତେଣୁ ସେ ମତେ ତପସ୍ୱୀକହି ପାରିବ ।"

## ନାସ୍ତିକତାର ଆରୋପ

ଏହି ସୂତ୍ରରେ ବୁଦ୍ଧଙ୍କ ଉପରେ ମୁଖ୍ୟତଃ ଅକ୍ରିୟାବାଦର ଆରୋପ କରାଯାଇଛି । ସ୍ୱୟଂ ମହାବୀର ସ୍ୱାମୀ ଏହା କରିଥାନ୍ତୁ ବା ନ ଥାଆନ୍ତୁ, ସେ ସମୟରେ ବୁଦ୍ଧଦେବଙ୍କ ଉପରେ ଏପରି ଦୋଷାରୋପ ଯେ ହେଉଥିଲା, ତହିଁରେ ସନ୍ଦେହର ଅବକାଶନାହିଁ ।

ଗୌତମ କ୍ଷତ୍ରିୟବଂଶରେ ଜନ୍ମ ଗ୍ରହଣ କରିଥିଲେ । କୋଳୀୟମାନେ ଥିଲେ ଶାକ୍ୟମାନଙ୍କର ପଡ଼ୋଶୀ ଏବଂ ସେମାନଙ୍କର ବିଶ୍ୱସ୍ତ ବନ୍ଧୁ । ଏଥି ପୂର୍ବେ କୁହାଯାଇଛି ଯେ, ରୋହିଣୀ ନଦୀର

ଜଳବ୍ୟବହାର ଯୋଗ ଏ ଦୁଇ ଜାତିର ସର୍ବଦା ବାଦବିବାଦ ଚାଲିଥିଲା । ଯଦି କୌଣସି ବଂଶ ଅନ୍ୟ ବଂଶର କୌଣସି ବ୍ୟକ୍ତିର କ୍ଷତି ବା କିଛି ନଷ୍ଟ କରିଛି, ତେବେ (ପ୍ରଥମ ବଂଶର) ସେହି କ୍ଷତି-କାରୀ ବ୍ୟକ୍ତିର ପ୍ରତିଶୋଧ ନଆସିବା ପ୍ରଥା ଏପର୍ଯ୍ୟନ୍ତ ସୀମାନ୍ତ ପଠାଣମାନଙ୍କ ମଧ୍ୟରେ ପ୍ରଚଳିତ ଅଛି । ଏପରି ପ୍ରଥା ପ୍ରାଚୀନ କାଳରେ କ୍ଷତ୍ରିୟମାନଙ୍କ ମଧ୍ୟରେ ପ୍ରଚଳିତ ଥିବା ବିଶେଷ ଆଶ୍ଚର୍ଯ୍ୟ କରନୁହେଁ । ପ୍ରକୃତ ଆଶ୍ଚର୍ଯ୍ୟର କଥା ହେଉଛି ଏହି ଯେ, ସେହି କ୍ଷତ୍ରିୟମାନଙ୍କ ବଂଶଜଥିଲେ ମଧ୍ୟ ଗୌତମ ନିଜକୁ ପଡ଼ୋଶୀ ବନ୍ଧୁମାନଙ୍କ ପ୍ରତିଶୋଧ ନେବାରୁ ସ୍ପଷ୍ଟ ମନାକରି ଦେଇଥିଲେ ଏବଂ ପୂରାପୂରି ତପସ୍ୱୀ ହୋଇ ଯାଇଥିଲେ ।

ସେହି ସମୟରେ, ଯେଉଁ ବ୍ରାହ୍ମଣ ବା କ୍ଷତ୍ରିୟମାନଙ୍କର ଗୃହସ୍ଥାଶ୍ରମରୁ ମନ ଛୁଟିଯାଉଥିଲା, ସେମାନେ ଗୃହତ୍ୟାଗ କରି ପରିବ୍ରାଜକ ହୋଇ ଯାଉଥିଲେ ଓ ଘୋର ତପସ୍ୟା କରୁଥିଲେ । ଅତଏବ ଗୌତମ ତପସ୍ୱୀ ହେବାରେ କାହାରିକୁ ବିଶେଷ ଆଶ୍ଚର୍ଯ୍ୟ ବୋଧ ହୋଇ ନଥିବ । ଅତିବେଶି ହେଲେ, ଲୋକେ ଏତିକି କହିଥିବେ, ଏହି ଗୃହସ୍ଥ ଯୁବକ ନିଜ ଆଶ୍ରମ ପାଇଁ ଅନୁପଯୁକ୍ତ କିନ୍ତୁ ଯେତେବେଳେ ୭ବର୍ଷ ପର୍ଯ୍ୟନ୍ତ ତପସ୍ୟାକରି ଗୌତମ 'ବୋଧିସତ୍ତ୍ୱ'ରୁ ବୁଦ୍ଧ ହୋଇଗଲେ ଏବଂ ଗୃହସ୍ଥାଶ୍ରମର ସୁଖଭୋଗ ତଥା ସନ୍ୟାସାଶ୍ରମକୁ ଏକାପରି ନିଷେଧ କଲେ, ସେତେବେଳେ ତାଙ୍କ ଉପରେ ନାନା ସମାଲୋଚନା ହେବାକୁ ଲାଗିଲା ।

ପ୍ରଚଳିତ ସମାଜ-ସଂସ୍ଥା ଅପରିବର୍ତ୍ତିତ ରହୁ ବୋଲି ବ୍ରାହ୍ମଣମାନେ ଚାହୁଁ ଥିଲେ । ବ୍ରାହ୍ମଣମାନେ ଯାଗଯଜ୍ଞ କରନ୍ତୁ, କ୍ଷତ୍ରିୟମାନେ ଯୁଦ୍ଧ, ବୈଶ୍ୟମାନେ ବ୍ୟବସାୟ ଓ ଶୂଦ୍ରମାନେ

ସେବା କରନ୍ତୁ—ଏହାହିଁ ଥିଲା ସେମାନଙ୍କର କର୍ମଯୋଗ । ଯାହାଙ୍କୁ ଏହି କର୍ମଯୋଗ ଭଲ ଲାଗୁନଥିଲା, ସେ ଅରଣ୍ୟକୁ ଯାଇ ତପଶ୍ଚର୍ଯ୍ୟା ଦ୍ୱାରା ଆତ୍ମ ବୋଧ ଲାଭକରନ୍ତୁ କିମ୍ବା ମରନ୍ତୁ, ଏହା ସେମାନେ ଚାହୁଁ ଥିଲେ । ସେପରି ଲୋକଙ୍କୁ ସମାଜର ବ୍ୟବସ୍ଥା ବଦଳାଇବା ଭଳି କିଛି କାର୍ଯ୍ୟ କରିବା ଅନୁଚିତ ବୋଧ ହେଉଥିଲା ।

ବିଭିନ୍ନ ଶ୍ରମଣ ସଂଘରେ ଭିନ୍ନ ଭିନ୍ନ ଦର୍ଶନ ତତ୍ତ୍ୱ ପ୍ରତିପାଦିତ ହେଉଥିଲା, ତଥାପି ତପଶ୍ଚର୍ଯ୍ୟା ସମ୍ପର୍କରେ ଅଧିକାଂଶ ଶ୍ରମଣ ଏକମତ ହେଉଥିଲେ । ସେମାନଙ୍କ ମଧ୍ୟରୁ, ନିର୍ଗ୍ରନ୍ଥମାନେ 'କର୍ମ' ଉପରେ ବିଶେଷ ଗୁରୁତ୍ୱ ସ୍ଥାପନ କରୁଥିଲେ । ସେମାନଙ୍କର ନେତା ବା ଗୁରୁ କହୁଥିଲେ ଯେ, ଏହି ଜନ୍ମ ଦୁଃଖ କାରକ । ପୁଣି ଏହା ପୂର୍ବ ଜନ୍ମ ପାପର ଫଳ ସ୍ୱରୂପ ହୋଇ ଥିବାରୁ ସେହି ପାପକୁ ବିନଷ୍ଟ କରିବାପାଇଁ କଠୋର ତପଶ୍ଚର୍ଯ୍ୟା କରିବା ଉଚିତ । କିନ୍ତୁ ଭଗବାନ୍ ବୁଦ୍ଧ ତପଶ୍ଚରଣର ନିଷେଧ କରୁଥିଲେ । ଏହି ହେତୁ ନିର୍ଗ୍ରନ୍ଥମାନେ ତାଙ୍କୁ ଅକ୍ରିୟବାଦୀ ( ଅକର୍ମ ବାଦୀ ) କହିବା ସ୍ୱାଭାବିକ । ବୁଦ୍ଧଦେବ ଶସ୍ତ୍ର ତ୍ୟାଗ କରିଥିଲେ, ତେଣୁ ବ୍ରାହ୍ମଣଙ୍କ ଦୃଷ୍ଟିରେ ଅକ୍ରିୟ ବାଦୀ ହୋଇ ପଡ଼ିଲେ । ଆହୁରି ମଧ୍ୟ, ତପସ୍ୟା ତ୍ୟାଗ କରିଥିବାରୁ ତପସ୍ୱୀମାନଙ୍କ ଦୃଷ୍ଟିରେ ମଧ୍ୟ ଅକ୍ରିୟବାଦୀ ହୋଇ ପଡ଼ିଲେ ।

## କ୍ରାନ୍ତିକାରୀ ଦର୍ଶନ

ଏଠାରେ ମନେ ରଖିବା ଉଚିତ ଯେ, ଗୌତମ କେବଳ ଆତ୍ମ ବୋଧ ଦ୍ୱାରା ମୁକ୍ତିଲାଭ କରିବାକୁ ଗୃହତ୍ୟାଗ କରି ନଥିଲେ । ନିଜର ପ୍ରତିବେଶୀଙ୍କ ବିରୁଦ୍ଧରେ ଅସ୍ତ୍ରଚାଳନା କରିବା ମଧ୍ୟ ତାଙ୍କୁ ବଡ଼ ଅବୈଧ ବୋଧ ହୋଇଥିଲା । ସେ ସବୁବେଳେ

ଚିନ୍ତା କରୁଥିଲେ ଯେ, ବିନା ଶସ୍ତ୍ରରେ, ପରସ୍ପରର ମିତ୍ରତାର ଭିତ୍ତିଉପରେ କ'ଣ ସମାଜ ଗଠିତ ହୋଇ ପାରିବ ନାହିଁ ? 'ତପସ୍ୟା ଦ୍ୱାରା ଓ ତପସ୍ୱୀ-ସୁଲଭ ତତ୍ତ୍ୱଜ୍ଞାନ ଦ୍ୱାରା ମାନବ ଜାତି ପାଇଁ ଏକ ସରଳ ମାର୍ଗ ମିଳିଯିବ'—ପ୍ରଥମେ ସେ ଏପରିଭାବି ଗୃହତ୍ୟାଗ ପୂର୍ବକ ତପସ୍ୟା ଆରମ୍ଭ କରିଥିଲେ କିନ୍ତୁ ତାହାପରେ ସେ ଅନୁଭବ କଲେ ଯେ, ତପସ୍ୟାଦ୍ୱାରା କୌଣସି ସୁଫଳ ମିଳିବ ନାହିଁ । ତେଣୁ ସେ ସେହି ପନ୍ଥା ତ୍ୟାଗକରି ଏକ ନୂତନ ମଧ୍ୟମ ମାର୍ଗ ଆବିଷ୍କାର କଲେ ।

ଏହିପରି କ୍ରାନ୍ତିକାରୀ ଲୋକମାନଙ୍କୁ ଆଜି କାଲିର ରାଜନୀତିଜ୍ଞ ଓ ଧର୍ମପରାୟଣ ଲୋକେ ଧ୍ୱଂସକାରୀ (Nihilist) ବୋଲି କହନ୍ତି ଓ ସେମାନଙ୍କର ଅଜ୍ଞାନତା ଜନସମାଜ ଆଗରେ ଉପସ୍ଥାପନ କରୁଛନ୍ତି । ଆହୁରି ମଧ୍ୟ, ଆଲୋଚନାରୁ ବୁଝି ହେଉଛି ଯେ, ବୁଦ୍ଧଦେବଙ୍କୁ ତାଙ୍କର ସମସାମୟିକ ଆଲୋଚକମାନେ ଅକ୍ରିୟାବାଦୀ ବୋଲି କହୁଥିଲେ ଏବଂ ତାଙ୍କର ନୂତନଦର୍ଶନ ତତ୍ତ୍ୱର ନିରର୍ଥକତା ଲୋକଙ୍କ ଆଗରେ ଉପସ୍ଥାପନ କରୁଥିଲେ ।

## ଦୁଶ୍ଚରିତ ଓ ସୁଚରିତ

ଏଠାରେ ଉଲ୍ଲିଖିତ ଦୁଶ୍ଚରିତ ଓ ସୁଚରିତର ବିଷୟ ସଂକ୍ଷେପରେ କରାଯିବା ଉଚିତ ବୋଧହୁଏ । ସାଲେୟ୍ୟକ ବ୍ରାହ୍ମଣ-ମାନଙ୍କୁ ଭଗବାନ କହୁ ଅଛନ୍ତି—"ହେ ଗୃହସ୍ଥ ! କାୟଦ୍ୱାରା ଘଟୁଥିବା ତିନିପ୍ରକାର ଅଧର୍ମାଚରଣ କ'ଣ ? କୌଣସି ବ୍ୟକ୍ତିଯଦି କାହାର ପ୍ରାଣନାଶ କରେ, ରୁଦ୍ର, ଦାରୁଣ, ରକ୍ତାକ୍ତ ହେବା ଘଟଣାରେ ପ୍ରବୃତ୍ତିରେ ଲିପ୍ତ ରହେ ଅଥବା ଅନ୍ୟର ପଦାର୍ଥ ଚୋରି କରେ, ଗ୍ରାମରେ ଥାଉ ବା ଅରଣ୍ୟରେ ଥାଉ, ମାଲିକଙ୍କୁ ନ ପଚାରି

ତାହାର ପଦାର୍ଥ ନେଇଯାଏ; ଅଥବା ବ୍ୟଭିଚାର କରେ କିମ୍ବା ପିତା ମାତା, ଭଗିନୀ, ପତି କିମ୍ବା ଆତ୍ମୀୟମାନଙ୍କ ଦ୍ୱାରା ରକ୍ଷିତ ସ୍ତ୍ରୀ ସହିତ ବ୍ୟଭିଚାର କରେ—ତେବେ ସେ ଏହିପରି ତିନିବିଧ କାୟିକ ଅଧର୍ମାଚରଣ କରେ ।

ପୁଣି ହେ ଗୃହସ୍ଥମାନେ ! ବଚନ ଦ୍ୱାରା କିପରି ଚାରି ପ୍ରକାର ଅଧର୍ମାଚରଣ ହୁଏ ? ଯଦି କୌଣସି ବ୍ୟକ୍ତି ମିଥ୍ୟା କହେ, ସଭା, ପରିଷଦ୍, ଆତ୍ମଗୋଷ୍ଠୀ ବା ରାଜ ଦରବାରରେ ସାକ୍ଷୀକୁ ଯେତେବେଳେ କୁହାଯାଏ 'ତୁମେ ଯାହା ଜାଣ କହ'—ସେ ଯାହା ଜାଣେ ନାହିଁ, ସେ ବିଷୟରେ କହେ ମୁଁ ଜାଣିଛି—ସେ ଯାହା ଦେଖି ନାହିଁ, ସେ ବିଷୟରେ କହେ ମୁଁ ଦେଖିଛି—ଏହିପରି ନିଜ ପାଇଁ, ଅନ୍ୟ ପାଇଁ ସାମାନ୍ୟ ପ୍ରାପ୍ତି ଆଶାରେ ଜାଣି ଶୁଣି ମିଛ କହେ—ଅଥବା ପରୋକ୍ଷରେ ନିନ୍ଦାକରେ, ବିରୋଧ ଭାବ ଜାତ କରାଇବା ପାଇଁ ଜଣକର କଥା ଅନ୍ୟମାନଙ୍କୁ କହେ—ଏକାଠି ହୋଇଥିବା ଲୋକମାନଙ୍କ ମଧ୍ୟରେ ଭେଦ ସୃଷ୍ଟି କରେ କିମ୍ବା କଳହପ୍ରିୟ ଲୋକମାନଙ୍କ ଦ୍ୱାରା କଳହ ସୃଷ୍ଟି କରେ ଓ କଳହ ବଢ଼ିବାରେ ଆନନ୍ଦିତ ହୁଏ, ଅଥବା ଗାଳି ଦିଏ—ଦୁଷ୍ଟତାପୂର୍ଣ୍ଣ, କର୍କଶ, କଟୁ, ହୃଦୟରେ ଆଘାତଦାୟକ, କ୍ରୋଧଯୁକ୍ତ ଏବଂ ସନ୍ତୋଷ ବିନାଶକ କଥା କହେ କିମ୍ବା ପ୍ରଳାପ କରେ, ଅସମୟରେ କହେ, ଘଟି ନଥିବା କଥା ମନରୁ ଗଢ଼ି କରି କହେ ; ଅଧାର୍ମିକ, ଶିଷ୍ଟାଚାର ବିରୁଦ୍ଧ, ଧ୍ୟାନ ଦେବାର ଅଯୋଗ୍ୟ, ଅପ୍ରାସଙ୍ଗିକ ଓ ବୃଥା, ଏଣୁ ତେଣୁ କଥା ବଢ଼ାଇ କରି କହେ ବା ଅନର୍ଥକାରୀ କଥାବାର୍ତ୍ତା କରେ—ସେ ଏହିପରି ଚାରିପ୍ରକାର ବାଚିକ ଅଧର୍ମାଚରଣ କରେ ।

ପୁଣି ହେ ଗୃହସ୍ଥଗଣ ? ତିନି ପ୍ରକାର ମାନସିକ ଅଧର୍ମାଚରଣ କିପରି ? ଯଦି କୌଣସି ମନୁଷ୍ୟ ଅନ୍ୟର ଧନ ଆଶା କରେ,

ଅନ୍ୟର ସମ୍ପତ୍ତି ତାକୁ ମିଳୁ ବୋଲି ଇଚ୍ଛାକରେ କିମ୍ବା ଦ୍ୱେଷ ପୂର୍ଣ୍ଣ ବୁଦ୍ଧି ରଖେ—ଯଦି ସେ ଭାବେ, ଏହି ପ୍ରାଣୀମାନଙ୍କର ପ୍ରାଣ ଚାଲିଯାଉ, ଏମାନେ ନଷ୍ଟ ହୋଇଯାନ୍ତୁ କିମ୍ବା ମିଥ୍ୟା ଦୃଷ୍ଟି ରଖେ—ଅଥବା ଦାନ ଧର୍ମ କିଛି ନୁହେ ; ସୁକୃତ, ଦୁଷ୍କୃତ କର୍ମର ଫଳ କିଛି ନୁହେ, ଇହଲୋକ ବା ପରଲୋକ କିଛି ନୁହେ, ଏହିପରି ନାସ୍ତିକଭାବ ପୋଷଣ କରେ, ତାହାହେଲେ ଏହିପରି ଭାବରେ ସେ ନାନା ପ୍ରକାର ମାନସିକ ଅଧର୍ମାଚରଣ କରେ ।

ହେ ସଜ୍ଜନଗଣ ! ତିନିପ୍ରକାର ଶାରୀରିକ ଧର୍ମାଚରଣ କିଭଳି ? କୌଣସି ମନୁଷ୍ୟ ଯଦି ଅନ୍ୟର ପ୍ରାଣନାଶ କରେ ନାହିଁ, ଅନ୍ୟ ବିରୁଦ୍ଧରେ ଶସ୍ତ୍ର ଉତ୍ତୋଳନ କରେ ନାହିଁ, ହତ୍ୟା କରିବାକୁ ଲଜ୍ଜିତ ହୁଏ, ସମସ୍ତ ପ୍ରାଣୀ ପ୍ରତି ଦୟାପୂର୍ଣ୍ଣ ଆଚରଣ କରେ—ସେ ଯଦି ଚୋରି କରେ ନାହିଁ, ଗ୍ରାମରେ ଅଥବା ଅରଣ୍ୟରେ ଅନ୍ୟ ଲୋକର ବସ୍ତୁ ତାକୁ ନ ଦିଆଯିବାପର୍ଯ୍ୟନ୍ତ ସେ ସ୍ପର୍ଶ କରେ ନାହିଁ—କିମ୍ବା ସେ ଯଦି ବ୍ୟଭିଚାର କରେ ନାହିଁ, ପିତାମାତା, ଭାଇ ଭଉଣୀ, ପତି କିମ୍ବା ମହାପୁରୁଷ ପ୍ରଭୃତିଙ୍କ ରକ୍ଷିତା ସ୍ତ୍ରୀମାନଙ୍କ ସହିତକୁ ସମ୍ପର୍କ ରଖେ ନାହିଁ, ତେବେ ସେ ଏହିପରି ତ୍ରିବିଧ କାୟିକ, ଧର୍ମାଚରଣ କରେ ।

ହେ ସଜ୍ଜନଗଣ ! ବଚନ ଦ୍ୱାରା ହେଉଥିବା ଚତୁର୍ବିଧ ଧର୍ମାଚରଣ କିଭଳି ? ଯଦି କୌଣସି ଲୋକ ମିଛ କହିବା ପରିପୂର୍ଣ୍ଣ ଛାଡ଼ିଦିଏ, ସଭା, ପରିଷଦ୍ ଓ ରାଜଦରବାରରେ ତାଠାରୁ ସାକ୍ଷ୍ୟ ନିଆଯିବା ବେଳେ ଯେଉଁ ବିଷୟ ସେ ଜାଣେ ନାହିଁ, ସେ ବିଷୟରେ ସେ 'ମୁଁ ଜାଣେ ନାହିଁ' ବୋଲି କହେ, ଯେଉଁ ବିଷୟରେ ସେ ଦେଖିନାହିଁ ସେ ବିଷୟରେ 'ମୁଁ ଦେଖି ନାହିଁ' ବୋଲି କହେ—

ନିଜ ପାଇଁ, ଅନ୍ୟପାଇଁ ବା ଅଳ୍ପ-ବହୁତ ଲାଭ ଆଶାରେ ମିଛ କହେ ନାହିଁ, ପରୋକ୍ଷ ନିନ୍ଦା କରେ ନାହିଁ, ବିରୋଧ ଭାବ ସୃଷ୍ଟି କରିବା ପାଇଁ ଯାହା କଥା ତାକୁ ଓ ତା କଥା ଯାହାକୁ କହେ ନାହିଁ, ବରଂ ଯେଉଁମାନଙ୍କ ମଧ୍ୟରେ ଏକତା ଅଛି ସେମାନଙ୍କୁ ପ୍ରୋତ୍ସାହିତ କରେ ଓ ଏକତାରୁ ଆନନ୍ଦଲାଭ କରେ ତଥା ଏପରି କଥାବାର୍ତ୍ତା କରେ ଯାହା ବଳରେ ଏକତା ବୃଦ୍ଧିଭୂତ ହୁଏ—ଯେଉଁ ଲୋକ ଗାଳି ଦିଏ ନାହିଁ ସରଳ, ଶ୍ରୁତି ମଧୁର, ସହୃଦୟତାପୂର୍ଣ୍ଣ ନାଗରିକଙ୍କର ଗୌରବ-ବିଧାୟକ ଓ ବହୁ ଜନପ୍ରିୟ କଥା କହେ—ବୃଥା ପ୍ରଳାପ କରେ ନାହିଁ, ପ୍ରାସଙ୍ଗିକ, ତଥ୍ୟପୂର୍ଣ୍ଣ, ଅର୍ଥଯୁକ୍ତ ଧାର୍ମିକ ଶିଷ୍ଟାଚାରର ଅନୁରୂପ ବିଚାରଯୋଗ୍ୟ ସମୟୋଚିତ କାରଣଯୁକ୍ତ ପ୍ରମାଣ ସମ୍ବଳିତ ଓ ସାର୍ଥକ ଭାଷଣ ଦିଏ—ତାହାର ଏହିପରି ଭାବରେ ଚାରିପ୍ରକାର ବାଚିକ ଧର୍ମାଚରଣ ହୁଏ ।

ହେ ସଜ୍ଜନଗଣ ! ତିନି ପ୍ରକାର ମାନସିକ ଧର୍ମାଚରଣ କିଭଳି ? ଯଦି କୌଣସି ଲୋକ ପରଦ୍ରବ୍ୟପ୍ରତି ଲୋଭ ରଖେ ନାହିଁ, ପରର ସମ୍ପତ୍ତି ନିଜର କରିବାର ଭାବନା ମନରେ ଆଣେ ନାହିଁ, ଚିତ୍ତକୁ ଦ୍ୱେଷରୁ ମୁକ୍ତ ରଖେ, ପ୍ରାଣୀମାନେ ବୈର ଭାବଶୂନ୍ୟ, ବାଧା ବିହୀନ, ଦୁଃଖଶୂନ୍ୟ ଓ ସୁଖୀ ହୁଅନ୍ତୁ ବୋଲି ଶୁଦ୍ଧ ସଂକଳ୍ପ ପୋଷଣ କରେ, ସମ୍ୟକ୍ ଦୃଷ୍ଟି ରଖେ, ଦାନ ଧର୍ମ, ସୁକୃତ ଦୁଷ୍କୃତ କର୍ମଫଳ, ଇହଲୋକ ପରଲୋକ ପ୍ରଭୃତିରେ ବିଶ୍ୱାସ ରଖେ, ତେବେ ସେ ଏହିପରି ତ୍ରିବିଧ ମାନସିକ ଧର୍ମାଚରଣ କରେ । (୧)

ସଂକ୍ଷେପରେ କୁହା ଯାଇପାରିବ ଯେ, ପ୍ରାଣ-ଘାତ, ଅଦତ୍ତାଦାନ (ଚୋରି), କାମ ମିଥ୍ୟାଚାର (ବ୍ୟଭିଚାର), ଏହି

(୧) ଦେଖନ୍ତୁ 'ମଜ୍ଝିମନିକାୟ' ( ପୃ. ୪୧ ) ସାଲେୟ୍ୟକ ସୁତ୍ତ ।

ତିନୋଟି ହେଉଛି କାୟିକ ପାପ କର୍ମ । ଅସତ୍ୟ, ଚୁଗୁଲି, ଗାଳି ମୂଳକ, ବୃଥା ପ୍ରଳାପ, ଏ ହେଉଛି ଚତୁର୍ବିଧ ବାଚକ ପାପକର୍ମ । ପୁଣି, ପରଦ୍ରବ୍ୟରେ ଲୋଭ, ଅନ୍ୟର ବିନାଶ ଇଚ୍ଛା ଏବଂ ନାସ୍ତିକ ଦୃଷ୍ଟି, ଏହି ତିନୋଟି ମାନସିକ ପାପକର୍ମ । ଏହି ଦଶଟିକୁ 'ଅକୁଶଳ କର୍ମ ପଥ' କୁହାଯାଏ । ଏଥିରୁ ନିବୃତ୍ତ ହେବାହିଁ କୁଶଳ କର୍ମ ପଥ । ଉପର କଥିତ ଦଶଟି ଅକୁଶଳ କର୍ମପଥ ଓ ଦଶୋଟି କୁଶଳ କର୍ମପଥର ବର୍ଣ୍ଣନା ତ୍ରିପିଟକ ସାହିତ୍ୟର ଅନେକ ସ୍ଥଳରେ ଦେଖାଯାଏ । ଉପରର ଉଦ୍ଧୃତିରେ ଅକୁଶଳ କର୍ମପଥଗୁଡ଼ିକୁ ଅଧର୍ମାଚରଣ ଏବଂ କୁଶଳ କର୍ମପଥଗୁଡ଼ିକୁ ଧର୍ମାଚରଣ ବୋଲି କୁହାଯାଇଛି ।

## କୁଶଳ କର୍ମ ଓ ଅଷ୍ଟାଙ୍ଗିକ ମାର୍ଗ

ଏଗୁଡ଼ିକ ମଧ୍ୟରୁ କୁଶଳ କର୍ମପଥ ଗୁଡ଼ିକ ଆର୍ଯ୍ୟଅଷ୍ଟାଙ୍ଗିକ ମାର୍ଗରେ ସମାବିଷ୍ଟ ହୋଇ ଯାଇଛି । ତିନପ୍ରକାର କୁଶଳ କାୟ କର୍ମ ହିଁ ସମ୍ୟକ୍ କର୍ମ; ଚାରି ପ୍ରକାର କୁଶଳ ବାଚକ କର୍ମ ହିଁ ସମ୍ୟକ୍ ବଚନ; ଏବଂ ତିନ ପ୍ରକାର କୁଶଳ ମାନସିକ କର୍ମହିଁ ସମ୍ୟକ୍ ଦୃଷ୍ଟି ଓ ସମ୍ୟକ୍ ସଙ୍କଳ୍ପ । ଆର୍ଯ୍ୟ ଅଷ୍ଟାଙ୍ଗିକ ମାର୍ଗର ଶେଷ ଚାରୋଟି ଅଙ୍ଗ ଏହି କୁଶଳ କର୍ମପଥ ଗୁଡ଼ିକର ପରିପୋଷକ । ସମ୍ୟକ୍ ଆଜୀବ, ସମ୍ୟକ୍ ବ୍ୟାୟାମ, ସମ୍ୟକ୍ ସ୍ମୃତି ଏବଂ ସମ୍ୟକ୍ ସମାଧି, ଏହି ଚାରୋଟି ଅଙ୍ଗରେ ଯଥୋଚିତ ଭାବନା ବ୍ୟତିରେକେ କୁଶଳ କର୍ମପଥଗୁଡ଼ିକର ଅଭିବୃଦ୍ଧି ଓ ପୂର୍ଣ୍ଣତା ଘଟି ନ ପାରେ ।

## ଅନାସକ୍ତ ଯୋଗ

ଯଦି ଆମେ କେବଳ କୁଶଳ କର୍ମ କରିବା ଓ ତାହା ପ୍ରତି ଆସକ୍ତ ରହିବା, ତେବେ ତହିଁରୁ 'ଅକୁଶଳ' ଉତ୍ପନ୍ନ ହେବାର ସମ୍ଭାବନା ରହିଛି ।

"କୁସଲୋ ଧମ୍ମୋ ଅକୁସଲସ୍ସ ଧମ୍ମସ୍ସ ଆରମ୍ମଣ ପଚ୍ଚୟେନ ପଚ୍ଚୟୋ । ଦାନଂଦତ୍ୱା, ଶୀଲଂ ସମାଦୟିତ୍ୱା ଉପୋସଥକମ୍ମଂ କତ୍ୱା ତଂ ଅସ୍ସାଦେତି ଅଭିନନ୍ଦତି । ତଂ ଆରବ୍ଭ ରାଗୋ ଉପ୍ପଜ୍ଜତି, ଦିଟ୍ଠି ଉପ୍ପଜ୍ଜତି, ବିଚିକିଚ୍ଛା ଉପ୍ପଜ୍ଜତି, ଉଦ୍ଧଚ୍ଚଂ ଉପ୍ପଜ୍ଜତି ଦୋମନସ୍ସଂ ଉପ୍ପଜ୍ଜତି । (୧)

ଅର୍ଥାତ୍, କୁଶଳମନୋବୃତ୍ତିର ଅକୁଶଳ ନିମିତ୍ତ ଆଲମ୍ବନ ପ୍ରତ୍ୟୟ ଦ୍ୱାରା ପ୍ରତ୍ୟକ୍ଷ ହୁଏ । (କୌଣସି ମନୁଷ୍ୟ ଯଦି) ଦାନ ଦିଏ, ଶୀଳତା ରକ୍ଷା କରେ ଉପୋସଥ କର୍ମ କରେ ଓ ତାହାର ଆସ୍ୱାଦ ଗ୍ରହଣ କରେ, ତାହାକୁ ଅଭିନନ୍ଦନ କରେ—ତହିଁରୁ ଲୋଭ ଉତ୍ପନ୍ନ ହୁଏ ; ଦୃଷ୍ଟି ଉତ୍ପନ୍ନ ହୁଏ, ଶଙ୍କା ଉତ୍ପନ୍ନ ହୁଏ, ଭ୍ରାନ୍ତି ଉତ୍ପନ୍ନ ହୁଏ, ଦୌର୍ମନସ୍ୟ ଉତ୍ପନ୍ନ ହୁଏ ।

ଏହି ପ୍ରକାରେ କୁଶଳ ମନୋବୃତ୍ତି ଅକୁଶଳର କାରଣ ହୋଇଯାଏ । ଏଥିପାଇଁ କୁଶଳ ବୃତ୍ତିର ଉପରେ ଆସକ୍ତି ରଖିବା ଅନୁଚିତ । ନିରପେକ୍ଷ ଭାବରେ କୁଶଳକର୍ମ କରିବା ଉଚିତ । 'ଧମ୍ମପଦ'ର ନିମ୍ନୋଦ୍ଧୃତ ଗାଥାରେ ଏହା ସଂକ୍ଷେପରେ ବୁଝାଇ ଦିଆ ଯାଇଛି ।

ସବ୍ବପାପସ୍ସ ଅକରଣଂ କୁସଲସ୍ସ ଉପସମ୍ପଦା
ସଚିତ୍ତ ପରିୟୋଦପନଂ ଏତଂ ବୁଦ୍ଧାନ ସାସନଂ

ଅର୍ଥାତ୍, ସମସ୍ତ ପାପର ଅ—କରଣ, ସମସ୍ତ କୁଶଳର ସଂପାଦନ ଓ ସ୍ୱଚିତ୍ତର ସଂଶୋଧନ ହେଉଛି ବୁଦ୍ଧଙ୍କର ଶାସନ ।

---

(୧) ତିକପଟ୍ଠାନ

ଉଲ୍ଲିଖିତ ସମସ୍ତ ଅକୁଶଳ କର୍ମପଥର ବର୍ଜନ ଆବଶ୍ୟକ ଏବଂ ସବୁବେଳେ କୁଶଳପଥ ଗୁଡ଼ିକର ଆଚରଣ କରିବା ସଙ୍ଗେ ସଙ୍ଗେ ତହିଁରେ ମନକୁ ଆସକ୍ତ ନ ରଖିବା ଉଚିତ । ଏ ସବୁ ଅଷ୍ଟାଙ୍ଗିକ ମାର୍ଗର ଅଭ୍ୟାସ ଦ୍ୱାରା ହୋଇଯାଏ ।

## କୁଶଳ କାର୍ଯ୍ୟରେ ଜାଗୃତ ଓ ଉତ୍ସାହ

ତ୍ରିପିଟକ ସାହିତ୍ୟରେ ଅନେକ ସ୍ଥଳରେ, କୁଶଳ କର୍ମଗୁଡ଼ିକୁ ବିଶେଷ ଭାବରେ ଜାଗ୍ରତ ଏବଂ ଉତ୍ସାହିତ କରି ରଖିବାର ଉପଦେଶ ଦିଆ ଯାଇଛି । ସେହି ସମସ୍ତ ବିଷୟ ଏଠାରେ ଉପସ୍ଥାପନ କରାଯାଉ ନାହିଁ । ତେବେ ଉଦାହରଣ ସ୍ୱରୂପ ସେ ମଧ୍ୟରୁ ଗୋଟିଏ ଶ୍ରେଷ୍ଠ ଉପଦେଶ ଏଠାରେ ଉଦ୍ଧାର କରାଯାଉଛି—

ଭଗବାନ୍ ବୁଦ୍ଧ କହୁଅଛନ୍ତି—"ହେ ଭିକ୍ଷୁଗଣ ! ସ୍ତ୍ରୀ, ପୁରୁଷ, ଗୃହସ୍ଥ ବା ପ୍ରବ୍ରଜିତମାନେ ଏହି ପାଞ୍ଚୋଟି ବିଷୟ ନିରନ୍ତର ଚିନ୍ତା କରିବା ଉଚିତ ।

(୧) ସେମାନେ ବାରମ୍ବାର ସ୍ମରଣ କରିବା ଉଚିତ ଯେ—ମୁଁ ହେଉଛି ଜରାଧର୍ମୀ । ତାରୁଣ୍ୟର ଉନ୍ମାଦନ ହେତୁରୁ ପ୍ରାଣୀ ଯେଉଁ କାୟିକ, ବାଚିକ ଓ ମାନସିକ ଦୁରାଚରଣ କରେ, ଏହି ଚିନ୍ତନ ଦ୍ୱାରା ସେହି ଉନ୍ମାଦନା ନଷ୍ଟ ହୋଇଯାଏ—ଅନ୍ତତଃ ପକ୍ଷେ ତାହା କମିଯାଏ ।

(୨) ସେମାନେ ବାରମ୍ବାର ଏହି ବିଚାର କରିବା ଉଚିତ ଯେ—ମୁଁ ହେଉଛି ବ୍ୟାଧିଧର୍ମୀ । ଯେଉଁ ଆରୋଗ୍ୟରୂପକ ଉନ୍ମାଦନା ଦ୍ୱାରା ପ୍ରାଣୀ କାୟିକ,ବାଚିକ, ମାନସିକ ଦୁରାଚରଣ କରେ ଏହିପରି

ଚିନ୍ତା କରିବା ଦ୍ୱାରା ସେହି ଉନ୍ମାଦନା ବିନଷ୍ଟ ହୋଇଯାଏ— ଅନ୍ତତଃ ପକ୍ଷେ କମିଯାଏ ।

(୩) ସେମାନେ ବାରମ୍ବାର ଏହିକଥା ସ୍ମରଣ କରିବା ଉଚିତ ଯେ—ମୁଁ ହେଉଛି ମରଣଧର୍ମୀ । ଯେଉଁ ଜୀବନ-ମଦଦ୍ୱାରା ପ୍ରାଣୀ କାୟିକ, ବାଚିକ ଓ ମାନସିକ ଦୁରାଚରଣ କରେ,ଏହି ଚିନ୍ତନ ଦ୍ୱାରା ସେହି ଉନ୍ମାଦନା ବିନଷ୍ଟ ହୋଇଯାଏ, ଅନ୍ତତଃ ପକ୍ଷେ କମିଯାଏ ।

(୪) ଏହି କଥା ବାରମ୍ବାର ସ୍ମରଣ କରିବା ଉଚିତ ଯେ— ମତେ, ପ୍ରିୟ ଏବଂ ହିତକର ( ପ୍ରାଣୀ ବା ପଦାର୍ଥର ) ପଦାର୍ଥର ବିଯୋଗ ସହିବାକୁ ପଡ଼ିବ । ଯେଉଁ ପ୍ରିୟ ଓ ସ୍ନେହ ହେତୁ ପ୍ରାଣୀ କାୟିକ, ବାଚିକ ଓ ମାନସିକ ଦୁରାଚରଣ କରେ, ଏହି ଚିନ୍ତନ ଦ୍ୱାରା ତାହା ବିନଷ୍ଟ ହୋଇ ଯାଏ—ଅନ୍ତତଃ ପକ୍ଷେ କମିଯାଏ ।

(୫) ସେମାନେ ବାରମ୍ବାର ଏକଥା ସ୍ମରଣ କରିବା ଉଚିତ ଯେ, ମୁଁ ହେଉଛି କର୍ମସ୍ୱକୀୟ, କର୍ମଦାୟାଦ, କର୍ମଯୋନି, କର୍ମବନ୍ଧୁ, କର୍ମପ୍ରତିଶରଣ । ପୁଣି, ଯେଉଁ କଲ୍ୟାଣକାରକ କିମ୍ବା ପାପକାରକ କର୍ମ ମୁଁ କରିବି, ମୁଁ ହେବି ତାହାର ଦାୟାଦ । ଏହା ଫଳରେ କାୟିକ, ବାଚିକ ଓ ମାନସିକ ଦୁରାଚରଣ ବିନଷ୍ଟ ହୁଏ, ଅନ୍ତତଃ ପକ୍ଷେ କମିଯାଏ । କେବଳ ମୁଁ ନୁହେଁ, ସମସ୍ତ ପ୍ରାଣୀ ଜରାଧର୍ମୀ, ବ୍ୟାଧିଧର୍ମୀ ଓ ମରଣଧର୍ମୀ । ସେ ସମସ୍ତଙ୍କୁ ପ୍ରିୟଜନଙ୍କ ବିଯୋଗ ସହିବାକୁ ପଡ଼ିବ । ସେ ସମସ୍ତେ ମଧ୍ୟ କର୍ମଦାୟାଦ । ଆର୍ଯ୍ୟଶ୍ରାବକ ନିରନ୍ତର ଏହି ଚିନ୍ତନ କଲେ ତାକୁ ମାର୍ଗ ମିଳିଯାଏ । ଏହି ମାର୍ଗର ଅଭ୍ୟାସ ହେତୁ ତାହାର ସଂପର୍କ ବିନଷ୍ଟ ହୁଏ । (୧)

(୧) 'ଅଙ୍ଗୁତ୍ତର ନିକାୟ' ପଞ୍ଚକନିପାତ ସୁତ୍ତ ୫୭ ।

ଏହି ଉଦ୍ଧୃତରେ କୁହାଯାଇଛି ଯେ, "ମୁଁ ହେଉଛି କର୍ମସ୍ୱକାୟ", ଅର୍ଥାତ୍ କର୍ମ ହେଉଛି ମୋର ସ୍ୱକାୟ । ଅନ୍ୟ ସମସ୍ତ ବସ୍ତୁ କେବେ ମୋଠୁ ଅଲଗା ହୋଇଯିବେ ଜଣାନାହିଁ । "ମୁଁ ହେଉଛି କର୍ମଦାୟାଦ" । ଅର୍ଥାତ୍, ଉତ୍ତମ କର୍ମ କରିବା ଦ୍ୱାରା ହିଁ ମତେ ସୁଖ ମିଳିବ ଏବଂ ମନ୍ଦ କର୍ମ ହେତୁରୁ ଦୁଃଖ ଭୋଗ କରିବାକୁ ପଡ଼ିବ । ମୁଁ ହେଉଛି "କର୍ମଯୋନି" ଅର୍ଥାତ୍, ମୋର ଜନ୍ମ ହେଉଛି କର୍ମରୁ । "ମୁଁ କର୍ମବନ୍ଧୁ" ଅର୍ଥାତ୍, ସଙ୍କଟ ସମୟରେ କର୍ମ ହେଉଛି ମୋର ବନ୍ଧୁ ; ମୁଁ ହେଉଛି କର୍ମପ୍ରତିଶରଣ", ଅର୍ଥାତ୍ କର୍ମ ହିଁ ମତେ ରକ୍ଷା କରିପାରିବ । କର୍ମ ଉପରେ ଭଗବାନ୍ ବୁଦ୍ଧ କେତେ ଗୁରୁତ୍ୱ ଦେଇଛନ୍ତି ତାହା ଏଥିରୁ ଜଣାଯାଏ । ଏପରି ଗୁରୁଙ୍କୁ ନାସ୍ତିକ କହିବା କଣ ଉଚିତ ହେବ ?

ଉତ୍ସାହ ପୂର୍ଣ୍ଣ ମନରେ ସତ୍‌କର୍ମ କରିବା ଉଚିତ । ଏ ସମ୍ପର୍କରେ ଧମ୍ମପଦର ନିମ୍ନୋଦ୍ଧୃତ ଗାଥାଟି ଆଲୋଚ୍ୟ ।

ଅଭିତ୍ୱରେଥ କଲ୍ୟାଣେ ପାପାଚିତ୍ତଂ ନିବାରୟେ ।
ଦନ୍ଧଂହି କରୋତୋ ପୁଞ୍ଞଂ ପାପସ୍ମିଂ ରମତୋ ମନୋ ॥

ଅର୍ଥାତ୍, କଲ୍ୟାଣ କର୍ମ କରିବାକୁ ହେଲେ ଶୀଘ୍ର କରିବା ଉଚିତ । ପୁଣି ପାପରୁ ଚିତ୍ତକୁ ନିବୃତ୍ତ ରଖିବାକୁ ହେବ । କାରଣ, ଆଳସ୍ୟ ହେତୁ ପୁଣ୍ୟ କାର୍ଯ୍ୟ କରିବା ଲୋକର ମନ ପାପରେ ରମଣ କରେ ।

## ବ୍ରାହ୍ମଣମାନଙ୍କ କର୍ମଯୋଗ

ଏପର୍ଯ୍ୟନ୍ତ ବୁଦ୍ଧଙ୍କର କର୍ମଯୋଗର ଆଲୋଚନା କରାଯାଇଛି । ସେହି ସମୟରେ ବ୍ରାହ୍ମଣମାନଙ୍କ ମଧ୍ୟରେ କିପରି କର୍ମଯୋଗ ପ୍ରଚଳିତ ଥିଲା ସେ ସମ୍ପର୍କରେ ସଂକ୍ଷିପ୍ତ ଆଲୋଚନା କରିବା ଉଚିତ ।

ବ୍ରାହ୍ମଣମାନଙ୍କ ପାଇଁ ଯାଗଯଜ୍ଞ ଥିଲା ଜୀବିକାର୍ଜନର ସାଧନ । ବିଧିପୂର୍ବକ ଯାଗଯଜ୍ଞର ଅନୁଷ୍ଠାନକୁ ହିଁ ସେମାନେ କର୍ମ-ଯୋଗରୂପେ ଗ୍ରହଣ କରୁ ଥିଲେ । ସେମାନେ ପ୍ରତିପାଦନ କରୁଥିଲେ ଯେ, ଯୁଦ୍ଧ ହେଉଛି କ୍ଷତ୍ରିୟମାନଙ୍କର, ବ୍ୟବସାୟ ବୈଶ୍ୟମାନଙ୍କର ସେବା ହିଁ ଶୂଦ୍ରମାନଙ୍କର କର୍ମ-ଯୋଗ । ଏଥିରେ ଯଦି କାହା'ର ହୃଦୟରେ ବିରକ୍ତି ଜାତ ହେଉଥିଲା ତେବେ ସେ ସମସ୍ତଙ୍କ ସଙ୍ଗ ପରିତ୍ୟାଗ ପୂର୍ବକ ଅରଣ୍ୟକୁ ଯାଉଥିଲା ଏବଂ ତପସ୍ୟା କରୁଥିଲା । ଏହା ହିଁ ସନ୍ନ୍ୟାସଯୋଗରୂପେ ଅଭିହିତ ହେଉଥିଲା । ସେଠାରେ ତାହାର କର୍ମଯୋଗ ଶେଷ ହେଉଥିଲା । କେତେକ ବ୍ରାହ୍ମଣ ସନ୍ନ୍ୟାସଦୀକ୍ଷା ଗ୍ରହଣ କରି ମଧ୍ୟ ଅଗ୍ନିହୋତ୍ର ପ୍ରଭୃତି କର୍ମଯୋଗର ଆଚରଣ କରୁଥିଲେ । ତାକୁ ସେମାନେ ଅତ୍ୟନ୍ତ ଶ୍ରେଷ୍ଠ ମନେ କରୁଥିଲେ । ଭଗବଦ୍‌ଗୀତାର ତୃତୀୟ ଅଧ୍ୟାୟରେ ଏ ସମ୍ପର୍କରେ କୁହାଯାଇଛି—

ଯଜ୍ଞାର୍ଥାତ୍କର୍ମଣୋଽନ୍ୟତ୍ର ଲୋକୋଽୟଂ କର୍ମବନ୍ଧନଃ ।
ତଦର୍ଥଂ କର୍ମ କୌନ୍ତେୟ ମୁକ୍ତସଙ୍ଗଃ ସମାଚର ॥

ଯଜ୍ଞ ପାଇଁ ଯେଉଁ କର୍ମ କରାଯାଏ, ତାହାଠାରୁ ଭିନ୍ନ କର୍ମରେ ଲୋକ କର୍ମ ବନ୍ଧନରେ ପଡ଼େ । ତେଣୁ, ହେ ଅର୍ଜୁନ, ସଙ୍ଗ ତ୍ୟାଗ କରି ଯଜ୍ଞ ପାଇଁ କର୍ମକର ।

ସହଯଜ୍ଞାଃ ପ୍ରଜାଃ ସୃଷ୍ଟ୍ୱା ପୁରୋବାଚ ପ୍ରଜାପତିଃ ।
ଅନେନ ପ୍ରସବିଷ୍ୟଧ୍ୱମେଷ ବୋଽସ୍ତ୍ୱିଷ୍ଟକାମଧୁକ୍ ॥

ସୃଷ୍ଟି ଆଦ୍ୟରେ ବ୍ରହ୍ମା ଯଜ୍ଞ ସହିତ ପ୍ରଜାମାନଙ୍କୁ ସୃଷ୍ଟି କରି କହିଲେ, ଏଥିରେ ତୁମେ ବୃଦ୍ଧି ଲାଭକର । ଏହା ହେଉଛି ତୁମର ଇଷ୍ଟ-କାମଧେନୁ ।

ଏବଂ ପ୍ରବର୍ତ୍ତିତଂ ଚକ୍ରଂ ନାନୁବର୍ତ୍ତୟତୀହ ଯଃ ।
ଅଘାୟୁ ରିନ୍ଦ୍ରିୟା ରାମୋ ମୋଘଂ ପାର୍ଥ ସ ଜୀବତି ॥

ଏହି ଲୋକରେ ଏଭଳି ପ୍ରବର୍ତ୍ତିତ ଯାଗଯଜ୍ଞ ଚକ୍ରକୁ ଯେ ଅନୁବର୍ତ୍ତନ ନକରେ, ତାହାର ଜୀବନ ପାପମୟ, ସେ ଇନ୍ଦ୍ରିୟ-ପରତନ୍ତ୍ର ଓ ତାର ବଞ୍ଚିବା ବୃଥା ।

## ବ୍ରାହ୍ମଣଙ୍କର ଲୋକ ସଂଗ୍ରହ

ଯଦି କେହି ଭାବୁଥିଲେ ଯେ, ପ୍ରଜାପତିଙ୍କ ସୃଜିତ ଏହି ଚକ୍ର ଠିକ୍ ନୁହେଁ, (କାରଣ ଏହାର ମୂଳରେ ହିଂସା ବିଦ୍ୟମାନ), ତାହାହେଲେ ସେହିପରି ଭାବନାକୁ ମନରେ ସ୍ଥାନ ଦେବା ଅନୁଚିତ ବିବେଚିତ ହେଉଥିଲା, କାରଣ, ତଦ୍ଦ୍ୱାରା ଅଜ୍ଞଲୋକଙ୍କ ମନରେ ଭେଦଭାବ ଜାତ ହେବାର ଆଶଂକା ଥିଲା ।

ନ ବୁଦ୍ଧିଭେଦଂ ଜନୟେ ଦଜ୍ଞାନାଂ କର୍ମସଙ୍ଗିନାମ୍ ।
ଜୋଷୟେତ୍ ସର୍ବ କର୍ମାଣି ବିଦ୍ୱାନ୍ ଯୁକ୍ତଃ ସମାଚରନ୍ ॥

ଅର୍ଥାତ୍ ଜ୍ଞାନୀ ପୁରୁଷଙ୍କର କର୍ତ୍ତବ୍ୟ ହେଉଛି ଏହି ଯେ, ସେମାନେ କର୍ମ ପ୍ରତି ଆସକ୍ତ ଅଜ୍ଞଲୋକଙ୍କ ବୁଦ୍ଧିରେ ଭ୍ରମ ଉତ୍ପନ୍ନ ନ କରି, ନିଜେ ଯୁକ୍ତ ହୋଇ ଅର୍ଥାତ୍, ସମସ୍ତ କର୍ମ ଉତ୍ତମରୂପେ ଆଚରଣ କରି ଅନ୍ୟ ଦ୍ୱାରା ମଧ୍ୟ ସେଗୁଡ଼ିକୁ ଆଚରଣ କରାଇବେ ।(୧)

କେଉଁ ଶତାବ୍ଦୀରେ ଭଗବଦ୍ ଗୀତାରେ ରଚିତ ହୋଇଥିଲା ତାହା ବିଚାର କରିବାର ସ୍ଥାନ ଏ ନୁହେଁ । ତଥାପି ଏତିକି କହି

(୧) ଭଗବଦ୍ ଗୀତା, ଅ ୩. ଶ୍ଳୋ ୨୬ । ଏ ସମ୍ପର୍କରେ ସମଗ୍ର ୩ୟ ଅଧ୍ୟାୟ ବିଚାରଣୀୟ ।

ହେବ ଯେ, ବୁଦ୍ଧଙ୍କ ସମକାଳୀନ କୌଣସି ଲେଖକ ଏହା ରଚନା କର ନାହାନ୍ତି । ପାଶ୍ଚାତ୍ୟ ପଣ୍ଡିତମାନଙ୍କର ବଉନ୍ନ ଅନୁମାନରୁ ଜଣାଯାଏ, ଭଗବଦ୍ ଗୀତା ବୁଦ୍ଧଦେବଙ୍କ ପରବର୍ତ୍ତୀ ପାଞ୍ଚଶତଠାରୁ ଆରମ୍ଭକର ଏକହଜାର ବର୍ଷମଧ୍ୟରେ ରଚିତ ହୋଇଥିଲା । ଭଗବଦ୍ ଗୀତା ଯେ ଏକ ଆଧୁନିକ ଗ୍ରନ୍ଥ, ଏଥିରେ କୌଣସି ସନ୍ଦେହ ନାହିଁ । ଏହା ସତ୍ତ୍ୱେ ବୁଝିବାକୁ ହେବ ଯେ, ତହିଁରେ ପ୍ରତିପାଦିତ ହୋଇଥିବାର ତତ୍ତ୍ୱାଧାର ବୁଦ୍ଧଙ୍କ ସମସାମୟିକ ବ୍ରାହ୍ମଣମାନଙ୍କ ଭିତରେ ପ୍ରଚଳିତ ଥିଲା । କୋଶଳ ଦେଶର 'ଲୋହିତ୍ୟ' ନାମକ ଜଣେ ପ୍ରସିଦ୍ଧ ବ୍ରାହ୍ମଣ କହୁଥିଲେ ଯେ, ଯଦ୍ୟପି ଆମର କୁଶଳ ତତ୍ତ୍ୱଜ୍ଞାନ ଜନ୍ମେ ତଥାପି ତାକୁ ଲୋକରେ ପ୍ରକାଶ କରିବା ଉଚିତ ନୁହେ । (୧) ସଂକ୍ଷେପରେ ତାଙ୍କ ଚରିତ ଏଠାରେ କୁହାଯାଉଛି —

ଭଗବାନ୍ ବୁଦ୍ଧ କୋଶଳ ଦେଶରେ ଯାଇ ଯାଇ ଶାଲବତିକା ନାମକ ସ୍ଥାନରେ ପହଞ୍ଚିଲେ । କୋଶଳର ରାଜା ପସେନଦି ସେହି ଗ୍ରାମଟି ବ୍ରାହ୍ମଣ ଲୋହିତଙ୍କୁ ପୁରସ୍କାରରୂପେ ଦେଇଥିଲେ । ଲୋହିତ୍ୟ ଏହି ପାପକାରକ ମତ ପୋଷଣ କରୁଥିଲେ ଯେ ଯଦି କୌଣସି ଶ୍ରମଣ ବା ବ୍ରାହ୍ମଣ କୁଶଳ ତତ୍ତ୍ୱ ଉପଲବ୍ଧି କରେ, ତେବେ ସେ ଅନ୍ୟ କାହାରିକି ସେ ତତ୍ତ୍ୱ ନ କହି ଗୋପନ ରଖୁ । ଜଣେ ମନୁଷ୍ୟ ଅନ୍ୟ ଜଣେ ମନୁଷ୍ୟ ପାଇଁ କ'ଣ କରିପାରେ ? ସେ କଣ ଅନ୍ୟ ଲୋକର ପୁରୁଣା ବନ୍ଧନ କାଟି ନୂତନ ବନ୍ଧନ ଗଢ଼ି ଦେଇ ପାରିବ । ତେଣୁ ମୋ ମତରେ ଏହା ହେଉଛି ଲୋଭୀ ଆଚରଣ ।

(୧) ଦେଖନ୍ତୁ, ଦୀଘନିକାୟ, ୧ମ ଖଣ୍ଡ, ଲୋହିଚ୍ଚ ସୁତ୍ତ ।

ଭଗବାନ୍ ବୁଦ୍ଧ ତାଙ୍କ ନିଜ ଗ୍ରାମ ନିକଟକୁ ଆସୁଛନ୍ତି ବୋଲି ଲୋହିତ୍ୟ ଜାଣିବାରୁ ସେ ରୋସିକା ନାମକ ଜଣେ ଭଣ୍ଡାରୀକୁ ପଠାଇ ତାଙ୍କୁ ଆମନ୍ତ୍ରଣ କଲେ । ଦ୍ୱିତୀୟ ଦିନ ସେ ଖାଦ୍ୟ ସାମଗ୍ରୀ ପ୍ରସ୍ତୁତ କରି ବୁଦ୍ଧ ଏବଂ ତାଙ୍କର ଭିକ୍ଷୁ ସଂଘକୁ ସମ୍ବାଦ ଦେଲେ । ଭଗବାନ୍ ବୁଦ୍ଧ ନିଜର ପାତ୍ର ଓ ଚୀବର ଧରି ଲୋହିତ୍ୟଙ୍କ ଘରକୁ ଯିବାପାଇଁ ବାହାରିଲେ । ବାଟରେ ସେହି ଭଣ୍ଡାରୀ ରୋସିକା, ବ୍ରାହ୍ମଣ ଲୋହିତ୍ୟଙ୍କ ଘୋଷିତ ମତ ଭଗବାନଙ୍କୁ ଜଣାଇଲା ଏବଂ ତାଙ୍କୁ କହିଲା— "ଭଦନ୍ତ ! ଏହି ପାପକାରକ ମତରୁ ଲୋହିତ୍ୟଙ୍କୁ ମୁକ୍ତ କରନ୍ତୁ ।"

ଲୋହିତ୍ୟ, ଭଗବାନ୍ ବୁଦ୍ଧ ଏବଂ ଭିକ୍ଷୁ ସଂଘକୁ ଆଦର ପୂର୍ବକ ଖାଇବାକୁ ଦେଲେ । ଭୋଜନପରେ ଭଗବାନ୍ ତାଙ୍କୁ ପଚାରିଲେ— "ହେ ଲୋହିତ୍ୟ, ତୁମେ କ'ଣ ଏପରି କହୁଛ ଯେ, ଯଦି କୌଣସି ବ୍ୟକ୍ତି କୁଶଳ ତତ୍ତ୍ୱବୋଧ ଲାଭକରେ, ତେବେ ସେ ତାହା ଅନ୍ୟକୁ ନ ଜଣାଉ ବୋଲି ?

ଲୋହିତ୍ୟ—ହେ ଗୌତମ, ମୁଁ ଏ କଥା କହୁଚି ।

ଭଗବାନ୍—ହେ ଲୋହିତ୍ୟ, ତୁମେ ଏହି ଶାଲବତିକା ଗ୍ରାମରେ ରହୁଛ । ଏବେ ଯଦି କେହି କହିବ ଯେ, ଏହି ଗ୍ରାମର ଯେତେ ମୋଟ ଆୟ ହୁଏ, ତାହା ଏକୁଟିଆ ଲୋହିତ୍ୟ ଭୋଗ କରନ୍ତୁ ଓ ଅନ୍ୟ କାହାକୁ କିଛି ନଦେଉନ୍ତୁ, ତେବେ କଣ ଏପରି କହିବା ଲୋକ, ତୁମ ଉପରେ ନିର୍ଭର କରିଥିବା (ଏହି ଗାଁର) ଲୋକଙ୍କର ଅକଲ୍ୟାଣକର ହେବ ନାହିଁ ?

ଲୋହିତ୍ୟ—ଆଜ୍ଞା, ହଁ ନିଶ୍ଚୟ ହେବ ।

ଭଗବାନ୍—ଯେ ଅନ୍ୟମାନଙ୍କ ପାଇଁ ଅନ୍ତରାୟ ସୃଷ୍ଟି କରେ ସେ ସେମାନଙ୍କର ହିତକାରୀ ନା ଅହିତ କାରୀ ?

ଲୋହିଚ୍ଚ—ହେ ଗୌତମ, ସେ ହେବ ଅହିତକାରୀ ।
ଭଗବାନ୍—ଏପରି ମନୁଷ୍ୟର ମନ ମୈତ୍ରୀମୟ ହେବ ନା ବୈରଭାବ ପୂର୍ଣ୍ଣ ହେବ ।
ଲୋହିଚ୍ଚ—ହେ ଗୌତମ, ବୈରଭାବ ପୂର୍ଣ୍ଣ ହେବ ।
ଭଗବାନ୍—ଯାହାରମନ ବୈରଭାବ ପୂର୍ଣ୍ଣ ହେବ, ସେ ମିଥ୍ୟା-ଦୃଷ୍ଟି ହେବ ନା ସମ୍ୟକ୍ ଦୃଷ୍ଟି ?
ଲୋହିଚ୍ଚ—ହେ ଗୌତମ, ମିଥ୍ୟା ଦୃଷ୍ଟି ହେବ ।

## କୁଶଳକର୍ମଦ୍ୱାରା ଅକୁଶଳକୁ ଜୟ କରିବାକୁ ହେବ

ଏହି ସ୍ଥଳରେ ଏବଂ ଅନ୍ୟ ଅନେକ ସ୍ଥାନରେ ମଧ୍ୟ ବୁଦ୍ଧଦେବଙ୍କ କଥାର ମର୍ମ ହେଉଛି ଏହି ଯେ, ପ୍ରଚଳିତ ଅକୁଶଳ ରୀତି ବିରୁଦ୍ଧରେ କୌଣସି ବ୍ୟକ୍ତିର ଯଦି କୁଶଳ ବୃତ୍ତିର ଜାତ ହୁଏ, ତାହାହେଲେ ଜନ ସମାଜରେ ତାକୁ ପ୍ରଚାରିତ କରିବା ହେଉଛି ପ୍ରତ୍ୟେକ ବ୍ୟକ୍ତିର ଶ୍ରେଷ୍ଠ କର୍ତ୍ତବ୍ୟ । ମନ୍ଦ କାର୍ଯ୍ୟ କରୁଥିବା ବ୍ୟକ୍ତିକୁ କିଛି ନକହିବା କିମ୍ବା ନିଜେ ତାହାପରି ଆଚରଣ କରିବା ବା ତାକୁ ମନ୍ଦକାର୍ଯ୍ୟ ପାଇଁ ଅବସର ଦେବା ସଜ୍ଜନ ବ୍ୟକ୍ତିର କର୍ତ୍ତବ୍ୟ ନୁହେଁ ।

ବ୍ରାହ୍ମଣମାନେ କହୁଥିଲେ ଯେ ଯାଗଯଜ୍ଞ ଏବଂ ବର୍ଣ୍ଣ ବ୍ୟବସ୍ଥା ପ୍ରଜାପତିଙ୍କ ଦ୍ୱାରା ସୃଷ୍ଟ ହୋଇଛି । ତେଣୁ ସେ ଅନୁସାରେ କରାଯାଉଥିବା କର୍ମହିଁ ପବିତ୍ର । କିନ୍ତୁ ଭଗବାନ୍ ବୁଦ୍ଧଙ୍କ ମତରେ ତୃଷ୍ଣାରୁ ଉତ୍ପନ୍ନ ହିଂସା ପ୍ରଭୃତି କର୍ମ କଦାପି ଶୁଦ୍ଧ ହୋଇ ନପାରେ । ତାହା ଦ୍ୱାରା ମାନବ ବିଷମ ମାର୍ଗରେ ଚାଲିତ ହୁଏ । ଅତଏବ ତାହାର ବିରୋଧୀ, କୁଶଳକର୍ମର ଆଚରଣ ଦ୍ୱାରାହିଁ ବିଷମ ମାର୍ଗରୁ ମୁକ୍ତି ମିଳିବ ।

'ମଜ୍‌ଝିମନିକାୟ'ର ସଲ୍ଲେଖ ସୂତ୍ର (ସଂ ୮)ରେ ଭଗବାନ କହୁଛନ୍ତି, "ହେ ଚୁନ୍ଦ ! ଯେଉଁଠାରେ ଅନ୍ୟମାନେ ହିଂସା ବୃତ୍ତି ଆଚରଣ କରୁଅଛନ୍ତି, ସେଠାରେ ଆମେ ଅହିଂସକ ହୋଇ ଏହିପରି ସ୍ୱଚ୍ଛତା (୧) ରକ୍ଷାକରିବା ଉଚିତ । ଅନ୍ୟ ଲୋକ ପ୍ରାଣଘାତ କଲେ ଆମେ ତହିଁରୁ ନିବୃତ୍ତ ହେବା, ଅନ୍ୟ ବ୍ୟକ୍ତି ଚୋର ହେଲେ ଆମେ ଚୋରିରୁ ନିବୃତ୍ତ ହେବା, ଅନ୍ୟ ବ୍ୟକ୍ତି ଯଦି ଅବ୍ରହ୍ମଚାରୀ ହୁଏ, ଆମେ ବ୍ରହ୍ମଚାରୀ ହେବା, ଅନ୍ୟ ଲୋକେ ମିଛ କହିଲେ, ଆମେ ତହିଁରୁ ନିବୃତ୍ତ ହେବା,ଅନ୍ୟ ଲୋକ ପରୋକ୍ଷ ନିନ୍ଦାକଲେ ମଧ୍ୟ ଆମେ ତହିଁରୁ ନିବୃତ୍ତ ହେବା, ଅନ୍ୟ ଲୋକ ଗାଳି ଗୁଲଜ କଲେ ଆମେ ତହିଁରୁ କ୍ଷାନ୍ତ ହେବା, ଅନ୍ୟ ଲୋକ ବୃଥା ପ୍ରଳାପକଲେ ମଧ୍ୟ ଆମେ ତହିଁରୁ ନିବୃତ୍ତ ହେବା, ଅନ୍ୟ ଲୋକ ପରଧନକୁ ଲୋଭକଲେ ମଧ୍ୟ ଆମେ ସେହି ଲୋଭରୁମୁକ୍ତ ରହିବା, ଅନ୍ୟ ଲୋକ ଦ୍ୱେଷ କଲେ ମଧ୍ୟ ଆମେ ତହିଁରୁ ମୁକ୍ତ ରହିବା, ଅନ୍ୟ ଲୋକ ମିଥ୍ୟା ଦୃଷ୍ଟି ରଖିଲେ ମଧ୍ୟ ଆମେ ସମ୍ୟକ୍ ଦୃଷ୍ଟି ରଖିବା—ଏହିପରି ସ୍ୱଚ୍ଛତା ରକ୍ଷା କରିବାକୁ ହେବ ।

"ହେ ଚୁନ୍ଦ ! କୌଣସି ବିଷମ ମାର୍ଗରେ ପଡିଥିବା ବ୍ୟକ୍ତିକୁ ତହିଁରୁ ମୁକ୍ତ କରିବାପାଇଁ ଯେପରି ସିଧାବାଟ ମିଳିଯାଏ, ସେହିପରି ବିହିଂସକ ମନୁଷ୍ୟକୁ ବିହିଂସାରୁ ମୁକ୍ତ କରିବାର ପାଇଁ ଅବିହିଂସା ଆବଶ୍ୟକ । ପ୍ରାଣଘାତୀ ମନୁଷ୍ୟର ମୁକ୍ତିପାଇଁ ପ୍ରାଣଘାତରୁ ବିରତି, ଚୋରର ମୁକ୍ତି ପାଇଁ ଚୋରିରୁ ବିରତି, ଅବ୍ରହ୍ମଚାରୀର ମୁକ୍ତି ପାଇଁ ଅବ୍ରହ୍ମଚର୍ଯ୍ୟରୁ ବିରତି, ମିଥ୍ୟାରୁ ମୁକ୍ତିପାଇଁ ମିଥ୍ୟାରୁ ବିରତି, ପରୋକ୍ଷ ନିନ୍ଦାକାରୀ ବ୍ୟକ୍ତିର ମୁକ୍ତି

(୧) ଶଂଖ ପ୍ରଭୃତି ବସ୍ତୁକୁ ଘଷି ସଫା କରିବା ହେଉଛି 'ସଲ୍ଲେଖ' । ଆତ୍ମଶୁଦ୍ଧି ଅର୍ଥରେ 'ସ୍ୱଚ୍ଛତା' ଶବ୍ଦ ପ୍ରୟୋଗ କରାଯାଉଛି ।

ପାଇଁ ପରୋକ୍ଷ ନିନ୍ଦାରୁ ବିରତ, କର୍କଶ ଭାଷୀର ମୁକ୍ତିପାଇଁ କର୍କଶ ଭାଷଣରୁ ବିରତ ଏବଂ ବୃଥା ପ୍ରଳାପକାରୀର ମୁକ୍ତିପାଇଁ ବୃଥା ପ୍ରଳାପରୁ ବିରତ—ଏହା ହେଉଛି ଉପାୟ......

"ହେ ଚୁନ୍ଦ ! ଯେଉଁ ବ୍ୟକ୍ତି ଗଭୀର ପଙ୍କରେ ନିପତିତ, ସେ ଅନ୍ୟକୁ ପଙ୍କରୁ ଉଦ୍ଧାର କରି ନ ପାରେ । ଠିକ୍ ସେହିପରି ଯେ ନିଜେ ନିଜକୁ ଦମନ କରି ନାହିଁ, ନିଜ ପାଇଁ ଅନୁଶାସନ ମାନି ନାହିଁ, ଯେ ନିଜେ ଶାନ୍ତ ନୁହେ, ତାହା ପକ୍ଷରେ ଅନ୍ୟକୁ ଦମନ କରିବା, ଅନୁଶାସନ କରିବା ଏବଂ ଶାନ୍ତ କରିବା ସମ୍ଭବପର ନୁହେ । କିନ୍ତୁ ଯେ ସ୍ୱୟଂ ଦାନ୍ତ, ବିନୀତ ଏବଂ ପରିନିର୍ବୃତ୍ତ, ସେ ଅନ୍ୟକୁ ଦମନ କରିପାରେ, ବିନୟ ଶିକ୍ଷା ଦେଇପାରେ ଓ ପରିନିର୍ବୃତ୍ତ କରିପାରେ ।

ଧମ୍ମପଦର ଗୋଟିଏ ଗାଥାରେ (୨୨୩) ଏହିକଥା ସଂକ୍ଷେପରେ କୁହାଯାଇଛି । ଗାଥାଟି ହେଉଛି :—

ଅକ୍କୋଧେନ ଜିନେ କୋଧଂ ଅସାଧୁଂ ସାଧୁନା ଜିନେ
ଜିନେ କଦରିୟଂ ଦାନେନ ସଚ୍ଚେନାଲୀକବାଦିନଂ

ଅର୍ଥାତ୍ କ୍ଷମା ଦ୍ୱାରା କ୍ରୋଧଶାନ୍ତ କରାଯାଉ, ସାଧୁତାଦ୍ୱାରା ଅସାଧୁକୁ ଜୟ କରାଯାଉ ଓ ଦାନ ଦ୍ୱାରା କୃପଣକୁ ଜୟ କରାଯାଉ ।

## ଦଶକୁଶଳ କର୍ମ ପଥରେ ବ୍ରାହ୍ମଣଙ୍କ ଦ୍ୱାରା ଘଟିତ ପରିବର୍ତ୍ତନ

ବଡ଼ ଚିନ୍ତାଶୂନ୍ୟ ଭାବରେ ବୈଦିକ ଗ୍ରନ୍ଥକାରମାନେ ଉପରୋକ୍ତ କୁଶଳ ତଥା ଅକୁଶଳ କର୍ମପଥଗୁଡ଼ିକୁ ସ୍ୱୀକାର କରିଥିଲେ । କିନ୍ତୁ ସେଥିରେ ମଧ୍ୟ ସେମାନେ ଯତ୍ନଶୀଳ ଥିଲେ, ଯେପରିକି ନିଜ ନିଜର ଅଧିକାରରେ କୌଣସି ବାଧା ଉପସ୍ଥିତ

ନହୁଏ । ମନୁସ୍ମୃତିରେ ଏହି ଦଶଟି କୁଶଳ କର୍ମପଥ କିପରି ସ୍ୱୀକୃତ ହୋଇଅଛି ଏଠାରେ ଲକ୍ଷ୍ୟ କରାଯାଉ ।

ସ ତାନୁବାଚ ଧର୍ମାତ୍ମା ମହର୍ଷୀନ୍ମାନବୋଭୃଗୁଃ
ଅସ୍ୟ ସର୍ବସ୍ୟ ଶ୍ରୃଣୁତ କର୍ମଯୋଗସ୍ୟ ନିର୍ଣ୍ଣୟମ୍

ଅର୍ଥାତ୍, ସେହି ମନୁକୁଳୋଦ୍ଭବ ଧର୍ମାତ୍ମା ଭୃଗୁ ମହର୍ଷିମାନଙ୍କୁ କହିଲେ—ଏହି ସମସ୍ତ କର୍ମଯୋଗର ସ୍ୱରୂପ ଶୁଣନ୍ତୁ ।

ପରଦ୍ରବ୍ୟେଷ୍ୱଭିଧ୍ୟାନଂ　　ମନସାନିଷ୍ଟ ଚିନ୍ତନମ୍
ବିତଥାଭିନିବେଶଶ୍ଚ　　ତ୍ରିବିଧଂ କର୍ମମାନସମ୍

ଅର୍ଥାତ୍, ପରଦ୍ରବ୍ୟରେ ଅଭିଳାଷ, ଅନ୍ୟର ଅନିଷ୍ଟ ଚିନ୍ତା ଓ ଦୋଷପୂର୍ଣ୍ଣ ମାର୍ଗରେ (ନାସ୍ତିକତା) ଗତି କରିବା, ଏହି ତିନୋଟିକୁ ମାନସିକ ପାପକର୍ମ ବୋଲି ଜାଣିବା ଉଚିତ ।

ପାରୁଷ୍ୟମନୃତଂ ଚୈବ　　ପୈଶୁନ୍ୟଂ ଚାପି ସର୍ବଶଃ
ଅସମ୍ବଦ୍ଧ ପ୍ରଳାପଶ୍ଚ　　ବାଙ୍ମୟଂ ସ୍ୟାଚ୍ଚତୁର୍ବିଧମ୍

ଅର୍ଥାତ୍ କଠୋର ଭାଷଣ, ଅସତ୍ୟ ଭାଷଣ, ସକଳପ୍ରକାର ପରୋକ୍ଷ ନିନ୍ଦା ଏବଂ ବୃଥା ପ୍ରଳାପ, ଏହି ଚାରୋଟି ହେଉଛି ବାଚିକ ପାପକର୍ମ ।

ଅଦତ୍ତାନାମୁପାଦାନଂ　　ହିଂସା ଚୈବାବିଧାନତଃ
ପରଦାରୋପସେବାଚ　　ଶାରୀରଂ ତ୍ରିବିଧଂ ସ୍ମୃତମ୍

ଅର୍ଥାତ୍, ଅଦତ୍ତଦାନ (ଚୋରି) ବେଦ ଅବିହିତ ହିଂସା ଓ ପରଦାରଗମନ, ଏହି ତିନୋଟି ହେଉଛି କାୟିକ ପାପକର୍ମ ।

ତ୍ରିବିଧଂଚ ଶରୀରେଣ　　ବାଚାଚୈବ ଚତୁର୍ବିଧମ୍
ମନସା ତ୍ରିବିଧଂ କର୍ମ　　ଦଶକର୍ମ ପଥାଁସ୍ତ୍ୟଜେତ୍

ଅର୍ଥାତ୍, ଏହିପରି ତ୍ରିବିଧ କାୟିକ, ଚତୁର୍ବିଧବାଚକ ଓ ତ୍ରିବିଧ ମାନସିକ ଏହି, ଦଶଟି (ଅକୁଶଳ) କର୍ମପଥ ବର୍ଜ୍ଜନୀୟ ।

ଏ ମଧ୍ୟରୁ ପ୍ରଥମ ଶ୍ଳୋକରେ ଉଲ୍ଲିଖିତ 'କର୍ମଯୋଗ' ଶବ୍ଦ ବିଶେଷ ଉପାଦେୟ । ମନୁସ୍ମୃତିର ପ୍ରଣେତାଙ୍କୁ ବୁଦ୍ଧଙ୍କଦ୍ୱାରା ପ୍ରତିପାଦିତ କର୍ମଯୋଗ ଅତ୍ୟନ୍ତ ପ୍ରିୟ ବୋଧହେଉଥିଲା । ତେବେ ସେ ମଧ୍ୟରେ ସେ ଏକ 'ଅପବାଦ' ରଖିଦେଲେ । ତାହା ହେଉଛି— ଯେଉଁ ହିଂସା ବେଦବିହିତ ନୁହେ ତାହା କରିବା ଅନୁଚିତ । କିନ୍ତୁ ବେଦ ବିହିତ ହିଂସା ହିଂସା ନୁହେ ।

## ଯୁଦ୍ଧକୁ ଧାର୍ମିକ ବୋଲି ଧରିଯିବାରୁ ଅକୁଶଳ କର୍ମପଥ ଉପଯୁକ୍ତ ବିବେଚିତ ହେଲା

ଯଦି ଯାଗଯଜ୍ଞର ହିଂସାକୁ ବର୍ଜ୍ଜନୀୟ ବୋଲି କୁହା ଯାଇଥାନ୍ତା ତାହାହେଲେ ଯାଗଯଜ୍ଞ କରିବାର କୌଣସି କାରଣ ରହନ୍ତାନାହିଁ । ସେ ସବୁ ଯାଗଯଜ୍ଞର କାରଣ କଣ ? କାରଣ ହେଉଛି—ଯୁଦ୍ଧରେ ଜୟପ୍ରାପ୍ତି କାମନା ଓ ଜୟପ୍ରାପ୍ତିରେ ରାଜ୍ୟର ସ୍ଥାୟିତ୍ୱ । ଅନ୍ୟ ଭାବରେ କହିଲେ, ଯୁଦ୍ଧର ହିଂସାକୁ ଯଦି ଧାର୍ମିକ ହିଂସା ବୋଲି ସ୍ୱୀକାର କରା ନ ଯାଆନ୍ତା, ତେବେ ବୈଦିକ ହିଂସାର କୌଣସି କାରଣ ରହନ୍ତା ନାହିଁ । ଏହି ହେତୁରୁ ଯୁଦ୍ଧ ଉପରେ ପବିତ୍ରତାର ଆରୋପ କରିବାକୁ ପଡ଼ିଥିଲା । ଶ୍ରୀକୃଷ୍ଣ କହିଅଛନ୍ତି—

ସ୍ୱ ଧର୍ମମପି ଚ୍ୟବେକ୍ଷ ନବିକମ୍ପିତୁମର୍ହସି ।<br>
ଧର୍ମ୍ୟାଦ୍ଧିଯୁଦ୍ଧାତ୍ ଶ୍ରେୟୋଽନ୍ୟତ୍ କ୍ଷତ୍ରିୟସ୍ୟ ନବିଦ୍ୟତେ ॥

ଅର୍ଥାତ୍, ନିଜ ଧର୍ମର ବିଚାର କଲେ ମଧ୍ୟ ତୁମେ ଯୁଦ୍ଧରୁ ପରାଙ୍ମୁଖ ହେବା ଉଚିତ ନୁହେ । କ୍ଷତ୍ରିୟ ପକ୍ଷରେ ଧର୍ମ୍ୟଯୁଦ୍ଧ ଅପେକ୍ଷା ଅନ୍ୟ କୌଣସି ଶ୍ରେୟ ନାହିଁ ।

ଯଦୃଚ୍ଛୟା ଚୋପପନ୍ନଂ ସ୍ୱର୍ଗଦ୍ୱାର ମପାବୃତମ୍
ସୁଖିନଃ କ୍ଷତ୍ରିୟାଃ ପାର୍ଥ ଲଭନ୍ତେ ଯୁଦ୍ଧ ମୀଦୃଶମ୍ ।

ଅର୍ଥାତ୍, ହେ ପାର୍ଥ ! ଅପ୍ରାର୍ଥିତଭାବେ, ସ୍ୱର୍ଗକୁ ମେଲାଦ୍ୱାର ପରି ମିଳୁଥିବା ଏହି ଯୁଦ୍ଧ ଭାଗ୍ୟବନ୍ତ କ୍ଷତ୍ରିୟମାନେ ଏକା ପାଆନ୍ତି ।

ଅଥଚେତ୍ତ୍ୱମିମଂ ଧର୍ମ୍ୟଂ ସଂଗ୍ରାମଂ ନ କରିଷ୍ୟସି
ତତଃ ସ୍ୱଧର୍ମଂ କୀର୍ତ୍ତିଂଚ ହିତ୍ୱା ପାପମବାପ୍ସ୍ୟସି ॥ (୧)

ଅର୍ଥାତ୍, ତୁମେ ଯଦି ଏହି ଧର୍ମଯୁଦ୍ଧ କରିବ ନାହିଁ ତାହାହେଲେ ସ୍ୱଧର୍ମ ଓ କୀର୍ତ୍ତିକୁ ତ୍ୟାଗ କରି ପାପଭାଗୀ ହେବ ।

ଯୁଦ୍ଧକୁ ଧାର୍ମିକ ବୋଲି ଧରିନେଲେ ସମସ୍ତ ଅକୁଶଳ କର୍ମପଥ ଧାର୍ମିକରୂପେ ବିବେଚିତ ହେବା ସ୍ୱାଭାବିକ କଥା । ସାରକଥା ହେଉଛି, ଯୁଦ୍ଧଛଡ଼ା ଅନ୍ୟସ୍ଥଳରେ ହିଂସା କରିବା ଉଚିତ ନୁହେଁ, ଯୁଦ୍ଧ ବ୍ୟତୀତ ଅନ୍ୟତ୍ର ଲୁଣ୍ଠନ କରିବା ଉଚିତ ନୁହେଁ, ଯୁଦ୍ଧ ଛଡ଼ା ଅନ୍ୟତ୍ର ବ୍ୟଭିଚାର କରିବା ଉଚିତ ନୁହେଁ । ସେହିପରି, ଅସତ୍ୟ ଭାଷଣ, ପରୋକ୍ଷ ନିନ୍ଦା, କର୍କଶ ବଚନ ପ୍ରଭୃତି ଯୁଦ୍ଧୋପଯୋଗୀ ନହେଲେ, ଅର୍ଥାତ୍ ରାଜନୀତି ଛଡ଼ା, ଅନ୍ୟତ୍ର କରିବା ଅନୁଚିତ । ପରଦ୍ରବ୍ୟ ଲୋଭ ତ ଯୁଦ୍ଧରେ ଏକାନ୍ତ ଉପଯୁକ୍ତ କଥା । ନିଜ ସୈନ୍ୟମାନଙ୍କ ମଧ୍ୟରେ ଯଦି ଅନ୍ୟମାନଙ୍କ ପ୍ରତି ଦ୍ୱେଷଭାବ ସୃଷ୍ଟି କରି ନ ଯାଏ, ତେବେ ସେମାନେ ଯୁଦ୍ଧ ପାଇଁ ପ୍ରସ୍ତୁତ ହେବେନାହିଁ । ପୁଣି ଆମେ ସ୍ୱଧର୍ମ ନିମନ୍ତେ, ସ୍ୱରାଷ୍ଟ୍ର ନିମନ୍ତେ ଅଥବା ଏପରି କୌଣସି କାଳ୍ପନିକ ପବିତ୍ର ବସ୍ତୁ ପାଇଁ ଯୁଦ୍ଧ କରୁଚୁବୋଲି ଯେ

---

(୧) ଭଗବଦ୍ ଗୀତା ୨ୟ ଅଧ୍ୟାୟ ୩୨-୩୩ ଶ୍ଳୋକ ।

ପର୍ଯ୍ୟନ୍ତ ଶତ୍ରୁ ମିଥ୍ୟା ଦୃଷ୍ଟି ଉତ୍ପନ୍ନ ନ ହୋଇଛି, ସେ ପର୍ଯ୍ୟନ୍ତ ଜୟପ୍ରାପ୍ତି ସମ୍ଭବ ନୁହେ । ଫଳତାର୍ଥ ହେଉଚ, ଏକମାତ୍ର ଯୁଦ୍ଧପାଇଁ ସମସ୍ତ କୁଶଳ କର୍ମପଥର ବର୍ଜନ ପବିତ୍ର ରୂପେ ବିବେଚିତ ହେଲା ।

ଅଶ୍ୱତ୍ଥାମା ମରିଗଲେ, ଏପରି ନିପଟ ମିଥ୍ୟା କହିବାପାଇଁ ଯୁଧିଷ୍ଠିର ପ୍ରସ୍ତୁତ ନଥିଲେ ମଧ୍ୟ ଶ୍ରୀକୃଷ୍ଣ 'ନରୋ ବା କୁଞ୍ଜରୋ ବା' (ମଣିଷ ବା ହାତୀ) ବୋଲି କୁହାଇଥିଲେ । ଆଜି କାଲିର ରାଜନୀତି ଠିକ୍ ଏହିପରି—ମିଛ, ସତ ମିଶାମିଶି । ନିଜ ଦେଶକୁ ଉଠାଇବା ପାଇଁ କୌଣସି ଅକୁଶଳ କର୍ମ ମଧ୍ୟ ଅତ୍ୟନ୍ତ ପବିତ୍ର ବୋଲି ଧରା ଯାଇପାରେ ।

## ଧାର୍ମିକ ଯୁଦ୍ଧର ବିକାଶ

ଜୈନ ତଥା ବୌଦ୍ଧମାନଙ୍କ ପ୍ରଭାବ ହେତୁ ବୈଦିକ ହିଂସା ବନ୍ଦ ହୋଇଗଲା କିନ୍ତୁ ଏ ଦେଶରେ କ୍ଷତ୍ରିୟ କ୍ଷତ୍ରିୟ ମଧ୍ୟରେ ଧାର୍ମିକ ଯୁଦ୍ଧ ଲାଗି ରହିଲା । ଏହି ଧାର୍ମିକ ଯୁଦ୍ଧର ବିକାଶ ମହମଦ ଘଟାଇଥିଲେ । ପରସ୍ପର ମଧ୍ୟରେ ଯୁଦ୍ଧ କରିବା ଉଚିତ ନୁହେ ବୋଲି ସେ ପ୍ରଚାର କରିଥିଲେ । ଏହାର ପ୍ରତିକ୍ରିୟା ଖ୍ରୀଷ୍ଟିୟ ଧର୍ମଯୁଦ୍ଧରେ ଦେଖା ଦେଇ ଥିଲା । ଏ ସବୁ ଦେଶଭକ୍ତିମାନ ରୂପେ ଗୃହୀତ ହେଲା । ତହିଁରେ କୌଣସି କୁକର୍ମାଚରଣ ମଧ୍ୟ ଉଚିତ ବୋଲି ଧରାଗଲା । ଫଳରେ, ସମଗ୍ର ମାନବ ଜାତି ବିଷମ ମାର୍ଗରେ ପତିତ ହେଲା । ତହିଁରୁ ନିଷ୍କୃତି ପାଇବା ପାଇଁ ବୁଦ୍ଧଙ୍କ କର୍ମଯୋଗ ଛଡ଼ା ଅନ୍ୟ ମାର୍ଗ ଅଛିକି ?

---

# ନବମ ଅଧ୍ୟାୟ

## ଯାଗ ଯଜ୍ଞ

## ପୌରାଣିକ ବୁଦ୍ଧ

ହିନ୍ଦୁମାନେ ବିଷ୍ଣୁଙ୍କୁ ନବମ ଅବତାର ବୋଲି ମାନନ୍ତି । ବିଷ୍ଣୁପୁରାଣରେ କଥିତ ହୋଇଅଛି ଯେ, ବିଷ୍ଣୁ ବୁଦ୍ଧ—ଅବତାର ଧାରଣକରି ଅସୁରମାନଙ୍କୁ ମୋହିତ କଲେ ଏବଂ ଦେବତାମାନଙ୍କ ଦ୍ୱାରା ସେମାନଙ୍କର ଉଚ୍ଛେଦ ସାଧନ କରାଇଲେ । ଏହି କଥାର ସାର 'ଭାଗବତ'ର ତଳଲିଖିତ ଶ୍ଳୋକରେ ଦେଖିବାକୁ ମିଳେ ।

ତତଃ କଲୌସମ୍ପ୍ରବୃତ୍ତେ ସମ୍ମୋହାୟ ସୁରଦ୍ୱିଷାମ୍
ବୁଦ୍ଧୋନାମ୍ନାଽଜନସୁତଃ କୀକଟେଷୁ ଭବିଷ୍ୟତି ॥

ଅର୍ଥାତ୍, ଏହାପରେ କଳିଯୁଗ ଆସିବା ହେତୁ ଅସୁରମାନଙ୍କୁ ମୋହିତ କରିବା ନିମନ୍ତେ, ଅଜନ—ପୁତ୍ର ବୁଦ୍ଧ, କୀକଟ ଦେଶରେ ଜନ୍ମଗ୍ରହଣ କରିବେ ।

ସାଧାରଣରେ ହିନ୍ଦୁମାନେ ବୁଦ୍ଧ ଅବତାର ସମ୍ପର୍କରେ ବିଶେଷ କିଛି ଜାଣନ୍ତି ନାହିଁ । ଶାସ୍ତ୍ରଜ୍ଞ ପଣ୍ଡିତ ଓ ପୁରାଣ ଶୁଣୁଥିବା ଲୋକେ ବୁଦ୍ଧଙ୍କ ବିଷୟରେ ଯାହା କିଛି ଜାଣନ୍ତି, ତାହାର ମୂଳ ହେଉଛି ବିଷ୍ଣୁପୁରାଣ ବା ଭାଗବତ ।

# ୭ ବିଷ୍ଣୁ ଶାସ୍ତ୍ରୀ ଚିପଲୂଣକରଙ୍କ କଳ୍ପନା

ପାଶ୍ଚାତ୍ୟଦେଶରେ, ମାକ୍ସମୁଲ୍ଲରଙ୍କଠାରୁ ଖ୍ୟାତନାମା ଫରାସୀ ପଣ୍ଡିତ ବର୍ଣ୍ଣୁଫ୍‌ଙ୍କ ଦୃଷ୍ଟି ସର୍ବପ୍ରଥମେ ବୌଦ୍ଧଧର୍ମପ୍ରତି ଆକୃଷ୍ଟ ହୋଇଥିଲା। କିନ୍ତୁ, ଯଥେଷ୍ଟ ପରିମାଣରେ ଉପାଦାନ ନ ମିଳିବାରୁ ସେ ଉକ୍ତ ଧର୍ମର ପୂର୍ଣ୍ଣାଙ୍ଗ ଜ୍ଞାନ ପାଶ୍ଚାତ୍ୟ ଦେଶମାନଙ୍କ ସମ୍ମୁଖରେ ଉପସ୍ଥାପନ କରି ପାରିନଥିଲେ। 'ବୌଦ୍ଧଧର୍ମ ତ୍ୟାଜ୍ୟ ଓ ତହିଁର ବିଚାର କରିବାର କୌଣସି ଆବଶ୍ୟକତା ନାହିଁ'—ଏହି ଧାରଣା ବର୍ଣ୍ଣୁଫ୍‌ଙ୍କ ଚେଷ୍ଟାରେ ବିଶେଷ ଭାବେ ପରିବର୍ତ୍ତିତ ହୋଇଥିଲା। ପରିଣାମରେ ଡକ୍ଟର ଓ୍ୱିଲ୍‌ସନ୍‌ଙ୍କ ପରି ଖ୍ରୀଷ୍ଟଭକ୍ତମାନେ ମଧ୍ୟ ବୌଦ୍ଧଧର୍ମ ଅଧ୍ୟୟନ କରିବାକୁ ଲାଗିଲେ। ତାଙ୍କହେତୁ ଆମ ଦେଶର କଲେଜ—ପାଠୀ ତରୁଣ ଶିକ୍ଷିତମାନେ ବୌଦ୍ଧଧର୍ମ ବିଷୟକ ବିଚାରରେ ପ୍ରବୃତ୍ତ ହେଲେ।

ଖ୍ୟାତନାମା ମରାଠୀଲେଖକ ସ୍ୱର୍ଗତଃ ବିଷ୍ଣୁ ଶାସ୍ତ୍ରୀ ଚିପଲୂଣକର, କବି ବାଣଙ୍କ ସମ୍ପର୍କରେ ଲେଖିବାକୁ ଯାଇ କହିଛନ୍ତି:—

ଆର୍ଯ୍ୟମାନଙ୍କର ମୂଳ ବୈଦିକ ଧର୍ମସଙ୍ଗେ ପ୍ରଥମ ମତଭେଦ ବୁଦ୍ଧଦେବହିଁ ଘଟାଇଥିଲେ। କାଳର ପ୍ରଭାବରୁ ସେଇ ମତକୁ ଅନୁସରଣ କରିବା ବ୍ୟକ୍ତି ବହୁ ସଂଖ୍ୟାରେ ବାହାରିଲେ। ଫଳରେ, ଧର୍ମରେ ଗୁରୁତର ମତଭେଦ ସୃଷ୍ଟି ହେଲା। ଏହି ନବୀନ ପନ୍ଥୀମାନେ ନିଜ ନିଜକୁ ବୌଦ୍ଧ ବୋଲି ବୋଲାଇଲେ। ସେମାନଙ୍କର ନୂତନ ମତ କ'ଣ ଥିଲା ତାହାର ଉଦୟ, ପ୍ରସାର ଏବଂ ବିଲୟ କେବେ ଓ କିପରି ଭାବରେ ହୋଇଥିଲା, ଇତିହାସକାରଙ୍କ ପାଇଁ ଏସବୁ ବଡ଼ ମନୋରଞ୍ଜକ ବିଷୟ, କିନ୍ତୁ ସେସବୁ କଥା ବର୍ତ୍ତମାନ କହି କି ଲାଭଅଛି ? ଅତୀତ ଦୁଃଖର କଥା ପୁଣିଥରେ ଏଠାରେ କହିବାର

କାରଣ ହେଉଛି, ଏହି ଯେ, ଇତିହାସ ଅଭାବରୁ ଆମେ ସମଗ୍ର ସଂସାର ସହିତ ସେହି ମହା ଲାଭରୁ ବଞ୍ଚିତ ହୋଇଗଲୁ । ଆଚ୍ଛା, ବୁଦ୍ଧଙ୍କ ବିଷୟରେ ଆମ ପାଖରେ ଯଦ୍ୟପି କୌଣସି ତଥ୍ୟପୂର୍ଣ୍ଣ ବିବରଣୀ ନାହିଁ ତଥାପି ଏହିତକ ସୁସ୍ପଷ୍ଟ ଯେ ତାଙ୍କର ବୁଦ୍ଧି ଅବଶ୍ୟ ଅଲୌକିକ ହୋଇଥିବ । ତାହା ନ ହୋଇଥିଲେ ପ୍ରତି ପକ୍ଷର ବ୍ରାହ୍ମଣମାନେ ମଧ୍ୟ ତାଙ୍କୁ ଈଶ୍ୱରଙ୍କର ସାକ୍ଷାତ୍ ନବମ ଅବତାର ବୋଲି ଗ୍ରହଣ କରି ନ ଥାନ୍ତେ । ଗୀତ ଗୋବିନ୍ଦର ପ୍ରାରମ୍ଭରେ ଜୟଦେବ କହି ଅଛନ୍ତି:—

ନିନ୍ଦସି ଯଜ୍ଞବିଧେରହହ ଶ୍ରୁତିଜାତଂ
ସଦୟ ହୃଦୟ ଦର୍ଶିତ ପଶୁଘାତଂ
କେଶବ ଧୃତ ବୁଦ୍ଧ ଶରୀର ଜୟ ଜଗଦୀଶ ହରେ ।

···ଖ୍ରୀଷ୍ଟାବ୍ଦର ପ୍ରାରମ୍ଭରେ ବୁଦ୍ଧ ଏବଂ ବ୍ରାହ୍ମଣମାନଙ୍କ ମଧ୍ୟରେ ବଡ଼ ବାଦ ବିବାଦ ହେଲା । ଶଙ୍କରାଚାର୍ଯ୍ୟ ବୌଦ୍ଧ ମତକୁ ଖଣ୍ଡନ କଲେ ଓ ବ୍ରାହ୍ମଣ ଧର୍ମର ପୁନଃ ପ୍ରତିଷ୍ଠା କଲେ । ଏହିପରି ବୌଦ୍ଧମାନଙ୍କର ପରାଜୟ ହେତୁ, ନିଜ ଇଚ୍ଛାରେ ହେଉ କିମ୍ବା ରାଜାଙ୍କ ଆଦେଶ ହେତୁ ହେଉ, ସେମାନେ ଦେଶତ୍ୟାଗ କରି ଚାଲିଗଲେ । କିଏ ତିବ୍ବତରେ, କିଏ ଚୀନରେ, କିଏ ବା ଲଙ୍କାରେ ଯାଇ ବାସ କଲେ ।” ଏ ଉଦ୍ଧୃତିରୁ, ସେ ସମୟର ଇଂରାଜୀ ଭିତାଭିଜ୍ଞ ହିନ୍ଦୁମାନଙ୍କର ବୌଦ୍ଧଧର୍ମ ସଂପର୍କରେ କିପରି ଧାରଣା ଥିଲା, ଅନୁମାନ କରା ଯାଇପାରେ ।

## ଲାଇଟ୍ ଅଫ୍ ଏସିଆ’ର ପରିଣାମ

ଏହା ପରେ ୧୮୭୯ ଖ୍ରୀଷ୍ଟାବ୍ଦରେ ଏଡ଼୍ଉଇନ୍ ଆର୍ନଲ୍ଡ଼ (Edwin Arnold)ଙ୍କର ‘ଲାଇଟ୍ ଅଫ୍ ଏସିଆ’ (Light of Asia) ନାମକ ବିଖ୍ୟାତ କାବ୍ୟଗ୍ରନ୍ଥ ପ୍ରକାଶ ଲାଭ କଲା । ତଦ୍ଦ୍ୱାରା

ଇଂରାଜୀ ଜାଣିଥିବା ହିନ୍ଦୁମାନଙ୍କ ମଧ୍ୟରେ ବୁଦ୍ଧଙ୍କ ପ୍ରତି ଆଦର ବଢ଼ିଗଲା । କ୍ରମେ ଦିନକୁ ଦିନ ଏହି ଧାରଣା ଦୃଢ଼ ହେଲା ଯେ ଯାଗ ଯଜ୍ଞକୁ ଧ୍ୱଂସ କରି, 'ଅହିଂସା ପରମୋଧର୍ମଃ'ର ସ୍ଥାପନ ପାଇଁ ବୁଦ୍ଧ ଅବତାର ଗ୍ରହଣ କରିଥିଲେ । ଆଜି ମଧ୍ୟ ଢେର ଅଧିକ ପରିମାଣରେ ଲୋକଙ୍କର ଏହି ଧାରଣା ଅଛି । ଏହି ଧାରଣା କେତେଦୂର ତଥ୍ୟମୂଳକ ତାହା ଜାଣିବା ପାଇଁ ବୁଦ୍ଧଦେବଙ୍କର ସମସାମୟିକ ଶ୍ରମଣଙ୍କର ତଥା ସ୍ୱୟଂ ବୁଦ୍ଧଦେବଙ୍କର ଯାଗଯଜ୍ଞ ସମ୍ପର୍କରେ ବକ୍ତବ୍ୟ କଣ ଥିଲା, ତାହା ବିଚାର କରିବା ଆବଶ୍ୟକ ।

## ହରିକେଶିବଳ କଥା

ଶ୍ରମଣ ସଂପ୍ରଦାୟମାନଙ୍କ ମଧ୍ୟରୁ ବର୍ତ୍ତମାନ କେବଳ ବୌଦ୍ଧ ଓ ଜୈନମାନଙ୍କର ଗ୍ରନ୍ଥହିଁ ମିଳୁଅଛି । ସେମଧ୍ୟରୁ ଜୈନମାନଙ୍କର 'ଉତ୍ତରାଧ୍ୟୟନ ସୂତ୍ର'ରେ ହରିକେଶିବଳର କଥା କୁହାଯାଇଛି । ତଳେ ତହିଁର ସାରାଂଶ ଦିଆଯାଉଛି ।

ହରିକେଶିବଳ ଜଣେ ଚଣ୍ଡାଳ ( ଶ୍ୱପାକ )ର ପୁତ୍ର । ସେ ଜୈନଭିକ୍ଷୁ ହୋଇ ମହାତପସ୍ୱୀ ହେଲା । କୌଣସି ଏକ ସମୟରେ ସେ ମାସେକାଳ ଉପବାସ କରି ପାରଣା ଦିନ ଭିକ୍ଷାଟନ କରି କରି ଗୋଟାଏ ମହାଯଜ୍ଞ-ସ୍ଥଳରେ ଯାଇ ଉପସ୍ଥିତ ହେଲା । ତାହାର ସେହି ମଳିନ ବସ୍ତ୍ରାଚ୍ଛାଦିତ କୃଶ ଶରୀର ଦେଖି ଯାଜକ ବ୍ରାହ୍ମଣମାନେ ତାକୁ ଧିକ୍କାର କଲେ ଏବଂ ସେ ସ୍ଥଳରୁ ଚାଲିଯିବାକୁ କହିଲେ । ସେହି ସ୍ଥାନରେ, ତିନ୍ଦୁକ ବୃକ୍ଷରେ ବାସ କରୁଥିବା ଜଣେ ଯକ୍ଷ ଗୁପ୍ତଭାବରେ, ହରିକେଶିବଳର ସ୍ୱରରେ ବ୍ରାହ୍ମଣମାନଙ୍କୁ କହିଲା— "ହେ ବ୍ରାହ୍ମଣମାନେ ! ତୁମେ କେବଳ ଶବ୍ଦର ବୋଝ ବହିଛ, ତୁମେ

ବେଦାଧ୍ୟୟନ କରିଛ ; କିନ୍ତୁ ବେଦର ଅର୍ଥ ବୁଝି ନାହିଁ ।” ସେହି ଅଧ୍ୟାପକ ବ୍ରାହ୍ମଣମାନେ ମନେ କଲେ ଯେ ଭିକ୍ଷୁ ଏପରି କହି ସେମାନଙ୍କୁ ଅପମାନ ଦେଉଛି । ତେଣୁ ସେମାନେ ନିଜ ନିଜର ଯୁବକ ପୁତ୍ରମାନଙ୍କୁ, ହରିକେଶିବଳକୁ ମାରିବାକୁ କହିଲେ । ସେ କଥା ଶୁଣି ଯୁବକମାନେ ତାକୁ ଠେଙ୍ଗା, ବାଡ଼ି ଓ କୋରଡ଼ାରେ ପ୍ରହାର କଲେ । କୋସଳିକ ରାଜାଙ୍କ କନ୍ୟା ଏବଂ ପୁରୋହିତଙ୍କର ସ୍ତ୍ରୀ ଭଦ୍ରା, ଦୁହେଁ ତାହାଁର ନିଷିଦ୍ଧ କଲେ । ସେତିକିବେଳେ ଅନେକ ଯକ୍ଷ ଆସି ସେହିଯୁବକମାନଙ୍କୁ ଆଘାତ ଦେଇ ରକ୍ତାକ୍ତ କରିଦେଲେ । ତହିଁରେ ବ୍ରାହ୍ମଣମାନେ ଭୀତତ୍ରସ୍ତ ହୋଇଗଲେ । ଶେଷରେ, ହରିକେଶିବଳକୁ କ୍ଷମା ପ୍ରାର୍ଥନା କରି ତାକୁ ନାନା ପଦାର୍ଥ ସହିତ ଉତ୍ତମ ଅନ୍ନ ପ୍ରଦାନକଲେ ।

ଅନ୍ନ ଗ୍ରହଣକରି ସାରି ହରିକେଶିବଳ ସେମାନଙ୍କୁ କହିଲ—“ହେ ବ୍ରାହ୍ମଣ ଗଣ ! ତୁମ୍ଭେମାନେ ନିଆଁ ଜାଳି ପାଣି ଦ୍ୱାରା ବାହାରର ଶୁଦ୍ଧି ଲାଗି ଚେଷ୍ଟା କରୁଛ କାହିଁକି ? ଦାର୍ଶନିକମାନେ କହିଅଛନ୍ତି ଯେ ତୁମର ଏହି ବାହାର ଶୁଦ୍ଧିଯୋଗ୍ୟ ନୁହେ ।” ତା ପରେ ବ୍ରାହ୍ମଣମାନେ ପଚାରିଲେ, ‘ହେ ଭିକ୍ଷୁ ! ଆମେ କି ପ୍ରକାର ଯଜ୍ଞ କରିବୁ ଓ କର୍ମକୁ କିପରି ବିନାଶ କରିବୁ ?’

ହରି—ସାଧୁମାନେ ଛଅଜୀବ କାୟର (୧) ହିଂସା ନ କରି, ଅସତ୍ୟ ଭାଷଣ ତଥା ଚୋରି ନ କରି, ପରଗ୍ରହ, ସ୍ତ୍ରୀ ସମ୍ମାନ

(୧) ଜୀବକାୟ, ଅପ୍‌କାୟ, ବାୟୁକାୟ, ଅଗ୍ନିକାୟ, ବନସ୍ପତିକାୟ ଓ ତ୍ରସକାୟ, ଏହି ଛଅଟି ଜୀବଭେଦ । ଜୈନମାନଙ୍କ ମତରେ ପୃଥ୍ୱୀ-ପରମାଣୁ ପ୍ରକୃତିରେ ମଧ୍ୟ ଜୀବଅଛନ୍ତି । ବନସ୍ପତି କାୟ, ଆର୍ଥାତ୍ ବୃକ୍ଷାଦି ବନସ୍ପତି ବର୍ଗ । ତ୍ରସକାୟ ସମସ୍ତ ଚରାଚର ପ୍ରାଣୀଙ୍କୁ ବୁଝାଏ ।

ଏବଂ ମାୟା ପରିତ୍ୟାଗ କରି ଦାନ୍ତତ୍ୱ ଆଚରଣ କରନ୍ତି । ସେମାନେ ପଞ୍ଚ ସଂବରରୁ(୧)ସଂବୃତ ହୋଇ,ଜୀବନର ଅଭିଳାଷ ନ ରଖି, ଦେହର ଆଶା ଛାଡ଼ି, ଦେହ ବିଷୟରେ ଅନାସକ୍ତ ହୁଅନ୍ତି ଓ (ଏହିପରି) ଉତ୍ତମ ଯଜ୍ଞ ଅନୁଷ୍ଠାନ କରନ୍ତି ।"

ବ୍ରାହ୍ମଣ—ତୁମର ଅଗ୍ନି କିପରି ? କୁଣ୍ଡ କିପରି ? ସ୍ରୁବ କିପରି ? ଉପଲ କିପରି ? ସମିଧ କିପରି ? ଶାନ୍ତି କିପରି ଏବଂ କେଉଁ ହୋମ ବିଧିରେ ତୁମେ ଯଜ୍ଞ କରୁଛ ?

ହରି—ତପଶ୍ଚରଣ ହେଉଛି ମୋର ଅଗ୍ନି । ଜୀବ ହେଉଛି ଅଗ୍ନିକୁଣ୍ଡ, ଯୋଗ ହେଉଛି ସ୍ରୁବ, ଶରୀର ହେଉଛି ଉପଲ, କର୍ମ ହେଉଛି ସମିଧ ଓ ସଂଯମ ହେଉଛି ଶାନ୍ତି । ଏହିପରି ବିଧିରେ ଋଷିମାନଙ୍କ ଦ୍ୱାରା ବର୍ଣ୍ଣିତ ଯଜ୍ଞ ମୁଁ ନିଷ୍ପନ୍ନ କରୁଛି ।

ବ୍ରାହ୍ମଣ—ତୁମର ପୁଷ୍କରିଣୀ କେଉଁଠି ଓ ଶାନ୍ତିତୀର୍ଥ କିଏ ?

ହରି—"ଧର୍ମ ମୋର ପୁଷ୍କରିଣୀ ଏବଂ ବ୍ରହ୍ମଚର୍ଯ୍ୟ ମୋର ଶାନ୍ତିତୀର୍ଥ, ଯେଉଁଠାରେ ସ୍ନାନ କରି ବିମଳ ବିଶୁଦ୍ଧ ମହର୍ଷି ଉତ୍ତମ ପଦ ଲାଭ କରନ୍ତି ।"

ଏହା ବ୍ୟତୀତ ଯାଗ ଯଜ୍ଞର ନିଷେଧ କରୁଥିବା ଅନ୍ୟ ଏକ ଗାଥା ଉତ୍ତରାଧ୍ୟୟନ ସୂତ୍ରର ପଞ୍ଚବିଂଶ ଅଧ୍ୟାୟରେ ଦେଖିବାକୁ ମିଳେ । ତାହା ହେଉଛି—

ପସୁବଂଧା ସବ୍ବେ ବେୟା ଜଟ୍ଠଂ ଚ ପାବକମ୍ମୁଣା
ନତଂ ତାୟଂତି ଦୁସ୍ସୀଲଂ କମ୍ମାଣି ବଲବଂତିହ ॥

(୧) ପଞ୍ଚ ସମ୍ବର ହେଉଛି—ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ ଓ ଅପରିଗ୍ରହ । ଏଗୁଡ଼ିକୁ 'ଯମ' କୁହାଯାଏ । ଦେଖନ୍ତୁ, ସାଧନ ପାଦ, ୩୦ ସୂତ୍ର ।

ଅର୍ଥାତ୍, ସମସ୍ତ ବେଦରେ ପଶୁବଧ କଥା କୁହା ଯାଇଛି । ପୁଣି ଯଜ୍ଞ ପାପକର୍ମ ଦ୍ୱାରା ମିଶ୍ରିତ । ସେହି ପାପକର୍ମ, ଯଜ୍ଞ କରିବା ଲୋକଙ୍କୁ ରକ୍ଷା କରି ନ ପାରେ ।

ହରି କେଶିବଳର କଥାରେ କେବଳ ଯଜ୍ଞର ନିଷେଧ କରା ଯାଇଛି କିନ୍ତୁ ଏହି ଗାଥାରେ କେବଳ ଯଜ୍ଞ ନୁହେ, ବେଦର ମଧ୍ୟ ନିଷେଧ କରା ଯାଇଛି ।

## ଶ୍ରମଣ ସଂପ୍ରଦାୟର ବେଦ ବିରୋଧ

ସର୍ବଦର୍ଶନ ସଂଗ୍ରହରେ ଚାର୍ବାକ ମତ ସନ୍ନିବେଶିତ ହୋଇ ଅଛି । ସେହି ମତର ବିଚାରରୁ ଅନୁମାନ କରାଯାଏ ଯେ, ଅଜିତ କେସ କମ୍ବଳ ନାସ୍ତିକ ମତ ପ୍ରଦର୍ଶକ ହୋଇ କେବଳ ଯାଗ ଯଜ୍ଞ ଉପରେ ନୁହେ, ବେଦର ମଧ୍ୟ ସମାଲୋଚନା କରିଛନ୍ତି । ସର୍ବଦର୍ଶନ ସଂଗ୍ରହରେ ଚାର୍ବାକ ମତ ପ୍ରତିପାଦନ ଲାଗି ଯେଉଁ କେତୋଟି ଶ୍ଳୋକ ପ୍ରଦତ୍ତ ହୋଇଛି, ତହିଁରେ ନିମ୍ନୋଦ୍ଧୃତ ଦେଢ଼ଟି ଶ୍ଳୋକ ମଧ୍ୟ ଅନ୍ତର୍ଭୁକ୍ତ ।

ପଶୁଶ୍ଚେନ୍ନିହତଃ ସ୍ୱର୍ଗଂ ଜ୍ୟୋତିଷ୍ଟୋମେ ଗମିଷ୍ୟତି
ସ୍ୱପିତା ଯଜମାନେନ ତତ୍ର କସ୍ମାନ୍ନ ହିଂସ୍ୟତେ ॥
ତ୍ରୟୋ ବେଦସ୍ୟ କର୍ତ୍ତାରୋ ଭଣ୍ଡଧୂର୍ତ୍ତ-ନିଶାଚରାଃ ।

ଅର୍ଥାତ୍, ଅଗ୍ନିଷ୍ଟୋମ ଯଜ୍ଞରେ ମରିଯିବା ପଶୁ ଯଦି ସ୍ୱର୍ଗକୁ ଯାଏ, ତେବେ ସେହି ଯଜ୍ଞର ଯଜମାନ ନିଜ ପିତାକୁ ମାରି ଦେଉନାହିଁ କାହିଁକି ? ବେଦର କର୍ତ୍ତା ହେଉଛନ୍ତି ତିନିଜଣ—ଭଣ୍ଡ, ଧୂର୍ତ୍ତ ଓ ରାକ୍ଷସ ।

ପ୍ରାୟ ସମସ୍ତ ଶ୍ରମଣ ସଂପ୍ରଦାୟ ଅଳ୍ପାଧିକ ପରିମାଣରେ ବେଦର ସ୍ପଷ୍ଟ ନିଷେଧ କରୁଥିଲେ ବୋଲି ଏଥିରୁ ଜଣା ଯାଉଛି । ଏହି ହେତୁ ସେମାନଙ୍କୁ ବେଦ ନିନ୍ଦକ ବୋଲି କହିବାରେ କୌଣସି ଆପତ୍ତି ନ ଥିଲା । କିନ୍ତୁ ବୁଦ୍ଧଦେବ ଯେ ବେଦର ନିନ୍ଦା କରିଥିଲେ, କେଉଁଠାରେ ହେଲେ ତାହାଁର ପ୍ରମାଣ ମିଳୁ ନାହିଁ । ବରଂ ତାହାଁର ଓଲଟା, ଅର୍ଥାତ୍ ବେଦାଭ୍ୟାସର ଗୌରବ ପ୍ରତିସ୍ଥଳରେ ଦେଖିବାକୁ ମିଳୁଛି । ବୁଦ୍ଧଙ୍କର ଭିକ୍ଷୁ ସଂଘରେ ମହାକାତ୍ୟାୟନଙ୍କ ପରି ବେଦପାରଙ୍ଗତ ବ୍ରାହ୍ମଣ ମଧ୍ୟ ଥିଲେ । ଅତଏବ ଭଗବାନ୍ ବୁଦ୍ଧ ବେଦ ନିନ୍ଦକ ଥିଲେ ବୋଲି ସମ୍ଭବପର ବୋଧ ହେଉ ନାହିଁ । କିନ୍ତୁ ଅନ୍ୟ ଶ୍ରମଣମାନଙ୍କ ପରି, ସେ ମଧ୍ୟ ଯାଗ ଯଜ୍ଞରେ ବଳି ଦିଆ ଯାଉଥିବା ଗାଈ, ବଳଦ ଓ ଅନ୍ୟାନ୍ୟ ପ୍ରାଣୀଙ୍କର ହିଂସାକୁ ଅବୈଧ ବୋଲି ମନେ କରୁଥିଲେ ।

## ଯଜ୍ଞର ନିଷେଧ

'କୋସଲ ସଂଯୁତ୍ତ'ରେ ଯାଗ ଯଜ୍ଞର ନିଷେଧ ସଂପର୍କରେ ଗୋଟିଏ ସୂତ୍ର ଅଛି । ତାହାଁର ସାରକଥା ହେଉଛି —

ଭଗବାନ୍ ବୁଦ୍ଧ ଶ୍ରାବସ୍ତୀରେ ଅବସ୍ଥାନ କରୁଥିଲେ । ସେହି ସମୟରେ କୋସଲର ରାଜା ପସେନଦିଙ୍କର ମହାଯଜ୍ଞ ଆରମ୍ଭ ହେଲା । ତାହାଁରେ ପାଞ୍ଚଶହ ବଳଦ, ପାଞ୍ଚଶହ ଅଣ୍ଡିରା ବାଛୁରି, ପାଞ୍ଚଶହ ମାଈ ବାଛୁରି, ପାଞ୍ଚଶହ ଛେଳି ଓ ପାଞ୍ଚଶହ ମେଣ୍ଢା ବଳି ପଡ଼ିବା ପାଇଁ ଯୂପରେ ବନ୍ଧା ହୋଇଥିଲେ । ରାଜାଙ୍କର ଦାସ, ଦୂତ ଓ କର୍ମଚାରୀମାନେ ଦଣ୍ଡଭୟରେ ଡରିମରି ଆଖିରୁ ଲୁହ ଗଡ଼ାଇ, କାନ୍ଦି କାନ୍ଦି ଯଜ୍ଞ କାର୍ଯ୍ୟ କରୁଥିଲେ ।

ସେସବୁ ଦେଖି ଭିକ୍ଷୁମାନେ ଭଗବାନଙ୍କୁ ଜଣାଇଲେ । ଉତ୍ତରରେ ଭଗବାନ୍ କହିଲେ—

ଅସ୍ସମେଧଂ ପୁରିସମେଧଂ ସମ୍ମାପାସଂ ବାଜପେୟଂ ।
ନିରଗ୍ଗଲଂ ମହାରମ୍ଭା ନତେ'ହୋନ୍ତି ମହପ୍ଫଂଲା ॥
ଅଜେଳକା ଚ ଗାବୋଚ ବିବିଧା ଯତ୍ଥ ହଞ୍ଞରେ ।
ନତଂ ସମ୍ମଗ୍ଗତା ଯଞ୍ଞଂ ଉପଯନ୍ତି ମହେସିନୋ ॥
ଯେ ଚ ଯଞ୍ଞା ନିରାରମ୍ଭା ଯଜନ୍ତି ଅନୁକୂଲଂ ସଦା ।
ଅଜେଳକା ଚ ଗବୋଚ ବିବିଧା ନେତ୍ଥ ହଞ୍ଞରେ ॥
ଏତଂ ସମ୍ମଗ୍ଗତା ଯଞ୍ଞଂ ଉପଯନ୍ତି ମହେସିନୋ ।
ଏତଂ ଯଜେଥ ମେଧାବୀ ଏସୋ ଯଞ୍ଞୋ ମହତ୍ଫଲୋ ॥
ଏତଂ ହି ଯଜମାନସ୍ୟ ସେୟ୍ୟୋ ହୋତି ନ ପାପିୟ୍ୟୋ ।
ଯଞ୍ଞୋଚ ବିପୁଲୋ ହୋତି ପସୀଦନ୍ତି ଚ ଦେବତା ॥

ଅର୍ଥାତ୍, ଅଶ୍ୱମେଧ, ପୁରୁଷମେଧ, ସମ୍ୟକ୍ ପାଶ, ବାଜପେୟ ଓ ନିରର୍ଗଳ ଯଜ୍ଞର ଅନୁଷ୍ଠାନ ବଡ଼ ଅର୍ଥ ସାପେକ୍ଷ ; କିନ୍ତୁ ସେ ସବୁ ମହାଫଳ ଦାୟକ ନୁହନ୍ତି । ଛେଳି, ମେଣ୍ଢା, ଗାଈ ପରି ବିବିଧ ପ୍ରାଣୀ ଯହିଁରେ ମରାଯାଆନ୍ତି, ସଦାଗ୍ରହବନ୍ତ ମହର୍ଷି ସେ ଯଜ୍ଞକୁ ଯାଆନ୍ତି ନାହିଁ । କିନ୍ତୁ ଯେଉଁସବୁ ଯଜ୍ଞରେ ପ୍ରାଣୀ ହିଂସା ହୁଏ ନାହିଁ, ଯାହା ସବୁ ଲୋକଙ୍କୁ ପ୍ରିୟ ବୋଧ ହୁଏ ଏବଂ ଯେଉଁଥିରେ ଛେଳି, ମେଣ୍ଢା, ଗାଈ ପ୍ରଭୃତି ବିବିଧ ପ୍ରାଣୀଙ୍କୁ ମରାଯାଏ ନାହିଁ ସେହିଭଳି ଯଜ୍ଞରେ ସଦାଗ୍ରହବନ୍ତ ମହର୍ଷି ଉପସ୍ଥିତ ହୁଅନ୍ତି । ଅତଏବ ବିଜ୍ଞଲୋକ ସେହିପରି ଯଜ୍ଞ କରିବା ବିଧେୟ । ସେହି ଯଜ୍ଞ ମହା ଫଳଦାୟକ—ତହିଁରେ ଯଜମାନର କଲ୍ୟାଣ ହୁଏ, ଅକଲ୍ୟାଣ ହୁଏ ନାହିଁ । ସେହି ଯଜ୍ଞ ବୃଦ୍ଧି ଲାଭ କରେ ଏବଂ ଦେବତାମାନେ ସନ୍ତୁଷ୍ଟ ହୁଅନ୍ତି ।

# ଯଜ୍ଞରେ ପାପ ହୁଏ କାହିଁକି ?

ବୁଦ୍ଧଙ୍କର ବକ୍ତବ୍ୟ ହେଉଛି ଏହି ଯେ, ଯଜ୍ଞରେ ପ୍ରାଣିବଧ ଘଟୁ ଥିବାରୁ ଯଜମାନ କାୟ-ମନ-ବଚନରେ ଅକୁଶଳ କର୍ମ ଆଚରଣ କରେ । ଏହି ହେତୁରୁ ଯଜ୍ଞ ହେଉଛି ଅମଙ୍ଗଳ । ଏ ସମ୍ପର୍କରେ ଅଙ୍ଗୁତ୍ତରନିକାୟର ସୁତ୍ତକ ନିପାତରେ ଯେଉଁ ସୁତ୍ତଟି ଅଛି ତାହାର ସାର କଥା ହେଉଚି—

ଥରେ ଭଗବାନ୍ ବୁଦ୍ଧ ଶ୍ରାବସ୍ତୀର ଜେତବନରେ ଅନାଥ ପିଣ୍ଡିକର ଆଶ୍ରମରେ ରହିଥିଲେ । ସେ ସମୟରେ ଉଦ୍‌ଗତଶରୀର (ଉଗ୍‌ଗତ ସରୀର) ନାମକ ଜଣେ ବ୍ରାହ୍ମଣ ମହାଯଜ୍ଞର ଆୟୋଜନ କରୁଥିଲେ । ପାଞ୍ଚଶହ ବଳଦ, ପାଞ୍ଚଶହ ଅଣ୍ଡିରା ବାଛୁରୀ, ପାଞ୍ଚଶହ ମାଈ ବାଛୁରୀ, ପାଞ୍ଚଶହ ଛେଳି ଓ ପାଞ୍ଚଶହ ମେଣ୍ଢା ବଳି ନିମନ୍ତେ ଯୂପରେ ବନ୍ଧା ହୋଇଥିଲେ । ସେତେବେଳେ ଉଦ୍‌ଗତଶରୀର, ଭଗବାନ୍‌ଙ୍କ ନିକଟକୁ ଯାଇ, କୁଶଳ ପ୍ରଶ୍ନ କରି ଏକ ପାଖରେ ବସିଗଲେ । ସେ କହିଲେ—"ହେ ଗୌତମ ! ମୁଁ ଶୁଣିଛି ଯେ ଯଜ୍ଞ ନିମନ୍ତେ ଅଗ୍ନି ସଂଯୋଗ ଓ ଯୂପ ସ୍ଥାପନ ହେଉଛି ମହାଫଳ ଦାୟକ ।"

ଭଗବାନ୍ କହିଲେ—"ହେ ବ୍ରାହ୍ମଣ ମୁଁ ମଧ୍ୟ ଶୁଣିଛି ଯେ ଯଜ୍ଞ ନିମିତ୍ତ ଅଗ୍ନି ସଂଯୋଗ ଓ ଯୂପ ସ୍ଥାପନ ମହାଫଳ ଦାୟକ ।" ବ୍ରାହ୍ମଣ ସେହି ବାକ୍ୟକୁ ଆହୁରି ଦୁଇଥର କହିଲେ । ଭଗବାନ୍ ବୁଦ୍ଧ ମଧ୍ୟ ତାଙ୍କୁ ସେହି ଉତ୍ତର ଦେଲେ । ତାହାପରେ ବ୍ରାହ୍ମଣ କହିଲେ— "ତାହା ହେଲେ ଆମ ଦୁହିଁଙ୍କର ମତ ଏକ ।"

ତାହାପରେ ଆନନ୍ଦ କହିଲେ—"ହେ ବ୍ରାହ୍ମଣ ! ତୁମର ଏ ପ୍ରଶ୍ନ ଠିକ୍ ନୁହେ ।" "ମୁଁ ଏପରି ଶୁଣିଛି" ନ କହି ତା ବଦଳରେ

କହି, 'ମୁଁ ଯଜ୍ଞ ନିମନ୍ତେ ଅଗ୍ନି ସଂଯୋଗ ଓ ଯୂପସ୍ଥାପନ କରିବାକୁ ଲାଗି ପଡ଼ିଛି । ଏ ସଂପର୍କରେ ଭଗବାନ୍ ମୋତେ ଏହିପରି ଉପଦେଶ ଦିଅନ୍ତୁ ଯାହାଦ୍ୱାରା ମୋର ଚିରକାଳ କଲ୍ୟାଣ ହେବ ।'

ଆନନ୍ଦଙ୍କ କହିବା ଅନୁସାରେ ବ୍ରାହ୍ମଣ ଭଗବାନଙ୍କୁ ପ୍ରଶ୍ନ କରିବାରୁ ସେ ଉତ୍ତର ଦେଲେ, 'ଯେଉଁ ଲୋକ ଯଜ୍ଞ ନିମିତ୍ତ ଅଗ୍ନି ସଂଯୋଗ କରେ ଏବଂ ଯୂପ ସ୍ଥାପନ କରେ ସେ ତିନୋଟି ଦୁଃଖ-ଉତ୍ପାଦକ ଅକୁଶଳ ଶସ୍ତ୍ର ଉଠାଇଥାଏ । ସେ ଗୁଡ଼ିକ ହେଉଛି କାୟ-ଶସ୍ତ୍ର, ବାକ୍-ଶସ୍ତ୍ର ଓ ଚିତ୍ତ-ଶସ୍ତ୍ର । ଯେଉଁଲୋକ ଯଜ୍ଞ ଆରମ୍ଭ କରେ ତାହାର ମନରେ ଏହି ଅକୁଶଳ ବିଚାର ଜାତ ହୁଏ ଯେ— ଏତେ ବଳଦ, ମାଈ ବାଛୁରୀ, ଅଣ୍ଡିରା ବାଛୁରୀ, ଏତେ ଛେଳି ଏତେ ମେଣ୍ଢା, ମରା ଯାଉଛନ୍ତି । ସର୍ବପ୍ରଥମେ ସେ ଏହିପରି ଅକୁଶଳ ଚିତ୍ତ-ଶସ୍ତ୍ର ଉଠାଇ ଥାଏ । ପୁଣି ନିଜ ମୁହଁରେ ସମସ୍ତ ପ୍ରାଣୀ ବଧ ପାଇଁ ସେ ଆଦେଶ ଦିଏ । ଏହା ଫଳରେ ଦୁଃଖ-ଉତ୍ପାଦକ ଅକୁଶଳ ବାକ୍-ଶସ୍ତ୍ର ସେ ଉଠାଇ ଥାଏ । ତାହାପରେ ସେହି ପ୍ରାଣୀମାନଙ୍କୁ ମାରିବା ଆରମ୍ଭ କରିଦିଏ ! ଏହାଦ୍ୱାରା ସେ ଦୁଃଖ-ଉତ୍ପାଦକ ଅକୁଶଳ କାୟ-ଶସ୍ତ୍ର ଉଠାଇଥାଏ । ହେ ବ୍ରାହ୍ମଣ ! ଏହି ତିନି ପ୍ରକାର ଅଗ୍ନି ସର୍ବଥା ତ୍ୟାଗ କରିବାକୁ ହେବ । କଣ କଣ ? କାମାଗ୍ନି, ଦ୍ୱେଷାଗ୍ନି ଓ ମୋହାଗ୍ନି । ଯେଉଁ ମନୁଷ୍ୟ କାମାଭିଭୂତ ହୁଏ ସେ କାୟିକ, ବାଚିକ ଓ ମାନସିକ କୁକର୍ମକରେ । ତାହା ଫଳରେ ସେ ମରଣୋତ୍ତର-ଦୁର୍ଗତି ଲାଭକରେ । ସେହିପରି ଦ୍ୱେଷ ଏବଂ ମୋହ ଦ୍ୱାରା ଅଭିଭୂତ ମନୁଷ୍ୟ ମଧ୍ୟ କାୟିକ, ବାଚିକ ଓ ମାନସିକ କୁକର୍ମ କରି ଦୁର୍ଗତି ଲାଭ କରେ । ଅତଏବ ଏହି ତିନି ଅଗ୍ନି ସର୍ବଥା ପରିତ୍ୟାଜ୍ୟ । ଏଗୁଡ଼ିକୁ ସେବନ କରିବା ଉଚିତ ନୁହେ ।

"ହେ ବ୍ରାହ୍ମଣ ! ଏହି ତିନି ଅଗ୍ନିର ସତ୍କାରକରାଯାଉ, ଏଗୁଡ଼ିକୁ ସମ୍ମାନ ଦିଆଯାଉ । ଏଗୁଡ଼ିକର ପୂଜା ତଥା ପରିଚର୍ଯ୍ୟା ଭଲ ଭାବରେ ଓ ସୁଖରେ କରାଯାଉ । ଏ ଅଗ୍ନି ଗୁଡ଼ିକ କଣ ? ଆହବନୀୟାଗ୍ନି ( ଆହୁନେୟ୍ୟଗ୍‌ଗି ) ଗାର୍ହପତ୍ୟାଗ୍ନି (ଗହପତଗ୍‌ଗି) ଓ ଦକ୍ଷିଣାଗ୍ନି (ଦକ୍‌ଖିଣେୟ୍ୟଗ୍‌ଗି) । ପିତାମାତାଙ୍କୁ ଆହବନୀୟାଗ୍ନି ରୂପେ ବୁଝିବା ଉଚିତ ଓ ଅତ୍ୟନ୍ତ ସତ୍କାରସହକାରେ ତାଙ୍କର ପୂଜା କରିବା ବିଧେୟ । ପତ୍ନୀ ଓ ସନ୍ତାନ ସନ୍ତତି, ଦାସ ତଥା ଶ୍ରମିକଙ୍କୁ ଗାର୍ହପତ୍ୟାଗ୍ନି ରୂପେ ବୁଝିବା ଆବଶ୍ୟକ ଓ ଆଦର ପୂର୍ବକ ସେମାନଙ୍କର ପୂଜାକରିବା ଉଚିତ । ଶ୍ରମଣ-ବ୍ରାହ୍ମଣମାନଙ୍କୁ ଦକ୍ଷିଣାଗ୍ନି ରୂପେ ବୁଝିବା ଦରକାର ଓ ସତ୍କାର ସହକାରେ ସେମାନଙ୍କର ପୂଜା କରିବା ଉଚିତ । ହେ ବ୍ରାହ୍ମଣ ! ଏହି କାଠର ନିଆଁକୁ କେତେବେଳେ ଜଳାଇବାକୁ ହୁଏ, କେତେବେଳେ ଉପେକ୍ଷା କରିବାକୁ ହୁଏ, କେତେବେଳେ ବା ତାକୁ ଲିଭାଇବାକୁ ପଡ଼େ ।" (୧)

ଭଗବାନଙ୍କର ଏହି କଥା ଶୁଣି ବ୍ରାହ୍ମଣ ଉଦ୍‌ଗତ ଶରୀର ତାଙ୍କର ଉପାସକ ହୋଇ ପଡ଼ିଲେ ଏବଂ କହିଲେ—"ହେ ଗୌତମ ! ପାଞ୍ଚଶହ ବଳଦ, ପାଞ୍ଚଶହ ମାଈ ବାଛୁରୀ, ପାଞ୍ଚଶହ ଅଣ୍ଡିରା ବାଛୁରୀ, ପାଞ୍ଚଶହ ଛେଳି ଓ ପାଞ୍ଚଶହ ମେଣ୍ଢା ମୁଁ ଯୂପରୁ ଫିଟାଇ ଦେଉଛି । ସେମାନଙ୍କୁ ମୁଁ ଜୀବନ ଦାନ କରୁଛି । କଅଁଳ ଘାସ ଖାଇ ଓ ଥଣ୍ଡା ପାଣି ପିଇ ସେମାନେ ଶୀତଳ ଛାୟାରେ ଆନନ୍ଦରେ ରହନ୍ତୁ ।"

(୧) ଏହି ତିନି ଅଗ୍ନି ବ୍ରାହ୍ମଣ ଗ୍ରନ୍ଥରେ ପ୍ରସିଦ୍ଧ । ଅମରକୋଷରେ ଅଛି — "ଦକ୍ଷିଣାଗ୍ନିର୍ଗାର୍ହପତ୍ୟା ହବନୀୟୌ ତ୍ରୟୋଗ୍ନୟଃ" । ଏମାନଙ୍କ ପରିଚର୍ଯ୍ୟା ବିଧି ଓ ଫଳ ଗୃହ୍ୟସୂତ୍ରାଦିରେ ବର୍ଣ୍ଣିତ ।

# ଯଜ୍ଞରେ ତପଶ୍ଚର୍ଯ୍ୟାର ମିଶ୍ରଣ

ବୁଦ୍ଧଙ୍କର ସମକାଳୀନ ଯାଗ ଯଜ୍ଞରେ ବ୍ରାହ୍ମଣମାନେ ତପଶ୍ଚର୍ଯ୍ୟା ଯୋଗ କରିଥିଲେ । ବୈଦିକ ମୁନିମାନେ ଅରଣ୍ୟରେ ରହି ତପସ୍ୟା କରୁଥିଲେ ମଧ୍ୟ ସୁବିଧାନୁସାରେ ମଝି ମଝିରେ ଶ୍ରେଷ୍ଠ ବଡ଼ ଯଜ୍ଞ କରୁଥିଲେ । ଏଥିରୁ ଗୋଟିଏ ଦୁଇଟି ଉଦାହରଣ ଆମେ ତୃତୀୟ ଅଧ୍ୟାୟରେ ଦେଇଛୁ । ତାହାଛଡ଼ା ଯାଗଯଜ୍ଞର ଅନ୍ୟଏକ ଉଦାହରଣ ଦିଆଯାଉ । ଯାଜ୍ଞବଲ୍କ୍ୟ ବଡ଼ ତପସ୍ୱୀ ତଥା ବ୍ରହ୍ମନିଷ୍ଠ ରୂପେ ବିବେଚିତ ହେଉଥିଲେ । ତଥାପି ସେ ରାଜା ଜନକଙ୍କର ଯଜ୍ଞରେ ଅଂଶ ଗ୍ରହଣ କରିଥିଲେ । ପୁଣି ଶେଷରେ ଦଶହଜାର ସୁବର୍ଣ୍ଣ ସହିତ ଏକହଜାର ଗାଈ ଦକ୍ଷିଣା ରୂପେ ଗ୍ରହଣ କରିଥିଲେ । (୧)

କିନ୍ତୁ ବୁଦ୍ଧଦେବଙ୍କ ମତରେ ଯଜ୍ଞ ଓ ତପସ୍ୟାର ମିଶ୍ରଣ ହେଉଛି ଦ୍ୱିଗୁଣ ଦୁଃଖ ଦାୟକ । 'କନ୍ଦରକ ସୁତ୍ତ'ରେ(୨) ଭଗବାନ୍ ଚତୁର୍ବିଧ ମନୁଷ୍ୟର ବର୍ଣ୍ଣନା କରିଅଛନ୍ତି:— ୧—ଯେଉଁମାନେ ଆତ୍ମନ୍ତପ ଅଥଚ ପରନ୍ତପ ନୁହନ୍ତି । ୨— ଯେଉଁମାନେ ପରନ୍ତପ ଅଥଚ ଆତ୍ମନ୍ତପ ନୁହନ୍ତି । ୩— ଯେଉଁମାନେ ଆତ୍ମନ୍ତପ ଓ ପରନ୍ତପ ମଧ୍ୟ । ୪— ଯେଉଁମାନେ ଆତ୍ମନ୍ତପ ନୁହନ୍ତି କିମ୍ବା ପରନ୍ତପ ନୁହନ୍ତି ।

ଏହି ଚାରିବିଭାଗ ମଧ୍ୟରୁ ପ୍ରଥମ ବିଭାଗ ହେଉଛି—କଠୋର ତପସ୍ୟା କରୁଥିବା ତପସ୍ୱୀ । ସେ କେବଳ ନିଜକୁ ନୁହେଁ, ଅନ୍ୟକୁ ମଧ୍ୟ କଷ୍ଟ ଦିଅନ୍ତି ନାହିଁ । ଦ୍ୱିତୀୟ, ଘାତକ, ବ୍ୟାଧ ପ୍ରଭୃତି । ସେମାନେ

(୧) ଦେଖନ୍ତୁ ବୃହଦାରଣ୍ୟକ ଉପନିଷଦ୍ ୩ । ୧ । ୧-୨ ।

(୨) ମଜ୍‌ଝିମ ନିକାୟ—ସୁ. ୫୧ ।

ଅନ୍ୟପ୍ରାଣୀଙ୍କୁ କଷ୍ଟ ଦିଅନ୍ତି କିନ୍ତୁ ନିଜକୁ ନୁହେଁ । ତୃତୀୟ, ଯାଗଯଜ୍ଞ କର୍ତ୍ତା । ସେ ନିଜକୁ କଷ୍ଟ ଦିଏ ଏବଂ ଅନ୍ୟମାନଙ୍କୁ କଷ୍ଟ ଦିଏ ମଧ୍ୟ । ଚତୁର୍ଥ, ତଥାଗତ (ବୁଦ୍ଧ)ଙ୍କର ଶ୍ରାବକ । ସେ ନିଜକୁ କିମ୍ବା ଅନ୍ୟଙ୍କୁ ମଧ୍ୟ କଷ୍ଟ ଦିଏ ନାହିଁ ।

ଏହି ଗୃହୋଷ୍ଠିର ବିସ୍ତୃତ ବିବରଣୀ ସେହି ସୂତ୍ରରେ ଦିଆ ଯାଇଛି । ସେଥିରେ ତୃତୀୟ ଶ୍ରେଣୀର ଲୋକଙ୍କୁ ଯେଉଁପରି ବର୍ଣ୍ଣନା କରାଯାଇଛି, ତାର ସାରକଥା ତଳେ ଦିଆଯାଉଛି ।

ଭଗବାନ୍ କହୁଛନ୍ତି, "ହେ ଭିକ୍ଷୁଗଣ ! ଆତ୍ମନ୍ତପ ତଥା ପରନ୍ତପ ମନୁଷ୍ୟ କିଭଳି ? କୌଣସି କ୍ଷତ୍ରିୟ ରାଜା ଏବଂ କୌଣସି ଶ୍ରୀମନ୍ତ ବ୍ରାହ୍ମଣ ଏକ ନବୀନ ସଂସ୍ଥାଗାର ନିର୍ମାଣ କରେ । ଲଣ୍ଡା ହୋଇ,ଗଧ ଚର୍ମ ପିନ୍ଧି, ଦେହରେ ଘିଅ, ତେଲ ଢାଳି, ମୃଗ ସିଂଘରେ ପିଠି କୁଣ୍ଡାଇ ନିଜ ପତ୍ନୀ ଓ ପୁରୋହିତଙ୍କ ସହିତ ସେହି ସଂସ୍ଥାଗାରରେ ପ୍ରବେଶ କରେ । ସେ ସେଠାରେ ଗୋବର ଲିପା ଭୂମିରେ କୌଣସି ଲୁଗା ପ୍ରଭୃତି ନ ପକାଇ ଶୁଏ । ଗୋଟିଏ ଭଲ ଗାଈର ଗୋଟିଏ ପହ୍ଲା ବା ଥିର ଉପରେ ସେ ନିର୍ଭର କରେ । ଅନ୍ୟ ଏକ ଥିର ଉପରେ ତାହାର ସ୍ତ୍ରୀ ଓ ତୃତୀୟ ଥିର ପୁରୋହିତ ନିର୍ଭର କରନ୍ତି ଏବଂ ଚତୁର୍ଥ ଥିରରେ ହୋମ କାର୍ଯ୍ୟ ହୁଏ । ଗୃହୋଷ୍ଠିଯାକ ଥିରର ବଳକା ଦୁଧରେ ବାଛୁରୀ ନିର୍ଭର କରିରହେ ।

"ପୁଣି ସେ କହେ, ମୋର ଏହି ଯଜ୍ଞ ପାଇଁ ଏତେ ବଳଦ ମାର, ଏତେ ବାଛୁରୀ ମାର, ଏତେ ମେଣ୍ଢା ମାର,—ଯୂପ ନିମିତ୍ତ ଏତେ ଗଛ କାଟ, କୁଶାସନ ନିମନ୍ତେ ଏତେ କୁଶ କାଟ" । ତାହାର ଦାସ, ଦୂତ ଏବଂ ମୂଲିଆମାନେ ଦଣ୍ଡ ଭୟରେ ଡରିମରି ଆଖିରୁ ଲୁହ ଗଡ଼ାଇ କାନ୍ଦି କାନ୍ଦି ସେସବୁ କାର୍ଯ୍ୟ କରନ୍ତି । ଏହାକୁହିଁ କହନ୍ତି ଆତ୍ମନ୍ତପ ତଥା ପରନ୍ତପ ।

# ଲୋକେ ଗୋହିଂସା ଲୋଡୁ ନଥିଲେ

ସେହି ଦାସ, ଦୂତ ଏବଂ କାମ କରିବା ଲୋକେ କାନ୍ଦି କାନ୍ଦି ସେ କାର୍ଯ୍ୟ କରୁଥିଲେ କାହିଁକି ? ତାର କାରଣ ହେଉଛି, ଯଜ୍ଞରେ ଯେଉଁ ପଶୁମାନଙ୍କୁ ବଧ କରି ଯାଉଥିଲା, ଦରିଦ୍ର କୃଷକ-ମାନଙ୍କଠାରୁ ସେମାନଙ୍କୁ ଛଡ଼ାଇ ନିଆ ଯାଉଥିଲା । ତହିଁରେ କୃଷକମାନେ ଗଭୀର ଦୁଃଖ ଅନୁଭବ କରୁଥିଲେ । ସୁତ୍ତନିପାତ୍ତର 'ବ୍ରାହ୍ମଣ ଧାର୍ମିକ ସୁତ୍ତ'ରେ ଅତି ପ୍ରାଚୀନ କାଳର ବ୍ରାହ୍ମଣମାନଙ୍କର ଆଚରଣ ବର୍ଣ୍ଣିତ ହୋଇଛି । ତହିଁରେ ନିମ୍ନଲିଖିତ ଗାଥା ଅଛି :—

ଯଥା ମାତା ପିତା ଭାତା      ଅଞ୍ଚେ୍ବା ବାଃପି ଚ ଞାତକା ।<br>
ଗାବୋ ନୋ ପରମା ମିତ୍ତା      ଯାସୁ ଜାୟନ୍ତି ଓସଧା ॥<br>
ଅନ୍ନଦା ବଳଦା ଚେତା      ବଣ୍ଣଦା ସୁଖଦା ତଥା ।<br>
ଏତ ମତ୍ଥ ବସଂଞ୍ଜତ୍ୱା      ନାସ୍ସୁ ଗାବୋ ହନିଂସୁ ତେ ॥

ଅର୍ଥାତ୍ ମାତା, ପିତା, ଭ୍ରାତା ଏବଂ ଅନ୍ୟାନ୍ୟ ସମ୍ପର୍କୀୟ ବ୍ୟକ୍ତିଙ୍କ ପରି ଗାଈ ମଧ୍ୟ ଆମର ମିତ୍ର । କାରଣ ସେଇମାନଙ୍କ ଉପରେହିଁ କୃଷି ନିର୍ଭରକରେ । ସେମାନେ ଆମକୁ ଅନ୍ନ, ବଳ, କାନ୍ତି ଓ ସୁଖ ଦିଅନ୍ତି । ଏହା ଜାଣି ପ୍ରାଚୀନ ବ୍ରାହ୍ମଣମାନେ ଗୋ ହତ୍ୟା କରୁନଥିଲେ ।"

ଏଥିରୁ ଜଣାଯାଉଛି ଯେ, ସାଧାରଣ ଲୋକେ ଗାଈପ୍ରତି ନିଜର ଆପ୍ତ ଲୋକପରି ବ୍ୟବହାର କରୁଥିଲେ । ଯାଗଯଜ୍ଞରେ ନିର୍ଦ୍ଦୟଭାବରେ ସେମାନଙ୍କୁ ହତ୍ୟା କରିବାକୁ ସେମାନେ ଆଦୌ ଭଲ ପାଉ ନଥିଲେ । ଯଦି ରାଜା ଏବଂ ଧନୀ ଲୋକମାନେ ନିଜ . ନିଜର ଗାଈ-ମାନଙ୍କୁ ହତ୍ୟା କରୁଥାଆନ୍ତେ, ତାହାହେଲେ ଭୃତ୍ୟ ତଥା ଅନ୍ୟାନ୍ୟ

କାର୍ଯ୍ୟ କରିବା ଲୋକେ କାହ୍ନୁ ନଥାନ୍ତେ । କିନ୍ତୁ ସେହି ପଶୁଗୁଡ଼ିକୁ ସେମାନଙ୍କପରି ଦରିଦ୍ର କୃଷକମାନଙ୍କ ନିକଟରୁ ବଳ ପୂର୍ବକ ନିଆ ଯାଉଥିଲା । ତେଣୁ ସେମାନଙ୍କୁ ଦୁଃଖ ଲାଗିବା ସ୍ୱାଭାବିକ କଥା । ଯଜ୍ଞପାଇଁ ଲୋକଙ୍କ ଉପରେ କିପରି ବଳ ପ୍ରୟୋଗ କରା ଯାଉଥିଲା ତାହା ତଳ ଲିଖିତ ଗାଥାରୁ ବେଶ ଜଣାଯାଏ ।

ବଦନ୍ତି ଏକେ ବିସମେ ନିବିଟ୍ଠା
ଛେତ୍ୱା ବଧିତ୍ୱା ଅଥ ସୋଚୟିତ୍ୱା ।
ସା ଦକ୍ଖିଣା ଅସ୍ସୁମୁଖା ସଦଣ୍ଡା
ସମେନ ଦିନ୍ନସ୍ସ ନ ଅଗ୍ଘମେତି ॥

ଅର୍ଥାତ୍ କୌଣସି ବିଷମ ମାର୍ଗରେ ନିବିଷ୍ଟ ହୋଇ, ମାରଧର କରି ଲୋକଙ୍କୁ ଦୁଃଖ ଦେଇ ଦାନ ଦିଆଯାଏ । ସେହି ଲୋକଙ୍କର ଅଶ୍ରୁ ପୂରିତ ସଦଣ୍ଡ ଦକ୍ଷିଣା, ସମାନ ଭାବରେ ଦିଆ ଯାଉଥିବା ଦାନର ମୂଲ୍ୟ ଲାଭ କରିପାରେ ନାହିଁ (୧) । ସେହି ସମୟରେ ଯାଗଯଜ୍ଞ ପରି ଉଦର—ବିବାହ ପାଇଁ ମଧ୍ୟ ବହୁ ପ୍ରାଣୀଙ୍କୁ ବଧ କରାଯାଉ ଥିଲା । ଗାଈକୁ ମାରି ତାହାର ମାଂସ ଛକ ଯାଗାରେ ବିକ୍ରୀ କରିବାର ପ୍ରଥା ବିଶେଷଭାବେ ପ୍ରଚଳିତ ଥିଲା । କିନ୍ତୁ ବୁଦ୍ଧ ଯାଗଯଜ୍ଞକୁ ଯେତେ ନିଷେଧ କରିଛନ୍ତି, ସେହି ପରିମାଣରେ ଉକ୍ତ ପ୍ରଥାକୁ କରିନାହାନ୍ତି । ଏଥିରୁ କିନ୍ତୁ ବୁଝିବା ଉଚିତ ନୁହେଁ ଯେ, ଛକ ସ୍ଥାନରେ ମାଂସ ବିକ୍ରୀ ପ୍ରଥାକୁ ବୁଦ୍ଧ ସ୍ୱାଗତ କରୁଥିଲେ । କିନ୍ତୁ କୌଣସି ଯାଗଯଜ୍ଞ ତୁଳନାରେ ତାହାର କୌଣସି ଗୁରୁତ୍ୱ ନଥିଲା । କଂସାଇ, ଯେଉଁ ବଳଦ ବା ଗାଈ ପାଉଥିଲା—ଯେଉଁ

(୧) ସେୟ୍ୟଥାପି ଭିକ୍ଖବେ ଦକ୍ଖୋ ଗୋ ଘାତକୋ ବା ଗୋ ଘାତକନ୍ତେବାସୀ ବା ଗାବିଂ ବଧିତ୍ୱା, ଚତୁମହାପଥେ ବିଲସୋ ବିଭଜିତ୍ୱା ନିସିନ୍ନୋ ଅସ୍ସ୍ (ସତିପଟ୍ଠାନସୁତ୍ତ)

ଗାଈ ଦୁଧ ଦେବା ଅବସ୍ଥାରେ ନଥିଲା କମ୍ବା ଯେଉଁ ବଳଦ କୃଷିର ଉପଯୋଗୀ ନଥିଲା, ତାହାପାଇଁ କେହି ଲୁହ ଗଡ଼ାଉ ନଥିଲା । କିନ୍ତୁ ଯଜ୍ଞର କଥା ସ୍ୱତନ୍ତ୍ର । ଯଦି ଗୋଟିଏ ଯଜ୍ଞରେ ପାଞ୍ଚଶହ ବଳଦ, ପାଞ୍ଚଶହ ମାଈ ବାଛୁରୀ, ପାଞ୍ଚଶହ ଅଣ୍ଡିରା ବାଛୁରୀ, ମରାଯାଏ ତାହାହେଲେ ଗୃଷବାସର କେତେ କ୍ଷତି ହେଉ ନଥିବ ଓ ତାହା ଫଳରେ କୃଷକମାନେ କି ଦୁଃଖ ଅନୁଭବ କରୁ ନଥିବେ ? ଯଦି ବୁଦ୍ଧ ଏପରି ଅତ୍ୟାଚାରର ନିଷେଧ କରିଥିଲେ ତେବେ ତାଙ୍କୁ ବେଦ ନିନ୍ଦୁକ କୁହାଯିବ କାହିଁକି ?

## ସୁଯଜ୍ଞର ସ୍ୱରୂପ

ଭଗବାନ୍ ବୁଦ୍ଧ ଦୀଘନିକାୟର କୂଟଦନ୍ତ—ସୁତ୍ତରେ, ରାଜା ଏବଂ ଧନୀମାନେ କିପରି ଯଜ୍ଞ କରିବା ଉଚିତ, ସେ ସମ୍ପର୍କରେ କହି ଅଛନ୍ତି । ତଳେ ତାହାର ସାରାଂଶ ଦିଆ ଯାଉଛି ।

ଥରେ ଭଗବାନ୍ ବୁଦ୍ଧ ମଗଧ ଦେଶରେ ବୁଲୁ ବୁଲୁ 'ଖାଣୁମତ' ନାମକ ବ୍ରାହ୍ମଣ ଶାସନରେ ପହଞ୍ଚିଲେ । ମଗଧର ରାଜା ବିମ୍ବିସାର କୂଟଦନ୍ତ ନାମକ ବ୍ରାହ୍ମଣଙ୍କୁ ଏହି ଗ୍ରାମ ଦାନ କରିଥିଲେ । ସେହି ବ୍ରାହ୍ମଣ ମହାଯଜ୍ଞ କରିବାପାଇଁ ସାତଶହ ବଳଦ, ସାତଶହ ଅଣ୍ଡିରା ବାଛୁରୀ, ସାତଶହ ମାଈ ବାଛୁରୀ, ସାତଶହ ମେଣ୍ଢା ଓ ସାତଶହ ଛେଳି, ସଂଗ୍ରହ କରି ରଖିଥିଲେ ।

ନିଜ ଗ୍ରାମକୁ ଭଗବାନ୍ ଆସିଥିବା ସମ୍ବାଦ ପାଇ ଖାଣୁମତ ଗ୍ରାମର ସମସ୍ତ ବ୍ରାହ୍ମଣ ତାଙ୍କ ଦର୍ଶନ ପାଇଁ ଯିବାକୁ କୂଟଦନ୍ତଙ୍କ ପ୍ରାସାଦ ଆଡ଼କୁ ଯାଉଥିଲେ । କୂଟଦନ୍ତ ଏହି ସମ୍ବାଦ ପାଇବା ପରେ ନିଜର ଭୃତ୍ୟକୁ ଡାକି କହିଲେ—"ବ୍ରାହ୍ମଣମାନଙ୍କୁ କହ, ସେମାନେ

ଚିକିଏ ଅପେକ୍ଷା କରନ୍ତୁ, ମୁଁ ମଧ୍ଯ ସେମାନଙ୍କ ସହିତ ଭଗବାନ୍‌ଙ୍କ ଦର୍ଶନ ନିମନ୍ତେ ଯିବାକୁ ଚାହୁଁଛି ।”

କୂଟଦନ୍ତଙ୍କର ଯଜ୍ଞ ଲକ୍ଷ୍ୟରେ ବହୁ ବ୍ରାହ୍ମଣ ଉପସ୍ଥିତ ହୋଇଥିଲେ । କୂଟଦନ୍ତ ନିଜେ ଭଗବାନଙ୍କ ଦର୍ଶନ ପାଇଁ ଯାଉଥିବାର ଶୁଣି ସେମାନେ ତାଙ୍କ ପାଖକୁ ଯାଇ ପଚାରିଲେ— “ହେ କୂଟଦନ୍ତ, ତୁମେ ଗୌତମଙ୍କୁ ଦର୍ଶନ କରିବାକୁ ଯାଉଥିବା କଥା କଣ ସତ ?

କୂଟଦନ୍ତ—ଆଜ୍ଞା ହଁ । ଗୌତମଙ୍କ ଦର୍ଶନ ପାଇଁ ଯିବାକୁ ମୋର ଇଚ୍ଛା ହେଉଛି ।

ବ୍ରାହ୍ମଣ—ହେ କୂଟଦନ୍ତ ! ଗୌତମଙ୍କ ଦର୍ଶନ ପାଇଁ ଯିବା ତୁମର ଉଚିତ ନୁହେ । ଯଦି ତୁମେ ତାଙ୍କ ଦର୍ଶନ ପାଇଁ ଯିବ ତାହା ହେଲେ ତାଙ୍କର ଯଶ ବଢ଼ିଯିବ ଓ ତୁମର ଯଶ କମିଯିବ । ଯଦି ଗୌତମ ତୁମ ପାଖକୁ ଆସନ୍ତେ ଓ ତୁମେ ତାଙ୍କ ପାଖକୁ ନଯାଆନ୍ତ ଖରାଭଲ ହୁଅନ୍ତା । ତୁମେ ଉଚ୍ଚ କୁଳରେ ଜନ୍ମ ହୋଇଛ, ତୁମେ ଧନୀ, ବିଦ୍ୱାନ୍ ଓ ସୁଶୀଳ । ଅନେକଙ୍କର ତୁମେ ଆଚାର୍ଯ୍ୟ, ତୁମଠୁ ବେଦମନ୍ତ୍ର ଶିଖିବା ପାଇଁ ଚାରିଆଡ଼ୁ ବହୁ ଶିଷ୍ୟ ଆସୁଛନ୍ତି । ବୟସରେ ଗୌତମଙ୍କଠାରୁ ତୁମେ ବଡ଼ । ପୁଣି ଅତି ସମ୍ମାନ ସହକାରେ ମଗଧର ରାଜା ତୁମକୁ ଏହି ଗାଆଁଟି ଉପହାର ଦେଇଛନ୍ତି । ଏଣୁ ଗୌତମ ତୁମକୁ ଦେଖା କରିବାକୁ ଆସନ୍ତୁ, କିନ୍ତୁ ତୁମେ ତାଙ୍କ ପାଖକୁ ଯାଅନାହିଁ, ଏହା ହିଁ ଠିକ୍ କଥା ।

କୂଟଦନ୍ତ—ବର୍ତ୍ତମାନ ଆପଣମାନେ ମୋର କଥା ଶୁଣନ୍ତୁ । ଗୌତମ ଉଚ୍ଚକୁଳରେ ଜନ୍ମଲାଭ କରି, ବିପୁଳ ସମ୍ପତ୍ତି ତ୍ୟାଗକରି ଶ୍ରମଣ ହୋଇଛନ୍ତି । ସେ ତେଜସ୍ୱୀ ଓ ସୁଶୀଳ ମଧ୍ୟ । ସେ ମଧୁର ଏବଂ କଲ୍ୟାଣପ୍ରଦ କଥା କହନ୍ତି । ସେ ହେଉଛନ୍ତି ଅନେକଙ୍କର

ଆଚାର୍ଯ୍ୟ ଓ ପ୍ରାଚାର୍ଯ୍ୟ ମଧ୍ୟ । ସେ ବନ୍ଧନରୁ ମୁକ୍ତ ହୋଇ ଶାନ୍ତ ହୋଇ ଗଲେଣି । ସେ କର୍ମବାଦୀ ଏବଂ କ୍ରିୟାବାଦୀ । ସବୁଦେଶରୁ ଲୋକେ ତାଙ୍କ ଧର୍ମ ଶୁଣିବା ପାଇଁ ଆସୁଛନ୍ତି । ସେ ସମ୍ୟକ୍ ସମ୍ବୁଦ୍ଧ, ବିଦ୍ୟାଚରଣ ସମ୍ପନ୍ନ, ଲୋକବିଦ୍, ଦମ୍ୟ ପୁରୁଷମାନଙ୍କର ସାରଥି, ଦେବ-ମନୁଷ୍ୟଙ୍କର ଶାସ୍ତା । ଏହିପରି ତାଙ୍କର ଯଶ ସର୍ବତ୍ର ବ୍ୟାପ୍ତ । ରାଜା ବିମ୍ବିସାର ଏବଂ କୋସଳ ଦେଶର ରାଜା ପସେନଦି ସପରିବାରେ ତାଙ୍କର ଶ୍ରାବକ ହୋଇ ଗଲେଣି । ଏହି ରାଜାମାନଙ୍କ ପରି ପୌଷ୍କରସାଦିଙ୍କ ଭଳି ବ୍ରାହ୍ମଣଙ୍କର ମଧ୍ୟ ସେ ହେଉଛନ୍ତି ପୂଜନୀୟ । ତାଙ୍କର ଯୋଗ୍ୟତା ଏତେ ବେଶୀ । ପୁଣି ସେ ଆମଗ୍ରାମରେ ଉପସ୍ଥିତ ହୋଇଛନ୍ତି । ତେଣୁ ଆମର ଅତିଥିରୂପେ ଆମେ ତାଙ୍କୁ ଗ୍ରହଣ କରିବା ଉଚିତ ଏବଂ ଅତିଥିରୂପେ ତାଙ୍କ ଦର୍ଶନ ନିମନ୍ତେ ଯାଇ ତାଙ୍କର ସତ୍କାର କରିବା ଉଚିତ ।

ବ୍ରାହ୍ମଣ—ହେ କୂଟଦନ୍ତ ! ତୁମେ ଗୌତମଙ୍କର ଯେଉଁ ପ୍ରଶସ୍ତି କହିଲ ତହିଁରୁ, ଶହେ ଯୋଜନ ଚାଲି ଚାଲି ଯାଇ ମଧ୍ୟ ତାଙ୍କ ଦର୍ଶନ କରିବା ଉଚିତ ବୋଲି ବୋଧ ହେଉଛି । ତାହା ହେଲେ ଚାଲ, ଆମେ ସମସ୍ତେ ତାଙ୍କୁ ଦର୍ଶନ କରିବାକୁ ଯିବା ।

ଏହାପରେ ସେହି ବ୍ରାହ୍ମଣମାନଙ୍କ ସହିତ କୂଟଦନ୍ତ ବୁଦ୍ଧଦେବଙ୍କର ରହିବା ସ୍ଥାନ, ଆମ୍ରଯଷ୍ଟି ବନକୁ ଗଲେ । ସେମାନେ ଯାଇ ଭଗବାନଙ୍କୁ କୁଶଳ ପ୍ରଶ୍ନାଦି ପଚାରି ଏକ ପାଖରେ ବସିଗଲେ । ବ୍ରାହ୍ମଣମାନଙ୍କ ମଧ୍ୟରୁ କେତେଜଣ ଭଗବାନଙ୍କୁ ନମସ୍କାର କଲେ, ପୁଣି କେତେଜଣ ନିଜ ନିଜର ନାମ ଗୋତ୍ର କହି ଓ କୁଶଳ ପ୍ରଶ୍ନାଦି ପଚାରି ଏକ ପାଖରେ ବସିଗଲେ ।

କୂଟଦନ୍ତ ଭଗବାନଙ୍କୁ କହିଲେ—"ମୁଁ ଶୁଣିଛି, ଆପଣ ଉତ୍ତମ ଯଜ୍ଞ ବିଧି ଜାଣନ୍ତି । ଆପଣ ଯଦି ତାହା ଆମକୁ ଶିଖାଇ ଦିଅନ୍ତେ ତେବେ ଖୁବ ଭଲ ହୁଅନ୍ତା ।"

ତାହାପରେ ଭଗବାନ ଏ କଥାଟି କହିଲେ—

ପ୍ରାଚୀନ କାଳରେ ମହାବିଜିତ ନାମକ ଜଣେ ପ୍ରଖ୍ୟାତ ରାଜା ଥିଲେ । ଥରେ ସେ ଏକୁଟିଆ ବସିଥିବା ବେଳେ ମନେ ମନେ ଭାବିଲେ—ମୋ ପାଖେ ବହୁ ଧନ ସମ୍ପତ୍ତି ଅଛି । ତାହା ଯଦି ମହା ଯଜ୍ଞରେ ବ୍ୟୟ କରାଯାଇ ପାରନ୍ତା ତାହାହେଲେ ତାହା ବଡ଼ ହିତାବହ ଏବଂ ସୁଖାବହ ହୁଅନ୍ତା । ସେ ଏହିକଥା ତାଙ୍କ ପୁରୋହିତଙ୍କୁ ଜଣାଇଲେ ଏବଂ କହିଲେ—"ହେ ପୁରୋହିତ ! ମୁଁ ମହାଯଜ୍ଞ କରିବାକୁ ଇଚ୍ଛା କରୁଛି । ସେହି ଯଜ୍ଞ କିପରି କଲେ ହିତାବହ ଓ ସୁଖାବହ ହେବ, ତୁମେ କହ ।"

ପୁରୋହିତ କହିଲେ, "ବର୍ତ୍ତମାନ ଆପଣଙ୍କ ରାଜ୍ୟରେ ଶାନ୍ତି ନାହିଁ, ଗ୍ରାମ ଓ ନଗରମାନଙ୍କରେ ଲୁଟତରାଜ ଚାଲିଛି, ଡକାୟତି ମଧ୍ୟ ଚାଲିଛି । ଏହିଭଳି ପରିସ୍ଥିତିରେ ଆପଣ ଯଦି ଲୋକଙ୍କ ଉପରେ କରଭାର ଲଦିଦେବେ ତାହା ହେଲେ ଆପଣ ନିଜ କର୍ତ୍ତବ୍ୟରୁ ବିଚ୍ୟୁତ ହେବେ । ଆପଣ ଜାଣୁଛନ୍ତି ଯେ ମୁଣ୍ଡ କାଟି, କାରାଗାରରେ ଭର୍ତ୍ତିକରି, ଜୋରିମାନା କରି ଓ ନିର୍ବାସନ କରି ଚୋରମାନଙ୍କୁ ଦବାଇ ଦିଆ ଯାଇ ପାରେ ; କିନ୍ତୁ ଏହି ଉପାୟ ଦ୍ୱାରା ପୂର୍ଣ୍ଣ ମାତ୍ରାରେ ବିଦ୍ରୋହର ଅବସାନ ଘଟି ନପାରେ । କାରଣ, ଯେଉଁ ଚୋରମାନେ ବାକି ରହିଯିବେ ସେମାନେ ପୁଣି ବିଦ୍ରୋହ କରି ଉଠିବେ । ତାହାକୁ ପୂର୍ଣ୍ଣମାତ୍ରାରେ ଶାନ୍ତ କରିବାର ଉପାୟ ହେଉଛି—ଯେଉଁମାନେ ଆପଣଙ୍କ ରାଜ୍ୟରେ କୃଷି କରିବାକୁ ଚାହୁଁଛନ୍ତି ସେମାନଙ୍କୁ ଯଥେଷ୍ଟ ପରିମାଣରେ ବିହନ ପ୍ରଭୃତି

ଦେବାର ବ୍ୟବସ୍ଥା କରନ୍ତୁ । ଯେଉଁମାନେ ବ୍ୟବସାୟ କରିବାକୁ ଚାହୁଁଛନ୍ତି, ସେମାନଙ୍କୁ ଯଥେଷ୍ଟ ପରିମାଣରେ ଧନ ଦିଅନ୍ତୁ । ଯେଉଁମାନେ ସରକାରୀ ଚାକିରି କରିବାକୁ ଚାହୁଁଛନ୍ତି ତାଙ୍କୁ ଉଚିତ ବେତନ ଦେଇ ଉପଯୁକ୍ତ କାର୍ଯ୍ୟରେ ଲଗାନ୍ତୁ, ଏହିପରି ସବୁଲୋକେ ନିଜ ନିଜ କାର୍ଯ୍ୟରେ ସୁଦକ୍ଷ ହେଲେ ରାଜ୍ୟରେ ବିଦ୍ରୋହର ସମ୍ଭାବନା ରହିବ ନାହିଁ । ସମସ୍ତ ସମୟରେ କର ଆଦାୟ କରାଯିବ ଓ ଭଣ୍ଡାର ପୂର୍ଣ୍ଣ ରହିବ । ବିଦ୍ରୋହୀଙ୍କର କଷ୍ଟ ଦୂରହେଲେ ଲୋକେ ନିର୍ଭୟରେ ନିଜ ନିଜର କବାଟ ଖୋଲି ରଖି ଆନନ୍ଦରେ ପିଲା ଛୁଆ ସହେ ଜୀବନ ଯାପନ କରିବେ ।"

ପୁରୋହିତ ବିଦ୍ରୋହ ଦୂର କରିବାର ଯେଉଁ ଉପାୟ ବତାଇଲେ, ତାହା ରାଜାଙ୍କ ମନକୁ ଖୁବ୍ ପାଇଲା । ନିଜ ରାଜ୍ୟରେ କୃଷିବାସ କରିବା ପାଇଁ ଯେଉଁମାନେ ସମର୍ଥ, ରାଜା ସେମାନଙ୍କୁ ବିହନ ପ୍ରଭୃତି ଦେଇ ସେ କାର୍ଯ୍ୟରେ ଲଗାଇ ଦେଲେ । ଯେଉଁମାନେ ବ୍ୟବସାୟ କରିବାକୁ ଇଚ୍ଛା କରୁଥିଲେ, ସେମାନଙ୍କୁ ଯଥେଷ୍ଟ ଧନ ଦେଇ ବ୍ୟବସାୟର ବିକାଶ ଘଟାଇଲେ । ପୁଣି, ଯେଉଁମାନେ ସରକାରୀ ଚାକିରି ପାଇଁ ଯୋଗ୍ୟଥିଲେ ସେମାନଙ୍କୁ ଯଥୋଚିତ ଭାବରେ ସରକାରୀ କାର୍ଯ୍ୟରେ ନିଯୁକ୍ତ କଲେ । ଏହି ଉପାୟରେ କାର୍ଯ୍ୟ କରିବାରୁ ମହାବିଜିତଙ୍କର ରାଜ୍ୟ ଅଳ୍ପକାଳ ମଧ୍ୟରେ ସମୃଦ୍ଧ ହୋଇ ଉଠିଲା । ଚୋରି ଏବଂ ଡକାୟତି ପୂରା ଭାବରେ ଦୂର ହେବାରୁ କର ଆଦାୟ ହୋଇ ଭଣ୍ଡାର ପୂର୍ଣ୍ଣ ରହିଲା । ଲୋକେ ନିର୍ଭୟରେ ଦ୍ୱାର ମେଲି ରଖି ଓ ନିଜର ପିଲା ପିଲାଙ୍କୁ ଖୁଆଇ ପିଆଇ କାଳ କଟାଇଲେ ।

ଦିନେ ରାଜା ମହାବିଜିତ ନିଜ ପୁରୋହିତଙ୍କୁ କହିଲେ, ହେ ପୁରୋହିତ ! ତୁମେ ଯେଉଁ ଉପାୟ କହିଲ ତଦ୍ୱାରା ମୋ

ରାଜ୍ୟରେ ବ୍ୟାପିଥିବା ଉପଦ୍ରବ ଦୂର ହୋଇଗଲା । ମୋର କୋଷର ଆର୍ଥିକ ସ୍ଥିତି ଏବେ ଖୁବ ଭଲଅଛି । ପୁଣି ରାଜ୍ୟର ଲୋକମାନେ ଭୟହୀନ ଭାବରେ ଓ ଆନନ୍ଦରେ ଅଛନ୍ତି । ଏବେ ମୁଁ ମହାଯଜ୍ଞ କରିବାକୁ ଚାହୁଁଛି । ତାହାର ବିଧି ତୁମେ ମୋତେ କହ ।”

ପୁରୋହିତ କହିଲେ—“ଆପଣ ଯଦି ମହାଯଜ୍ଞ କରିବାକୁ ଚାହୁଁଛନ୍ତି, ତେବେ ସେଥିପାଇଁ ଆପଣଙ୍କୁ ପ୍ରଜାମାନଙ୍କର ଅନୁମତି ନେବାକୁ ପଡ଼ିବ । ତେଣୁ ପ୍ରଥମେ ରାଜ୍ୟର ସବୁ ଲୋକଙ୍କୁ ନିଜର ଅଭିପ୍ରାୟ ଜଣାଇ ଅନୁମତି ନେଉନ୍ତୁ ।”

ରାଜାଙ୍କର ଇଚ୍ଛା ଜାଣି ଲୋକେ ଅନୁମତି ଦେଲେ । ତାପରେ ପୁରୋହିତ ଯଜ୍ଞର ବ୍ୟବସ୍ଥା କଲେ ଏବଂ ରାଜାଙ୍କୁ କହିଲେ—“ଯଜ୍ଞ ଆରମ୍ଭରେ ଆପଣ, “ଯଜ୍ଞରେ ବହୁତ ଧନ ସମ୍ପତ୍ତି ବ୍ୟୟ ହେବ”, ଏହି ଧାରଣା ମନରୁ ଦୂର କରନ୍ତୁ । ଯେତେବେଳେ ଯଜ୍ଞ କାର୍ଯ୍ୟ ଚାଲିବ, ଆପଣ ଭାବିବେ ନାହିଁ ଯେ, ମୋର ସମ୍ପତ୍ତି ନଷ୍ଟ ହୋଇ ଯାଉଛି ଏବଂ ଯଜ୍ଞ ସମାପ୍ତି ପରେ ମଧ୍ୟ ଆପଣ ଭାବିବେ ନାହିଁ ଯେ ମୋର ଧନ ସମ୍ପତ୍ତି ବ୍ୟୟ ହୋଇଗଲା । ଆପଣଙ୍କ ଯଜ୍ଞକୁ ଭଲ, ମନ୍ଦ ସବୁ ପ୍ରକାର ଲୋକ ଆସିବେ । ସେମାନଙ୍କ ମଧ୍ୟରୁ ସତ୍ ପୁରୁଷଙ୍କ ଉପରେ ଦୃଷ୍ଟି ରଖି ଆପଣ ଯଜ୍ଞ କରନ୍ତୁ ଓ ମନକୁ ଆନନ୍ଦିତ କରି ରଖନ୍ତୁ ।

ମହାବିଜିତଙ୍କର ସେହି ଯଜ୍ଞରେ ଗାଈ, ବଳଦ, ଛେଳି, ମେଣ୍ଢା ମରାଯାଇ ନଥିଲେ, ଗଛ କଟା ଯାଇ ଯୂପ ନିର୍ମିତ ହୋଇ ନଥିଲା, ଦର୍ଭାସନ ଦରକାର ହୋଇ ନଥିଲା, ଦାସ ଦୂତ ଓ ମୂଲିଆଙ୍କଠାରୁ ବଳପୂର୍ବକ କାମ ହାସଲ କରା ଯାଇ ନଥିଲା ।

ଯେଉଁମାନଙ୍କର ଇଚ୍ଛା ଥିଲା ସେମାନେ କାମକଲେ, ଯେଉଁମାନଙ୍କର ଇଚ୍ଛା ନ ଥିଲା ସେମାନେ କାମ କରି ନ ଥିଲେ । ଘିଅ, ତେଲ, ଲହୁଣୀ, ମହୁ ଓ ଗୁଡ଼ରେ ସେ ଯଜ୍ଞ ସମାପ୍ତ ହୋଇଥିଲା ।

ଏହାପରେ ରାଜ୍ୟର ବଡ଼ ବଡ଼ ଧନୀ ଲୋକେ ଉପହାର ଘେନି ରାଜା ମହାବିଜିତଙ୍କର ଦର୍ଶନ ନିମନ୍ତେ ଆସିଲେ । ସେମାନଙ୍କୁ ରାଜା କହିଲେ, 'ହେ ସଜ୍ଜନବର୍ଗ ! ଆପଣମାନଙ୍କର ଏସବୁ ଉପହାରରେ ମୋର କୌଣସି ଆବଶ୍ୟକତା ନାହିଁ । ଧାର୍ମିକ କର ରୂପେ ମୋ ପାଖରେ ବହୁ ସମ୍ପତ୍ତି ଜମା ହୋଇଛି । ତହିଁରୁ କିଛି ଯଦି ଆପଣମାନେ ଚାହୁଁଛନ୍ତି ତାହା ହେଲେ ବିନା ସଙ୍କୋଚରେ ନେଇଯାନ୍ତୁ ।'

ରାଜା ଯେତେବେଳେ ଉପହାର ନେବାକୁ ମନା କରିଦେଲେ ଲୋକେ ସେହି ଧନ ବ୍ୟୟକରି ଯଜ୍ଞଶାଳାର ଚତୁର୍ଦ୍ଦିଗରେ ଧର୍ମଶାଳାଟିଏ ନିର୍ମାଣ କରିଦେଲେ ଓ ଦରିଦ୍ରମାନଙ୍କୁ ଦାନଧର୍ମ କଲେ ।

ଭଗବାନଙ୍କ ମୁଖରୁ ଏହି ଯଜ୍ଞର ବର୍ଣ୍ଣନା ଶୁଣି କୂଟଦନ୍ତଙ୍କ ସଙ୍ଗେ ଆସିଥିବା ବ୍ରାହ୍ମଣମାନେ 'ଭାରି ଭଲଯଜ୍ଞ', 'ଭାରି ଭଲଯଜ୍ଞ' ବୋଲି କହିଲେ ।

ଏହାପରେ ବ୍ରାହ୍ମଣ କୂଟଦନ୍ତଙ୍କୁ ଭଗବାନ୍ ନିଜ ଧର୍ମର ସବିସ୍ତର ଉପଦେଶ ଦେଲେ । ତାହା ଶୁଣି ସେ ଭଗବାନଙ୍କର ଉପାସକ ହୋଇ ପଡ଼ିଲେ ଏବଂ କହିଲେ—"ହେ ଗୌତମ ! ସାତଶହ ବଳଦ, ସାତଶହ ମାଈ ବାଛୁରୀ, ସାତଶହ ଅଣ୍ଡିରା ବାଛୁରୀ, ସାତଶହ ଛେଳି ଓ ସାତଶହ ମେଣ୍ଢାଙ୍କୁ ମୁଁ ଯୂପରୁ ମୁକ୍ତ କରି ଦେଉଛି, ଜୀବନ ଦାନ କରୁଛି । ସଜ ଘାସ ଖାଇ ଓ ଥଣ୍ଡା ପାଣି ପିଇ ସେମାନେ ଶୀତଳ ଛାଇରେ ଆନନ୍ଦରେ ରହନ୍ତୁ ।

# ବେକାର ପଣିଆର ବିନାଶହିଁ ପ୍ରକୃଷ୍ଟ ଯଜ୍ଞ

ଉପରୋକ୍ତ ସୂତ୍ରରେ 'ମହାବିଜିତ' ଶବ୍ଦରେ ବୁଝାଯାଏ, ଏପରି ଜଣେ ବ୍ୟକ୍ତି ଯାହାର ରାଜ୍ୟ ବିସ୍ତୃତ । ସେ କେବଳ ମହାଯଜ୍ଞ କରିପାରେ । ସେ ମହାଯଜ୍ଞର ମୁଖ୍ୟ କର୍ମ ହେଉଛି, ରାଜ୍ୟର ଲୋକମାନଙ୍କୁ ନିଷ୍କର୍ମା ହେବାପାଇଁ ଅବକାଶ ନ ଦେବା । ସମସ୍ତଙ୍କୁ ଉପଯୁକ୍ତ କାର୍ଯ୍ୟରେ ଲଗାଇବା ଉଚିତ । ଏହି ବିଧାନ ଭିନ୍ନ ଭାବରେ ଚକ୍କ-ବତ୍ତିସୀହନାଦ ସୁତ୍ତରେ କୁହାଯାଇଛି । ତାର ସାରକଥା ହେଉଛି—

ଦୃଢ଼ନେମି ନାମକ ଜଣେ ଚକ୍ରବର୍ତ୍ତୀ ଥିଲେ । ବୁଢ଼ା ବୟସରେ ଦିନେ ସେ ପୁଅକୁ ରାଜଗାଦିରେ ବସାଇ ଉପବନକୁ ଯାଇ ସେଠାରେ ରହିଲେ । ତାହାର ସପ୍ତମ ଦିନ ରାଜ-ପ୍ରାସାଦ ଆଗରେ ଥିବା ଦେଦୀପ୍ୟମାନ ଚକ୍ର କୁଆଡେ ଅନ୍ତର୍ହିତ ହୋଇଗଲା । ଦୃଢ଼ନେମିଙ୍କ ପୁଅ ବଡ଼ ବ୍ୟସ୍ତ ହେଲେ । ନିଜର ରାଜର୍ଷି-ପିତାଙ୍କୁ ଯାଇ ଏ ସମ୍ବାଦ ଜଣାଇଲେ । ରାଜର୍ଷି କହିଲେ —"ପୁଅ, ଡରନାହିଁ । ତୁମର ପୁଣ୍ୟରୁ ସେହି ଚକ୍ରର ଉତ୍ପତ୍ତି ହୋଇ ନଥିଲା । ତୁମେ ଯଦି ରାଜ ଚକ୍ରବର୍ତ୍ତୀର ବ୍ରତ ପାଳନ କରିବ ତେବେ ସେହି ଚକ୍ରଟି ଫେରି ଆସି ପୁଣି ନିଜ ସ୍ଥାନରେ ସ୍ଥିର ହୋଇ ରହିବ । ତୁମେ ନ୍ୟାୟ ଓ ମମତା ଦ୍ୱାରା ଲୋକମାନଙ୍କୁ ରକ୍ଷାକର, ନିଜ ରାଜ୍ୟରେ ଅନ୍ୟାୟ ପ୍ରବୃତ୍ତିକୁ ସ୍ଥାନ ଦିଅନାହିଁ । ଯେଉଁମାନେ ଦରିଦ୍ର ସେହିମାନଙ୍କୁ (ବ୍ୟବସାୟର ବ୍ୟବସ୍ଥା ଦ୍ୱାରା) ଧନ ମିଳିବାର ବ୍ୟବସ୍ଥା କର । ପୁଣି ତୁମ ରାଜ୍ୟରେ ଯେଉଁ ସାଧୁ ପୁରୁଷ, ଶ୍ରମଣ ବ୍ରାହ୍ମଣ ଅଛନ୍ତି ସେମାନଙ୍କଠାରୁ ସମୟ ସମୟରେ କର୍ତ୍ତବ୍ୟ—ଅକର୍ତ୍ତବ୍ୟର

ପରାମର୍ଶ ଗ୍ରହଣ କର । ସେମାନଙ୍କର ଉପଦେଶ ଶୁଣି ଅକର୍ତ୍ତବ୍ୟଠାରୁ ଦୂରରେ ରହ ଓ କର୍ତ୍ତବ୍ୟରେ ଦୃଢ଼ ହୁଅ ।

ତରୁଣ ରାଜା ଏହି ଉପଦେଶକୁ ସମ୍ମାନ ସହକାରେ ଗ୍ରହଣ କଲେ । ସେହିପରି ଆଚରଣ କରିବାରୁ ଦେଦୀପ୍ୟମାନ ଚକ୍ରଟି ପୁଣି ନିଜ ସ୍ଥାନକୁ ଆସିଗଲା । ରାଜା ବାମ ହସ୍ତରେ ଝାରି ଧରି ଦକ୍ଷିଣ ହସ୍ତରେ ସେହି ଚକ୍ରକୁ ପ୍ରବର୍ତ୍ତିତ କଲେ । ଚକ୍ରଟି ତାଙ୍କ ରାଜ୍ୟର ଚତୁର୍ଦ୍ଦିଗରେ ବୁଲିଲା । ତାହାର ପଛେ ପଛେ ଯାଇ ରାଜା ସବୁଲୋକଙ୍କୁ ଉପଦେଶ ଦେଲେ—"ପ୍ରାଣଘାତ କରିବା ଉଚିତ ନୁହେ, ଚୋରି କରିବା ଉଚିତ ନୁହେ, ମିଛ କହିବା ଉଚିତ ନୁହେ । ଯଥାର୍ଥ ଭାବରେ ଜୀବିକା ନିର୍ବାହ କରିବା ଉଚିତ ।"

ଏହାପରେ ସେହି ଚକ୍ରରତ୍ନ ସେହି ଚକ୍ରବର୍ତ୍ତୀଙ୍କର ସଭାସ୍ଥଳ ଆଗରେ ସ୍ଥିର ହୋଇ ରହିଲା ଓ ରାଜପ୍ରାସାଦର ସୌନ୍ଦର୍ଯ୍ୟ ବର୍ଦ୍ଧନ କଲା ।

ଏହି ଚକ୍ରବର୍ତ୍ତୀ ବ୍ରତର ଧାରା ସାତପୁରୁଷ ପର୍ଯ୍ୟନ୍ତ ରହିଲା । ସପ୍ତମ ଚକ୍ରବର୍ତ୍ତୀ ସନ୍ନ୍ୟାସ ଗ୍ରହଣ କରିବାର ସପ୍ତମ ଦିନ ଚକ୍ର ଅନ୍ତର୍ହିତ ହୋଇଗଲା । ତହିଁରେ ତରୁଣ ରାଜା ଘୋର ଦୁଃଖ ଅନୁଭବ କଲେ, କିନ୍ତୁ ସେ ନିଜର ରାଜର୍ଷି-ପିତାଙ୍କ ପାଖକୁ ଯାଇ ଚକ୍ରବର୍ତ୍ତୀ ବ୍ରତ ଶିଖିଲେ ନାହିଁ । ମନ୍ତ୍ରୀ ଏବଂ ଅନ୍ୟାନ୍ୟ ସଜ୍ଜନମାନେ ତାଙ୍କୁ ଚକ୍ରବର୍ତ୍ତୀ ବ୍ରତ ବୁଝାଇ ଦେଲେ । ତାହା ଜାଣିମା ପରେ ସେ ଲୋକମାନଙ୍କୁ ନ୍ୟାୟ ଦେବାକୁ ଆରମ୍ଭ କଲେ । ଅଥଚ ଲୋକଙ୍କର ଦାରିଦ୍ର୍ୟ ଦୂର କରିବା ପାଇଁ କିଛି ବ୍ୟବସ୍ଥା କଲେନାହିଁ । ଫଳରେ ଦରିଦ୍ରତା ବହୁ ପରିମାଣରେ ବଢ଼ିଗଲା ଏବଂ ଜଣେ ଲୋକ ଚୋରି କଲା । ଲୋକେ ତାକୁ ଧରି ରାଜାଙ୍କ ଆଗରେ ହାଜର

କରାଇବାରୁ ରାଜା ତାକୁ ପଚାରିଲେ—ଆରେ, ତୁ ଚୋରି କରିବା କଥା କଣ ସତ ?

ଲୋକ—ମହାରାଜ ! ହଁ ସତ ।

ରାଜା—ତୁ ଚୋରି କଲୁ କାହିଁକି ?

ଲୋକ—ମହାରାଜ ! ପେଟ ପୂରିଲା ନାହିଁ, ତେଣୁ ଚୋରି କଲି ।

ରାଜା ତାକୁ ଯଥୋଚିତ ଦ୍ରବ୍ୟ ଦେଇ କହିଲେ, 'ଏଥିରେ ତୁ ତୋ କାମ ଚଳାଅ, ନିଜ ପରିବାର ପୋଷଣ କର, ବେପାର ବ୍ୟବସାୟ ଓ ଦାନଧର୍ମ କର ।'

ଏକଥା ଆଉଜଣେ ବେକାର ଲୋକ ଜାଣି ପାରିଲା । ତେଣୁ ସେ ମଧ୍ୟ ଚୋରିକଲା । ରାଜା ତାକୁ ମଧ୍ୟ ଯଥୋଚିତ ଦ୍ରବ୍ୟଦେଲେ । ଲୋକେ ଜାଣିଲେ ଯେ, ଚୋରିକଲେ ରାଜାଙ୍କଠାରୁ ପୁରସ୍କାର ମିଳେ । ତେଣୁ ସମସ୍ତେ ଚୋରି କରିବାକୁ ଲାଗିଲେ । ସେମାନଙ୍କ ମଧ୍ୟରୁ ଜଣକୁ ଯେତେବେଳେ ରାଜାଙ୍କ ପାଖକୁ ନିଆଗଲା ରାଜା ଭାବିଲେ, 'ଚୋରି କରିବା ଲୋକଙ୍କୁ ମୁଁ ଯଦି ଧନ ଦେବି ତେବେ ରାଜ୍ୟରେ ଅତ୍ୟଧିକ ମାତ୍ରାରେ ଚୋରି ବଢ଼ିଯିବ । ତେଣୁ ଏହି ଲୋକର ମୁଣ୍ଡକାଟ ହେବାହିଁ ଉଚିତ ।' ଲୋକଟିକୁ ସେ ଦଉଡ଼ିରେ ବନ୍ଧାଇ ଦେଲେ, ଲଣ୍ଡା କରିଦେଲେ, ପୁଣି ରାସ୍ତାରେ ଗୁରିଆଡ଼େ ବୁଲାଇ ନଗରର ଦକ୍ଷିଣ ଦିଗରେ ସର୍ବସାଧାରଣଙ୍କ ଆଗରେ ତାହାର ମୁଣ୍ଡ କାଟିବାକୁ ଆଦେଶ ଦେଲେ ।

ଏହି ଦୃଶ୍ୟ ଦେଖି ଚୋରମାନେ ବଡ଼ ବିଚଳିତ ହୋଇ ପଡ଼ିଲେ । ସେମାନେ ଭାବିଲେ ଯେ ସିଧାସଳଖ ଭାବରେ ଚୋରି

କରିବା ବଡ଼ ବିପଜ୍ଜନକ । ତେଣୁ ସେମାନେ ବଡ଼ ଧାରୁଆ ଅସ୍ତ୍ର ଶସ୍ତ୍ର ତିଆରି କରାଇ ଖୋଲାଖୋଲି ଭାବରେ ଉନ୍ମୁକ୍ତ କଲେ ।

ଏହିପରି ଭାବରେ, ଦରିଦ୍ର ଲୋକଙ୍କୁ ବ୍ୟବସାୟ ନ ମିଳିବାରୁ ଦାରିଦ୍ର୍ୟ ବଢ଼ିଗଲା । ଚୋରି ଓ ଲୁଟ୍ ତରାଜ ବଢ଼ିବାରୁ ଅସ୍ତ୍ର ଶସ୍ତ୍ର ବଢ଼ିଗଲା । ଅସ୍ତ୍ର ଶସ୍ତ୍ର ବଢ଼ିବାରୁ ପ୍ରାଣଘାତ ମଧ୍ୟ ବଢ଼ିଗଲା । ପ୍ରାଣଘାତ ବଢ଼ିବାରୁ ଅସତ୍ୟ ମଧ୍ୟ ବଢ଼ିଗଲା । ଅସତ୍ୟ ବଢ଼ିବାରୁ ପରୋକ୍ଷ ନିନ୍ଦା ବଢ଼ିଗଲା । ପରୋକ୍ଷ ନିନ୍ଦା ବଢ଼ିବାରୁ ଗାଳି ଗୁଲଜ ବଢ଼ିଗଲା । ଗାଳି ଗୁଲଜ ବଢ଼ିବାରୁ ବୃଥା ପ୍ରଳାପ ବଢ଼ିଗଲା । ଏସବୁ ବଢ଼ିଯିବାରୁ ଲୋଭ ଓ ଦ୍ୱେଷ ବିଶେଷ ଭାବେ ବଢ଼ିଗଲା ଏବଂ ଏଗୁଡ଼ିକ ହେତୁ 'ମିଥ୍ୟା ଦୃଷ୍ଟି' ବୃଦ୍ଧି ପାଇବାରୁ ଅନ୍ୟ ସବୁ ଅସତ୍ କର୍ମର ବିସ୍ତାର ହୋଇଗଲା ।······

ମହାବିଜିତଙ୍କୁ ପୁରୋହିତ ଯେଉଁ ଯଜ୍ଞ-ବିଧାନ ବତାଇଥିଲେ, ତାହାର ସ୍ପଷ୍ଟୀକରଣ ଏହି ଚକ୍କବତ୍ତି ସୀହନାଦସୁତ୍ତରେ କରା ଯାଇଛି । ଲୋକଙ୍କ ଠାରୁ ବଳପୂର୍ବକ ପଶୁ ଛଡ଼ାଇ ଆଣି ତାକୁ ହତ୍ୟା କରିବାର ଯଜ୍ଞ ପ୍ରକୃଷ୍ଟ ଯଜ୍ଞ ନୁହେ । ବରଂ, ରାଜ୍ୟର ଲୋକଙ୍କୁ ସମାଜ-ଉପଯୋଗୀ କାର୍ଯ୍ୟରେ ଲଗାଇ ବେକାର ପଣିଆକୁ ନଷ୍ଟ କରିବା ହେଉଛି ପ୍ରକୃଷ୍ଟ ଯଜ୍ଞ । ବଳିଦାନ ସମ୍ୱଳିତ ଯାଗଯଜ୍ଞ ଅନେକ ଦିନରୁ ଲୋପ ହୋଇଗଲାଣି । ତଥାପି ପ୍ରକୃତ ଯଜ୍ଞ ପାଇଁ ଅତ୍ୟଳ୍ପ ମାତ୍ର ପ୍ରଯତ୍ନ ଦେଖା ଯାଉଛି । ବେକାର ପଣିଆ ନଷ୍ଟ କରିବା ପାଇଁ ଜର୍ମାନୀ ଏବଂ ଇଟାଲି ଯୁଦ୍ଧ ସାମଗ୍ରୀ ବଢ଼ାଇବାରେ ଲାଗିଛନ୍ତି । ଏହା ଫଳରେ ଫ୍ରାନ୍ସ, ଇଂଲଣ୍ଡ ଓ ଆମେରିକା ପ୍ରଭୃତି ରାଷ୍ଟ୍ରମାନଙ୍କୁ ମଧ୍ୟ ଯୁଦ୍ଧ ସାମଗ୍ରୀ ବଢ଼ାଇବାକୁ ପଡ଼ୁଛି । ଜଣା ଯାଉଛି, ଯେପରିକି ଯୁଦ୍ଧ ଆରମ୍ଭ ହୋଇଯିବ । ଏଣେ, ଚୀନ

ଉପରେ ଜାପାନ ଆକ୍ରମଣ କଲ୍ଣି । ପୁଣି ମୁସୋଲିନୀ ଏବଂ ହିଟଲର କାଲିକି କଣ କରିବେ, କିଛି କହି ହେଉ ନାହିଁ । (୧) ତେବେ ଗୋଟିଏ କଥା ସ୍ପଷ୍ଟ ଯେ, ଏ ସବୁର ପରିଣତି ହେବ ରଣଯଜ୍ଞ । ଏଥିରେ ଅନ୍ୟ ପ୍ରାଣୀ ଅପେକ୍ଷା ଅଧିକ ଭାବରେ ମନୁଷ୍ୟ ମାନଙ୍କର ଆହୁତି ପଡ଼ିବ । ଏହି ରଣଯଜ୍ଞକୁ ଯଦି ବନ୍ଦ କରିବା ଉଚିତ ତେବେ ଯୁଦ୍ଧ ସାମଗ୍ରୀରେ ଲୋକଙ୍କୁ ନ ଲଗାଇ ସମାଜୋନ୍ନତିମୂଳକ କାର୍ଯ୍ୟରେ ଲଗାଇବା ଉଚିତ । ତେବେ ଯାଇ ଭଗବାନ୍ ବୁଦ୍ଧ କହିଥିବା ଯଜ୍ଞ ବିଧାନ କାର୍ଯ୍ୟକାରୀ ହୋଇ ପାରିବ । ତାହାହିଁ ହେଉ ।

ଏହା ଏକପ୍ରକାର ଅପ୍ରାସଙ୍ଗିକ ହୋଇଗଲା । ତେବେ ବୁଦ୍ଧଙ୍କର ଯଜ୍ଞ ବିଧାନର ସ୍ପଷ୍ଟୀକରଣ ପାଇଁ ଏ ବିବରଣୀ ସମୁଚିତ ବୋଧ ହେଲା । ଉପରୋକ୍ତ ସୁତ୍ତ ବୁଦ୍ଧଙ୍କର ପରିନିର୍ବାଣର କିଛି ସମୟ ପରେ ରଚିତ ହୋଇଛି । ତଥାପି ତହିଁରେ ବୁଦ୍ଧଙ୍କର ପ୍ରଦର୍ଶିତ ମୂଳଭୂତ ତତ୍ତ୍ୱଗୁଡ଼ିକୁ ସ୍ପଷ୍ଟଭାବରେ ବୁଝାଇ ଦିଆ ଯାଇଛି । ଏହିମତି ସୁ-ଯଜ୍ଞର ଉପଦେଷ୍ଟାଙ୍କୁ କେତେଦୂର ପର୍ଯ୍ୟନ୍ତ ଗୁରୁ—ବେଦ—ନିନ୍ଦୁକ କହି ଅବହେଳା କରି ଯାଇ ପାରେ ତାହା ବିଜ୍ଞମାନେହିଁ ବିଚାର କରି କହନ୍ତୁ ।

---

(୧) ଏକଥା ୨ୟ ମହା ସମର ପୂର୍ବରୁ ଲେଖା ଯାଇଥିଲା । ସେପରି ରଖି ଦିଆ ଯାଇଛି ।

# ଦଶମ ଅଧ୍ୟାୟ

# ଜାତିଭେଦ

## ଜାତିଭେଦର ଉଦ୍‌ଗମ

ବ୍ରାହ୍ମଣୋଽସ୍ୟମୁଖମାସୀଦ୍ ବାହୂ ରାଜନ୍ୟଃ କୃତଃ
ଉରୂ ତଦସ୍ୟ ଯଦ୍ ବୈଶ୍ୟଃ ପଦ୍‌ଭ୍ୟାଂ ଶୂଦ୍ରୋଽଜାୟତ ॥

ଜଣାଯାଏ, ଭାରତରେ ପ୍ରଚଳିତ ଜାତିଭେଦର ମୂଳ ଋଗ୍‌ବେଦର ଉକ୍ତ ମନ୍ତ୍ରରେ ନିହିତ । କିନ୍ତୁ ଏ ଧାରଣା ଭ୍ରମପୂର୍ଣ୍ଣ । ବେଦ ସମୟ ପୂର୍ବରୁ ମଧ୍ୟ ସପ୍ତସିନ୍ଧୁ ପ୍ରଦେଶରେ ଓ ମଧ୍ୟ ଭାରତରେ ଅହିଂସା ଧର୍ମ ପରି ଜାତିଭେଦ ଧର୍ମ ମଧ୍ୟ ବିଦ୍ୟମାନ ଥିଲା । ପ୍ରଥମ ଅଧ୍ୟାୟରେ ଦର୍ଶାଇ ଦିଆଯାଇଛି ଯେ, ଆର୍ଯ୍ୟମାନଙ୍କର ଆଗମନ ତଥା ବୈଦିକ ସଂସ୍କୃତିର ପ୍ରସାର ହେତୁ ଅହିଂସା ଧର୍ମ ଅରଣ୍ୟରେ ଆଶ୍ରୟ ନେବାକୁ ପଡ଼ିଥିଲା । (୧) କିନ୍ତୁ ଜାତିଭେଦର ସ୍ଥିତି ସେହିପରି ନଥିଲା । ସାମାନ୍ୟ ଅଦଳ ବଦଳ ହୋଇ ତାହା ସେପରି ପ୍ରଚଳିତ ହୋଇ ରହିଲା ।

---

(୧) ଋଗ୍‌ବେଦ ପୁରୁଷ ସୂକ୍ତ ୧୦।୯୦।୧୨ ।

## କ୍ଷତ୍ରିୟମାନଙ୍କର ମହତ୍ତ୍ୱ

ସୁମେରୀୟାରେ ଅଧିକାଂଶ ପୂଜକ ହିଁ ରାଜା ହେଉଥିଲେ । ସପ୍ତସିନ୍ଧୁ ପ୍ରଦେଶରେ ମଧ୍ୟ ଏହି ପ୍ରଥା ପ୍ରଚଳିତ ଥିଲା । ଏହି ପ୍ରଦେଶରେ ଯେଉଁ ଶ୍ରେଷ୍ଠ ଶ୍ରେଷ୍ଠ ରାଜ୍ୟ ଥିଲା, ସେଠାରେ ମୁଖ୍ୟ ବ୍ୟକ୍ତି ବୃତ୍ରଙ୍କୁ ଇନ୍ଦ୍ର ହତ୍ୟା କରିଥିଲେ । ଫଳରେ ଇନ୍ଦ୍ରଙ୍କୁ ବ୍ରହ୍ମହତ୍ୟା ପାପ ଲାଗିଲା । ମହାଭାରତରେ ଏହା ବର୍ଣ୍ଣିତ ହୋଇଛି । (୧) ଉପରେ ଉଦ୍ଧୃତ ହୋଇଥିବା ମନ୍ତ୍ରରୁ, ଆର୍ଯ୍ୟମାନଙ୍କ ଆଗମନ ପୂର୍ବେ ଅବସ୍ଥା କଣ ଥିଲା ତାହା ଜଣାଯାଉଛି । ଋଷି କହୁଛନ୍ତି, "ଏକ ସମୟରେ ବିରାଟ ପୁରୁଷଙ୍କର ମୁଖ ଥିଲେ ବ୍ରାହ୍ମଣ; କ୍ଷତ୍ରିୟ ଥିଲେ ବାହୁ, ଉରୁ ଥିଲେ ବୈଶ୍ୟ ଓ ତାଙ୍କର ପାଦରୁ ଶୂଦ୍ର ଉତ୍ପନ୍ନ ହୋଇଥିଲେ ।" ଆର୍ଯ୍ୟମାନଙ୍କର ଆଗମନ ଫଳରେ କ୍ଷତ୍ରିୟମାନଙ୍କର ମହତ୍ତ୍ୱ ବଢିଗଲା ଏବଂ ବ୍ରାହ୍ମଣମାନଙ୍କର ମହତ୍ତ୍ୱ ବିନଷ୍ଟ ହେଲା । ତଥାପି ସେହିମାନଙ୍କର ହାତରେ ପୌରୋହିତ୍ୟ ରହିଲା । ବୁଦ୍ଧ କାଳ-ପର୍ଯ୍ୟନ୍ତ ସେହିଭଳି ପରିସ୍ଥିତି ଥିଲା । ପାଲି ସାହିତ୍ୟରେ ସବୁବେଳେ କ୍ଷତ୍ରିୟମାନଙ୍କୁ ମୁଖ୍ୟ ସ୍ଥାନ ଦିଆଯାଇଛି । ଉପନିଷଦ୍‌ରେ ମଧ୍ୟ ତାହା ପ୍ରତିଧ୍ୱନିତ ହୋଇଛି । ଦୃଷ୍ଟାନ୍ତ ସ୍ୱରୂପ ଏହି ଉଦ୍ଧୃତି ଦେଖନ୍ତୁ ।

"ବ୍ରହ୍ମବା ଇଦମଗ୍ର ଆସୀଦେକମେବ । ତଦେକ ସନ୍ନ
ବ୍ୟଭବତ୍ତଚ୍ଛ୍ରେୟୋ ରୂପମତ୍ୟସୃଜତ କ୍ଷତ୍ରଂ ଯାନ୍ୟେତାନି
ଦେବତ୍ରା କ୍ଷତ୍ରାଣୀ ନ୍ଦ୍ରୋ ବରୁଣଃ ସୋମୋ ରୁଦ୍ରଃ
ପର୍ଜନ୍ୟୋ ଯମୋ ମୃତ୍ୟୁରୀଶାନ ଇତିତସ୍ମାତ୍ କ୍ଷତ୍ରାତ୍ପରଂ
ନାସ୍ତି । ତସ୍ମାଦ୍ ବ୍ରାହ୍ମଣଃ କ୍ଷତ୍ରିୟମଧସ୍ତାଦୁପାସ୍ତେ" (୨)

---

(୧) ଦେଖନ୍ତୁ, ହିନ୍ଦୀ ସଂସ୍କୃତି ଆଉ ଅହିଂସା ପୃଷ୍ଠା ୧୫ ।

(୨) ବୃହଦାରଣ୍ୟକ ୧।୪।୧୧

ଅର୍ଥାତ୍, ପ୍ରଥମେ କେବଳ ବ୍ରହ୍ମ ହିଁ ଥିଲେ । କିନ୍ତୁ ସେ ଏକୁଟିଆ ଥିବାରୁ ତାଙ୍କର ବିକାଶ ହୋଇପାରିଲା ନାହିଁ । ତେଣୁ ସେ ଉତ୍କୃଷ୍ଟରୂପ କ୍ଷତ୍ରିୟ ଜାତି ଉତ୍ପନ୍ନ କଲେ । ସେହି କ୍ଷତ୍ରିୟମାନେ ହେଉଛନ୍ତି ଦେବ ଲୋକର ଇନ୍ଦ୍ର, ବରୁଣ, ସୋମ, ରୁଦ୍ର, ପର୍ଜନ୍ୟ, ଯମ ଓ ଈଶାନ । ଅତଏବ କ୍ଷତ୍ରିୟ ଜାତିଠାରୁ ବଳି ଅଧିକ ଜାତି ଆଉ ନାହିଁ "ଏବଂ ଏହି ହେତୁରୁ ବ୍ରାହ୍ମଣ ନିଜକୁ ଲଘୁ ମନେକରି କ୍ଷତ୍ରିୟର ଉପାସନା କରେ ।

## ଜାତିଭେଦର ନିଷେଧ

ଯଦିଓ କ୍ଷତ୍ରିୟ ଜାତି ଏହିଭଳି ମହତ୍ତ୍ୱ ଲଭ କରିଥିଲା, ତଥାପି ସେହିମାନଙ୍କର ଶ୍ରେଷ୍ଠ କର୍ତ୍ତବ୍ୟ, ଯୁଦ୍ଧକୁ ବୁଦ୍ଧ ଆଦୌ ଭଲ ପାଉ ନଥିଲେ । ତେଣୁ ସମଗ୍ର ଜାତିଭେଦ ତାଙ୍କୁ ଅନୁପଯୋଗୀ ପ୍ରତୀତ ହେଉଥିଲା ଓ ସେ ତାକୁ ସର୍ବତୋଭାବେ ନିଷିଦ୍ଧ କରିଥିଲେ । ଅନ୍ୟ ଶ୍ରମଣ ନାୟକମାନେ ଜାତିଭେଦର ନିଷେଧ ବୁଦ୍ଧଦେବଙ୍କ ପରି କରିଥିବାର ପ୍ରମାଣ କେଉଁଠାରେ ମିଳୁ ନାହିଁ । ସେମାନଙ୍କ ସଂଘରେ ଜାତିଭେଦର କୌଣସି ସ୍ଥାନ ନ ଥିଲା । କିନ୍ତୁ ସେମାନଙ୍କ ଉପାସକମାନଙ୍କ ମଧ୍ୟରେ ଯେଉଁ ଜାତିଭେଦ ଥିଲା ତାହାର ବିରୋଧ ସେମାନେ କରି ନ ଥିଲେ । ବୁଦ୍ଧ ସେହିକଥା ସ୍ପଷ୍ଟ ଭାବରେ କଲେ । ତାହା ସେ କିପରି କରିଥିଲେ ବର୍ତ୍ତମାନ ଦେଖାଯାଉ । ବୁଦ୍ଧ ଯେ ଜାତିଭେଦର ବିରୋଧ କରିଥିଲେ ତାହା ସର୍ବପ୍ରାଚୀନ ବାସେଟ୍ଠସୁତ୍ତ, ସୁତ୍ତନିପାତ ଓ ମଜ୍ଝିମ-ନିକାୟରୁ ଜଣାଯାଏ ।

ତହିଁର ସାର କଥା ହେଉଛି—ଥରେ ବୁଦ୍ଧ ଇଚ୍ଛାନଙ୍ଗଲ ନାମକ ଗ୍ରାମ ନିକଟରେ ଇଚ୍ଛାନଙ୍ଗଲ ଉପବନରେ ରହିଥିଲେ ।

ସେହି ସମୟରେ ସେହି ଗ୍ରାମରେ ବହୁ ପ୍ରସିଦ୍ଧ ବ୍ରାହ୍ମଣ ବାସ କରୁଥିଲେ । ସେମାନଙ୍କ ମଧ୍ୟରୁ ବାସିଷ୍ଠ ଏବଂ ଭାରଦ୍ୱାଜ ନାମକ ଦୁଇଜଣ ତରୁଣ ବ୍ରାହ୍ମଣଙ୍କ ମଧ୍ୟରେ ଏ ବିଷୟରେ ଯୁକ୍ତି ତର୍କହେଲା—ମନୁଷ୍ୟ ଜନ୍ମଦ୍ୱାରା ନା କର୍ମଦ୍ୱାରା ଶ୍ରେଷ୍ଠ ବିବେଚିତ ହୁଏ ?

ଭାରଦ୍ୱାଜ ନିଜ ମିତ୍ରଙ୍କୁ କହିଲେ, "ହେ ବାସିଷ୍ଠ ! ଯେଉଁ ଲୋକର ମାତୃକୁଳରୁ ଓ ପିତୃକୁଳରୁ ସାତ ପୁରୁଷ ଶୁଦ୍ଧ, ଯାହାର ବଂଶରେ ସାତପୁରୁଷ ମଧ୍ୟରେ ବର୍ଣ୍ଣସଙ୍କର ଜନ୍ମ ହୋଇ ନାହାନ୍ତି ସେହି ବ୍ରାହ୍ମଣ ହେଉଛି ଶ୍ରେଷ୍ଠ ।" ବାସିଷ୍ଠ କହିଲେ, "ହେ ଭାରଦ୍ୱାଜ ! ଯେଉଁ ଲୋକ ଶୀଳ ସମ୍ପନ୍ନ ଓ କର୍ତ୍ତବ୍ୟ ପରିପୂର୍ଣ ତାକୁ ଶ୍ରେଷ୍ଠ ବ୍ରାହ୍ମଣ କୁହାଯିବା ଉଚିତ ।"

ବହୁ ବାଦାନୁବାଦ ହେଲା । ତଥାପି କେହି କାହାକୁ ବୁଝାଇ ପାରିଲେ ନାହିଁ । ଶେଷରେ ବାସିଷ୍ଠ କହିଲେ—ଆମର ଏହି ବାଗ୍‌ବିତଣ୍ଡା ଶେଷ ହେବ ନାହିଁ । ଦେଖ, ଆମ ନିକଟରେ ଶ୍ରମଣ-ଗୌତମ ଅବସ୍ଥାନ କରୁ ଅଛନ୍ତି । ସେ ହେଉଛନ୍ତି ବୁଦ୍ଧ, ପୂଜ୍ୟ ଓ ସମସ୍ତଙ୍କର ଗୁରୁ । ତାଙ୍କର ଯଶ ସର୍ବତ୍ର ପରିବ୍ୟାପ୍ତ । ଆମେ ତାଙ୍କ ନିକଟକୁ ଯାଇ ଆମର ମତଭେଦ କଥା ତାଙ୍କୁ କହିବା ଏବଂ ସେ ଯାହାକିଛି ସିଦ୍ଧାନ୍ତ କରିବେ ତାକୁ ଗ୍ରହଣ କରିବା ।

ଦୁହେଁ ବୁଦ୍ଧଙ୍କ ନିକଟକୁ ଗଲେ ଓ ତାଙ୍କୁ କୁଶଳ ପ୍ରଶ୍ନାଦି କରି ଏକପାଖରେ ବସିଗଲେ । ତହୁଁ ବାସିଷ୍ଠ କହିଲେ—"ହେ ଗୌତମ ! ଆମେ ଦୁହେଁ ଶିକ୍ଷିତ ବ୍ରାହ୍ମଣ କୁମାର । ଏ ହେଉଛନ୍ତି ତାରୁକ୍ଷ୍ୟଙ୍କ ଶିଷ୍ୟ, ଆଉ ମୁଁ ହେଉଛି ପୌଷ୍କରସାଦିଙ୍କ ଶିଷ୍ୟ । ଜାତିଭେଦ ସମ୍ପର୍କରେ ଆମ ଭିତରେ ଯୁକ୍ତି ତର୍କ ହେଉଛି । ଏ

କହୁଛନ୍ତି, କର୍ମରେ ହିଁ ଲୋକ ବ୍ରାହ୍ମଣ ହୁଏ । ଆଉ ମୁଁ କହୁଛି, ଜନ୍ମରେ ହିଁ ଲୋକ ବ୍ରାହ୍ମଣ ହୁଏ । ଆପଣଙ୍କର ଯଶ ଶୁଣି ଆମେ ଏଠାକୁ ଆସିଛୁ । ଆପଣ ଆମର ବିବାଦର ସମାଧାନ କରି ଦିଅନ୍ତୁ ।"

ଭଗବାନ୍ କହିଲେ—"ହେ ବାସିଷ୍ଠ, ତୃଣ ବୃକ୍ଷ ପ୍ରଭୃତି ବିଭିନ୍ନ ଜାତି ବନସ୍ପତିରେ ଦେଖିବାକୁ ମିଳେ । ସେହିପରି କୀଟ ପତଙ୍ଗ ପ୍ରଭୃତି ମାନଙ୍କ ମଧ୍ୟରେ ଜାତିଭେଦ ମଧ୍ୟ ଅଛି । ସାପ, ହିଂସ୍ରଜନ୍ତୁ, ପାଣିରେ ରହୁଥିବା ମାଛ ଏବଂ ଆକାଶରେ ଉଡ଼ୁଥିବା ପକ୍ଷୀମାନଙ୍କ ମଧ୍ୟରେ ସୁଦ୍ଧା ନାନା ଜାତି ଅଛି । ସେମାନଙ୍କର ଜାତିଭେଦର ଲକ୍ଷଣ ସେହି ପ୍ରାଣୀମାନଙ୍କଠାରେ ହିଁ ସ୍ପଷ୍ଟ ଦେଖିବାକୁ ମିଳେ ; କିନ୍ତୁ ମନୁଷ୍ୟ ମାନଙ୍କଠାରେ ଭେଦର ଚିହ୍ନ ଦେଖିବାକୁ ମିଳେ ନାହିଁ । ବାଳ, କାନ, ନାକ, ମୁହଁ, ଓଠ, ଭ୍ରୂଲତା, କଣ୍ଠ, ପେଟ, ପିଠି, ହାତ, ପାଦ ପ୍ରଭୃତି ଅବୟବମାନଙ୍କରେ ଜଣେ ମନୁଷ୍ୟ ଅନ୍ୟ ମନୁଷ୍ୟଠାରୁ ସମ୍ପୂର୍ଣ୍ଣ ଭିନ୍ନ ହୋଇ ନପାରେ । ଅର୍ଥାତ୍ ପଶୁପକ୍ଷୀମାନଙ୍କ ମଧ୍ୟରେ ଆକୃତିରେ ଯେପରି ଭିନ୍ନତା ଦେଖାଯାଏ, ସେହିପରି ମନୁଷ୍ୟଠାରେ ଦେଖାଯାଏ ନାହିଁ । ସବୁ ମନୁଷ୍ୟଙ୍କର ଅବୟବ ପ୍ରାୟ ସମାନ ଥିବାହେତୁ ମନୁଷ୍ୟମାନଙ୍କର ଜାତିଭେଦ ନିର୍ଣ୍ଣୟ କରାଯାଇ ନପାରେ । କିନ୍ତୁ କର୍ମରୁ ମନୁଷ୍ୟର ଜାତି ନିର୍ଣ୍ଣୟ କରାଯାଇ ପାରିବ ।

"ଯଦି କୌଣସି ବ୍ରାହ୍ମଣ ଗୋ ପାଳନ କରି ନିଜର ଜୀବିକା ନିର୍ବାହ କରେ, ତେବେ ତାକୁ ବ୍ରାହ୍ମଣ ନକହି ଗଉଡ଼ କହିବା ଉଚିତ । ଶିଳ୍ପବିଦ୍ୟାରେ ପେଟ ପୋଷୁଥିବା ଲୋକଙ୍କୁ କାରିଗର କୁହାଯିବା ଉଚିତ । ପୁଣି ଯେଉଁଲୋକ ବେପାର କରେ ସେ ବେପାରୀ । ଯେ ଦୂତକାମରେ ସେ ଦୂତ । ଯେ ଚୋରିକରେ ସେ

ଗ୍ରେର, ଯେ ଯୁଦ୍ଧ ବିଦ୍ୟା ଦ୍ୱାରା ପେଟ ପୋଷେ ସେ ଯୋଦ୍ଧା, ଯେ ଯାଗଯଜ୍ଞ ଦ୍ୱାରା ଜୀବିକା ନିର୍ବାହ କରେ ସେ ଯାଜକ ଏବଂ ଯେ ରାଜ୍ୟ ଉପରେ ନିର୍ଭର କରି ଜୀବନ ନିର୍ବାହ କରେ ସେ ରାଜା । କିନ୍ତୁ ଏମାନଙ୍କ ମଧ୍ୟରୁ କାହାରିକୁ ହେଲେ କେବଳ ଜନ୍ମ ହେତୁ ବ୍ରାହ୍ମଣ ବୋଲି କୁହା ଯାଇ ପାରିବ ନାହିଁ

"ଯେଉଁ ଲୋକ ସାରା ସଂସାରର ବନ୍ଧନ ଛିନ୍ନ କରେ, କୌଣସି ସାଂସାରିକ ଦୁଃଖକୁ ଡରେ ନାହିଁ, ଯାହାର କୌଣସି କଥାରେ ଆସକ୍ତି ନାହିଁ, ତାକୁ ମୁଁ ବ୍ରାହ୍ମଣ ବୋଲି କହେ । ପୁଣି ଅନ୍ୟ ଲୋକର ଗାଳି ଗୁଲଜ, ବଧ-ବନ୍ଧ ପ୍ରଭୃତିକୁ ଯେ ସହେ, କ୍ଷମା ଯାହାର ବଳ, ତାହାକୁ ହିଁ ମୁଁ ବ୍ରାହ୍ମଣ ବୋଲି କୁହେ । ପଦ୍ମପତ୍ରରେ ଜଳବିନ୍ଦୁ ପରି, ଯେଉଁଲୋକ ଇହଲୋକର ବିଷୟ ସୁଖରେ ଅଲିପ୍ତ ରହେ, ତାକୁ ମୁଁ ବ୍ରାହ୍ମଣ ବୋଲି କହେ ।

"ଜନ୍ମରୁ କେହି ହେଲେ ବ୍ରାହ୍ମଣ ହୁଏ ନାହିଁ କିମ୍ବା ଅବ୍ରାହ୍ମଣ ମଧ୍ୟ ହୁଏ ନାହିଁ । କର୍ମରୁ ହିଁ ଲୋକ ବ୍ରାହ୍ମଣ ବା ଅବ୍ରାହ୍ମଣ ହୁଏ । କର୍ମରୁ କୃଷକ ହୁଏ, କର୍ମରୁ କାରିଗର ହୁଏ, କର୍ମରୁ ଗ୍ରେର ହୁଏ, କର୍ମରୁ ସିପାହୀ ହୁଏ, କର୍ମରୁ ଯାଜକ ହୁଏ ଏବଂ ରାଜା ମଧ୍ୟ କର୍ମରୁ ହୁଏ । କର୍ମଦ୍ୱାରା ହିଁ ଏହି ନିଖିଳ ସଂସାର ଚଳେ । ଯେଉଁପରି ଅଖ ଉପରେ ନିର୍ଭର କରି ରଥ ଚ଼ାଲେ, ସେହିପରି ସମଗ୍ର ପ୍ରାଣୀ ନିଜ ନିଜର କର୍ମ ଉପରେ ହିଁ ନିର୍ଭର କରନ୍ତି ।"

ବୁଦ୍ଧଙ୍କର ଏହି ଉପଦେଶ ଶୁଣି ବାସିଷ୍ଠ ଓ ଭାରଦ୍ୱାଜ ତାଙ୍କର ଶିଷ୍ୟ ହୋଇଗଲେ ।

## ବ୍ରାହ୍ମଣ ଓ ଅବ୍ରାହ୍ମଣ ସମାନ

ଉପରେ ପୁରୁଷସୂକ୍ତର ଯେଉଁ ମନ୍ତ୍ର ଉଦ୍ଧୃତ ହୋଇଛି ତାକୁ ଭିତ୍ତି କରି ବ୍ରାହ୍ମଣମାନେ କହୁଥିଲେ ଯେ ବ୍ରହ୍ମଦେବଙ୍କ ମୁଖରୁ

ଉତ୍ପନ୍ନ ହୋଇଥିବାରୁ ସେମାନେ ହେଉଛନ୍ତି ସୃଷ୍ଟିବର୍ଣ୍ଣ ମଧ୍ୟରେ ଶ୍ରେଷ୍ଠ । ମଜ୍ଝିମ ନିକାୟର ଅସ୍ସଲାୟନ ସୁତ୍ତରେ ଏହି ସମ୍ପର୍କରେ ଭଗବାନଙ୍କର ଏକ ଉପାଦେୟ ଉକ୍ତି ଅଛି । ତହିଁର ସାରକଥା ହେଉଛି—

ଥରେ ଭଗବାନ୍ ଶ୍ରାବସ୍ତୀରେ ଅନାଥ ପିଣ୍ଡିକର ଉପବନରେ ରହୁଥିଲେ । ସେହି ସମୟରେ କୌଣସି କାରଣରୁ ବିଭିନ୍ନ ଦେଶରୁ ପାଞ୍ଚଶହ ବ୍ରାହ୍ମଣ ଶ୍ରାବସ୍ତୀକୁ ଆସିଥିଲେ । ସେମାନଙ୍କ ମଧ୍ୟରେ ଏକ ପ୍ରଶ୍ନ ଉତ୍ଥାପିତ ହେଲା । ତାହା ହେଉଚି, ଶ୍ରମଣ ଗୌତମ କହୁଛନ୍ତି—ଚାରି ବର୍ଣ୍ଣଯାକ ମୋକ୍ଷ ମିଳେ । ତେଣୁ ତାଙ୍କ ସହିତ ଯୁକ୍ତିତର୍କ କରି ତାଙ୍କୁ ପରାଜିତ କରାଯିବ କିପରି ? ଶେଷରେ ସ୍ଥିର ହେଲା ଯେ ବ୍ରାହ୍ମଣ ଯୁବ ଆଶ୍ୱଲାୟନ ସେହି କାର୍ଯ୍ୟ କରିବେ ।

ଆଶ୍ୱଲାୟନଙ୍କର ସେ ସମୟକୁ ଅଧ୍ୟୟନ ଶେଷ ହୋଇ ଆସିଥାଏ । ନିଘଣ୍ଟୁ, ଛନ୍ଦଃ ଶାସ୍ତ୍ର ପ୍ରଭୃତି ବେଦାଙ୍ଗ ସହିତ ତ୍ରିବେଦ ତାଙ୍କର କଣ୍ଠସ୍ଥ ଥାଏ । ତଥାପି ଭଗବାନ୍ ବୁଦ୍ଧଙ୍କ ସହିତ ତତ୍ତ୍ୱଚର୍ଚ୍ଚା କରିବା ବଡ଼ ଦୁଃସାଧ୍ୟ ବ୍ୟାପାର ବୋଲି ସେ ଭଲ ଭାବରେ ବୁଝିଥିଲେ । ବୁଦ୍ଧଙ୍କ ସହିତ ଯୁକ୍ତିତର୍କ କରିବା ପାଇଁ ତାଙ୍କୁ ବସ୍ତୁ ଯିବାରୁ ସେ କହିଲେ—"ହେ ଶ୍ରମଣ ! ଗୌତମ ହେଉଛନ୍ତି ଧର୍ମବାଦୀ । ଧର୍ମବାଦୀ ଲୋକ ସହିତ ବାଦ କରିବା ଉଚିତ ନୁହେ । ମୁଁ ଯଦ୍ୟପି ବେଦ ପାରଗ ତଥାପି ଗୌତମଙ୍କ ସହିତ ବାଦ ବିବାଦ କରିବାପାଇଁ ମୁଁ ସମର୍ଥ ନୁହେ ।"

ବହୁ ସମୟ ଧରି ବିଚାର ହେବା ପରେ ବ୍ରାହ୍ମଣମାନେ ଆଶ୍ୱଲାୟନଙ୍କୁ କହିଲେ, "ହେ ଆଶ୍ୱଲାୟନ ! ତୁମେ ତ ପରିବ୍ରାଜକ ଧର୍ମ ଅଧ୍ୟୟନ କରିଛ । ବିନା ଯୁଦ୍ଧରେ ପରାଜିତ ହେବା ତୁମପକ୍ଷରେ ଉଚିତ ନୁହେ ।"

ଆଶ୍ୱଳାୟନ କହିଲେ, "ଗୌତମଙ୍କ ସହିତ ଯୁକ୍ତିତର୍କ କରିବା ସହଜ ନୁହେ । ତଥାପି ଆପଣମାନଙ୍କ ଆଗ୍ରହ ହେତୁରୁ ମୁଁ ଆପଣଙ୍କ ସହିତ ଚାଲୁଛି ।"

ଏହାପରେ ଆଶ୍ୱଳାୟନ ସେହି ବ୍ରାହ୍ମଣମାନଙ୍କ ସହିତ ଭଗବାନ୍ ବୁଦ୍ଧଙ୍କ ନିକଟକୁ ଗଲେ ଓ କୁଶଳ ପ୍ରଶ୍ନାଦି କରି ଏକ ପାର୍ଶ୍ୱରେ ବସିଗଲେ । ଏହାପରେ ଆଶ୍ୱଳାୟନ କହିଲେ, "ହେ ଗୌତମ ! ବ୍ରାହ୍ମଣମାନେ କହୁଛନ୍ତି, ବ୍ରାହ୍ମଣ ବର୍ଣ୍ଣ ହେଉଛି ଶ୍ରେଷ୍ଠ ଓ ଅନ୍ୟ ବର୍ଣ୍ଣମାନେ ହୀନ । ବ୍ରାହ୍ମଣ ବର୍ଣ୍ଣହିଁ ଶୁକ୍ଳ ଓ ଅନ୍ୟ ବର୍ଣ୍ଣମାନେ କୃଷ୍ଣ । ବ୍ରାହ୍ମଣ ମାନଙ୍କୁହିଁ ମୁକ୍ତି ମିଳେ—ଅନ୍ୟମାନଙ୍କୁ ନୁହେ । ବ୍ରାହ୍ମଣମାନେ ବ୍ରହ୍ମଦେବଙ୍କ ମୁଖରୁ ଉତ୍ପନ୍ନ ଓ ତାଙ୍କର ଔରସପୁତ୍ର, ତେଣୁ ସେମାନେ ହେଉଛନ୍ତି ବ୍ରହ୍ମଦେବଙ୍କର ଦାୟାଦ । ହେ ଗୌତମ ! ଏ ସମ୍ପର୍କରେ ଆପଣଙ୍କର ମତ କଣ ?"

ଭଗବାନ୍—"ହେ ଆଶ୍ୱଳାୟନ ! ବ୍ରାହ୍ମଣମାନଙ୍କ ସ୍ତ୍ରୀମାନେ ଋତୁମତୀ ହେଉଛନ୍ତି, ଗର୍ଭବତୀ ହେଉଛନ୍ତି, ସନ୍ତାନ ଜନ୍ମ କରୁଛନ୍ତି ଓ ସେମାନଙ୍କୁ ସ୍ତନ୍ୟ ଦେଉଛନ୍ତି । ଏହି ପ୍ରକାରେ ବ୍ରାହ୍ମଣଙ୍କର ସନ୍ତାନ ଅନ୍ୟମାନଙ୍କ ସନ୍ତାନ ତୁଲ୍ୟ ମାତୃ ଗର୍ଭରୁ ଜନ୍ମ ହେଉଛନ୍ତି । ଏହା ସତ୍ତ୍ୱେ ଯଦି ବ୍ରାହ୍ମଣମାନେ କହିବେ ଯେ ସେମାନେ ବ୍ରହ୍ମଦେବଙ୍କ ମୁଖରୁ ଉତ୍ପନ୍ନ ତାହା ହେଲେ ଏଟା କଣ ଆଶ୍ଚର୍ଯ୍ୟ କଥା ନୁହେଁ କି ?"

ଆଶ୍ୱଳାୟନ—"ହେ ଗୌତମ ! ଆପଣଙ୍କର ଯାହା ଇଚ୍ଛା ତା କହନ୍ତୁ ; କିନ୍ତୁ ବ୍ରାହ୍ମଣମାନଙ୍କର ଏହା ଦୃଢ଼ ବିଶ୍ୱାସ ଯେ ସେମାନେ ହେଉଛନ୍ତି ବ୍ରହ୍ମଦେବଙ୍କ ଦାୟାଦ ।"

ଭଗବାନ୍—"ହେ ଆଶ୍ୱଲାୟନ ! ଯୌନ, କାମ୍ବୋଜ ପ୍ରଭୃତି ସମ୍ଭ୍ରାନ୍ତ ପ୍ରଦେଶରେ ଆର୍ଯ୍ୟ ଓ ଦାସ, ଏ ଦୁଇଟି ଜାତି ଅଛନ୍ତି । ପୁଣି କେବେ କେବେ ଆର୍ଯ୍ୟମାନେ ଦାସ ଓ ଦାସମାନେ ମଧ୍ୟ ଆର୍ଯ୍ୟ ହେଉଛନ୍ତି । ତୁମେ କଣ ଏକଥା ଶୁଣିଛ ?"

ଆଶ୍ୱଲାୟନ—"ଆଜ୍ଞା, ହଁ, ମୁଁ ଏକଥା ଶୁଣିଛି ।"

ଭଗବାନ୍—"ଯଦି ଏପରି ହୁଏ, ତାହାହେଲେ ବ୍ରହ୍ମଦେବ ବ୍ରାହ୍ମଣଙ୍କୁ ନିଜ ମୁଖରୁ ଜାତ କରାଇଛନ୍ତି ଏବଂ ସବୁ ବର୍ଗ ମଧ୍ୟରେ ସେମାନେ ହିଁ ଶ୍ରେଷ୍ଠ ବୋଲି କହିବାର କି ପ୍ରମାଣ ଅଛି ?"

ଆଶ୍ୱଲାୟନ—"ଆପଣ ଯାହା କହିବାକୁ ଚାହାନ୍ତି ପଛେ, ବ୍ରାହ୍ମଣମାନଙ୍କର ଏହି ଦୃଢ଼ ବିଶ୍ୱାସ ଅଛି ଯେ କେବଳ 'ବ୍ରାହ୍ମଣ ବର୍ଣ୍ଣ ହେଉଛି ଶ୍ରେଷ୍ଠ ଓ ଅନ୍ୟ ବର୍ଣ୍ଣମାନେ ହେଉଛନ୍ତି ହୀନ' ।"

ଭଗବାନ୍—"ତୁମେ କଣ ଏମିତି ଭାବୁଚକି—ଯଦି କ୍ଷତ୍ରିୟ, ବୈଶ୍ୟ ବା ଶୂଦ୍ର ପ୍ରାଣଘାତ, ବ୍ୟଭିଚାର, ଅସତ୍ୟ ଭାଷଣ, ଚୁଗୁଲି, ଗାଳି ଗୁଲଜ, ବୃଥା ପ୍ରଳାପ କରନ୍ତି, ଅନ୍ୟ ଲୋକଙ୍କ ଧନ ଉପରେ ଦୃଷ୍ଟି ରଖନ୍ତି, ଦ୍ୱେଷଭାବ ବଢ଼ାନ୍ତି, ନାସ୍ତିକତା ପୋଷଣ କରନ୍ତି ତେବେ ଦେହତ୍ୟାଗ ପରେ କେବଳ ସେହିମାନେ ହିଁ ନରକରେ ପତିତ ହୁଅନ୍ତି ଏବଂ ଯଦି ବ୍ରାହ୍ମଣମାନେ ସେ ସବୁ କାର୍ଯ୍ୟ କରନ୍ତି ସେମାନେ ନରକରେ ପଡ଼ନ୍ତି ନାହିଁ ।"

ଆଶ୍ୱଲାୟନ—"ହେ ଗୌତମ ! ଯେ କୌଣସି ବର୍ଣ୍ଣର ଲୋକ ଯଦି ଏହି ପାପ କରନ୍ତି, ମରିବାପରେସେମାନେ ନରକରେ ପଡ଼ିବେ । ବ୍ରାହ୍ମଣ ହୁଅନ୍ତୁ ବା ଅବ୍ରାହ୍ମଣ ହୁଅନ୍ତୁ, ସମସ୍ତଙ୍କୁ ନିଜ ନିଜର ପ୍ରାୟଶ୍ଚିତ୍ତ କରିବାକୁ ପଡ଼ିବ ।"

ଭଗବାନ୍—"ତୁମେ କଣ ଭାବୁଚ ଯେ—ଯଦି କୌଣସି ବ୍ରାହ୍ମଣ ପ୍ରାଣଘାତରୁ ନିବୃତ୍ତ ରହେ, ଚୋର, ବ୍ୟଭିଚାର, ଅସତ୍ୟ ଭାଷଣ, ଚୁଗୁଲି, ଗାଳି ଗୁଲଜ, ବୃଥାପ୍ରଳାପ, ପରଧନ ଲୋଭ, ଦ୍ୱେଷ ଏବଂ ନାସ୍ତିକତା ଏହି ଦଶଟି ପାପରୁ ନିବୃତ୍ତ ରହେ ତାହା ହେଲେ କେବଳ ସେହି ବ୍ରାହ୍ମଣ ସ୍ୱର୍ଗକୁ ଯିବ ଏବଂ ଏ ସବୁ ପାପ ନ କରୁଥିବା ଅନ୍ୟ ବର୍ଣ୍ଣର ଲୋକେ ସ୍ୱର୍ଗକୁ ଯିବେ ନାହିଁ ?"

ଆଶ୍ୱଳାୟନ—"ଯେ କୌଣସି ବର୍ଣ୍ଣର ଲୋକ ଏହି ପାପରୁ ନିବୃତ୍ତ ରହିଲେ ସ୍ୱର୍ଗକୁ ଯିବ । ପୁଣ୍ୟ ଆଚରଣର ଫଳ, ବ୍ରାହ୍ମଣ ଅବ୍ରାହ୍ମଣ ଦୁହିଁଙ୍କୁ ସମାନ ଭାବରେ ମିଳିବ ।"

ଭଗବାନ୍—"ତୁମେ କଣ ମନେ କରୁଛ ଯେ, ଏହି ପ୍ରଦେଶରେ କେବଳ ବ୍ରାହ୍ମଣ ଦ୍ୱେଷ-ବୈରଭାବ ଶୂନ୍ୟ ମୈତ୍ରୀ-ଭାବନା କରିପାରେ—ଆଉ କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ସେହି ଭାବନା କରିପାରିବେ ନାହିଁ ?"

ଆଶ୍ୱଳାୟନ— "ଚାରିବର୍ଣ୍ଣଯାକ ସେହି ମୈତ୍ରୀଭାବନା କରିପାରନ୍ତି ।"

ଭଗବାନ୍—"ତାହାହେଲେ, ବ୍ରାହ୍ମଣ ହିଁ ଶ୍ରେଷ୍ଠ ବର୍ଣ୍ଣର ଓ ଅନ୍ୟ ବର୍ଣ୍ଣମାନେ ହୀନ ବୋଲି କହିବାରେ କି ଅର୍ଥ ଅଛି ?"

ଆଶ୍ୱଳାୟନ—"ଆପଣ ଯାହା କହନ୍ତୁ ପଛେ, ଏକଥା ସତ ଯେ ବ୍ରାହ୍ମଣ ନିଜକୁ ଶ୍ରେଷ୍ଠ ମନେ କରେ ଓ ଅନ୍ୟମାନଙ୍କୁ ହୀନ ବୋଲି ଭାବେ ।"

ଭଗବାନ୍—"ହେ ଆଶ୍ୱଳାୟନ ! କୌଣସି ରାଜ ଚକ୍ରବର୍ତ୍ତୀ ଯଦି ସବୁ ଜାତିର ଶହେ ପୁରୁଷଙ୍କୁ ଏକାଠି କରନ୍ତି ଓ ସେମାନଙ୍କ ମଧ୍ୟରୁ କ୍ଷତ୍ରିୟ ବ୍ରାହ୍ମଣ, କିମ୍ବା ରାଜକୁଳୋଦ୍ଭବ ଲୋକଙ୍କୁ ଏପରି

କହନ୍ତି 'ହଇ ହେ, ଏଠାକୁ ଆସ ଓ ଶାଳ ବା ଚନ୍ଦନ ପରି ଉତ୍ତମ ବୃକ୍ଷର ଉତ୍ତରାରଣି ନେଇ ଅଗ୍ନି ଜାତ କରାଅ', ଓ ଅନ୍ୟ ଆଡ଼େ ଚଣ୍ଡାଳ-ନିଷାଦ ଆଦି ହୀନ କୁଳରଲୋକଙ୍କୁ ଯଦି କହନ୍ତି— 'ହଇ ହେ, ଇଏଠାକୁ ଆସ ଓ କୁକୁରକୁଖାଦ୍ୟ ଦିଆ ଯିବା ପାତ୍ରରେ, ଘୁଷୁରିକୁ ଆହାର ଦିଆଯାଉଥିବାପାତ୍ରରେ ବା ତନ୍ତୀର ରଙ୍ଗ ଦିଆ ପାତ୍ରରେ, ଗବ କାଠରଉତ୍ତରାରଣିରେ ନିଆଁ ବାହାର କର', ତାହା ହେଲେ, ହେ ! ଆଶ୍ୱଲାୟନ ତୁମେ କଣ ମନେ କରୁଛ ଯେ ଉତ୍ତମ ଅରଣିରୁ ଜାତ ଅଗ୍ନି ଭାସ୍ୱର ଓ ତେଜୀୟାନ୍ ହେବ ଏବଂ ଅନ୍ୟ ଅରଣିରୁ ଉତ୍ପନ୍ନ ଅଗ୍ନି ସେପରି ହେବ ନାହିଁ ? ଓ ଏଥିରେ ଅଗ୍ନି କାର୍ଯ୍ୟ ହୋଇପାରିବ ନାହିଁ ?"

ଆଶ୍ୱଲାୟନ—"ହେ ଗୌତମ ! ଯେ କୌଣସି ବର୍ଣ୍ଣର ବ୍ୟକ୍ତି ଉତ୍ତମ ବା ଅଧମ କାଷ୍ଠର ଉତ୍ତରାରଣି ତିଆରି କରି ଯେ କୌଣସି ସ୍ଥାନରେ ଅଗ୍ନି ଉତ୍ପାଦନ କରୁ ନା କାହିଁକି ତାହା ସମାନ ଭାବରେ ଭାସ୍ୱର ହେବ ଏବଂ ତହିଁରେ ସମାନ ଭାବରେ ଅଗ୍ନିର କାର୍ଯ୍ୟ ସାଧିତ ହେବ ।"

ଭଗବାନ୍ -"ଯଦି କୌଣସି କ୍ଷତ୍ରିୟକୁମାର କୌଣସି ବ୍ରାହ୍ମଣ କନ୍ୟା ସହିତ ଦୈହିକ ସମ୍ବନ୍ଧ ରଖେ ଓ ତାହା ଫଳରେ ତାଙ୍କର ପୁତ୍ର ଜାତ ହୁଏ, ତାହାହେଲେ ତୁମେ କଣ ଭାବୁନାହଁ ଯେ ସେହି ସନ୍ତାନ ତାହାର ମାତା ପିତାଙ୍କ ସଦୃଶ ଜଣେ ମନୁଷ୍ୟ ହେବ ? ସେହିପରି ଯଦି କୌଣସି ବ୍ରାହ୍ମଣକୁମାର କ୍ଷତ୍ରିୟ କନ୍ୟାକୁ ବିବାହ କରେ ଓ ତାଙ୍କର ପୁତ୍ର ଜାତ ହୁଏ ତେବେ କଣ ତୁମେ ମନେ କରୁଛ ଯେ ସେହି ସନ୍ତାନ ପିତାମାତାଙ୍କ ପରି ନ ହୋଇ ଅନ୍ୟ ପ୍ରକାରର ହେବ ?"

ଆଶ୍ୱଲାୟନ—"ଏ ପ୍ରକାର ମିଶ୍ରିତ ବିବାହରୁ ଜାତ ହେବା ସନ୍ତାନ ତାହାର ପିତାମାତାଙ୍କ ପରି ହିଁ ହେବ । ତାକୁ ଆମେ ବ୍ରାହ୍ମଣ କହିପାରୁ କିମ୍ବା କ୍ଷତ୍ରିୟ ମଧ୍ୟ କହିପାରୁ ।"

ଭଗବାନ୍—"କିନ୍ତୁ, ହେ ଆଶ୍ୱଲାୟନ ! କୌଣସି ଘୋଡ଼ା ଓ ଗଧର ଶରୀର ସମ୍ପର୍କରୁ ଯେଉଁ ଶିଶୁ ଜନ୍ମେ ତାକୁ କଣ ଆମେ ମାଆ ବାପଙ୍କ ପରି ବୋଲି କହି ପାରିବା କି ? କଣ ତାକୁ ଘୋଡ଼ା କୁହାଯିବ ନା ଗଧ କୁହାଯିବ ?"

ଆଶ୍ୱଲାୟନ—"ହେ ଗୌତମ ! ତାକୁ ଘୋଡ଼ା କିମ୍ବା ଗଧ କୁହାଯାଇପାରିବ ନାହିଁ । ସେ ହେଉଛି ଏକ ଭିନ୍ନ ଧରଣର ପ୍ରାଣୀ । ତାକୁ ଆମେ ଖଚର ବୋଲି କହୁ । କିନ୍ତୁ ବ୍ରାହ୍ମଣ ଏବଂ କ୍ଷତ୍ରିୟଠାରୁ ଉତ୍ପନ୍ନ ଶିଶୁ ପ୍ରତି ଏକଥା ପ୍ରଯୁଜ୍ୟ ନୁହେ ।"

ଭଗବାନ୍—"ହେ ଆଶ୍ୱଲାୟନ ! ଦୁଇ ଜଣ ବ୍ରାହ୍ମଣ ଭାଇ ମଧ୍ୟରୁ ଜଣେ ବେଦାଧ୍ୟାୟୀ ଓ ଉଚ୍ଚ ଶିକ୍ଷିତ । ଅନ୍ୟ ଜଣକ ହେଉଛି ଅଶିକ୍ଷିତ । ତାହାହେଲେ ଶ୍ରାଦ୍ଧ ତଥା ଯଜ୍ଞ କାର୍ଯ୍ୟରେ କେଉଁ ଭାଇକୁ ପ୍ରଥମେ ବ୍ରାହ୍ମଣମାନେ ଆମନ୍ତ୍ରଣ କରିବେ ?"

ଆଶ୍ୱଲାୟନ—"ଯେ ଶିକ୍ଷିତ ତାକୁ ହିଁ ପ୍ରଥମେ ଆମନ୍ତ୍ରଣ କରାଯିବ ।"

ଭଗବାନ୍—"ମନେକର, ଦୁଇ ଭାଇଙ୍କ ଭିତରୁ ଜଣେ ବଡ଼ ପଣ୍ଡିତ ଏବଂ ଦୁରାଗ୍ରହୀ, ଆଉଜଣକ ବିଦ୍ୱାନ୍ ନୁହେ କିନ୍ତୁ ସୁଶୀଳ । ତାହାହେଲେ ଏ ଦୁହିଁଙ୍କ ଭିତରୁ ପ୍ରଥମେ କାହାକୁ ନିମନ୍ତ୍ରଣ କରାଯିବ ?"

ଆଶ୍ୱଲାୟନ—"ହେ ଗୌତମ ! ଯେ ଶୀଳବାନ୍ ତାକୁ ହିଁ ପ୍ରଥମେ ଆମନ୍ତ୍ରଣ ଦିଆଯିବ । ଦୁରାଗ୍ରହୀ ଲୋକକୁ ଯେଉଁ ଦାନ ଦିଆଯିବ ତାହା କିପରି ଅବା ଫଳଦାୟକ ହେବ ?"

ଭଗବାନ୍—"ହେ ଆଶ୍ୱଳାୟନ, ତୁମେ ପ୍ରଥମେ ଜାତି ଉପରେ ଗୁରୁତ୍ୱ ଦେଉଥିଲ, ଏବେ ପୁଣି ବେଦପାଠ ଓ ଶୀଳ ଉପରେ ଗୁରୁତ୍ୱ ଦେଉଛ । ଅର୍ଥାତ୍, ମୁଁ ଯେଉଁ ଚାତୁର୍ବର୍ଣ୍ଣ୍ୟ ଶୁଦ୍ଧି କଥା କହୁଛି, ତୁମେ ତାକୁ ମାନିଗଲ ।"

ଭଗବାନ୍ ବୁଦ୍ଧଙ୍କର ଏ ପ୍ରକାର କଥା ଶୁଣି ଆଶ୍ୱଳାୟନ ମୁଣ୍ଡ ନୁଆଇଁ ତୁନି ହୋଇ ବସିଗଲେ । ସେ ଆଉ କଣ କହିବେ, କିଛି ଭାବି ପାରିଲେ ନାହିଁ । ତା' ପରେ ଭଗବାନ୍ ତାଙ୍କୁ ଅସିତ ଦେବଳ ଋଷିଙ୍କ ଚରିତ ଶୁଣାଇଲେ ଓ ଶେଷରେ ଆଶ୍ୱଳାୟନ ତାଙ୍କର ଉପାସକ ହୋଇଗଲେ ।

## ଲୋକଙ୍କଠାରୁ ଅଧିକାର ମିଳିବା ଉଚିତ

ବ୍ରାହ୍ମଣ ବର୍ଣ୍ଣ ହେଉଛି ଶ୍ରେଷ୍ଠ ଓ ଅନ୍ୟ ବର୍ଣ୍ଣଗୁଡ଼ିକ ହେଉଛି ନୀଚ, ବ୍ରାହ୍ମଣ ଜାତିର ନେତା କେବଳ ଏତିକି କହି ତୁନି ହୋଇ ରହୁ ନଥିଲେ । ମଜ୍ଝିମ ନିକାୟର (ସ-୯୬) ଏସୁକାରି ସୁତ୍ତରୁ ଜଣାଯାଏ ଯେ ଚାତୁର୍ବର୍ଣ୍ଣ୍ୟର କର୍ତ୍ତବ୍ୟ ବତାଇବାର ଅଧିକାର ମଧ୍ୟ ବ୍ରାହ୍ମଣମାନେ ନିଜ ହାତରେ ରଖିଥିଲେ । ସେହି ସୁତ୍ତର ସାରକଥା ହେଉଛି :—

ଥରେ ଭଗବାନ୍ ବୁଦ୍ଧ ଶ୍ରାବସ୍ତୀର ଜେତବନରେ, ଅନାଥ ପିଣ୍ଡିକର ଉପବନରେ ଅବସ୍ଥାନ କରୁଥିଲେ । ସେହି ସମୟରେ ଏସୁକାରି ନାମକ ଜଣେ ବ୍ରାହ୍ମଣ ତାଙ୍କ ନିକଟକୁ ଗଲେ ଓ କୁଶଳ ପ୍ରଶ୍ନ କରି ଏକ ପାଖରେ ବସିଗଲେ । ସେ ପୁଣି କହିଲେ, "ହେ ଗୌତମ ! ବ୍ରାହ୍ମଣମାନେ ଚାରୋଟି ପରିଚର୍ଯ୍ୟା (ସେବା) ବତାଉଛନ୍ତି । ବ୍ରାହ୍ମଣମାନଙ୍କର ପରିଚର୍ଯ୍ୟା ଚାରିବର୍ଣ୍ଣ ଯାକ କରି ପାରନ୍ତି, କ୍ଷତ୍ରିୟଙ୍କ ସେବା କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର କରି-

ପାରନ୍ତି ବୈଶ୍ୟର ସେବା ବୈଶ୍ୟ ଓ ଶୂଦ୍ର କରିପାରନ୍ତି, ଏବଂ ଶୂଦ୍ରର ପରିଚର୍ଯ୍ୟା କେବଳ ଶୂଦ୍ର କରି ପାରିବ । ଅନ୍ୟ ବର୍ଣ୍ଣର ମନୁଷ୍ୟ ତାହାର ପରିଚର୍ଯ୍ୟା କରିବ କିପରି ? ଏହି ପରିଚର୍ଯ୍ୟା ସମ୍ପର୍କରେ ଆପଣମାନଙ୍କ ମତ କଣ ?"

ଭଗବାନ୍—"ହେ ବ୍ରାହ୍ମଣ ! ସେହି ବ୍ରାହ୍ମଣମାନଙ୍କ କଥାରେ କଣ ସବୁଲୋକେ ଏକମତ ହେବେ ? ଏଇ ପରିଚର୍ଯ୍ୟା ବତାଇବା ପାଇଁ ଲୋକେ କଣ ସେମାନଙ୍କୁ ଅଧିକାର ଦେଇଛନ୍ତି ?"

ଏସୁକାରୀ—"ହେ ଗୌତମ, ଦେଇ ନାହାନ୍ତି ।"

ଭଗବାନ୍—ତାହାହେଲେ କହିବାକୁ ପଡ଼ିବ ଯେ ଲୋକଙ୍କ ଉପରେ ବ୍ରାହ୍ମଣମାନେ ଏଇ ସେବାଗୁଡ଼ିକୁ ଲଦି ଦେଇଛନ୍ତି— ଯେପରି କି ମାଂସ ଲୋଡ଼ୁ ନଥିବା କୌଣସି ଗରିବ ଲୋକଙ୍କୁ ତାହାର ଧନୀ ପ୍ରତିବେଶୀ କହେ—"ତୁ ଏହି ମାଂସ ଖାଆ, ଆଉ ତାର ମୂଲ୍ୟ ଦେଇ ଦେ ।" ମୁଁ କହିବାର ଅଭିପ୍ରାୟ ହେଉଛି, ମନୁଷ୍ୟ ଯେ କୌଣସି ବର୍ଣ୍ଣର ହେଉ ନା କାହିଁକି, ଯାହାର ସେବା କରିବାରେ କଲ୍ୟାଣ ହୁଏ ଓ ଅକଲ୍ୟାଣ ହୁଏ ନାହିଁ ତାହାର ପରିଚର୍ଯ୍ୟା କରିବା ଉଚିତ । ଗୃହିବର୍ଣ୍ଣର ବୋଧା ଲୋକଙ୍କୁ ଯଦି ଏକଥା ପଚରାଯାଏ ସେମାନେ ମଧ୍ୟ ଏ ମତ ଦେବେ । ମୁଁ କହୁ ନାହିଁ ଯେ, ଉଚ୍ଚକୁଳ ବା ଧନୀ ପରିବାରରେ ଜନ୍ମ ହେବା ଭଲ ବା ମନ୍ଦ । ଉଚ୍ଚକୁଳ, ଉଚ୍ଚବର୍ଣ୍ଣ ବା ଧନୀ ପରିବାରରେ ଜନ୍ମହେବା ମନୁଷ୍ୟ ଯଦି ପ୍ରାଣଘାତାଦି ପାପକରେ ତାହାହେଲେ ତାହାର କୁଳୀନତା ଉତ୍ତମ ନୁହେ । ଯଦି ସେ ପ୍ରାଣଘାତାଦି ପାପରୁ ବିରତ ହୁଏ ତେବେ ତାର କୁଳୀନତା ମନ୍ଦ ନୁହେ । ମୁଁ କହୁଚି, ଯେଉଁ ଲୋକର ପରିଚର୍ଯ୍ୟା କରିବା ଦ୍ୱାରା ଶ୍ରଦ୍ଧା, ଶୀଳ, ଶ୍ରୁତ, ତ୍ୟାଗ ଓ ପ୍ରଜ୍ଞା ଅଭିବୃଦ୍ଧି ଲାଭକରେ ତାହାର ସେବା କରିବା ଉଚିତ ।

ଏସୁକାରୀ—"ହେ ଗୌତମ ! ବ୍ରାହ୍ମଣମାନେ ଏହି ଚାରିପ୍ରକାର ଧନ କଥା କହନ୍ତି······ଭିକ୍ଷାଚର୍ଯ୍ୟା ବ୍ରାହ୍ମଣଙ୍କର ସ୍ୱକୀୟ ଧନ, ଧନୁଶର କ୍ଷତ୍ରୀୟଙ୍କର, କୃଷି ଓ ଗୋପାଳନ ବୈଶ୍ୟଙ୍କର ଏବଂ ଦା-ଟୋକେଇ ଶୂଦ୍ରଙ୍କର ଧନ । ଏହି ଚାରିବର୍ଣ୍ଣ ଯଦି ନିଜ ନିଜର ଧନପ୍ରତି ବୀତସ୍ପୃହ ହେବେ ତାହାହେଲେ ସେମାନେ ଚୋର ସଦୃଶ ଅକୃତ୍ୟ କଲେ ବୋଲି ଧରାଯିବ । ଏ ସମ୍ପର୍କରେ ଆପଣଙ୍କର ମତ କଣ ?"

ଭଗବାନ୍—"ହେ ବ୍ରାହ୍ମଣ ! ଏହି ଚାରିପ୍ରକାର ଧନ ନିର୍ଣ୍ଣୟ କରିବାର ଅଧିକାର କଣ ଲୋକେ ବ୍ରାହ୍ମଣମାନଙ୍କୁ ଦେଇଛନ୍ତି ?"

ଏସୁକାରୀ—"ଦେଇ ନାହାନ୍ତି, ଗୌତମ !"

ଭଗବାନ୍—"ତାହା ହେଲେ ବ୍ରାହ୍ମଣମାନଙ୍କର ଏହି କାର୍ଯ୍ୟ, ମାଂସ ନ ଖାଉଥିବା ଗରିବ ଲୋକ ଉପରେ ମାଂସ ଖିଆ ଲଦିଦେଇ ତାଠାରୁ ପଇସା ଅସୁଲ କରିବା ସଙ୍ଗେ ସମାନ ହେବ । ହେ ବ୍ରାହ୍ମଣ ! ମୁଁ ଏତିକ କହୁଛି ଯେ, ଆର୍ଯ୍ୟ-ଶ୍ରେଷ୍ଠ-ଧର୍ମ ହେଉଛି ସମସ୍ତଙ୍କର ସ୍ୱକୀୟ ଧନ । କ୍ଷତ୍ରିୟ, ବ୍ରାହ୍ମଣ, ବୈଶ୍ୟ ଏବଂ ଶୂଦ୍ର କୁଳରେ ଜନ୍ମିଥିବା ଲୋକଙ୍କୁ ଯଥାକ୍ରମେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଏବଂ ଶୂଦ୍ର କୁହାଯାଏ । ଯେଉଁ ପ୍ରକାର କାଠ, ଶକଳିକା, ତୃଣ ବା ଉପଲରୁ ଉତ୍ପନ୍ନ ଅଗ୍ନିକୁ ଯଥାକ୍ରମେ କାଷ୍ଠାଗ୍ନି, ଶକଳିକାଗ୍ନି, ତୃଣାଗ୍ନି ଏବଂ ଗୋମୟାଗ୍ନି କୁହାଯାଏ, ସେହିପରି ଏଗୁଡ଼ିକ କେବଳ ନାମମାତ୍ର । କିନ୍ତୁ ଏହି ଚାରି ଜାତିର କୌଣସି ଲୋକ ଯଦି ପ୍ରାଣଘାତାଦି ପାପରୁ ନିବୃତ୍ତ ହୁଏ, ତାହାହେଲେ କଣ ତୁମେ ଭାବୁଛ ଯେ ସେମାନଙ୍କ ମଧ୍ୟରୁ କେବଳ ବ୍ରାହ୍ମଣମାନେ ମୈତ୍ରୀ-ଭାବନା କରି ପାରିବେ ଓ ଅନ୍ୟବର୍ଣ୍ଣର ଲୋକେ କରି ପାରିବେ ନାହିଁ ?

ଏସୁକାରୀ—"ହେ ଗୌତମ, ସେମିତି ନୁହେ, ଯେ କୌଣସି ବର୍ଣ୍ଣର ଲୋକ ମୈତ୍ରୀ-ଭାବନା କରି ପାରିବ ।"

ଭଗବାନ୍—"ତୁମେ କଣ ମନେ କରୁଚ ଯେ କେବଳ ବ୍ରାହ୍ମଣ ନଦୀକୁ ଯାଇ ସ୍ନାନ ଚୂର୍ଣ୍ଣ ଦ୍ୱାରା ନିଜର ଶରୀରକୁ ପରିଷ୍କାର କରି ପାରିବ ଓ ଅନ୍ୟ ବର୍ଣ୍ଣର ଲୋକ କରି ପାରିବ ନାହିଁ ?"

ଏସୁକାରୀ—"ହେ ଗୌତମ, ତା' ନୁହେ । ଚାରିବର୍ଣ୍ଣ ଯାକର ଲୋକ ନଦୀକୁ ଯାଇ ସ୍ନାନ ଚୂର୍ଣ୍ଣରେ ନିଜ ଦେହକୁ ପରିଷ୍କାର କରି ପାରନ୍ତି ।"

ଭଗବାନ୍—"ଠିକ୍ ସେହିପରି, ହେ ବ୍ରାହ୍ମଣ ! ସବୁ ବଂଶର ଲୋକେ ତଥାଗତଙ୍କ ଉପଦେଶ ଅନୁସାରେ ଚଳି ନ୍ୟାୟ ଧର୍ମର ଆରାଧନା କରି ପାରିବେ ।"

## ବ୍ରାହ୍ମଣ ଜାତିର ଶ୍ରେଷ୍ଠତ୍ୱର ବୃଥା ଅହଙ୍କାର

ଭଗବାନ୍ ବୁଦ୍ଧଙ୍କର ପରିନିର୍ବାଣ ପରେ ମଧ୍ୟ ତାଙ୍କର ମୁଖ୍ୟ ଶିଷ୍ୟମାନେ ଚାତୁର୍ବର୍ଣ୍ଣ୍ୟକୁ ମାନୁ ନଥିଲେ । ଏହି ବ୍ୟବସ୍ଥା, କୃତ୍ରିମ ବୋଲି ସେମାନେ କହୁଥିଲେ । 'ମଜ୍ଝିମ ନିକାୟ'ର (ସୂ. ୮୪) 'ମଧୁର ସୁତ୍ତ'ରେ ଏଥିର ଏକ ସୁନ୍ଦର ଦୃଷ୍ଟାନ୍ତ ଦିଆ ଯାଇଛି । ତହିଁର ସାରକଥା ହେଉଛି :—

ଥରେ ଆୟୁଷ୍ମାନ୍ ମହାକଚ୍ଚାନ ମଧୁରା (୧) ନିକଟବର୍ତ୍ତୀ 'ଗୁନ୍ଦାବନ'ରେ ରହୁଥିଲେ । ମଥୁରା ରାଜା ଅବନ୍ତୀପୁତ୍ର ମହାକଚ୍ଚାନଙ୍କର କୀର୍ତ୍ତିକଳାପ ଶୁଣିଥିଲେ । ସେ ନିଜର ଦଳ ବଳ ସହିତ ତାଙ୍କ ପାଖକୁ ଯାଇ, କୁଶଳ ପ୍ରଶ୍ନାଦି କରି ଏକ ପାଖରେ ବସିଗଲେ ।

---

(୧) ଆଜିକାଲି ଏହାର ନାମ ମଥୁରା ।

ତା ପରେ ତାଙ୍କୁ କହିଲେ—"ହେ କାତ୍ୟାୟନ ! ବ୍ରାହ୍ମଣମାନେ କହୁଛନ୍ତି ଯେ, ବ୍ରାହ୍ମଣ ବର୍ଣ୍ଣ ହେଉଛି ଶ୍ରେଷ୍ଠବର୍ଣ୍ଣ ଓ ଅନ୍ୟ ବର୍ଣ୍ଣମାନେ ହୀନବର୍ଣ୍ଣ ଅଟନ୍ତି—ବ୍ରାହ୍ମଣ ବର୍ଣ୍ଣହିଁ ଶୁକ୍ଳ, କିନ୍ତୁ ଅନ୍ୟ ବର୍ଣ୍ଣ ହେଉଛି କୃଷ୍ଣ, କେବଳ ବ୍ରାହ୍ମଣଙ୍କୁ ମୁକ୍ତି ମିଳେ—ଅନ୍ୟଙ୍କୁ ମିଳେନାହିଁ । ବ୍ରାହ୍ମଣମାନେ ବ୍ରହ୍ମଦେବଙ୍କ ମୁଖରୁ ଜାତ ଓ ତାଙ୍କର ଔରସ ପୁତ୍ର, ଏ ବିଷୟରେ ଆପଣଙ୍କର ମତ କଣ ?"

କାତ୍ୟାୟନ—"ହେ ମହାରାଜ ! ଏହା ହେଉଛି ଏକ ନିରର୍ଥକ ଚିତ୍କାର । ମନେ କରନ୍ତୁ, ଯଦି କୌଣସି କ୍ଷତ୍ରିୟ ଧନ ଧାନ୍ୟ ଓ ରାଜ୍ୟ ପ୍ରଭୃତି ଦ୍ୱାରା ସମୃଦ୍ଧ ହୁଏ, ତାହାହେଲେ କଣ ଚାରିବର୍ଣ୍ଣ-ଯାକର ଲୋକେ ତାଙ୍କର ସେବା କରିବେ ନାହିଁ ?"

ରାଜା—"ହେ କାତ୍ୟାୟନ ଚାରିବର୍ଣ୍ଣର ଲୋକେ ତାଙ୍କର ସେବା କରିବେ ।"

କାତ୍ୟାୟନ—"ତାହାହେଲେ କଣ ଚାରିବର୍ଣ୍ଣ ଯାକର ଲୋକେ ସମାନ ବୋଲି ପ୍ରମାଣିତ ହେଉନାହିଁ ?"

ରାଜା—"ଏ ଦୃଷ୍ଟିରୁ ଚାରିବର୍ଣ୍ଣର ଲୋକେ ସମାନ ବୋଲି ନିଶ୍ଚୟ ପ୍ରମାଣିତ ହେଉଛି ।"

କାତ୍ୟାୟନ—"ଏଣୁ ମୁଁ କହୁଛି, ବ୍ରାହ୍ମଣବର୍ଣ୍ଣ ଶ୍ରେଷ୍ଠ ବର୍ଣ୍ଣ ବୋଲି ସେମାନେ ଯାହା କହୁଛନ୍ତି ତାହା ହେଉଚି ବୃଥା ଚିତ୍କାର ମାତ୍ର । କ'ଣ ମହାରାଜା ଏପରି ମନେ କରୁ ନାହାନ୍ତି କି ଯେ, କ୍ଷତ୍ରିୟ, ବ୍ରାହ୍ମଣ, ବୈଶ୍ୟ ତଥା ଶୂଦ୍ର ବର୍ଣ୍ଣର ଲୋକ ଯଦି ପ୍ରାଣଘାତାଦି ପାପ କରନ୍ତି ତାହାହେଲେ ସେମାନଙ୍କୁ ସମାନ ଭାବରେ ଦୁର୍ଗତି ଭୋଗ କରିବାକୁ ପଡ଼ିବ ।"

ରାଜା –"ଚାରିବର୍ଣ୍ଣ ଭିତରୁ ଯେ କୌଣସି ଲୋକ ପାପ କର୍ମ କଲେ ଦୁର୍ଗତି ପାଇବ ।"

କାତ୍ୟାୟନ—"ମହାରାଜ ! ଯଦି ଏହା ହୁଏ, ତେବେ କଣ ଚାରିବର୍ଣ୍ଣ ସମାନ ନୁହନ୍ତି ? ଏ ବିଷୟରେ ଆପଣଙ୍କର ମତ କଣ ?"

ରାଜା—"ଏହି ଦୃଷ୍ଟିରୁ ଚାରିବର୍ଣ୍ଣଯାକ ଅବଶ୍ୟ ସମାନ । ତହିଁରେ ତ ମତେ କିଛି ଭେଦ ଦେଖା ଯାଉନାହିଁ ।"

କାତ୍ୟାୟନ—"ଚାରିବର୍ଣ୍ଣ ମଧ୍ୟରୁ ଯେ କୌଣସି ବ୍ୟକ୍ତି ଯଦି ପ୍ରାଣଘାତାଦି ପାପ ନ କରେ ତାହାହେଲେ ସେ ସ୍ୱର୍ଗ ଯିବ ନା ନାହିଁ ?"

ରାଜା—"ମୁଁ ମନେ କରେ ଯେ ସେ ସ୍ୱର୍ଗଯିବ ।"

କାତ୍ୟାୟନ—"ଏହି ହେତୁ ମୁଁ କହେ ଯେ, ବ୍ରାହ୍ମଣ ବର୍ଣ୍ଣକୁ ଶ୍ରେଷ୍ଠବର୍ଣ୍ଣ କହିବା ଏକ ନିଃସାର ଧ୍ୱନିମାତ୍ର । ହେ ମହାରାଜ ! ମନେ କରନ୍ତୁ ଆପଣଙ୍କ ରାଜ୍ୟରେ କୌଣସି ବର୍ଣ୍ଣର ଲୋକ ଯଦି ଚୋରି, ଲୁଟି, ହତ୍ୟା, ପରଦାରାଭି ଗମନ ପ୍ରଭୃତି ଦୋଷ କରେ ଓ ରାଜ ପୁରୁଷମାନେ ତାକୁ ଧରିଆଣି ଆପଣଙ୍କ ଆଗରେ ଠିଆ କରାନ୍ତି, ତାହା ହେଲେ ଆପଣ ତାକୁ ( ତାର ଜାତି ବିଚାର ନ କରି ) ଉଚିତ ଦଣ୍ଡ ଦେବେ ନା ନାହିଁ ?"

ରାଜା—"ତାକୁ ଯଦି ପ୍ରାଣଦଣ୍ଡ ଦିଆଯିବା କଥା, ତେବେ ମୁଁ ତାଙ୍କୁ ବଧ କରାଇବି । ସେ ଦଣ୍ଡନୀୟ ବିବେଚିତ ହେଲେ ତାକୁ ଦଣ୍ଡ ଦେବି । ପୁଣି ସେ ଯଦି ନିର୍ବାସନର ଯୋଗ୍ୟ ହୁଏ ମୁଁ ତାକୁ ନିର୍ବାସନ କରିବି । ତାର କାରଣ ହେଉଛି, ସେତିକବେଳେ ସେହି ଲୋକର ବ୍ରାହ୍ମଣ, କ୍ଷତ୍ରିୟ ପ୍ରଭୃତି ବୋଲି ଯେଉଁ ସଂଜ୍ଞା ଥିଲି ତାହା ନଷ୍ଟ ହୋଇ ଯାଇଥାଏ ଓ ଅପରାଧୀ ବୋଲି ସେ ବିବେଚିତ ହୋଇଥାଏ ।"

କାତ୍ୟାୟନ—"ତାହାହେଲେ କଣ ଏଇ ଚାରିବର୍ଣ୍ଣ ଯାକ ସମାନ ନୁହନ୍ତି ?"

ରାଜା—"ଏ ଦୃଷ୍ଟିରୁ ଦେଖିଲେ ଚୃରବର୍ଣ୍ଣ ଯାକ ସମାନ ।"

କାତ୍ୟାୟନ—"ମନେ କରନ୍ତୁ, ଚୃରବର୍ଣ୍ଣ ଭିତରୁ କୌଣସି ଏକ ବର୍ଣ୍ଣର ଜଣେ ଲୋକ ପରିବ୍ରାଜକ ହୋଇଗଲା ଓ ସଦାଚାର ପାଳନ କଲା । ଆପଣ ତା ସହିତ କି ଭଳି ବ୍ୟବହାର କରିବେ ?"

ରାଜା—"ଆମେ ତାହାର ବନ୍ଦନା କରିବୁ, ତାକୁ ଯଥୋଚିତ ସମ୍ମାନ ଦେବୁ ଓ ଅନ୍ନବସ୍ତ୍ର ପ୍ରଭୃତି ଦରକାରୀ ପଦାର୍ଥ ଦେବୁ । ଏଥିର କାରଣ ହେଉଚି, ସେ ଲୋକର କ୍ଷତ୍ରିୟ, ବ୍ରାହ୍ମଣ, ବୈଶ୍ୟ, ଶୂଦ୍ର ପ୍ରଭୃତି ନାମ ସେତେବେଳକୁ ନଷ୍ଟ ହୋଇ ଯାଇଥାଏ ଓ କେବଳ ଶ୍ରମଣ ନାମରେ ସେ ପରିଚିତ ହୋଇଥାଏ ।"

କାତ୍ୟାୟନ—"ତାହା ହେଲେ କଣ ଚୃରବର୍ଣ୍ଣଯାକ ସମାନ ବୋଲି ପ୍ରମାଣିତ ହେଉନାହିଁ ?"

ରାଜା—"ଏହି ବିଚାରରେ ଚୃରବର୍ଣ୍ଣଯାକ ସମାନ ବୋଲି ଅବଶ୍ୟ ପ୍ରମାଣିତ ହୋଇ ଯାଉଛି ।"

କାତ୍ୟାୟନ—"ତେଣୁ ମୁଁ କହୁଚି ଯେ ବ୍ରାହ୍ମଣ ବର୍ଣ୍ଣକୁ ଶ୍ରେଷ୍ଠ କହିବା ଏକ ବୃଥା ଚିତ୍କାର ମାତ୍ର ।"

ଏହି ଆଳାପ ପରେ ଅବନ୍ତୀ ରାଜା ମହାକାତ୍ୟାୟନଙ୍କୁ କହିଲେ, "ଆପଣଙ୍କ ଉପଦେଶ ବଡ଼ ସୁନ୍ଦର । ଯେପରି କେହି ଓଲଟା ପାତ୍ରକୁ ଉପର ମୁହାଁ କରି ରଖି ଦିଏ, ଆଚ୍ଛାଦିତ ବସ୍ତୁକୁ ଖୋଲି ଦିଏ କିମ୍ବା ଚକ୍ଷୁଷ୍ମାନ୍ ଲୋକଙ୍କୁ ଅନ୍ଧାରରେ ପଦାର୍ଥ ଦେଖିବାପାଇଁ ଆଲୋକ ଦିଆଯାଏ, ସେହିପରି ଆପଣ ମୋତେ ବହୁ ଉପଦେଶ ଦେଇଛନ୍ତି, ତେଣୁ ମୁଁ ଆପଣଙ୍କ ଧର୍ମ ଓ ଭିକ୍ଷୁ ସଂଘଠାରେ ଶରଣ ପଶିଲି । ଆଜିଠାରୁ ବଞ୍ଚିଥିବା ଯାଏ ମତେ ଶରଣାଗତ ଉପାସକ ବୋଲି ଗ୍ରହଣ କରନ୍ତୁ ।"

କାତ୍ୟାୟନ—"ମହାରାଜ ! ଆପଣ ମୋର ଶରଣାଗତ ହୁଅନ୍ତୁ ନାହିଁ । ମୁଁ ନିଜେ ଯେଉଁ ଭଗବାନଙ୍କର ଶରଣାଗତ ଆପଣ ତାଙ୍କର ଶରଣାଗତ ହୁଅନ୍ତୁ ।"

ରାଜା—"ହେ କାତ୍ୟାୟନ । ଏବେ ସେ ଭଗବାନ କେଉଁଠାରେ ଅଛନ୍ତି ?"

କାତ୍ୟାୟନ—"ସେହି ଭଗବାନ୍ ପରିନିର୍ବାଣ ପାଇ୍‌ଗଲେଣି ।"

ରାଜା—"ସେହି ଭଗବାନ ବଞ୍ଚିଥିଲେ ତାଙ୍କର ଦର୍ଶନ ଲାଳସାରେ ମୁଁ ଶହେ ଯୋଜନ ବାଟ ମଧ୍ୟ ଯାଇଥାନ୍ତି । କିନ୍ତୁ ଏବେ ତାଙ୍କର ପରିନିର୍ବାଣ ହୋଇ ଯାଇଥିବାରୁ ମୁଁ ତାଙ୍କର ଶରଣ ପଶୁଛି । ଆଜିଠାରୁ ବଞ୍ଚିଥିବା ଯାଏ ମୋତେ ଶରଣାଗତ ଭକ୍ତ ବୋଲି ଗ୍ରହଣ କରନ୍ତୁ ।"

ଦ୍ୱିତୀୟ ଅଧ୍ୟାୟରେ ପ୍ରଦତ୍ତ ଅଙ୍ଗୁତ୍ତର ନିକାୟର ସୁତ୍ତରୁ ଦର୍ଶାଇ ଦିଆଯାଇଛି ଯେ, ବୁଦ୍ଧଙ୍କର ଜୀବଦ୍ଦଶାରେ ମଥୁରାରେ ବୌଦ୍ଧ ଧର୍ମ ବିଶେଷ ପ୍ରସାର ଲାଭ କରି ପାରି ନ ଥିଲା । ବୁଦ୍ଧଙ୍କର ପରିନିର୍ବାଣ ପରେ ଅବନ୍ତୀ ପୁତ୍ର ସେଠାରେ ରାଜା ହୋଇ ଥାଇପାରନ୍ତି । ଯଦି ବୁଦ୍ଧଙ୍କ ଜୀବଦ୍ଦଶାରେ ସେ ରାଜା ହୋଇଥାନ୍ତେ, ତେବେ ତାଙ୍କ ସମ୍ପର୍କରେ ସେ କିଛି ନା କିଛି ଜାଣିଥାନ୍ତେ । ଉପରିକଥିତ ସୁତ୍ତର ଶେଷ ଅଂଶରୁ ସ୍ପଷ୍ଟ ଜଣାଯାଉଛି ଯେ ବୁଦ୍ଧଙ୍କର ପରିନିର୍ବାଣ ହୋଇସାରିଥିଲା ବୋଲି ସେ ଜାଣି ନ ଥିଲେ । ବୁଦ୍ଧଙ୍କ ଜୀବଦ୍ଦଶାରେ ତାଙ୍କର ପିତା ସିଂହାସନରେ ଅଧିରୂଢ଼ ହୋଇଥିଲେ ଓ ବ୍ରାହ୍ମଣ ଧର୍ମକୁ ଅଧିକ ଗୁରୁତ୍ୱ ଦେଉଥିଲେ । ଏହି କାରଣରୁ ବୁଦ୍ଧଙ୍କ ପ୍ରତି ସେ ବିଶେଷ ଦୃଷ୍ଟି ଦେଇ ନ ଥାଇପାରନ୍ତି । ମହାକାତ୍ୟାୟନ ଅବନ୍ତୀ-ନିବାସୀ

ଥିଲେ । ପ୍ରଥମେ ସେ ବ୍ରାହ୍ମଣ ଓ ପଣ୍ଡିତ ଥିଲେ । ଯୁବକ-ରାଜା ଅବନ୍ତୀ ପୁତ୍ରଙ୍କ ଉପରେ ଏହି ହେତୁ ତାଙ୍କର ପ୍ରଭାବ ପଡ଼ିଥାଇପାରେ ।

## ଶ୍ରମଣମାନେ ଜାତିଭେଦ ଉଠାଇ ପାରି ନଥିଲେ

ଉପର କଥିତ ଗୃହୋକ୍ତି ସୁତ୍ର ମଧ୍ୟରୁ, ବାସିଷ୍ଠ ସୁତ୍ରରେ ଭଗବାନ୍ ବୁଦ୍ଧ ସ୍ପଷ୍ଟ ଦେଖାଇ ଦେଇଛନ୍ତି ଯେ ଜାତିଭେଦ ସ୍ୱାଭାବିକ ନୁହେଁ-କୃତ୍ରିମ । ଦ୍ୱିତୀୟରେ, ଅସ୍ସଲାୟନ ସୁତ୍ରରେ ବ୍ରହ୍ମଦେବଙ୍କ ମୁଖରୁ ବ୍ରାହ୍ମଣମାନେ ଉତ୍ପତ୍ତି ହେବା କଥାକୁ ସେ କାଟି ଦେଇଛନ୍ତି । ତୃତୀୟରେ, ଏସୁକାରୀ ସୁତ୍ରରେ, ଅନ୍ୟ ବର୍ଣ୍ଣମାନଙ୍କର କର୍ତ୍ତବ୍ୟ-ଅକର୍ତ୍ତବ୍ୟ ନିରୂପଣ କରିବାର ଅଧିକାର ବ୍ରାହ୍ମଣମାନଙ୍କର ଆଦୌ ନାହିଁ ବୋଲି ପ୍ରମାଣିତ ହୋଇଛି । ଚତୁର୍ଥରେ, 'ମଧୁର ସୁତ୍ରରେ' ମହାକାତ୍ୟାୟନ ଏହା ସ୍ପଷ୍ଟ ପ୍ରତିପାଦନ କରିଅଛନ୍ତି ଯେ, ଆର୍ଥିକ ଓ ନୈତିକ ବିଷୟରେ ଜାତିଭେଦର କଳ୍ପନା ସର୍ବଥା ନିରର୍ଥକ । ଏସବୁ ସୁତ୍ରଗୁଡ଼ିକର ଆଲୋଚନା କଲେ ସ୍ପଷ୍ଟ ଜଣାଯାଏ ଯେ, ବୁଦ୍ଧଦେବ କିମ୍ବା ତାଙ୍କର ଶିଷ୍ୟମାନଙ୍କୁ ଜାତିଭେଦ ଆଦୌ ଭଲ ଲାଗୁ ନ ଥିଲା । ପୁଣି ତାକୁ ନଷ୍ଟ କରିବା ପାଇଁ ସେମାନେ ବହୁ ଚେଷ୍ଟା କରିଥିଲେ, କିନ୍ତୁ ସେହି କାର୍ଯ୍ୟର ସାଧନ ସେମାନଙ୍କ ଶକ୍ତିର ବହିର୍ଭୂତ ଥିଲା । ବ୍ରାହ୍ମଣମାନେ କେବଳ ମଧ୍ୟ-ଭାରତରେ ନୁହେଁ, ଗୋଦାବରୀ ତଟ ପର୍ଯ୍ୟନ୍ତ ଜାତିଭେଦକୁ ପ୍ରଚାରିତ କରି ରଖିଥିଲେ । ତାକୁ ସମ୍ପୂର୍ଣ୍ଣରୂପେ ଦୂର କରିବା କୌଣସି ଶ୍ରମଣସଂଘ ପକ୍ଷରେ ସମ୍ଭବପର ନ ଥିଲା ।

## ଶ୍ରମଣମାନଙ୍କ ମଧ୍ୟରେ ଜାତିଭେଦ ନ ଥିଲା

ତଥାପି, ମୁନିଋଷିମାନଙ୍କ ପରଂପରା ଅନୁସାରେ ନିଜ ସଂଘ ମଧ୍ୟରେ ଶ୍ରମଣମାନେ ଜାତିଭେଦକୁ ସ୍ଥାନ ଦେଉଥିଲେ । ଯେ କୌଣସି ଜାତିର ବ୍ୟକ୍ତି ଶ୍ରମଣ ହୋଇଗଲେ, ଶ୍ରମଣ ସଂଘରେ ପ୍ରବେଶ ଲାଭ କରି ପାରୁଥିଲା । ନବମ ଅଧ୍ୟାୟରେ ଦେଖାଇ ଦିଆଯାଇଛି ଯେ ହରିକେଶିବଲ ଚଣ୍ଡାଳ ଥିଲା । ତଥାପି ନିର୍ଗ୍ରନ୍ଥ (ଜୈନ) ମାନଙ୍କ ସଂଘରେ ସେ ପ୍ରବେଶ କରିଥିଲା । ବୁଦ୍ଧଙ୍କର ଭିକ୍ଷୁ-ସଂଘରେ ତ ଶ୍ୱପାକ ନାମକ ଚଣ୍ଡାଳ ଓ ସୁନୀତ ନାମକ ମେହେନ୍ତର ପରି ଅନ୍ତ୍ୟଜ ମଧ୍ୟ ବଡ଼ ସାଧୁ ଥିଲେ । (୧) ବୁଦ୍ଧଙ୍କ ମତରେ ତାଙ୍କ ସଂଘରେ ଜାତି ଭେଦର ଅଭାବ ଏକ ବିଶେଷତ୍ୱ । ଭଗବାନ୍ କହୁଥିଲେ,"ହେ ଭିକ୍ଷୁଗଣ ! ଗଙ୍ଗା, ଯମୁନା, ଅଚିରବତୀ, ସରଯୂ, ମହୀ ପ୍ରଭୃତି ନଦୀମାନେ ମହା ସମୁଦ୍ରରେ ମିଶି, ନିଜ ନିଜର ନାମ ତ୍ୟାଗ କରି କେବଳ ମହାସମୁଦ୍ର ନାମ ଗ୍ରହଣ କରନ୍ତି । ସେହିପରି, କ୍ଷତ୍ରିୟ ବ୍ରାହ୍ମଣ ପ୍ରଭୃତି ଚାରିବର୍ଣ୍ଣର ଲୋକେ ତଥାଗତଙ୍କ ସଂଘରେ ପ୍ରବେଶ କରିବା ପରେ ନିଜ ନିଜର ମୌଳିକ ନାମ ଗୋତ୍ର ଛାଡ଼ି ଶାକ୍ୟପୁତ୍ରୀୟ ଶ୍ରମଣ ନାମରେ ହିଁ ପରିଚିତ ହୁଅନ୍ତି । (୨)

## ଅଶୋକଙ୍କ କାଳରେ ବୌଦ୍ଧ ସଂଘରେ ଜାତିଭେଦ ନଥିଲା

ଅଶୋକଙ୍କ ସମୟରେ ବୌଦ୍ଧସଂଘ ଜାତି ଭେଦକୁ ଯେ ଆଦୌ ମାନୁ ନଥିଲେ, ଏହା 'ଦିବ୍ୟାବଦାନ' ଅନ୍ତର୍ଗତ ଅମାତ୍ୟ 'ଯଶ'ଙ୍କ ଚରିତରୁ ଜଣାଯାଏ ।

---

(୧) ଦେଖନ୍ତୁ 'ବୌଦ୍ଧ ସଂଘାର ପରିଚୟ" ପୃଷ୍ଠା, ୨୪୩-୨୪୬ ।

(୨) ଉଦାନ ୫।୫ ଓ ଅଙ୍ଗୁତ୍ତରନିକାୟ, ଅଠ୍ଠକନିପାତ ।

ରାଜା ଅଶୋକ ଅଳ୍ପଦିନ ତଳୁ ବୌଦ୍ଧ ହୋଇ  ଥାନ୍ତି । ସବୁ ଶ୍ରମଣ-ଭିକ୍ଷୁଙ୍କର ସେତେବେଳେ ସେ ପାଦ ସ୍ପର୍ଶ କରୁଥାଆନ୍ତି । ଏହା ଦେଖି ଯଶ ନାମକ ତାଙ୍କର ମନ୍ତ୍ରୀ ତାଙ୍କୁ କହିଲେ,— "ମହାରାଜ ! ଶାକ୍ୟ ଶ୍ରମଣମାନଙ୍କ ଭିତରେ ସବୁ ଜାତିର ଲୋକ ଅଛନ୍ତି । ସେମାନଙ୍କଠାରେ  ଆପଣ ନିଜର ଅଭିଷିକ୍ତ ମସ୍ତକ ନୁଆଁଇବା ଠିକ୍ ହେଉନାହିଁ ।"

ଅଶୋକ କୌଣସି ଉତ୍ତର ଦେଲେ ନାହିଁ । କିଛି ସମୟ ପରେ ଛେଳି ମେଣ୍ଢା ପ୍ରଭୃତି ପ୍ରାଣୀଙ୍କର ମୁଣ୍ଡ ମଗାଇ ସେ ଗୁଡ଼ିକୁ ବିକ୍ରି କରାଇଲେ । ତା ପରେ ମଣିଷର ମୁଣ୍ଡ ଯଶଙ୍କ ଦ୍ୱାରା ଅଣାଇ ବିକାଇ ବାକୁ କହିଲେ । ଛେଳି  ମେଣ୍ଢା ପ୍ରଭୃତିଙ୍କ ମୁଣ୍ଡ ବିକ୍ରିରୁ କିଛି କିଛି ମୂଲ୍ୟ ମିଳିଲା ; କିନ୍ତୁ କେହି ହେଲେ ମଣିଷ ମୁଣ୍ଡ କିଣିଲେ ନାହିଁ । ତାହାପରେ ଅଶୋକ କହିଲେ, "ଏହି ମୁଣ୍ଡଗୁଡ଼ିକୁ ବିନା ମୂଲ୍ୟରେ କାହାରିକୁ ହେଲେ ଦିଆଯାଉ ।" କିନ୍ତୁ ବିନା ମୂଲ୍ୟରେ ମଧ୍ୟ ସେ ଗୁଡ଼ିକୁ ନେବା ପାଇଁ ଯଶଙ୍କୁ କୌଣସି ଲୋକ ମିଳିଲେ ନାହିଁ । ଯଶ ଯାଇ ଏକଥା ଅଶୋକଙ୍କୁ କହିଲେ । ଅଶୋକ ସେତେବେଳେ କହିଲେ, "ମଣିଷର ଏହି ମୁଣ୍ଡକୁ ବିନାମୂଲ୍ୟରେ ଦେଲେ ମଧ୍ୟ କେହି ନେଉ ନାହାନ୍ତି କାହିଁକି ?"

ଯଶ—"କାହିଁକି ନା, ସେମାନେ ଏ ମୁଣ୍ଡକୁ ଘୃଣା କରୁଛନ୍ତି ।

ଅଶୋକ—"ଲୋକେ ଏହି ମଣିଷ ମୁଣ୍ଡକୁ ଘୃଣା କରୁଛନ୍ତି ନା, ସବୁ ମଣିଷ ମୁଣ୍ଡକୁ ଘୃଣା କରିବେ ?"

ଯଶ—"ଯେ କୌଣସି ମଣିଷ ମୁଣ୍ଡ କାଟି ଲୋକଙ୍କ ପାଖକୁ ନେଲେ ଏପରି ଘୃଣା କରିବେ ।"

ଅଶୋକ—"କଣ ସେମାନେ ମୋ ମୁଣ୍ଡକୁ ମଧ୍ୟ ଘୃଣା କରିବେ ?" ଏ ପ୍ରକାର ପ୍ରଶ୍ନର ଉତ୍ତର ଦେବାରେ ଯଶ ଠିକିଏ ହତ୍ଡ଼ ବଡ଼େଇ ଗଲେ । ଅଶୋକ ତାଙ୍କୁ ଅଭୟ ଦେବାରୁ ସେ କହିଲେ, "ମହାରାଜ ! ଆପଣଙ୍କ ମୁଣ୍ଡକୁ ମଧ୍ୟ ଲୋକେ ଏହିପରି ଘୃଣା କରିବେ ।"

ଅଶୋକ—"ତେବେ, ଏପରି ମୁଣ୍ଡକୁ ଯଦି ମୁଁ ଭିକ୍ଷୁମାନଙ୍କର ପାଦରେ ରଖି ସେମାନଙ୍କୁ ସମ୍ମାନ ଦେଖାଏ, ତାହା ହେଲେ ତୁମକୁ ଖରାପ ଲାଗିବ କାହିଁକି ?" ଏହି ସମ୍ବାଦ ପରେ କେତେ ଗୁଡ଼ିଏ ଶ୍ଳୋକ ଅଛି । ତହିଁରୁ ଗୋଟିଏ ହେଉଛି—

ଆବାହକାଲେଽଥ ବିବାହକାଲେ
ଜାତେଃ ପରୀକ୍ଷା ନତୁ ଧର୍ମକାଲେ ।
ଧର୍ମକ୍ରିୟାୟାଂ ହି ଗୁଣା ନିମିତ୍ତା
ଗୁଣାଶ୍ଚ ଜାତିଂ ନ ବିଚାରୟନ୍ତି ॥

ଅର୍ଥାତ୍, ପୁଅ-ଝିଅଙ୍କ ବିବାହରେ (୧) ଜାତି ବିଚାର କରିବା ଉଚିତ । ଧର୍ମ ବିଷୟରେ ଜାତି ବିଚାର କରିବାର କାରଣ ନାହିଁ । ତାର କାରଣ ହେଉଛି, ଧାର୍ମିକ କାର୍ଯ୍ୟରେ ଗୁଣ ଦେଖିବାକୁ ହୁଏ ଓ ଜାତି ଉପରେ ଗୁଣ ନିର୍ଭର କରେନାହିଁ ।

## ଜୈନ ସଂଘ ଜାତିଭେଦ ସ୍ୱୀକାର କଲା

ବିଭିନ୍ନ ଶ୍ରମଣ-ସଂଘ ମଧ୍ୟରୁ କେବଳ ନିର୍ଗ୍ରନ୍ଥ ସଂଘ ସଂପର୍କରେ ବର୍ତ୍ତମାନ ସାମାନ୍ୟ କିଛି ଜାଣିହୁଏ । "ଆଚାରାଙ୍ଗ ସୂତ୍ର'ର ନିରୁକ୍ତିରୁ ଜଣାଯାଏ ଯେ, ଅଶୋକଙ୍କ ପୂର୍ବରୁ ହିଁ ଶ୍ରମଣ ସଂଘ ଜାତିଭେଦର

(୧) ଆବାହର ଅର୍ଥ ବୋହୂକୁ ଘରକୁ ନେବା ଓ ବିବାହର ଅର୍ଥ ନିଜ କନ୍ୟାକୁ ବିବାହ ଦେଇ ଶ୍ୱଶୁରାଳୟକୁ ପଠାଇବା ।

ଗୁରୁରୂ ସ୍ୱୀକାର କରି ସାରିଥିଲି । ଭଦ୍ରବାହୁ ସେହି ନିରୁକ୍ତର ରଚୟିତା ବୋଲି ଜୈନମାନଙ୍କର ଧାରଣା ସେ ଥିଲେ ଚନ୍ଦ୍ରଗୁପ୍ତଙ୍କର ଗୁରୁ । ସେହି ନିରୁକ୍ତର ପ୍ରାରମ୍ଭରେ ଜାତିଭେଦ ବିଷୟରେ ଯାହା କୁହା ଯାଇଛି ତାର ସାରକଥା ହେଉଚି—

ଚାରିବର୍ଣ୍ଣର ସଂଯୋଗରୁ ଷୋଳବର୍ଣ୍ଣର ଉତ୍ପତ୍ତି ହେଲି । ବ୍ରାହ୍ମଣ ପୁରୁଷ ଏବଂ କ୍ଷତ୍ରିୟ ସ୍ତ୍ରୀଙ୍କର ସଂପର୍କରୁ ପ୍ରଧାନ କ୍ଷତ୍ରିୟ, ବା ସଙ୍କର କ୍ଷତ୍ରିୟ ଜାତ ହେଲେ । କ୍ଷତ୍ରିୟ ପୁରୁଷ ଓ ବୈଶ୍ୟ ସ୍ତ୍ରୀଙ୍କ ସଂପର୍କରୁ ପ୍ରଧାନ ବୈଶ୍ୟ ଅଥବା ସଙ୍କର ବୈଶ୍ୟଙ୍କର ଉତ୍ପତ୍ତି ହେଲି । ବୈଶ୍ୟ ପୁରୁଷ ଏବଂ ଶୂଦ୍ର ସ୍ତ୍ରୀର ସମ୍ପର୍କରୁ ପ୍ରଧାନ ଶୂଦ୍ର ବା ସଂକର ଶୂଦ୍ର ଉତ୍ପନ୍ନ ହେଲେ । ଏହାପରେ ସାତବର୍ଣ୍ଣର ସୃଷ୍ଟି ହୋଇି । ଏବେ ଏହି ନଅଟି ହେଉଛି ବର୍ଣ୍ଣାନ୍ତର:—୧—ବ୍ରାହ୍ମଣ ପୁରୁଷ ଏବଂ ବୈଶ୍ୟ ସ୍ତ୍ରୀଠାରୁ ଅମ୍ବଷ୍ଠ । ୨—କ୍ଷତ୍ରିୟ ପୁରୁଷ ଓ ଶୂଦ୍ର ସ୍ତ୍ରୀଠାରୁ ଉଗ୍ର । ୩—ବ୍ରାହ୍ମଣ ପୁରୁଷ ଓ ଶୂଦ୍ର ସ୍ତ୍ରୀଠାରୁ ନିଷାଦ । ୪—ଶୂଦ୍ର ପୁରୁଷ ଓ ବୈଶ୍ୟ ସ୍ତ୍ରୀଠାରୁ ଅୟୋଗବ । ୫—ବୈଶ୍ୟ ପୁରୁଷ ଓ କ୍ଷତ୍ରିୟ ସ୍ତ୍ରୀଠାରୁ ମାଗଧ । ୬—କ୍ଷତ୍ରିୟ ପୁରୁଷ ଓ ବ୍ରାହ୍ମଣ ସ୍ତ୍ରୀଠାରୁ ସୂତ । ୭—ଶୂଦ୍ର ପୁରୁଷ ଓ କ୍ଷତ୍ରିୟ ସ୍ତ୍ରୀଠାରୁ କ୍ଷତ୍ତା । ୮—ବୈଶ୍ୟ ପୁରୁଷ ଓ ବ୍ରାହ୍ମଣ ସ୍ତ୍ରୀଠାରୁ ବୈଦେହ । ୯—ଶୂଦ୍ର ପୁରୁଷ ଓ ବ୍ରାହ୍ମଣ ସ୍ତ୍ରୀଠାରୁ ଚଣ୍ଡାଳ··· ଉତ୍ପନ୍ନ ହେଲେ । (୧)

ଆଜିର ମନୁସ୍ମୃତି ଏହି ନିର୍ଯୁକ୍ତି ଅପେକ୍ଷା ବହୁ ଅର୍ବାଚୀନ । ତଥାପି ଏହି ନିର୍ଯୁକ୍ତିର ସମ ସାମୟିକ ବ୍ରାହ୍ମଣମାନେ ମନୁ ସ୍ମୃତିରେ କଥିତ ଅନୁଲୋମ-ପ୍ରତିଲୋମ ଜାତିମାନଙ୍କର ବ୍ୟୁତ୍ପତ୍ତି ଏହି ପ୍ରକାରେ

(୧) "ଆଚାରାଙ୍ଗ ନିର୍ଯୁକ୍ତି—୧ମ ଅଧ୍ୟାୟ, ୨୦ରୁ ୨୭ ଗାଥା ।

ଦେଖାଇବାର ଚେଷ୍ଟା କରୁଥିଲେ ବୋଲି ଅନୁମାନ କଲେ ତହିଁରେ ବିଶେଷ ଆପତ୍ତିର କାରଣ ଥିଲି ପରି ମନେ ହୁଏ ନାହିଁ । ପ୍ରବଳ ସନ୍ଦେହ ହେଉଛି ଯେ, ଜୈନମାନେ ବ୍ରାହ୍ମଣଙ୍କଠାରୁ ଏହି ବ୍ୟୁତ୍ପତ୍ତି ଗ୍ରହଣ କରିଥିବେ । ସେ ଯାହା ହେଉ, ନିର୍ଗ୍ରନ୍ଥ ଶ୍ରମଣମାନେ ଜାତି ଭେଦକୁ ପୂର୍ଣ୍ଣତଃ ସ୍ୱୀକାର କରୁଥିବାର ଏହା ଏକ ବିଶ୍ୱାସ ଯୋଗ୍ୟ ପ୍ରମାଣ ।

## ନୀଚ ଜାତିର ଲୋକଙ୍କୁ ଜୈନ ସାଧୁ ସଂଘରେ ପ୍ରବେଶ ନିଷେଧ

ବାଲେ ବୁଡ୍‌ଢେ ନପୁଂସେୟ କ୍ଲୀ ବେ ଜଡ୍‌ଡେୟ ବାହିଏ ।
ତେଣେ ରାୟାବଗାରୀ ଯ ଉନ୍ମତେ ୟ ଅଦଂସଣେ ॥
ଦାସେ ଦୁଟ୍‌ଠେ ୟ ମୂଢେ ଯ ଅଣତ୍ତେ ଜୁଂଗି ଏ ଇ ୟ ।
ଉବଦ୍ଧ ଏ ଚ ଭୟ ଏ ସେହ ନିପ୍‌ଫେଡ଼ିୟା ଇ ୟ ॥

ଅର୍ଥାତ୍, ( ୧ ) ବାଲ, (୨) ବୃଦ୍ଧ, ( ୩ ) ନପୁଂସକ ( ୪ ) କ୍ଳୀବ, ( ୫ ) ଜଡ଼, ( ୬ ) ବ୍ୟାଧିତ, ( ୭ ) ଚୋର, (୮) ରାଜାପରାଧୀ (୯) ଉନ୍ମତ୍ତ, (୧୦) ଅଦର୍ଶନ (?) (୧୧) ଦାସ, (୧୨) ଦୁଷ୍ଟ (୧୩) ମୂଢ଼, (୧୪) ଋଣାର୍ତ୍ତ, (୧୫) ଜୁଙ୍ଗିତ (୧୬) ବନ୍ଦୀ, (୧୭) ଭୟାର୍ତ୍ତ ଓ (୧୮) ଛଡ଼ାଇ ଅଣାଯାଇଥିବା ଶିଷ୍ୟ— ଏହି ଅଠର ପ୍ରକାର ଲୋକଙ୍କର ଜୈନସଂଘରେ ପ୍ରବେଶ ନିଷିଦ୍ଧ । ଏମାନଙ୍କ ମଧ୍ୟରୁ ବହୁ ଲୋକଙ୍କୁ ବୌଦ୍ଧ ଭିକ୍ଷୁ ସଂଘରେ ମଧ୍ୟ ନିଆଯିବା ନିଷିଦ୍ଧ । ଏହି ଦୁଇ ସଂଘରେ ପ୍ରବେଶ କରିବା ବିଧିର (ଉପସମ୍ପଦାର) ତୁଳନା ଏକାନ୍ତ ଉପାଦେୟ

ମନେହୁଏ । (୧) କିନ୍ତୁ ତାହା ଏହି ଅଧ୍ୟାୟରେ ଅପ୍ରାସଙ୍ଗିକ ହେବ । ଉପର ଅଠର ପ୍ରକାରର ଲୋକଙ୍କ ମଧ୍ୟରୁ କେବଳ ୧୫ଶବ୍ଦର ବଗୃର ଆବଶ୍ୟକ । ସେହି ଶବ୍ଦଟିର ଟୀକା ହେଉଛି—

ତଥା ଜାତି-କର୍ମ-ଶରୀରାଦ ଭିଦୂଷିତୋ ଜୁଂଗିତଃ ।
ତନ୍ତ ମାତଙ୍ଗ କୋଳକ-ବରୁଡ଼-ସୂଚକ-ଚ୍ଛମ୍ପାଦୟୋଃ
ସ୍ପୃଶ୍ୟା ଜାତି ଜୁଂଗିତାଃ । ସ୍ପୃଶ୍ୟା ଅପି ସ୍ତ୍ରୀ-ମୟୂର-
କୁକ୍କୁଟ-ଶୁକାଦପୋଷକା ବଂଶବରତ୍ରାରୋହଣ-
ନଖପ୍ରକ୍ଷାଳନସୌକରକରୁବାଗୁରକଭ୍ରାଦନଦ୍ଧତ-କର୍ମ
କାରଣଃ କର୍ମ ଜୁଂଗିତାଃ । କରଚରଣ ବର୍ଜିତାଃ
ପଂଗୁ-କୁବ୍‌ଜ-ବାମନକ-କାଣ ପ୍ରଭୃତୟଃ ଶରୀର ଜୁଂଗିତାଃ ।
ତେଽପି ନ ପ୍ରବ୍ରଜ୍ୟାର୍ହା ଲୋକେଽବର୍ଣ୍ଣବାଦ ସମ୍ଭବାତ୍ ।

ଅର୍ଥାତ୍ "ସେ ପ୍ରକାର ଜାତି, କର୍ମ, ଶରୀର ପ୍ରଭୃତି ଦ୍ୱାରା ଦୂଷିତଙ୍କୁ ଜୁଂଗିତ ବୋଲି ବୁଝିବାକୁ ହେବ । ସେ ମଧ୍ୟରେ ମାତଙ୍ଗ, କେଉଟ, ବେଦ୍ଦରା (୨), ଦରଜୀ ତନ୍ତୀ ପ୍ରଭୃତି ଅସ୍ପୃଶ୍ୟ ଜାତି ହେଉଛନ୍ତି ଜୁଂଗିତ । ସ୍ପୃଶ୍ୟ ହୋଇମଧ୍ୟ ଯେଉଁଲୋକ ସ୍ତ୍ରୀ ମୟୂର, କୁକୁଡ଼ା ପ୍ରଭୃତି ପାଳନ କରେ, ବାଉଁଶ ବା ଦଉଡ଼ିରେ କେଳାବଦ୍ୟା ଦେଖାଏ, ନଖକଟା କାମକରେ, ଘୁଷୁରି ପାଳେ, ଶୀକାର ପ୍ରଭୃତି ନିନ୍ଦ୍ୟକାର୍ଯ୍ୟ କରେ, ସେ ମଧ୍ୟ ଜୁଂଗିତ । ଲୋକରେ

(୧) ବୌଦ୍ଧ ଭିକ୍ଷୁ ସଂଘରେ ପ୍ରବେଶ ବାଧା ସମ୍ବନ୍ଧରେ ଦେଖନ୍ତୁ— "ବୌଦ୍ଧଧର୍ମ ଆଣି ସଂଘ" ପୃ ୫୬-୬୦ ଓ "ବୌଦ୍ଧ ସଂଘାଚ୍ଚ ପରିଚୟ" ପୃ ୧୬-୧୯ ।

(୨) ବାଉଁଶରେ ଟୋକେଇ ପ୍ରଭୃତି ବୁଣିବା ଲୋକ ।

ସମାଲୋଚନାର ସମ୍ଭାବନା ଥିବାରୁ ଏମାନେ ମଧ୍ୟ ଦୀକ୍ଷାଦେବାପାଇଁ ଉପଯୁକ୍ତ ନୁହନ୍ତି । (୧)

ବୌଦ୍ଧ ଭିକ୍ଷୁ ସଙ୍ଘରେ ପ୍ରବେଶ କରିବା ପାଇଁ ଜାତି ପ୍ରତିବନ୍ଧକ ନଥିଲା । ଲୋକର କର୍ମ ଯଦି ନିନ୍ଦ୍ୟ, ତେବେ ତାକୁ ସଙ୍ଘ ଛାଡ଼ିବାକୁ ପଡ଼ୁଥିଲା ; ଏଥିଦ୍ୱାରା ଦୀକ୍ଷା ପାଇଁ ସେ ଅଯୋଗ୍ୟ ବୋଲି ଧରି ଯାଉନଥିଲା ।

## ହିନ୍ଦୁ ସମାଜରେ ଅହିନ୍ଦୁମାନଙ୍କର ପ୍ରବେଶ

ଏଭଳି ହୋଇଥିଲେ ସୁଦ୍ଧା, ବୌଦ୍ଧ ଓ ଜୈନ ସମ୍ପ୍ରଦାୟମାନେ ବିଦେଶୀ ଲୋକଙ୍କୁ ହିନ୍ଦୁ-ସମାଜରେ ଗ୍ରହଣ କରିବାର ସୁ-ମହତ୍‌କାର୍ଯ୍ୟ କରିଥିଲେ । ଗ୍ରୀକ୍, ଶକ, ହୁଣ, ମାଳବ, ଗୁର୍ଜର ପ୍ରଭୃତି ବାହାରର ଜାତିମାନେ ଭାରତବର୍ଷକୁ ଆସିଥିଲେ ଓ ଏହି ଦୁଇ ଧର୍ମର ବିଶାଳ ଦ୍ୱାରବାଟେ ହିନ୍ଦୁ ସମାଜରେ ପ୍ରବେଶ କରିଥିଲେ ।

ପ୍ରଥମରେ ଏହି ଲୋକେ ଜୈନ କିମ୍ବା ବୌଦ୍ଧ ହେଉଥିଲେ,, ପରେ ରୁଚି ଅନୁସାରେ ବ୍ରାହ୍ମଣ କ୍ଷତ୍ରିୟ ବା ବୈଶ୍ୟ ହୋଇ ଯାଉଥିଲେ । ଗୋଟିଏ ପରିବାରରେ ଜଣେ ଭାଇର ସନ୍ତାନ କ୍ଷତ୍ରିୟ ଓ ଆଉଜଣେ ଭାଇର ସନ୍ତାନ ବ୍ରାହ୍ମଣ ହୋଇ ପାରିବାର ପ୍ରମାଣ ମଧ୍ୟ ମିଳୁଛି ।

( ଦ୍ରଷ୍ଟବ୍ୟ—Indian Antiquary Vol. 40 'Jan. 1911ରେ ପ୍ରକାଶିତ Dr. D. R. Bhandar kar ଙ୍କ ପ୍ରବନ୍ଧ )

## ଅସ୍ପୃଶ୍ୟତାର ପରିଣାମ

ଏହି ପ୍ରକାରେ ବିଜୟୀ ଲୋକେ ହିନ୍ଦୁ-ସମାଜରେ ସମ୍ପୂର୍ଣ୍ଣ ମିଶିଗଲେ । ତଥାପି ଅସ୍ପୃଶ୍ୟତାର ଅବସ୍ଥା ଯେପରି ସେପରି

(୧) "ପ୍ରବଚନ ସାରୋଦ୍ଧାର", ଦ୍ୱାର ୧୦୭ । ଏହି ଉଦ୍ଧୃତି ମୁଁ ମୁନି ଶ୍ରୀ ହିମବିଜୟଙ୍କଠାରୁ ନେଇଛି । ତେଣୁ ମୁଁ ତାଙ୍କଠାରେ କୃତଜ୍ଞ-ଲେଖକ ।

ରହିଲା । ଜୈନ ଓ ବୌଦ୍ଧ ଶ୍ରମଣମାନେ ସେମାନଙ୍କ ପ୍ରତି ଦୃଷ୍ଟି ଦେଲେ ନାହିଁ । ଫଳରେ ଦିନକୁଦିନ ଅସ୍ପୃଶ୍ୟମାନଙ୍କ ପ୍ରତି ଘୃଣା ଭାବ ବୃଦ୍ଧି ପାଇଲା । ସେମାନଙ୍କୁ ଅନ୍ୟାୟରେ କଦର୍ଥିତ କରାଗଲା ଏବଂ ଶେଷରେ ଧୀରେ ଧୀରେ ସମଗ୍ର ସମାଜ ତଥା ଜୈନ ଓ ବୌଦ୍ଧମାନେ ତାହାର କୁପରିଣାମ ଭୋଗ କଲେ ।

ଯେତେବେଳେ ଜାତିଭେଦ ଦୃଢ଼ ହୋଇ ଉଠିଲା, ସେତିକବେଳେ ସବୁ ଜାତିଠାରୁ ଭିକ୍ଷା ନେଉଛନ୍ତି ବୋଲି ଜୈନ ଓ ବୌଦ୍ଧମାନେ ନିନ୍ଦନୀୟ ରୂପେ ବିବେଚିତ ହେଲେ । ଜୈନ ସଙ୍ଘରେ ଅସ୍ପୃଶ୍ୟଙ୍କୁ ପୁରାଇବାର ନିଷିଦ୍ଧ ଥିଲା ; ତଥାପି ଶୂଦ୍ରମାନଙ୍କୁ ସେମାନେ ଗ୍ରହଣ କରୁଥିଲେ ବୋଲି ଅନୁମିତ ହୁଏ । ବୌଦ୍ଧ ସଙ୍ଘରେ ତ ଶେଷ ପର୍ଯ୍ୟନ୍ତ ଜାତିଭେଦର ସ୍ଥାନ ନଥିଲା । ତଥାପି ସମାଜରେ ଜାତିଭେଦ ବଢ଼ିଗଲା । ଶମ୍ବୁକ-କଥା ପରି କାଳ୍ପନିକ କଥାକୁ ଲୋକପ୍ରିୟ ପୁରାଣମାନଙ୍କରେ ଭରିତ କରିଦେବା ବ୍ରାହ୍ମଣମାନଙ୍କ ପକ୍ଷରେ ସମ୍ଭବପର ହେଲା । କ୍ରମେ କ୍ରମେ ସମ୍ପୂର୍ଣ୍ଣ ଭାବରେ ବୌଦ୍ଧ ଶ୍ରମଣମାନେ ବିନଷ୍ଟ ହୋଇଗଲେ ; କିନ୍ତୁ କୌଣସି ପ୍ରକାରେ ଜୈନ ଶ୍ରମଣମାନେ ବର୍ତ୍ତିଗଲେ । ହେଲେହେଁ ସେମାନେ ସମାଜ ସଂସ୍କାର ମୂଳକ କୌଣସି ମହତ୍ତ୍ୱ ପୂର୍ଣ୍ଣ କାର୍ଯ୍ୟ କରି ପାରି ନଥିଲେ ।

## ଅନ୍ୟ ଦେଶରେ ଭିକ୍ଷୁ ସଂଘର କାର୍ଯ୍ୟ

ଭାରତରେ ଜାତିଭେଦ ସମକ୍ଷରେ ବୌଦ୍ଧ ଭିକ୍ଷୁସଙ୍ଘ ତିଷ୍ଠିପାରି ନଥିଲା ; ତଥାପି ଅନ୍ୟ ଦେଶମାନଙ୍କରେ ସଙ୍ଘ ଦ୍ୱାରା ବିଶେଷ କାର୍ଯ୍ୟ ସାଧିତ ହୋଇଥିଲା । ଦକ୍ଷିଣରେ ସିଂହଳ ଓ ପୂର୍ବରେ ବ୍ରହ୍ମଦେଶରୁ ଆରମ୍ଭ କରି ଜାପାନ ପର୍ଯ୍ୟନ୍ତ ସମସ୍ତ ଦେଶ ତଥା

ଉତ୍ତରରେ ତିବ୍ବତ, ମାଙ୍ଗୋଲିଆ ପ୍ରଭୃତି ଦେଶମାନଙ୍କରେ ବୌଦ୍ଧସଂଘ ଜନସମାଜକୁ ଏକ ସମୟରେ ସୁସଂସ୍କୃତ କରି ଦେଇଥିଲା । ଉତ୍ତରରେ ହିମାଳୟ ଉପରେ ଓ ଦକ୍ଷିଣ ତଥା ପୂର୍ବରେ ସମୁଦ୍ର ଯାତ୍ରା କରି ଅନେକ ଭିକ୍ଷୁ ଏହି ସମସ୍ତ ଦେଶରେ ବୌଦ୍ଧ ସଂସ୍କୃତିର ଧ୍ୱଜା ଉଡ଼ାଇଥିଲେ । ଏହାର ବୀଜ ବୁଦ୍ଧଙ୍କର ଉପର୍ଯ୍ୟୁକ୍ତ ଉପଦେଶରେ ଉପଲଭ୍ୟ । ବୁଦ୍ଧଦେବ ଯଦି ଜାତିଭେଦକୁ ଲବ ମାତ୍ର ସ୍ଥାନ ଦେଇଥାନ୍ତେ ତାହାହେଲେ ତାଙ୍କର ଅନୁଗାମୀ ଭିକ୍ଷୁମାନେ ମ୍ଳେଚ୍ଛ ଦେଶ ରୂପେ ପରିଚିତ ଦେଶମାନଙ୍କରେ ଭ୍ରମଣ କରି ବୌଦ୍ଧଧର୍ମ ପ୍ରଚାର କରି ପାରି ନ ଥାନ୍ତେ । ଆମେ କହିପାରୁ ଯେ ଜାତିଭେଦ ହେତୁ ଆମର ତ କ୍ଷତି ହେଲା, ତେବେ ପୂର୍ବ ଏସିଆ ପରି ବିରାଟ ଭୂଖଣ୍ଡର ଲାଭ ମଧ୍ୟ ହେଲା ।

---

# ଏକାଦଶ ଅଧ୍ୟାୟ

# ମାଂସାହାର

## ଭଗବାନ୍ ବୁଦ୍ଧଙ୍କର ମାଂସାହାର

ଯେଉଁଦିନ ଚୁନ୍ଦଙ୍କ ଘରେ ଭଗବାନ୍ ବୁଦ୍ଧଙ୍କର ପରିନିର୍ବାଣ ହେଲା, ସେ ଦିନ ସେ ଘୁଷୁରି ମାଂସ ଖାଇଥିଲେ । ପୁଣି, ଆଜକାଲିର ବୌଦ୍ଧ ଭିକ୍ଷୁମାନେ ମଧ୍ୟ ଓଃଣା ଅଧିକେ ମାଂସାହାର କରନ୍ତି । ସୁତରାଂ, ଅହିଂସାକୁ ପରମଧର୍ମ ବୋଲି ମାନୁଥିବା ବୁଦ୍ଧ ଏବଂ ତାଙ୍କର ଅନୁଗାମୀ ମାନଙ୍କ ପକ୍ଷରେ ଏହା କେତେଦୂର କ୍ଷମଣୀୟ, ଏ ପ୍ରଶ୍ନ ସ୍ୱତଃ ଉଦିତ ହୁଏ । ଏଠାରେ ଏହି ପ୍ରଶ୍ନର ଆଲୋଚନା କରାଯିବା ଉଚିତ ।

ପରିନିର୍ବାଣ ଦିନ ବୁଦ୍ଧଦେବ ଯେଉଁ ପଦାର୍ଥ ଖାଇଥିଲେ, ତାହାର ନାମ'ସୂକର ମଦ୍ଦବ' । ତାହାର ଉପରେ ବୁଦ୍ଧ ଘୋଷାଚାର୍ଯ୍ୟ ଏ ପ୍ରକାର ଟୀକା କରିଅଛନ୍ତି ।

ସୂକରମଦ୍ଦବଂ ତି ନାତିତରୁଣସ୍ସ ନାତିଜିନ୍‌ଣସ୍ସ ଏକ ଜେଟ୍‌ଠକସୂକରସ୍ସ ପବତ୍ତ ମଂସଂ । ତଂ କିର ମୁଦୁଂ ଚେବ ସିନିଦ୍ଧଂଚ ହୋତି । ତଂ ପଟିୟାଦାପେତ୍ୱା ସାଧୁକଂ ପଚାପେତ୍ୱା ତି ଅତ୍ଥୋ । ଏକେ ଭଣନ୍ତି ସୂକର ମଦ୍ଦବଂ ତି ପନ ମୁଦୁ ଓଦନସ୍ସ ପଞ୍ଚଗୋରସୟୂସପାଚନବିଧାନସ୍ସ ନାମମେତଂ, ଯଥା ଗବପାନଂ

ନାମ, ପାକନାମଂଣ୍ତ । କେଚ ଭଣନ୍ତି ସୂକର ମଦ୍ଦବଂ ନାମ ରସାୟନ ବଧି, ତଂ ପନ ରସାୟନତେ୍ଥ ଆଗଚ୍ଛତି, ତଂ ଚୁନ୍ଦୋନ ଭଗବତୋ ପରିନିବ୍ବାନଂ ନ ଭବେୟ୍ୟାତି ରସାୟନଂ ପଟିୟତ୍ତଂ ତି ।"

ଅର୍ଥାତ୍, "ସୂକରମଦ୍ଦବ ଏ ପ୍ରକାର ସୁପକ୍ୱ ଘୁଷୁରିର ମାଂସ, ଯେଉଁ ଘୁଷୁରି ବେଶି ତରୁଣ ବା ବୁଢ଼ା ନୁହେ—ନିତାନ୍ତ ଶ୍ରେଷ୍ଠ ଛୁଆଠୁ ଟିକିଏ ବେଶି ବୟସର, ମୃଦୁ ଏବଂ ସ୍ନିଗ୍ଧ । ତାକୁ ତିଆରି କରିବାର ଅର୍ଥ ହେଉଛି ଭଲ ଭାବରେ ରାନ୍ଧିବା । କେହି କେହି କହନ୍ତି, ପଞ୍ଚ ଗୋରସରୁ ତିଆରି କୋମଳ ଅନ୍ନର ନାମ ହେଉଛି ଏଇୟା ଯେପରିକି, 'ଗବପାନ' ହେଉଛି ଏକ ପ୍ରକାର ପକ୍ୱାନ୍ନର ନାମ । ଅନ୍ୟ କେହି କେହି କହନ୍ତି, 'ସୂକର ମଦ୍ଦବ' ହେଉଛି ଏକ ରସାୟନ । ପୁଣି ରସାୟନ ଅର୍ଥରେ ଉକ୍ତ ଶବ୍ଦର ପ୍ରୟୋଗ କରାଯାଏ । ଭଗବାନ୍‌ଙ୍କର ପରିନିର୍ବାଣ ନ ହେଉ, ଏଇ ଲକ୍ଷ୍ୟରେ ଚୁନ୍ଦ ଭଗବାନଙ୍କୁ ତାହା ଦେଇଥିଲି ।

ଏଇ ଟୀକାରେ 'ସୂକର ମଦ୍ଦବ' ଶବ୍ଦର ମୁଖ୍ୟ ଅର୍ଥ ଘୁଷୁରି ମାଂସ ବୋଲି କୁହା ଯାଇଛି । ତଥାପି ଏ ଅର୍ଥ ଠିକ୍ ବୋଲି ବୁଦ୍ଧ ଘୋଷାଚାର୍ଯ୍ୟ ବିଶ୍ୱାସ କରି ନଥିଲେ । ସେହି ସମୟରେ ଏଇ ଶବ୍ଦର ଦୁଇଟି ଅର୍ଥ କରାଯାଉଥିଲି । ଏହାଛଡ଼ା ଆହୁରି ଦୁଇଟି ଅର୍ଥ 'ଉଦାନଅଟ୍‌ଠ କଥାରେ ଦେଖିବାକୁ ମିଳେ । ତାହା ହେଉଛି:—

କେଚିପନ ସୂକର ମଦ୍ଦବଂ ତି ନସୂକର ମଂସଂ, ସୂକରେହି ମଦ୍ଦିତ ବଂସକଲୀରୋ ତି ବଦନ୍ତି । ଅଞ୍ଚେତୁ ସୂକରେହି ମଦ୍ଦିତ ପଦେସେ ଜାତଂ ଅହିଚ୍ଛତ୍ତକଂ ତି ॥

ଅର୍ଥାତ୍, "କେହି କେହି କହନ୍ତି ଯେ ସୂକର ମଦ୍ଦବ ଘୁଷୁରି ମାଂସ ନୁହେ । ଏହା ହେଉଛି ଘୁଷୁରି ଦ୍ୱାରା ଦଳା ଚକଟା ହୋଇଥିବା ବାଉଁଶ ଗଜା ବା କରଡ଼ି । ଅନ୍ୟ ମାନଙ୍କ ମତରେ

ଏହାର ଅର୍ଥ ହେଉଛି ଘୁଷୁରି କୁଦା ଦଳା କରିଥିବା ସ୍ଥାନରେ ଉଠିଥିବା କୁକୁର ମୁଥା ।"

ଏହିପରି ଭାବରେ ସୂକର ମଦ୍ଦବ ଶବ୍ଦକୁ ନେଇ ନାନା ମତଭେଦ ଦେଖାଯାଏ । ତା ସତ୍ତ୍ୱେ ଅଙ୍ଗୁତ୍ତରନିକାୟର ପଞ୍ଚକ ନିପାତରେ ଭଗବାନ୍ ବୁଦ୍ଧ ଘୁଷୁରି ମାଂସ ଖାଇଥିଲେ ବୋଲି ପ୍ରମାଣ ମିଳେ । ଉଗ୍ଗ ଗହପତି କହୁଛନ୍ତି—

ମନାପଂ ମେ ଭନ୍ତେ ସମ୍ପନ୍ନବର ସୂକର ମଂସଂତଂ ମେ ଭଗବା ପଟିଗ୍ଣ୍ହାତୁ ଅନୁକଂପଂ ଉପାଦାୟାତି । ପଟିଗ୍ଗହେସି ଭଗବା ଅନୁକମ୍ପଂ ଉପାଦାୟାତି ।

ଅର୍ଥାତ୍, "ଭଦନ୍ତ, ବଢ଼ିଆ ଘୁଷୁରିର ଏଇ ମାଂସ ଭଲ ଭାବରେ ରାନ୍ଧି ପ୍ରସ୍ତୁତ କରି ଯାଇଛି । ମୋଠାରେ ଦୟାକରି ଭଗବାନ୍ ଏହାକୁ ଗ୍ରହଣ କରନ୍ତୁ ।" ଭଗବାନ୍ ଦୟା କରି ତାହା ଗ୍ରହଣ କଲେ ।

## ଜୈନ ଶ୍ରମଣଙ୍କ ମାଂସାହାର

ଅନ୍ୟ ଶ୍ରମଣ ସମ୍ପ୍ରଦାୟ ମାନଙ୍କ ମଧ୍ୟରେ ଯେଉଁମାନେ ଅତ୍ୟନ୍ତ ତପସ୍ୱୀ ସେମାନଙ୍କ ମଧ୍ୟରେ ମୁଖ୍ୟତଃ ଜୈନମାନଙ୍କୁ ଗଣନା କରାଯାଏ । ତଥାପି ଆଚାରାଙ୍ଗ ସୂତ୍ରର ନିମ୍ନୋଦ୍ଧୃତ ଅଂଶରୁ ଦେଖାଇ ହୋଇପାରିବ ଯେ ଜୈନ ସମ୍ପ୍ରଦାୟର ଶ୍ରମଣମାନେ ମଧ୍ୟ ମାଂସାହାର କରୁଥିଲେ ।

"ସେ ଭିକ୍ଖୂ ବା ଭିକ୍ଖୁଣୀ ବା ସେଜ୍ଜଂପୁଣ ଜାଣେ ଜ୍ଜା ବହୁ ଅଟ୍ଠିୟଂ ମଂସଂ ବା ମଚ୍ଛଂ ବା ବହୁ କଣ୍ଟକଂ, ଅସ୍ସିଂଖଲୁ ପଡ଼ିଗାହିତଂସି ଅପ୍ପେ ସିୟାଭୋୟଣଜାଏ ବହୁ ଉଜ୍ଝିୟ ଧମ୍ମିଏ । ତହପ୍ପଗାରଂ ବହୁ ଅଟ୍ଠିୟଂ ବା ମଂସଂ, ମଚ୍ଛଂ ବା ବହୁକଂଟକଂ,

ଣୋଚେଭଂ ସନ୍ତେଣୋ ପଡ଼ିଗାହେଜ୍ଜା । ସେ ଭିକ୍ଖୂ ବା ଭିକ୍ଖୁଣୀ ବା ଗାହାବଇକୁଲଂ ପିଣ୍ଡବାୟପଡ଼ିୟାଏ ଅଣୁ ପବିଟ୍ଠେ ସମାଣେ ପରେ ବହୁ ଅଟ୍ଠିଏଣ ମଂସେଣ ମଚ୍ଛେଣ ଉବଣିମଂତେଜ୍ଜା, ଆଉସନ୍ତୋ ସମଣା ଅଭିକଂଖସି ବହୁ ଅଟ୍ଠିୟଂ ମଂସ ପଡ଼ିଗାହେତ୍ତଏ ? ଏୟପ୍ପଗାରଂ ଣିଗ୍ଘୋସଂ ସୋଚ୍ଚା ଣିସମ୍ମ ସେ ପୁବ୍ବମେବ ଆଲୋଏଜ୍ଜା, ଆଉସୋତ୍ତି ବା ଭଇଣୀତ୍ତି ବା ଣୋ ଖଲୁ ମେ କପ୍ପଇ ବହୁ ଅଟ୍ଠିୟଂ ମଂସଂ ପଡ଼ିଗାହେତ୍ତଏ, ଅଭିକଂଖସି ସେ ଦାଉଂ ଜାବଇୟଂ ତାବଇୟଂ ପୋଗ୍ଗଲଂ ଦଲୟାହି ମା ଅଟ୍ଠିୟାଇଂ । ସେ ସେବଂ ବଦଂତସ୍ସ ପରୋ ଅଭିହଟ୍ଟୁ ଅନ୍ତୋ ପଡ଼ିଗ୍ଗହଗଂସି ବହୁଅଟ୍ଠିୟଂ ମଂସଂ ପରିଭାଏତ୍ତା ଣିହଟ୍ଟୁ ଦଲଏଜ୍ଜା ତହପ୍ପଗାରଂ ପଡ଼ିଗ୍ଗହଣଂ ପରହତ୍ଥଂସି ବା ପରପାୟଂସି ବା ଅଫାସୁୟଂ ଅଣେସଣିଜ୍ଜଂ ଲାଭେ ବ ସନ୍ତେ ଣୋ ପଡ଼ିଗାହେଜ୍ଜା, ସେ ଆହଚ୍ଚ ପଡ଼ିଗାହିଏ ସିୟା ତଂ ଣୋହିତ୍ତି ବଏଜ୍ଜା ଅଣୋବତ୍ତି ବଏଜ୍ଜା । ସେ ତମାୟାୟ ଏଗଂତମବକ୍କମେଜ୍ଜା । ଅବକ୍କମେତ୍ତା ଅହେ ଆରାମଂସି ବା ଅହେଉବସ୍ସୟଂସି ବା ଅପ୍ପଣ୍ଡେ ଜାବ ସନ୍ତାଣଏ ମଂସଗଂ ମଚ୍ଛଗଂ ଭୋଚ୍ଚା ଅଟ୍ଠିୟାଇଂ କଂଟଏ ଗହାୟ ସେ ତମାୟାଏ ଏଗଂତମବକ୍କମେଜ୍ଜା । ଅବକ୍କମେତ୍ତା ଅହେଜ୍ଝାମଥଂଡିଲଂସି ବା ଅଟ୍ଠିରାସିଂସି ବା କଟ୍ଠରାସିଂସି ବା ତୁସରାସିଂସି ବା ଗୋମୟରାସିଂସି ବା ଅଣ୍ଣୟରଂସି ବା ତହପ୍ପଗାଂରସି ଥଂଡିଲଂସି ପଡ଼ିଲେହିୟ ପଡ଼ିଲେହିୟ ପମଜ୍ଜିୟ ପମଜ୍ଜିୟ ତଓ ସଂଜୟାମେବ ପମଜ୍ଜିୟ ପମଜ୍ଜିୟ ପରିଠବେଜ୍ଜା ।

ଅର୍ଥାତ୍, ପୁଣି ସେହି ଭିକ୍ଷୁଙ୍କୁ ବା ସେହି ଭିକ୍ଷୁଣୀଙ୍କୁ ବେଶି ହାଡ଼ ଥିବା ମାଂସ ବା କଣ୍ଟାଥିବା ମାଛ ମିଳିବାରୁ ଜଣା ଯାଉଛି ଯେ ଏଥିରେ ଖାଦ୍ୟ ପଦାର୍ଥ କମ୍ ଓ ଫିଙ୍ଗା ଯିବା ପଦାର୍ଥ ବେଶି

ମାତ୍ରାରେ ଅଛି । ଏହାପରି ବେଶି ହାଡ଼ ଥିବା ମାଂସ ବା ବେଶି କଣ୍ଟାଥିବା ମାଛ ମିଳିଲେ ତାକୁ ଗ୍ରହଣ କରିବା ଉଚିତ ନୁହେ । ସେହି ଭିକ୍ଷୁ ବା ସେହି ଭିକ୍ଷୁଣୀ ଗୃହସ୍ଥର ଘରକୁ ଭିକ୍ଷା ପାଇଁ ଯଦି ଯାଆନ୍ତି ତେବେ ଗୃହସ୍ଥ କହିବେ, "ହେ ଆୟୁଷ୍ମନ୍ ଶ୍ରମଣ, କଣ ତୁମେ ଏହି ବେଶି ହାଡ଼୍ ଥିବା ମାଂସ ନେବାକୁ ଚାହୁଁଛ ?" ଏ ପ୍ରକାର କଥା ଶୁଣି ସେ ଆଗ କହିବା ଉଚିତ 'ହେ ଆୟୁଷ୍ମନ୍, (ସ୍ତ୍ରୀ ହୋଇଥିବା ପକ୍ଷେ) ହେ ଭଉଣୀ, ଏଇ ବେଶି ହାଡ଼ଥିବା ମାଂସ ନେବା ସୁନ୍ଦର ନୁହେ । ଯଦି ତୁମର ଇଚ୍ଛା ଅଛି, ତେବେ ମତେ ଖାଲି ମାଂସ ଦିଅ, ହାଡ଼ ଦିଅ ନାହିଁ । ଏ ଭଳି କହିବା ପରେ ମଧ୍ୟ ଯଦି ସେହି ଗୃହସ୍ଥ ତାହା ଦେବାକୁ ଆଗ୍ରହ ପ୍ରକାଶ କରେ ତେବେ ତାକୁ ଅଯୋଗ୍ୟ ବୋଲି ବୁଝି ତା ଠାରୁ ତାହା ନେବା ଉଚିତ ନୁହେ । ତାହା ଯଦି ସେ ଭିକ୍ଷା ପାତ୍ରରେ ପକାଇ ଦିଏ, ତେବେ ତାକୁ ନେଇ କୌଣସି ଏକ ଦିଗକୁ ଚାଲି ଯିବା ଉଚିତ । ବଗିଚା ବା ଉପାଶ୍ରୟରେ, ଏ ପ୍ରକାର ସ୍ଥାନରେ ବସିବାକୁ ହେବ ଯେଉଁଠାରେ ପ୍ରାଣୀଙ୍କର ଡିମ୍ବ ଖୁବ୍ କମ୍ ଥିବ ଓ କେବଳ ମାଂସ ଓ ମାଛ ଖାଇ ହାଡ଼ ଗୁଡ଼ିକୁ ଏବଂ କଣ୍ଟା ଗୁଡ଼ିକୁ ନେଇ ଅନ୍ୟ ଆଡ଼େ ଚାଲି ଯିବା ଉଚିତ । ସେ ଆଡ଼କୁ ଯାଇ ନିଆଁରେ ପୋଡ଼ି ଯାଇଥିବା ସ୍ଥାନରେ, ହାଡ଼ ଗଦାରେ କଳଙ୍କି ଯାଇଥିବା ପୁରୁଣା ଲୁହା ଖଣ୍ଡ ମାନଙ୍କ ଗଦାରେ, ତଷୁଗଦାରେ, ଘସି ଗଦାରେ ବା ସେଭଳି ଅନ୍ୟ କୌଣସି ବେଦୀ ଉପରେ ସ୍ଥାନକୁ ଭଲ ଭାବରେ ସଫା କରି ସେହି ହାଡ଼ ଓ କଣ୍ଟା ଗୁଡ଼ିକୁ ସାବଧାନରେ ରଖିଦେବା ଉଚିତ ।

'ଦଶବୈକାଳିକ' ସୂତ୍ରର ନିମ୍ନଲିଖିତ ଗାଥାରେ ଏହି କଥା ସଂକ୍ଷେପରେ ପ୍ରତିଧ୍ୱନିତ ହୋଇ ଅଛି ।

ବହୁ ଅଟ୍ଠିୟଂ ପୁଗ୍‌ଗଲଂ ଅଣ ମିସଂ ବା ବହୁକଂଟୟଂ ।
ଅଚ୍ଛିୟଂ ତିଂଦୁୟଂ ବିଲ୍ଲଂ ଉଚ୍ଛୁଖଣ୍ଡଂ ବ ସିଂବଲିଂ ॥
ଅପ୍ପେ ସିଆ ଭୋଅଣଜ୍‌ଜାଏ ବହୁ ଉଜ୍‌ଝିୟ ଧମ୍ମିୟଂ ।
ଦିଂତିଅଂ ପଡ଼ିଆଇକେ୍ଖ ନମେ କପ୍ପଇ ତାରିସଂ ॥

ଅର୍ଥାତ୍, ବେଶି ହାଡ଼ ଥିବା ମାଂସ, ବେଶି କଣ୍ଟା ଥିବା ମାଛ, ଅସ୍ଥି ଗଛର ଫଳ, ବେଲଫଳ, ପ୍ରଭୃତି ପଦାର୍ଥ (ଯହିଁରେ ଖାଇବା ଅଂଶ କମ୍ ଓ ଫିଙ୍ଗିବା ଅଂଶ ବେଶୀ) ସଂପର୍କରେ ଦେବା ଲୋକଙ୍କୁ କହିଦେବା ଉଚିତ ଯେ, 'ଏହା ମୋର ନେବା ଭଲ ନୁହେଁ ।'

## ମାଂସାହାର ବିଷୟରେ ପ୍ରସିଦ୍ଧ ଜୈନ ସାଧୁଙ୍କ ମତ

ଗୁଜୁରାଟ ବିଦ୍ୟାପୀଠରେ ଗୋଟିଏ ଶାଖାର ନାମ ଥିଲା ପୁରାତତ୍ତ୍ୱ ମନ୍ଦିର । ତାହା ପକ୍ଷରୁ 'ପୁରାତତ୍ତ୍ୱ' ନାମରେ ଏକ ତ୍ରୈମାସିକ ପତ୍ରିକା ବାହାରୁଥିଲା । ଏହି ପତ୍ରିକାର ୧୯୨୫ର ଏକ ସଂଖ୍ୟାରେ ମୁଁ ଏହି ଅଧ୍ୟାୟର ବିଷୟ ବସ୍ତୁକୁ ନେଇ ଗୋଟିଏ ପ୍ରବନ୍ଧ ଲେଖିଥିଲି ଓ ତହିଁରେ ଉପରର ଦୁଇଟି ଉଦ୍ଧୃତ ଦେଇଥିଲି । ପ୍ରକୃତରେ ଏ ଦୁଇଟିର ତଥ୍ୟ ଅନୁସନ୍ଧାନ କରି ନଥିଲି । ମାଂସାହାର ବିଷୟରେ ଚର୍ଚ୍ଚା ହେଉଥିଲା ବେଳେ ପ୍ରସିଦ୍ଧ ଜୈନ ପଣ୍ଡିତମାନେ ହିଁ ସେ ଦିଗରେ ମୋର ଦୃଷ୍ଟି ଆକର୍ଷଣ କରିଥିଲେ । ଉକ୍ତ ପ୍ରବନ୍ଧରେ ମୁଁ ଏହି ମତ ଉପସ୍ଥାପିତ କରିଥିଲି ମାତ୍ର ।

ଏହି ଲେଖା ପ୍ରକାଶିତ ହେବା ପରେ ପରେ ଅହମଦାବାଦର ଜୈନମାନଙ୍କ ମଧ୍ୟରେ ଘୋର ଚାଞ୍ଚଲ୍ୟ ଖେଳି ଯାଇଥିଲା । ପୁରାତତ୍ତ୍ୱ ମନ୍ଦିରର ସଂପାଦକଙ୍କ ନିକଟକୁ ସେମାନେ ଏହି ସମ୍ପର୍କରେ ଅଭିଯୋଗ ପଠାଇଥିଲେ ଯେ ମୁଁ ସେମାନଙ୍କର ଧର୍ମର ଉଚ୍ଛେଦ ଚାହୁଁଛି । ପତ୍ରିକାର ପରିଚାଳକ ସିଧା ସଳଖେ ସେ ଅଭିଯୋଗର

ଉତ୍ତର ଦେଇଥିଲେ ଓ ସେଥିପାଇଁ ମୋତେ କଷ୍ଟ ପଡ଼ିବାକୁ ହୋଇ ନଥିଲା ।

ସେ ସମୟରେ ବୟୋବୃଦ୍ଧ ସାଧୁପ୍ରବର ଗୁଲାବଚନ୍ଦ ଓ ତାଙ୍କର ପ୍ରସିଦ୍ଧ ଶତାବଧାନୀ ଶିଷ୍ୟ ରତନଚନ୍ଦ ଅହମଦାବାଦରେ ରହୁଥିଲେ । ଦିନେ ଜଣେ ଜୈନ ପଣ୍ଡିତଙ୍କ ସହିତ ମୁଁ ତାଙ୍କୁ ଦର୍ଶନ କରିବାକୁ ଯାଇଥିଲି । ସେତେବେଳକୁ ସନ୍ଧ୍ୟା ସମୟ । ଜୈନସାଧୁ ନିଜ ପାଖରେ ଆଲୁଅ ରଖି ନଥିଲେ । ତେଣୁ ସାଧୁ ଦୁହିଁଙ୍କର ମୁହଁ ସ୍ପଷ୍ଟ ଦେଖା ଯାଉ ନଥିଲା । ମୋ ସଙ୍ଗରେ ଥିବା ଜୈନ ପଣ୍ଡିତ, ରତନଚନ୍ଦ ସ୍ୱାମୀଙ୍କ ସହିତ ମୋର ପରିଚୟ କରାଇ ଦେଲା ପରେ ସ୍ୱାମୀଜୀ କହିଲେ—"ଆପଣଙ୍କ ନାମ ମୁଁ ବହୁତ ଶୁଣିଛି ; କିନ୍ତୁ ଆମର ପ୍ରାଚୀନ ସାଧୁମାନେ ମାଂସହାର କରୁଥିଲେ ବୋଲି ଲେଖି ଆପଣ ଆମ ଧର୍ମ ଉପରେ ଆଘାତ ଦେଇଛନ୍ତି । ଆପଣ ଏପରି କରିବା ଠିକ୍ ହୋଇ ନାହିଁ ।"

ମୁଁ କହିଲି, "ବୌଦ୍ଧ ଓ ଜୈନ, ଏ ଦୁଇ ଶ୍ରମଣ ସଂପ୍ରଦାୟ ବର୍ତ୍ତମାନ ବିଦ୍ୟମାନ । ସେମାନଙ୍କ ପ୍ରତି ମୋର ଅନୁରାଗ କେତେ ତାହା ମୋ ସଙ୍ଗରେ ଥିବା ପଣ୍ଡିତଙ୍କୁ ଆପଣ ପଚାରନ୍ତୁ । କିନ୍ତୁ ଅନୁସନ୍ଧାନ କ୍ଷେତ୍ରରେ ଶ୍ରଦ୍ଧା, ଭକ୍ତି ବା ପ୍ରେମ ପ୍ରତିବନ୍ଧକ ରୂପେ ଠିଆ ହେବା ଉଚିତ ନୁହେ । ସତ କଥା କହିବା ଦ୍ୱାରା କୌଣସି ସଂପ୍ରଦାୟର କ୍ଷତି ହେବ ବୋଲି ମୁଁ ଭାବେନାହିଁ । ମୋର ଦୃଢ଼ ବିଶ୍ୱାସ, ସତ୍ୟାର୍ଥ ପ୍ରକାଶ କରିବା ହେଉଛି ଅନୁସନ୍ଧିତ୍ସୁର ପ୍ରଧାନ କର୍ତ୍ତବ୍ୟ ।"

ବୃଦ୍ଧ ସାଧୁ ଗୁଲାବଚନ୍ଦ ଅଳ୍ପଦୂରରେ ବସି ଥିଲେ । ସେ ସେଇଠି ନିଜ ଶିଷ୍ୟଙ୍କୁ କହିଲେ, ଏଇ ସଜ୍ଜନ ସେହି ଦୁଇଟି ଉଦ୍ଧୃତିର ଯେଉଁ ଅର୍ଥ କରୁଛନ୍ତି ତାହା ଯଥାର୍ଥ, ଆଧୁନିକ ଟୀକା

କାରମାନେ ଯେଉଁ ଅର୍ଥ କରୁଛନ୍ତି ତାହା ଠିକ୍ ନୁହେଁ । ଏ ଦୁଇଟି ଉଦ୍ଧୃତ ଛଡ଼ା ଆହୁରି ଅନେକ ସ୍ଥାନରେ ମଧ୍ୟ ଜୈନ ସାଧୁମାନେ ମାଂସାହାର କରୁଥିବା ସମ୍ପର୍କରେ ପ୍ରମାଣ ମିଳେ ।”

ଏତିକ କହି ସେହି ସାଧୁ ଜୈନ ସୂତ୍ର ମାନଙ୍କରୁ ବାକ୍ୟୋଦ୍ଧାର ଆରମ୍ଭ କରିଦେଲେ । କିନ୍ତୁ ତାଙ୍କର ପଣ୍ଡିତ ଶିଷ୍ୟ ତହିଁର ଖଣ୍ଡନ କଲେ । ଗୁରୁଜୀ ଯେଉଁ ପ୍ରମାଣ ସବୁ ଉଦ୍ଧାର କଲେ ସେ ସବୁ କେଉଁ ସ୍ଥଳରେ ଉପଲବ୍ଧ, ତାହା ମୁଁ ପଚାରି ପାରିଲି ନାହିଁ । କାରଣ, ସେପରି ପଚାରିବାଟା ଅପ୍ରାସଙ୍ଗିକ ହେବ ବୋଲି ମୁଁ ଭାବିଲି ।

## ମହାବୀର ସ୍ୱାମୀଙ୍କ ମାଂସାହାର ବିଷୟରେ ବିବାଦ

ଏବେ ସ୍ୱୟଂ ମହାବୀର ସ୍ୱାମୀ ମାଂସାହାର କରୁଥିବା ବିଷୟରେ ମଧ୍ୟ ଯଥେଷ୍ଟ ପ୍ରମାଣ ମିଳିଲାଣି । ଗୁଜୁରାଟୀର “ପ୍ରସ୍ଥାନ” ମାସିକ ପତ୍ରିକାର ଗତ କାର୍ତ୍ତିକ ସଂଖ୍ୟାରେ ( ସମ୍ବତ ୧୯୯୫, ୧୪ ବର୍ଷ, ୧ମ ସଂଖ୍ୟା ) ଶ୍ରୀ ଗୋପାଳ ଦାସ ଜୀବଭାଇ ପଟେଲ, “ଶ୍ରୀ ମହାବୀର ସ୍ୱାମୀଙ୍କର ମାଂସାହାର” ଶୀର୍ଷକ ପ୍ରବନ୍ଧ ଲେଖିଥିଲେ । ସେ ପ୍ରବନ୍ଧରୁ, ଆମର ଏଇ ଆଲୋଚ୍ୟ ବିଷୟ ସହିତ ସମ୍ପୃକ୍ତ କେତେକ ଜ୍ଞାତବ୍ୟ ବିଷୟ ସଂକ୍ଷେପରେ ଏଠାରେ ଦିଆ ଯାଉଛି ।

ମହାବୀର ସ୍ୱାମୀ ଶ୍ରାବସ୍ତୀ ନଗରୀରେ ରହୁଥିଲେ । ମକ୍‌ଖଲି ଗୋଶାଳ ମଧ୍ୟ ସେଠାରେ ପହଞ୍ଚିଲେ । ଦୁହିଁଙ୍କ ମଧ୍ୟରେ ପରସ୍ପରର ଜଣଙ୍କ ବିରୁଦ୍ଧରେ କଟୁ ସମାଲୋଚନା ଚାଲିଲା । ଶେଷରେ ଗୋଶାଳ ମହାବୀର ସ୍ୱାମୀଙ୍କୁ ଶାପ ଦେଇ କହିଲେ,—“ମୋର ତପୋବଳରେ ତୁମେ ଛଅ ମାସ ପରେ ପିତ୍ତଜ୍ୱରରେ ମରିଯିବ ।” ମହାବୀର ସ୍ୱାମୀ ତାଙ୍କୁ ପ୍ରତିଶାପ ଦେଇ କହିଲେ—“ତୁମେ ଆଜଠୁ ସାତ ରାତିଠି

ମରିଯିବ ।” ସେ ଅନୁସାରେ ଗୋସାଲ ସପ୍ତମ ରାତ୍ରରେ ପ୍ରାଣତ୍ୟାଗ କଲେ । କିନ୍ତୁ ତାହାର ପ୍ରଭାବରେ ମହାବୀର ସ୍ୱାମୀଙ୍କର ଦେହରେ ଜଳାପୋଡ଼ା ଅନୁଭୂତ ହେଲା ଏବଂ ରକ୍ତସ୍ରାବ ଆରମ୍ଭ ହେଲା ।

ସେତିକବେଳେ ମହାବୀର ସ୍ୱାମୀ ସିଂହ ନାମକ ନିଜର ଜଣେ ଶିଷ୍ୟଙ୍କୁ କହିଲେ, ତୁମେ ମେଣ୍ଢିକ ଗ୍ରାମକୁ ଯାଇ ରେବତୀ ନାମ୍ନୀ ସ୍ତ୍ରୀକୁ କହିବ—“ସେ ମୋ ପାଇଁ ଯେଉଁ ଦୁଇଟି କପୋତ ରାନ୍ଧିଛି, ତାହା ଆଉ ମୋର ଦରକାର ନାହିଁ । କାଲି ଯେଉଁ କୁକୁଡ଼ାଟିକି ବିରାଡ଼ି ମାରିଛି, ତାହାର ମାଂସ ତୁ ରାନ୍ଧିଛୁ, ସେଇତକ ମତେ ଦେଇ ଦେ” ବୋଲି କହିବ ।

ଶ୍ରୀ ଗୋପାଳ ଦାସ ମୂଳ ଭଗବତୀ ସୂତ୍ରର ଉଦ୍ଧୃତ ନିଜ ପ୍ରବନ୍ଧରେ ଦେଇ ନାହାନ୍ତି । ସେହି ଉଦ୍ଧୃତ ଏଠାରେ ଦେବା ଠିକ୍ ହେବ ।

“ତଂ ଗଚ୍ଛହ ଣଂ ତୁମଂ ସୀହା, ମେଂଢିୟଗାମଂ ନଗରଂ ରେବତୀଏ ଗାହାବଇ ଣୀଏ ଗିହେ ତତ୍ଥ ଣଂ ରେବତୀଏ ଗାହା-ବଇଣୀଏ ମମଂ ଅଟ୍ଠାଏ ଦୁବେ କବୋୟ ସରୀରା ଉବକ୍ଖଡ଼ିୟା, ତେହିଂ ନୋ ଅଟ୍ଠୋ । ଅତ୍ଥି ସେ ଅନ୍ନେ ପାରିୟାସିଏ ମଜ୍ଜାରକ ଡ଼ଏ କୁକ୍କୁଡ଼ମଂସଏତଂ ଆହରାହି ଏଏଣଂ ଅଟ୍ଠୋ”ଅର୍ଦ୍ଧମାଗଧୀରେ ଯାହାର ଟିକିଏ ହେଲେ ଜ୍ଞାନଥିବ ସେ ନିରପେକ୍ଷ ଭାବରେ ଏ ଲେଖା ପଢ଼ିଲେ କହିବ ଯେ ଶ୍ରୀ ଗୋପାଳଦାସଜୀ ତହିଁର ଯେଉଁ ଅର୍ଥ କରିଛନ୍ତି ତାହା ଠିକ୍ । (୧)କିନ୍ତୁ ଆଜି କାଲି ଅନେକ ଜୈନ-ପଣ୍ଡିତ ଗୋପାଳ ଦାସଙ୍କର ବଡ଼ କଡ଼ା ସମାଲୋଚନା କରୁଛନ୍ତି ।

---

(୧) ଅର୍ଥାତ ୧୯୩୮ ଖ୍ରୀଷ୍ଟାବ୍ଦରେ ।

# ବୌଦ୍ଧ ଓ ଜୈନ ଶ୍ରମଣମାନଙ୍କ ମାଂସାହାରରେ ପାର୍ଥକ୍ୟ

ମାଂସାହାର ବିଷୟରେ ଜୈନ ଓ ବୌଦ୍ଧମାନଙ୍କ ମଧ୍ୟରେ କୌଣସି ପ୍ରକାରର ବାଦ ବିବାଦ ଚାଲୁଥିଲା ବୋଲି ଆମେ ଯେତେବେଳେ ଦେଖିବାକୁ ପାଉଛୁ ସେତେବେଳେ ଶ୍ରୀ ଗୋପାଳଦାସଙ୍କର ଉକ୍ତି ସତ୍ୟ ବୋଲି ପ୍ରମାଣିତ ହୋଇ ଯାଉଛି।

ଅଷ୍ଟମ ଅଧ୍ୟାୟରେ ଏ କଥା ଉଲ୍ଲିଖିତ ହୋଇ ଅଛି ଯେ ବୈଶାଳୀର ସେନାପତି ସିଂହ ନିର୍ଗ୍ରନ୍ଥମାନଙ୍କର ଉପାସକ ଥିଲେ। ବୁଦ୍ଧଙ୍କର ଉପଦେଶ ଶୁଣି ପରେ ସେ ତାଙ୍କର ଉପାସକ ହୋଇ ଯାଇଥିଲେ। ପୁଣି ବୁଦ୍ଧ ଏବଂ ଭିକ୍ଷୁ ସଂଘକୁ ନିଜ ଘରକୁ ଆମନ୍ତ୍ରଣ କରି ଆଦର ପୂର୍ବକ ସେମାନଙ୍କର ଚର୍ଚ୍ଚା କରିଥିଲେ; କିନ୍ତୁ ନିର୍ଗ୍ରନ୍ଥମାନଙ୍କୁ ସେ କଥା ଭଲ ଲାଗିଲା ନାହିଁ। ସେମାନେ ବୈଶାଳୀରେ ଏହି ମିଥ୍ୟା ଅପବାଦ ପ୍ରଚାର କଲେ ଯେ, ସିଂହ, ଗୋଟାଏ ବଡ଼ ପଶୁ ବଧ କରି ଗୌତମ ତଥା ଭିକ୍ଷୁ ସଂଘଙ୍କୁ ଭୋଜି ଦେଇଥିଲେ। ଏକଥା ବୁଦ୍ଧଙ୍କର କର୍ଣ୍ଣଗୋଚର ହୋଇ ଥିଲେ ମଧ୍ୟ ସେ ତା ଉପରେ ଗୁରୁତ୍ୱ ନ ଦେଇ ସେହି ଭୋଜିରେ ଯୋଗ ଦେଇଥିଲେ। ଜଣେ ଭଦ୍ରଲୋକ ଯାଇ ସିଂହଙ୍କୁ ଭୂନ କରି ଏ ସମ୍ବାଦ ଦେଲେ। ସିଂହ କହିଲେ, "ଏ କଥାର କିଛି ଅର୍ଥ ନାହିଁ। ବୁଦ୍ଧଙ୍କର ନିନ୍ଦା କଲେ ନିର୍ଗ୍ରନ୍ଥମାନଙ୍କୁ ଆନନ୍ଦ ମିଳେ। କିନ୍ତୁ ମୁଁ ଯେ ଜାଣି ଶୁଣି ଭୋଜି ପାଇଁ ପ୍ରାଣୀ ହିଂସା କରିଛି ଏକଥା ସର୍ବଥା ଅସମ୍ଭବ।" (୧)

---

(୧) ଦେଖନ୍ତୁ "ବୃଦ୍ଧଲୀଳାସାଗର ସଂଗ୍ରହ ପୃ: ୨୭୯-୨୮୧।

ଏହି ପ୍ରକାର ଅନ୍ୟ ଏକ ଉଲ୍ଲେଖ ମଜ୍‌ଝିମ ନିକାୟର (ସୂ-୫୫) ଜୀବକ ସୁତ୍ତରେ ଦେଖିବାକୁ ମିଳେ । ତାହା ହେଉଛି :—

ଥରେ ଭଗବାନ୍ ରାଜଗୃହରେ ଜୀବକ କୌମାର ଭୃତ୍ୟଙ୍କ ଆମ୍ରବନରେ ରହୁଥିଲେ । ସେତିକବେଳେ ଜୀବକ କୌମାର ଭୃତ୍ୟ ଭଗବାନଙ୍କ ନିକଟକୁ ଗଲେ ଓ ତାଙ୍କୁ ନମସ୍କାର କରି ଏକ ପାଖରେ ବସିଗଲେ । ସେ କହିଲେ, "ଭଦନ୍ତ ! ପ୍ରାଣୀକୁ ମାରିଯାଇ ରନ୍ଧା ଯାଇଥିବା ଖାଦ୍ୟ ଆପଣ ଖାଉଛନ୍ତି ବୋଲି ଆପଣଙ୍କ ଉପରେ ଦୋଷାରୋପ ହେଉଛି । ଏହା କଣ ସତ ?" ଭଗବାନ୍ ଉତ୍ତର ଦେଲେ—"ଏହି ଦୋଷାରୋପ ପୂରା ପୂରି ମିଛ । ମୁଁ ଯେତେବେଳେ ମୋର ପାଇଁ ପ୍ରାଣୀ ବଧ କରାଯିବାର ଦେଖେ, ଶୁଣେ ବା ମୋର ସେପରି କିଛି ଆଶଙ୍କା ହୁଏ, ସେତେବେଳେ ସେହି ଖାଦ୍ୟ ମୋର ନିଷିଦ୍ଧ ବୋଲି ମୁଁ କହି ଦେଇଥାଏ ।

ବୁଦ୍ଧଙ୍କ ଉପରେ ଜୈନମାନେ କି ପ୍ରକାର ଦୋଷାରୋପ କରୁଥିଲେ ତାହା ଏଥିରୁ ସ୍ପଷ୍ଟରୂପେ ଜଣା ଯାଉଛି । କେହି ଯଦି ଭଗବାନ୍‌ଙ୍କୁ ନିମନ୍ତ୍ରଣ କରି ତାଙ୍କୁ ଖାଇବାକୁ ମାଂସ ଦେଉଥିଲା, ସେତିକବେଳେ ଜୈନମାନେ କହୁଥିଲେ—ଶ୍ରମଣ ଗୌତମ ତାଙ୍କ ନିଜପାଇଁ ମରା ଯାଉଥିବା (ଉଦ୍ଦିସ୍ସକଟଂ) ପଶୁ ମାଂସ ଖାଉଛନ୍ତି । ଜୈନ ସାଧୁମାନେ ତ ନିଜେ କାହାର ଆମନ୍ତ୍ରଣ ରଖୁ ନଥିଲେ, ବାଟରେ ଯିବାବେଳେ ଯେଉଁ ଭିକ୍ଷା ମିଳୁଥିଲା ତାହା ନେଉଥିଲେ ଓ ସେହି ଅବସରରେ ମାଂସ ମଧ୍ୟ ଖାଉଥିଲେ ।

## କେତେକ ତପସ୍ୱୀ ମାଂସାହାର ବର୍ଜନ କରିଥିଲେ

ବୁଦ୍ଧଦେବଙ୍କର ସମସାମୟିକ କେତେକ ତପସ୍ୱୀ ମାଂସାହାର ନିଷିଦ୍ଧ କରିଥିଲେ । କାଶ୍ୟପ ବୁଦ୍ଧଙ୍କ ସହିତ ସେ ମଧ୍ୟରୁ ଜଣେ

ତପସ୍ୱୀଙ୍କର ଯେଉଁ ଆଳାପ ହୋଇଥିଲା ତାହା ସୁତ୍ତନିପାତର (୧୪) ଆମଗନ୍ଧ ସୁତ୍ତରେ (୧) ଦେଖିବାକୁ ମିଳେ । ସେହି ସୁତ୍ତର ଅନୁବାଦ ଏଠାରେ ଦିଆଯାଉଛି ।

(୧) (ତିଷ୍ୟତାପସ) ସୁଆଁ, ହରଡ଼, ଗଛର ପତ୍ର, କନ୍ଦମୂଳ, ଓ ଫଳ ଧର୍ମାନୁସାରେ ମିଳିଲେ ତଦ୍ଦ୍ୱାରା ଉଦର ପୋଷଣକାରୀ ବିଳାସ ପଦାର୍ଥକୁ ପାଇବା ପାଇଁ ଝୁରନ୍ତି ନାହିଁ ।

(୨) ହେ କାଶ୍ୟପ, ଅନ୍ୟଲୋକ ଦେଇଥିବା ଓ ଭଲଭାବରେ ରନ୍ଧାହୋଇଥିବା ଚାଉଳକୁ ସୁରସ ଏବଂ ଉତ୍ତମ ଅନ୍ନ ବୋଲି ତୁମେ କହୁଥିଲେ ମଧ୍ୟ ତୁମେ ଆମଗନ୍ଧ ( ଅମେଧ୍ୟ ପଦାର୍ଥ ) ଖାଉଛ ।

(୩) ହେ ବ୍ରହ୍ମବନ୍ଧୁ, ପକ୍ଷୀ ମାଂସରେ ମିଶ୍ରିତ ଚାଉଳର ଭାତ ଖାଇବା ବେଳେ ତୁମେ କହୁଛ ଯେ, "ମୋ ମତରେ ଆମଗନ୍ଧ ଉଚିତ ନୁହେ ।" ତେଣୁ, ହେ କାଶ୍ୟପ, ମୁଁ ତୁମକୁ ପଚାରୁଛି, ତୁମର ଆମଗନ୍ଧ ଆଉ କେମିତି ?

(୪) (କାଶ୍ୟପ ବୁଦ୍ଧ—) ପ୍ରାଣଘାତ, ବଧ, ଛେଦ ବନ୍ଧନ ଚୋରି, ଅସତ୍ୟ ଭାଷଣ, ଆଘାତ ଦେବା ଜାରଣ ମାରଣ ପ୍ରଭୃତି ଅଭ୍ୟାସ କରିବା ଓ ବ୍ୟଭିଚାରହିଁ ହେଉଛି ଆମଗନ୍ଧ, ମାଂସଭୋଜନ ନୁହେ ।

(୫) ସ୍ତ୍ରୀ ବିଷୟରେ ଯାହାର ସଂଯମ ନାହିଁ ଯେଉଁମାନେ ଜିହ୍ୱାଲୋଲୁପ, ଅଶୁଚି କର୍ମ ଜଡ଼ିତ, ନାସ୍ତିକ, ବିଷମ ଏବଂ ଦୁର୍ବିନୀତ ସେମାନଙ୍କର କର୍ମହେଉଛି ଆମଗନ୍ଧ, ମାଂସଭକ୍ଷଣ ନୁହେ ।

---

(୧) ଏସୁତ୍ତ ପ୍ରଦତ୍ତ ଉପଦେଶ ଖ୍ରୀଷ୍ଟୀୟ ମତ ସଙ୍ଗେ ତୁଳନୀୟ-ଯାହା ମୁହଁରେ ଯାଏ ତାହା ମନୁଷ୍ୟକୁ ଭ୍ରଷ୍ଟ କରେନା; ମାତ୍ର ଯାହା ମୁହଁରୁ ଯାଏ, ତାହା ମନୁଷ୍ୟକୁ ଭ୍ରଷ୍ଟ କରେ । ମେଥ୍ୟୁ ୧୫ । ୧୧ ।

(୬) ଯେଉଁମାନେ ରୁକ୍ଷ, ଦାରୁଣ, ପରୋକ୍ଷନିନ୍ଦାକାରୀ, ମିତ୍ରଦ୍ରୋହୀ, ନିର୍ଦ୍ଦୟ, ଅତିମାନୀ, କୃପଣ ଓ କାହାକୁ କିଛି ଦିଅନ୍ତି ନାହିଁ, ସେଇମାନଙ୍କର କର୍ମ ହେଉଛି ଆମଗନ୍ଧ, ମାଂସ ଭୋଜନ ନୁହେ ।

(୭) କ୍ରୋଧ, ମଦ, କଠୋରତା, ମାୟା, ଈର୍ଷା ବୃଥା ପ୍ରଳାପ ମାନାତିମାନ ଓ ଦୁଷ୍ଟ ସଂସର୍ଗ ହେଉଛି ଆମଗନ୍ଧ, ମାଂସ ଭୋଜନ ନୁହେ ।

(୮) ପାପୀ, ଋଣ ନ ଶୁଝିବା ଲୋକ, ପରୋକ୍ଷନିନ୍ଦୁକ, ଲାଞ୍ଚୁଆ, ଅଧିକାରୀ, ଇହଲୋକରେ ପାପଉତ୍ପାଦନକାରୀ ଓ ନରାଧମ ଯେଉଁ କର୍ମ କରେ, ତାହା ହିଁ ଆମଗନ୍ଧ, ମାଂସ ଭୋଜନ ନୁହେ ।

(୯) ଯାହାଠାରେ ପ୍ରାଣୀମାନଙ୍କ ପ୍ରତି ଦୟା ନାହିଁ, ଯେ ଅନ୍ୟକୁ ଲୁଣ୍ଠନ କରି ପୀଡ଼ା ଦିଏ, ଯେ ଦୁଃଶୀଳ, ଭୟଙ୍କର, ଯେ ଅନ୍ୟକୁ ଗାଳିଗୁଲଜ କରେ ଓ ଅନାଦର କରେ ତାହାର କର୍ମ ହେଉଛି ଆମଗନ୍ଧ, ମାଂସ ଭୋଜନ ନୁହେ ।

(୧୦) ଏହିପରି କର୍ମମାନଙ୍କରେ ଆସକ୍ତ, ବିରୋଧକାରୀ ହତ୍ୟାକାରୀ, ସବୁବେଳେ ଏହିଭଳି କାମରେ ଲାଗି ରହି ପର-ଲୋକରେ ଯେ ଅନ୍ଧାରରେ ପ୍ରବେଶ କରେ ପୁଣି ଉପରକୁ ଗୋଡ଼ ଓ ମୁଣ୍ଡ ତଳକୁ କରି ନରକରେ ରହେ ସେହିପରି ଲୋକ ଯେଉଁ କର୍ମ କରେ ତାହା ହିଁ ଆମଗନ୍ଧ, ମାଂସ ଭୋଜନ ନୁହେଁ ।

(୧୧) ମତ୍ସ୍ୟ ମାଂସ ଭୋଜନ ତ୍ୟାଗ କରିବା, ଉଲଗ୍ନ ରହିବା, ମୁଣ୍ଡ ନ କରିବା, ଜଟାଧାରଣ କରିବା, ଭସ୍ମ ବିଲେପିତ ହେବା, ମୃଗଚର୍ମ ପରିଧାନ କରିବା, ଅଗ୍ନିହୋତ୍ରର ଉପାସନା କରିବା ବା

ଇହଲୋକର ଅନ୍ୟ ନାନାପ୍ରକାର ତପସ୍ୟା ମନ୍ତ୍ରାହୁତ, ଯଜ୍ଞ ଏବଂ ଶୀତୋଷ୍ଣ ସହ୍ୟକରି ତପସ୍ୟା କରିବା—ଏହିସବୁ କଥା ଦ୍ୱାରା ମର୍ତ୍ତ୍ୟକୁ ପବିତ୍ର କରି ହୁଏ ନାହିଁ ।

(୧୨) ଇନ୍ଦ୍ରିୟମାନଙ୍କ ଉପରେ ସଂଯମ ରଖି ତଥା ଇନ୍ଦ୍ରିୟ-ମାନଙ୍କୁ ଚହ୍ନି ଆଚରଣ କରିବା ଲୋକ, ଧର୍ମସ୍ଥିତ, ସରଳତା ଓ ମୃଦୁତାରେ ସନ୍ତୋଷ ଲାଭ କରିବା ଲୋକ, ସଙ୍ଗାତୀତ ଏବଂ ଯାହାର ସମସ୍ତ ଦୁଃଖ ବିନଷ୍ଟ ହୋଇଯାଇଛି ସେହିଭଳି ଧୀର ପୁରୁଷ ଦୃଷ୍ଟ ଏବଂ ଶ୍ରୁତ ପଦାର୍ଥରେ ଆବଦ୍ଧ ହୁଏନାହିଁ ।

(୧୩) ଏହିକଥା ଭଗବାନ୍ ବାରମ୍ବାର ପ୍ରକାଶ କଲେ ଏବଂ ତାହା ସେହି ମନ୍ତ୍ର ପାରଗ ( ବ୍ରାହ୍ମଣ ତାପସ ) ଜାଣି ପାରିଲେ । ଏହି ଅର୍ଥ ସେହି 'ନିର୍ଗନ୍ଥ' ଅନାସକ୍ତ ଓ ଅଦମ୍ୟ ମୁନି ମନୋହର ଗାଥାରେ ପ୍ରକାଶ କଲେ ।

(୧୪) ନିର୍ଗନ୍ଧ ଓ ସମସ୍ତ ଦୁଃଖର ବିନାଶକାରୀ ବୁଦ୍ଧଙ୍କର ସୁଭାଷିତ ବଚନ ଶୁଣି ସେ ( ସେହି ତାପସ ) ବିନମ୍ର ଭାବରେ ତଥାଗତଙ୍କୁ ପ୍ରଣାମକଲେ ଓ ସେଠାରେ ହିଁ ପ୍ରବ୍ରଜ୍ୟା ଗ୍ରହଣକଲେ ।

## ଶ୍ରମଣଙ୍କଦ୍ୱାରା ମାଂସାହାରର ସମର୍ଥନ

ଏହିସୂତ୍ର ବହୁ ପ୍ରାଚୀନ; କିନ୍ତୁ ନିଜେ କାଶ୍ୟପ ବୁଦ୍ଧ ଏହା କହିଛନ୍ତି ବୋଲି ମାନିବା ଲାଗି କୌଣସି ବଳିଷ୍ଠ ପ୍ରମାଣ ନାହିଁ । ଏଥିରେ ଏତିକି ମାତ୍ର ବୁଝିବା ଉଚିତ ଯେ ବୁଦ୍ଧଙ୍କ ସମୟର ଭିକ୍ଷୁମାନେ ଏହିଭଳି ଭାବରେ ମାଂସାହାରର ସମର୍ଥନ କରୁଥିଲେ ।

ଏହି ସୂତ୍ରରେ ତପସ୍ୟାକୁ ନିରର୍ଥକ ବୋଲି କୁହାଯାଇଛି । ଏମିତ କିନ୍ତୁ ଜୈନ ଶ୍ରମଣମାନଙ୍କୁ ଭଲ ଲାଗୁନଥିଲା, କାରଣ

ସେମାନେ ବାରମ୍ବାର ତପଶ୍ଚରଣ କରୁଥିଲେ । ତଥାପି ସେମାନେ ଏହିଭଳି ଭାବରେ ମାଂସାହାରର ସମର୍ଥନ କରିଥିବେ । କାରଣ, ସେମାନେ ପୂର୍ବକାଳର ତପସ୍ୱୀମାନଙ୍କ ପରି ଜଙ୍ଗଲରେ ଫଳମୂଳ ଉପରେ ନିର୍ଭର କରୁଥିଲେ ଓ ଲୋକଙ୍କଠାରୁ ମିଳୁଥିବା ଭିକ୍ଷା ଉପରେ ମଧ୍ୟ ନିର୍ଭର କରୁଥିଲେ । ସେତିକିବେଳେ ନିର୍ମାଂସ—ନିର୍ମତ୍ସ୍ୟ ଭିକ୍ଷା ମିଳିବା ସମ୍ଭବପର ନଥିଲା । ବ୍ରାହ୍ମଣମାନେ ଯଜ୍ଞରେ ଶହ ଶହ ସଂଖ୍ୟାରେ ପ୍ରାଣୀବଧ କରି ସେମାନଙ୍କର ମାଂସ ନିକଟବର୍ତ୍ତୀ ଅଞ୍ଚଳର ଲୋକମାନଙ୍କୁ ବାଣ୍ଟି ଦେଉଥିଲେ । ଗ୍ରାମବାସୀମାନେ ମଧ୍ୟ ଦେବତାଙ୍କ ଉଦ୍ଦେଶ୍ୟରେ ପଶୁବଳି ଦେଇ ସେମାନଙ୍କ ମାଂସ ଖାଉଥିଲେ । ଏହାଛଡ଼ା କଂସାଇମାନେ ମଧ୍ୟ ଠିକ୍ ଛକ ଜାଗାମାନଙ୍କରେ ଗାଈ ମାଂସ ବିକ୍ରୀ କରୁଥିଲେ । ଏପରି ଅବସ୍ଥାରେ, ରନ୍ଧାଯାଇ ଥିବା ଅନ୍ନ ଭିକ୍ଷାକରି ଯେଉଁ ଶ୍ରମଣମାନେ ଚଳୁଥିଲେ ସେମାନେ ମାଂସ ନଥିବା ଭିକ୍ଷା ପାଆନ୍ତେ ବା କୁଆଡ଼ୁ ?

ଜୈନମାନଙ୍କର ଧାରଣା ଅନୁସାରେ ପୃଥ୍ୱୀକାୟ, ଅପ୍‌କାୟ ବାୟୁକାୟ, ଅଗ୍ନିକାୟ, ବନସ୍ପତିକାୟ, ଓ ତ୍ରସକାୟ, ଏହିପରି ଜୀବ ହେଉଛନ୍ତି ଛଅ ପ୍ରକାର । ( ହରି କେଶି ବଳ କଥା ନବମ ଅଧ୍ୟାୟରେ ଦେଖ ) ପୃଥ୍ୱୀକାୟ ଅର୍ଥାତ୍ ପୃଥ୍ୱୀ ପରମାଣୁ । ଏହିପରି, ଜଳବାୟୁ ଓ ଅଗ୍ନିର ପରମାଣୁ ସଜୀବ ଅଟେ । ବନସ୍ପତିକାୟ ଅର୍ଥାତ ବୃକ୍ଷଆଦି ବନସ୍ପତି ସେଗୁଡ଼ିକୁ ସଜୀବ ବୋଲି କହିବା ବାହୁଲ୍ୟ ମାତ୍ର । ତ୍ରସକାୟର ଅର୍ଥ ହେଉଛି କୀଟ ପତଙ୍ଗଠାରୁ ଆରମ୍ଭ କରି ହାତୀ ପର୍ଯ୍ୟନ୍ତ ସବୁ ଛୋଟ ବଡ଼ ପ୍ରାଣୀ । ଏହି ପ୍ରାଣୀମାଙ୍କ ମଧ୍ୟରୁ ଯେ କୌଣସି ପ୍ରାଣୀର ହିଂସା ଜୈନ ଶ୍ରମଣମାନେ ପାପ ବୋଲି ଭାବୁଥିଲେ । ସେଥି ପାଇଁ ରାତିରେ ସେମାନେ ନିଆଁ ଜାଳନ୍ତି ନାହିଁ । ଥଣ୍ଡା ପାଣି ପିଅନ୍ତି ନାହିଁ, ଆହୁରି ମଧ୍ୟ ପୃଥ୍ୱୀ

ପରମାଣୁ ପ୍ରଭୃତିର ଯେପରି ସଂହାର ନ ହୁଏ ସେ ବିଷୟରେ ବଡ଼ ସାବଧାନ ରହନ୍ତି ।

କିନ୍ତୁ ଜୈନ ଉପାସକମାନେ କୃଷି କରନ୍ତି,ବିହନ ବୁଣନ୍ତି ଓ ଫସଲରୁ ଖାଦ୍ୟ ଗ୍ରହଣ ଖାଆନ୍ତି । ଏହି କାର୍ଯ୍ୟରେ ପୃଥ୍ୱୀ-ଅପ-ତେଜ-ବାୟୁ ବନସ୍ପତି ଏବଂ ତ୍ରସ—ଏହି ଛଅ ପ୍ରକାର ଜୀବର ସଂହାର ହେଉଥିଲା । ପୃଥିବୀରେ ହଳ କଲା ବେଳେ କେବଳ ଯେ ପୃଥ୍ୱୀ ପରମାଣୁ ନଷ୍ଟ ହୋଇଯାଉଥିଲା ତାହା ନୁହେ ପରନ୍ତୁ କୀଟ ପତଙ୍ଗ ପିମ୍ପୁଡ଼ି ପ୍ରଭୃତି ଲକ୍ଷ ଲକ୍ଷ କ୍ଷୁଦ୍ର କ୍ଷୁଦ୍ର ପ୍ରାଣୀ ମରି ଯାଉଥିଲେ । ଖାଦ୍ୟ ତିଆରି କଲାବେଳେ ବନସ୍ପତିକାୟ, ଅପକାୟ, ଅଗ୍ନି କାୟ ଓ ବାୟୁ କାୟ ପ୍ରଭୃତି ସବୁ ଶ୍ରେଣୀର ପ୍ରାଣୀ ବିନଷ୍ଟ ହୋଇ ଯାଉଥିଲେ । ଏପରି ହେଉଥିଲେ ମଧ୍ୟ ଜୈନ ସାଧୁ-ମାନେ ଅନ୍ନ ଭିକ୍ଷା କରୁ ଥିଲେ । ତାହା ହେଲେ, କୌଣସି ଜୈନ ଉପାସକଦ୍ୱାରା ତିଆରି ମାଂସ-ଭିକ୍ଷା ଗ୍ରହଣ କରିବାରେ ପ୍ରାଚୀନ ଜୈନ ଶ୍ରମଣମାନଙ୍କର କି ଆପତ୍ତି ଥାଇ ପାରେ ? ତହିଁର ସମର୍ଥନ କିଣି ସେମାନେ ଆମଗନ୍ଧ ସୂତ୍ରର ରୀତିରେ କରୁ ନ ଥିଲେ ।

## ଗୋମାଂସାହାର ବିରୁଦ୍ଧରେ ଆନ୍ଦୋଳନ

ମାଂସାହାର ବିରୁଦ୍ଧରେ ଆନ୍ଦୋଳନ କିପରି ଆରମ୍ଭ ହେଲା ସେ କଥା ଏଠାରେ ସଂକ୍ଷେପରେ ଆଲୋଚନା କରି ଯାଉଛି । ସର୍ବ ପ୍ରଥମେ, ଯଥାସମ୍ଭବ ବୌଦ୍ଧମାନେହିଁ ଗୋମାଂସାହାର ବିରୁଦ୍ଧରେ ଆନ୍ଦୋଳନ କରିଥିଲେ । ନବମ ଅଧ୍ୟାୟରେ ଗାଈର ଯୋଗ୍ୟତା ଦେଖାଇବାକୁ ବ୍ରାହ୍ମଣ ଧାର୍ମିକ ସୂତ୍ରର ଦୁଇଟି ଗାଥା ଉଦ୍ଧାର କରି ଯାଇଛି । ତାହାଛଡ଼ା ଅନ୍ୟ ଗାଥା ଦେଖନ୍ତୁ ।

ନ ମାଦା ନ ଦ୍ୱମାଟେଣନ ନାମ୍ସୁ ହିଂସନ୍ତି କେନଚି ।
ଗାବୋ ଏଳକ ସମାନା ସୋରତା କୁମ୍ଭଦୂହନା ।
ତା ବିସାଣେ ଗହେତ୍ୱାନ ରଜା ସତ୍ଥେନ ଘାତୟି ॥
ତତୋ ଚ ଦେବା ପିତରୋ ଇନ୍ଦୋ ଅସୁର ରକ୍ଖସା ।
ଅଧମ୍ମୋ ଇତି ପକ୍କନ୍ଦୁଂ ଯଂ ସତ୍ଥଂ ନପତି ଗବେ ॥(୧)

ଅର୍ଥାତ୍:—ମେଣ୍ଢାପରି ନମ୍ର ଓ କଳସୀଭରି ଦୁଧ ଦେଉଥିବା ଗାଈ, ପାଦ, ସିଂଘ ବା ଅନ୍ୟ କୌଣସି ଅଙ୍ଗରେ କାହାକୁ ହେଲେ ହିଂସାକରେ ନାହିଁ । ସେମାନଙ୍କୁ ( ବ୍ରାହ୍ମଣଙ୍କ ବୋଲରେ ) ରଜା ଇକ୍ଷ୍ୱାକୁ ସିଂହ ଟାଣି ମାରି ପକାଇଥିଲେ । ସେତେବେଳେ ଗାଈ ଉପରେ ଶସ୍ତ୍ର ପ୍ରହାର ହେବାରୁ ଦେବ, ପିତୃଲୋକ, ଇନ୍ଦ୍ର, ଅସୁର ଓ ରାକ୍ଷସ ଅଧର୍ମ ହେଲା ବୋଲି କହି ଆକ୍ଷେପ କରିଥିଲେ ।

## ବହୁକାଳଯାଏ ବ୍ରାହ୍ମଣମାନେ ଗୋମାଂସ ଛାଡ଼ିନଥିଲେ

ବୌଦ୍ଧ ଓ ଜୈନମାନଙ୍କ ଚେଷ୍ଟାରେ ଗୋମାଂସାହାର ନିଷିଦ୍ଧ ହେବାକୁ ଲାଗିଲା କିନ୍ତୁ ବ୍ରାହ୍ମଣମାନଙ୍କ ମଧ୍ୟରେ ତାହା ନିଷିଦ୍ଧ ହେବାକୁ ବହୁ ଶତାବ୍ଦୀ ଲାଗି ଯାଇଥିଲା । ପ୍ରଥମରେ, ଯଜ୍ଞ ପାଇଁ ଦୀକ୍ଷା ପାଇଥିବା ଲୋକ ଗୋମାଂସ ଖାଇବା ଉଚିତ ନୁହେଁ ବୋଲି ଯୁକ୍ତି କରାଗଲା ।

ସ ଧେନ୍ୱୈ ଚାନଡୁହଶ୍ଚ ନାଶ୍ନୀୟାତ୍ । ଧେନ୍ୱନଡୁହୌ ବା୍ଇଦଂ ସର୍ବଂ ବିଭୃତସ୍ତେ ଦେବା ଅବ୍ରୁବନ୍ ଧେନ୍ୱନଡୁହୌ ବା୍ଇଦଂ ସର୍ବଂବିଭୃତୋହନ୍ତ ଯଦନ୍ୟେଷାଂ ବୟସାଂ ବୀର୍ଯ୍ୟଂ ତଦ୍ଧେନ୍ୱନଡୁହୟୋର୍ଦଧାମେତି—ତସ୍ମାଦ୍ଧେନ୍ୱନଡୁହୟୋର୍ନାଶ୍ନୀୟାତ୍ ତଦୁହୋବାଚ ଯାଜ୍ଞବଲ୍‌କ୍ୟୋ ଶ୍ନାମ୍ୟେବାହଂମାଂସଲଂଚେଦ୍‌ଭବତୀତି

(୧) ଶତପଥ ବ୍ରାହ୍ମଣ ୩ । ୧ । ୨ । ୨୧ ।

ଅର୍ଥାତ—ଗାଈ ଓ ବଳଦ ଖାଇବା ଉଚିତ ନୁହେ । ଗାଈ ଏବଂ ବଳଦ ଏହିସବୁ ଧାରଣ କରନ୍ତି । ସେହି ଦେବତାମାନେ କହିଲେ ଯେ, ଗାଈ ଓ ବଳଦ ଏହାସବୁ ଧାରଣ କରନ୍ତି । ତେଣୁ ଅନ୍ୟ ଜାତୀୟ ପଶୁମାନଙ୍କର ବୀର୍ଯ୍ୟ, ଗାଈ ଓ ବଳଦ ଉପରେ ପକାଇ ଦେବା—ଏଣୁ ଗାଈ ଓ ବଳଦ ଖାଇବା ଉଚିତ ନୁହେ, କିନ୍ତୁ ଯାଜ୍ଞବଲ୍‌କ୍ୟ କହନ୍ତି ଯେ, ମାଂସ ଖାଇଲେ ଦେହ ମାଂସଳ ହୁଏ ତେଣୁ ଅବଶ୍ୟ ତାହା ଖାଇବାକୁ ହେବ । ଏହି ବାଦ ବିବାଦ ଯଜ୍ଞଶାଳାରେହିଁ ସୀମିତ ଥିଲା । କେହି ୨ କହନ୍ତି, ଦୀକ୍ଷିତ ଲୋକ ଯଜ୍ଞ ଶାଳାରେ ପ୍ରବେଶ ପରେ ଗୋମାଂସ ଖାଇବା ଉଚିତ ନୁହେ, କିନ୍ତୁ ଯାଜ୍ଞବଲ୍‌କ୍ୟ ଏହି ମତର ସମର୍ଥକ ନଥିଲେ । ମାଂସାହାର ଦ୍ୱାରା ଶରୀରର ପୁଷ୍ଟିସାଧିତ ହେଉଥିବାରୁ, ତାହା ପରିତ୍ୟାଗ କରିବାକୁ ସେ ପ୍ରସ୍ତୁତ ନଥିଲେ । ଗୋମାଂସ ଭକ୍ଷଣ ବିଷୟରେ ଅନ୍ୟ ପ୍ରସଙ୍ଗରେ ବ୍ରାହ୍ମଣମାନଙ୍କ ମଧ୍ୟରେ କୌଣସି ବାଦବିବାଦ ହେଉ ନଥିଲା । ଖାଲି ସେତିକି ନୁହେ, କୌଣସି ବିଶିଷ୍ଟ ଅତିଥି ଆସିଗଲେ ତାଙ୍କର ସତ୍କାର ନିମନ୍ତେ ବଡ଼ ବଡ଼ ବଳଦ ମରା ଯାଉଥିଲା, ଏହା ଏକ ଜଣାଶୁଣା ରୀତିରେ ପରିଣତ ହୋଇ ଯାଇଥିଲା । କେବଳ ସୂତ୍ରକାର ଗୌତମ ଗୋମାଂସଭକ୍ଷଣର ନିଷେଧ କରିଅଛନ୍ତି । ତଥାପି ସେ ମଧ୍ୟ ମଧୁପର୍କ ବିଧିରେ ତାହିଁର ନିଷିଦ୍ଧ କରି ନାହାନ୍ତି । ଭବଭୂତିଙ୍କ ସମୟ ପର୍ଯ୍ୟନ୍ତ ଏହି ମାଂସ ଭକ୍ଷଣ ପ୍ରଥା ଅଳ୍ପାଧିକ ପରିମାଣରେ ବ୍ରାହ୍ମଣମାନଙ୍କ ମଧ୍ୟରେ ପ୍ରଚଳିତ ଥିବାର ଅନୁମିତ ହୁଏ । ଉତ୍ତରରାମଚରିତର ୪ର୍ଥ ଅଙ୍କ ପ୍ରାରମ୍ଭରେ ସୌଧାତକି ଓ ଦଣ୍ଡାୟନଙ୍କର ସଂଳାପ ସମାବେଶିତ ହୋଇଅଛି । ସେଥିରୁ ଗୋଟିଏ ଅଂଶ ହେଉଛି—

ସୌଧାତକି—କଣ ବଶିଷ୍ଠ ।

ଦଣ୍ଡାୟନ—ପୁଣି କଣ ?

ସୌଧାତକ—ମତେ ଲଗିଲା, ଯେମିତିକି ଗୋଟାଏ ବାଘ ଭଳିଆ କିଛି ହେବ ।

ଦଣ୍ଡାୟନ—କଣ କହୁଛ ହେ !

ସୌଧା—ସେ ଆସି ଆମର କପିଳା ବାଛୁରିଟିକି ଝଟ୍ ପରି ଟାଣି ନେଇଗଲା ।

ଦଣ୍ଡାୟନ—ମଧୁପର୍କବିଧି ମାଂସଯୁକ୍ତ ହେବା ଆବଶ୍ୟକ । ଏହି ଧର୍ମଶାସ୍ତ୍ରୀୟ ଆଦେଶକୁ ସମ୍ମାନ କରି ଗୃହସ୍ଥମାନେ ବାଛୁରୀ କିମ୍ବା ବଡ଼ ବଳଦମାରି, ତାକୁ ରାନ୍ଧି ଶ୍ରୋତ୍ରିୟ ଅତିଥିଙ୍କର ସତ୍କାର କରନ୍ତି; କାହିଁକି ନା ଧର୍ମସୂତ୍ରକାର ଏଭଳି ଉପଦେଶ ଦେଇଛନ୍ତି ।

ଭବଭୂତିଙ୍କ ସମୟ ୭ମ ଶତାବ୍ଦୀ ବୋଲି ଧରାଯାଇଛି । ସେହି ସମୟରେ ଏକପରି ଗୋମାଂସ ଭକ୍ଷଣର ଯଦି ପୂର୍ଣ୍ଣ ନିଷେଧ କରାଯାଇଥାନ୍ତା, ତାହାହେଲେ ବଶିଷ୍ଠଙ୍କ ବାଛୁରୀ ଖାଇବାର ଉଲ୍ଲେଖ ସେ କେବେହେଲେ ନିଜ ନାଟକରେ କରି ନଥାନ୍ତେ । ଆଜିକାଲି ଯଦି ଏହିପରି ସଂଳାପ କୌଣସି ନାଟକରେ ସମାବେଶିତ ହୁଏ, ତାହାହେଲେ ହିନ୍ଦୁ ସମାଜରେ ସେହି ନାଟକ କେତେଦୂର ଜନପ୍ରିୟ ହୋଇ ପାରିବ ?

## ପ୍ରାଣିବଧ ବିରୁଦ୍ଧରେ ଅଶୋକଙ୍କ ପ୍ରଚାର

ପ୍ରାଣିବଧ ବିରୁଦ୍ଧରେ ପ୍ରଚାର କରିଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ପ୍ରଥମ ଐତିହାସିକ ରାଜା ହେଉଛନ୍ତି ଅଶୋକ । ତାଙ୍କର ପ୍ରଥମ ଶିଳାଲେଖରେ କୁହାଯାଇଛି,

"ଏହି ଧର୍ମଲିପି ଦେବାନାଂ ପ୍ରିୟ ପ୍ରିୟଦର୍ଶୀ ରାଜାଙ୍କ ଦ୍ୱାରା ଲିଖିତ ହୋଇଅଛି । ଏହି ରାଜ୍ୟରେ କୌଣସି ପ୍ରାଣିବଧ ପୂର୍ବକ ହୋମ-ହବନ କିମ୍ବା ଉତ୍ସବ କରାଯିବା ଉଚିତ ନୁହେ । ତାର କାରଣ ହେଉଛି, ମେଳା ମଉଛବ ଅତ୍ୟନ୍ତ ଦୋଷପୂର୍ଣ୍ଣ ବୋଲି ଦେବାନାଂପ୍ରିୟ ପ୍ରିୟଦର୍ଶୀ ରାଜା ମନେ କରନ୍ତି । କେତୋଟି ମେଳା କିନ୍ତୁ ତାଙ୍କୁ ଭଲ ଲାଗେ । ପ୍ରଥମେ ପ୍ରିୟଦର୍ଶୀ ରାଜାଙ୍କ ପାକଶାଳାରେ ରନ୍ଧାଯିବା ପାଇଁ ସହସ୍ର ସଂଖ୍ୟାରେ ପ୍ରାଣିବଧ କରା ଯାଉଥିଲା । ଯେଉଁ ଦିନଠାରୁ ଏହି ଧର୍ମଲେଖ ଲେଖାଗଲା, ସେହି ଦିନଠାରୁ ମାତ୍ର ତିନୋଟି ପ୍ରାଣି ବଧକରା ଯାଉଛି—ଦୁଇଟି ମୟୂର ଓ ଗୋଟିଏ ମୃଗ । ସେହି ମୃଗମଧ୍ୟ ପ୍ରତିଦିନ ମରାଯାଏ ନାହିଁ ପୁଣି ଭବିଷ୍ୟତରେ ମଧ୍ୟ ଏହି ତିନି ପ୍ରାଣିଙ୍କୁ ମରାଯିବନାହିଁ ।

ଏହି ଲେଖାରେ ଅଶୋକ ଗାଈ ବଳଦର ଉଲ୍ଲେଖ କରି ନାହାନ୍ତି । ଏଥିରୁ ଅନୁମାନ କରାଯାଇପାରେ ଯେ ବ୍ରାହ୍ମଣେତର ଉଚ୍ଚ ଜାତିମାନଙ୍କ ମଧ୍ୟରେ ଗୋମାଂସାହାର ସେତେବେଳକୁ ପ୍ରାୟ ବନ୍ଦ ହୋଇ ଯାଇଥିଲା । କେବଳ ସେତିକି ନୁହେ, ଅଶୋକ ଏହି ପ୍ରଚାର ମଧ୍ୟ ଚଳାଇଥିଲେ ଯେ ଖାଦ୍ୟ ଉଦ୍ଦେଶ୍ୟରେ ମଧ୍ୟ କୌଣସି ପ୍ରକାର ପ୍ରାଣୀ ବଧ କରା ଯିବା ଉଚିତ ନୁହେ । 'ସମାଜ' ଶବ୍ଦର ଅର୍ଥ, ମେଳା ବୋଲି ମୁଁ ଗ୍ରହଣ କରିଛି । ଅବଶ୍ୟ ଏ ଅନୁବାଦ ସମ୍ପୂର୍ଣ୍ଣ ଠିକ୍ ନୁହେଁ, ତଥାପି ସାଧାରଣ ଭାବରେ ଏହା ଗ୍ରାହ୍ୟ ମନେହୁଏ । ଆଜିକାଲି ଯେଉଁପରି ମହାରାଷ୍ଟ୍ରରେ 'ଜତ୍ରା' (ଯାତ୍ରା) ହୁଏ ଓ ଉତ୍ତରଭାରତରେ ମେଳା ହୁଏ, ଅଶୋକଙ୍କ ସମୟର ସମାଜ ସେହିପରି ହୋଇ ଥାଇପାରେ । ଦେବ ଦେବୀଙ୍କ ଉଦ୍ଦେଶ୍ୟରେ ବଳିଦାନ କରି ଯେଉଁ "ସମାଜ" ଉତ୍ସବ କରୁଥିଲେ, ତାକୁ ଅଶୋକ ଭଲ ପାଉ ନଥିଲେ । ବିନା ପ୍ରାଣିବଧରେ ମେଳା ଅନୁଷ୍ଠିତ ହୋଇ

ପାରିଲେ, ଅଶୋକଙ୍କର ଆପତ୍ତି କରିବାର କିଛି ନ ଥିଲା । ସେ ମୁଖ୍ୟତଃ ଏଇ କଥା ଉପରେ ଗୁରୁତ୍ୱ ଦେଉଥିଲେ ଯେ, ଯଜ୍ଞ କିମ୍ବା ମେଳାରେ ପ୍ରାଣିବଧ କରା ନ ଯାଉ ।

## ଆମର ପୂର୍ବଜମାନେ ମାଂସରୁ ନିବୃତ୍ତ ନଥିଲେ

ଆଜିକାଲି ଯାଗଯଜ୍ଞ ପ୍ରାୟ ବନ୍ଦ ହୋଇଗଲେଣି । କିନ୍ତୁ ଅନେକ ସ୍ଥାନରେ ମେଳାରେ ବଳିଦାନ ଦେବାର ପ୍ରଥା ଏବେମଧ୍ୟ ପ୍ରଚଳିତ ଅଛି । ତାହା ସତ୍ତ୍ୱେ ଅନ୍ୟ ଯେ କୌଣସି ଦେଶ ଅପେକ୍ଷା ଭାରତ ବର୍ଷର ଲୋକେ ବିଶେଷ ପରିମାଣରେ ମାଂସଭକ୍ଷଣରୁ ନିବୃତ୍ତ ହୋଇ ଅଛନ୍ତି । ଏ ଦେଶରେ ଏପରି ହେବାର ଏକମାତ୍ର କାରଣ ହେଉଛି, ଜୈନ ଓ ବୌଦ୍ଧ ଧର୍ମର ପ୍ରଚାର, ଏଥିରେ ସନ୍ଦେହର କୌଣସି କାରଣ ନାହିଁ । ଆଜିକାଲି ଯୁଗରେ ଆମେ ଫଳମୂଳାହାରୀ ହୋଇଯାଇଛୁ ବୋଲି ଆମର ପୂର୍ବପୁରୁଷମାନେ ମଧ୍ୟ ଫଳମୂଳାହାରୀ ଥିଲେ ବୋଲି କହିଲେ ପ୍ରକୃତ ପରିସ୍ଥିତି ସହିତ ତାହା ଖାପ ଖାଇବ ନାହିଁ ।

## ଚୀନ୍‌ରେ ଘୁଷୁରିର ପ୍ରାଧାନ୍ୟ

ଏଠାରେ ଖାଲି ଘୁଷୁରି ମାଂସ ସମ୍ପର୍କରେ ବିଶଦ କହିବା ଦରକାର ବୋଲି ମନେ ହେଉଛି । ପ୍ରାଚୀନ କାଳରୁ ଚୀନ ଦେଶର ଲୋକମାନେ ଘୁଷୁରିଙ୍କୁ ଏକ ସମ୍ପତ୍ତି ରୂପେ ଗ୍ରହଣ କରି ଆସୁଛନ୍ତି । ସେମାନଙ୍କର ଲିପି-'ଚିହ୍ନ'ରେ ଲେଖା ଯାଏ । ସେହି ଚିହ୍ନ ଗୁଡ଼ିକର ମିଶ୍ରଣରେ ଭିନ୍ନ ଭିନ୍ନ ଶବ୍ଦ ଗଢ଼ା ଯାଇ ପାରେ । ଉଦାହରଣ ସ୍ୱରୂପ ମନୁଷ୍ୟର ଚିହ୍ନ ଲେଖି ତା ଉପରେ ଖଣ୍ଡାର ଆକାର ଲେଖିଲେ

ତାହାର ଅର୍ଥ ହେବ ଅକ୍ଷର । ଦୁଇଟି ନାରୀ ରୂପ ଅଙ୍କନ କରିଗଲେ ତାହାର ଅର୍ଥ ହେବ କଳହ । ପୁଣି ଘୁଷୁରର ରୂପ ଆଙ୍କିଲେ ତାହାର ଅର୍ଥ ହେବ ସମ୍ପତ୍ତି । ଏବେ ମଧ୍ୟ ଚୀନ୍ ଦେଶରେ ପୂର୍ବପରି ଘୁଷୁରର ପ୍ରଧାନ୍ୟ ରହିଛି ।

## ପ୍ରାଚୀନ ହିନ୍ଦୁମାନେ ଘୁଷୁରିକୁ ସମ୍ପତ୍ତିର ଅଂଶ ମନେକରୁଥିଲେ

ଭାରତ ବର୍ଷରେ ଘୁଷୁରି ଯଦ୍ୟପି ଏତେ ପ୍ରାଧାନ୍ୟ ଲାଭ କରି ନଥିଲା ତଥାପି ସମ୍ପତ୍ତିର ଏକ ଅଂଶ ରୂପେ ତାହାକୁ ଧରା ଯାଉଥିଲା । ଅରିୟ ପରିୟେସନ ସୁତ୍ତରେ (ମଜ୍ଝିମ ନିକାୟ ୨୬) ଐହିକ ସଂପତ୍ତିର ଅନିତ୍ୟତା ଏହିପରି ଭାବରେ ବର୍ଣ୍ଣିତ ହୋଇଅଛି—

କିଂଚଭିକ୍‌ଖବେ ଜାତିଧମ୍ମଂ ? ପୁତ୍ତଭରିୟଂ ଭିକ୍‌ଖବେ ଜାତିଧମ୍ମଂ । ଦାସୀଦାସଂ···ଅଜେଳକଂ···କୁକ୍‌କୁଟ ସୂକରଂ··· ହତ୍ଥିଗବାସ୍‌ସବଲବଂ ଜାତ ରୂପ ରଜତଂ ଜାତିଧମ୍ମଂ ।

ଅର୍ଥାତ୍, ହାତୀ, ଗାଈ, ଘୋଡ଼ା, ପ୍ରଭୃତି ସଂପତ୍ତିରେ ଘୁଷୁରି ମଧ୍ୟ ପରିଗଣିତ ହେଉଥିଲା । ଏହା ସତ୍ତ୍ୱେ ଘୁଷୁରି ମାଂସ ପ୍ରତି ଏପରି ଘୃଣା ଜାତ ହେଲା କପରି ? ଯାଗ ଯଜ୍ଞରେ ଯେଉଁ ପ୍ରାଣୀମାନଙ୍କୁ ବଳି ଦିଆ ଯାଉଥିଲା ସେ ମଧ୍ୟରେ ଘୁଷୁରିର ଉଲ୍ଲେଖ ପାଳି ସାହିତ୍ୟର ମିଳେ ନାହିଁ । ଅନ୍ୟ ଭାବରେ କହିଲେ, ବୁଦ୍ଧଙ୍କ ସମୟରେ ଘୁଷୁରି ଅମେଧ୍ୟ ଥିଲା । କିନ୍ତୁ ଘୁଷୁରି ଅଭକ୍ଷ ଥିବାର ପ୍ରମାଣ ମଧ୍ୟ ମିଳେ ନାହିଁ । ଯଦି ତାହା ହୋଇଥାନ୍ତା, ତେବେ କ୍ଷତ୍ରିୟ ଘରର ସଂପତ୍ତିରେ ତାକୁ ଅନ୍ତର୍ଭୁକ୍ତ କରା ଯାଇ ନଥାନ୍ତା । ସର୍ବ ପ୍ରଥମେ, ଧର୍ମସୂତ୍ରରେ (୧) ଘୁଷୁରି ମାଂସ ଭକ୍ଷଣ

(୧)କାକକଂକ··ସୂକର । ୫ ॥ ଗୌତମ ସୂତ୍ର ୮ । ୨୯
ଗ୍ରାମସୂକର··ଆପସ୍ତମ୍ବ ଧର୍ମ ସୂତ୍ର ୧ । ୧୯ । ୫

ନିଷେଧ କରା ଯାଇଛି । ପରେ ମନୁସ୍ମୃତି ପ୍ରଭୃତି ସ୍ମୃତି ଗ୍ରନ୍ଥରେ ଏହା ଉଲ୍ଲିଖିତ ହୋଇଛି । (୧) କିନ୍ତୁ ଅରଣ୍ୟସୂକର ( ବାର୍ହା ) କୌଣସି ଠାରେ ନିଷିଦ୍ଧ ହୋଇନାହିଁ । ତାହାର ମାଂସ ପବିତ୍ର ବୋଲି ଧରା ଯାଏ । ( ୨ )

## ବୁଦ୍ଧଙ୍କ ଉପରେ ଅମିତାହାରର ମିଥ୍ୟା ଦୋଷାରୋପ

ଯଦି ଏକଥା ଆମେ ମାନିନେବା ଯେ, ନିଜର ପରିନିର୍ବାଣ ପୂର୍ବରୁ ଭଗବାନ୍ ବୁଦ୍ଧ ଯେଉଁପଦାର୍ଥ ଭକ୍ଷଣ କରିଥିଲେ ତାହା ଘୁଷୁରି ମାଂସଛଡ଼ା ଅନ୍ୟକିଛି ନୁହେ, ତଥାପି କୁତ୍ସିତ ସମାଲୋଚକ-ମାନେ ଯାହା କହିଥାନ୍ତି, ତାହାମଧ୍ୟ ନିତାନ୍ତ ଅମୂଳକ ପରି ଜଣାଯାଏ । ସେମାନେ କହିଥାନ୍ତି ଯେ, ସେ ଗୁଡ଼ାଏ ଘୁଷୁରି ମାଂସ ଖାଇଦେବାରୁ ଅଜୀର୍ଣ୍ଣ ହେଲି ଓ ଫଳରେ ତାଙ୍କର ମୃତ୍ୟୁ ଘଟିଲି । ଗୌତମ ବୁଦ୍ଧ ଅମିତାହାରୀ ଥିବାର କୌଣସି ଦୃଷ୍ଟାନ୍ତ ବା ପ୍ରମାଣ ମିଳେ ନାହିଁ । ତେଣୁ ବୁଦ୍ଧ ସେତିକ ବେଳେ ସେହି ପଦାର୍ଥ ଗୁଡ଼ାଏ ଖାଇ ଦେଇଥିଲେ ବୋଲି କହିବା କେବଳ ଦୋଷପୂର୍ଣ୍ଣ । ସେହି ସମୟ ପୂର୍ବରୁ ପ୍ରାୟ ତିନିମାସ ପର୍ଯ୍ୟନ୍ତ ବୈଶାଳୀ ନଗରୀରେ ଭଗବାନ୍ ବୁଦ୍ଧ ବଡ଼ ଅସୁସ୍ଥ ହୋଇ ପଡ଼ିଥିଲେ । ତାଙ୍କ ଦେହ ଘୋର ଦୁର୍ବଳ ହୋଇ ପଡ଼ିଥିଲି । ଚୁନ୍ଦ ତାଙ୍କୁ ଯେଉଁ ଭୋଜନ ଦେଲି, ତାହା ତାଙ୍କ ପରିନିର୍ବାଣର 'ନିମିତ୍ତ କାରଣ' ହୋଇଗଲି । ସେଥିପାଇଁ ଲୋକେ ଚୁନ୍ଦ ଉପରେ କୌଣସି ଦୋଷାରୋପ କରିନଥିଲେ । ପରିନିର୍ବାଣ ପୂର୍ବରୁ ଭଗବାନ ଆନନ୍ଦଙ୍କୁ କହିଥିଲେ

(୧) ମନୁସ୍ମୃତି ୩ । ୨୭୦
(୨) ମନୁସ୍ମୃତି ୫ । ୧୯

"ହେ ଆନନ୍ଦ, କମାର ଚୁନ୍ଦକୁ ଯଦି କେହିକହେ, ହେ ଚୁନ୍ଦ ! ତୁମେ ଖାଇବାକୁ ଦେବା ଫଳରେ ତଥାଗତଙ୍କର ପରିନିର୍ବାଣ ହୋଇଗଲା ଓ ଏଥିରେ ତୁମର ଉପୂଙ୍କର କ୍ଷତି ଘଟିଲା ଏବଂ ଯଦି କେହି ଚୁନ୍ଦ ଉପରେ ଏଭଳି ଦୋଷାରୋପ କରି ଦୁଃଖିତ ହୁଏ, ତାହା ହେଲେ ତୁମେ ଚୁନ୍ଦର ମନୋଦୁଃଖ ଦୂର କରିବା ପାଇଁ ତାକୁ କହିବ—ହେ ଚୁନ୍ଦ ! ତୁମର ପିଣ୍ଡପାତ ଖାଇ ତଥାଗତ ପରିନିର୍ବାଣ ଲାଭକଲେ । ଏକଥା ସତ ଯେ ତୁମର ଦାନ ତମପାଇଁ ଲାଭଦାୟକ । ଆମେ ତଥାଗତଙ୍କଠାରୁ ଶୁଣିଛୁ ଯେ ଅନ୍ୟଭିକ୍ଷା ଅପେକ୍ଷା, ତଥାଗତଙ୍କୁ ମିଳିଥିବା ଦୁଇଟି-ଭିକ୍ଷା ଅଧିକ ଫଳ ଦାୟକ ଓ ଅଧିକ ପ୍ରଶଂସନୀୟ । କେଉଁ ଦୁଇଟି ଭିକ୍ଷା ? ପ୍ରଥମ ଭିକ୍ଷା ହେଉଛି, 'ଯେଉଁ ଭିକ୍ଷା ଭୋଜନ କରି ତଥାଗତ ସମ୍ବୋଧି ଜ୍ଞାନ ଲାଭକରିଥିଲେ', ଆଉ ଅନ୍ୟ ଭିକ୍ଷାଟି ହେଉଛି—'ଯେଉଁ ଭିକ୍ଷା ଭୋଜନ କରିବା ଦ୍ୱାରା ତାଙ୍କର ପରିନିର୍ବାଣ ହୋଇଥିଲା ।' ଚୁନ୍ଦ ଯେଉଁ କାର୍ଯ୍ୟ କଲା ତାହା ହେଉଛି ଆୟୁଷ୍ୟ, ବର୍ଣ୍ଣ, ସୁଖ, ଯଶ, ସ୍ୱର୍ଗ ଓ ସ୍ୱାମିତ୍ୱ ପ୍ରଦ ବୋଲି ବୁଝିବାକୁ ହେବ । ହେ ଆନନ୍ଦ, ତୁମେ ଏହିପରି ଭାବରେ ଚୁନ୍ଦର ମନୋବେଦନା ଦୂରକର ।"

[ବିଶେଷ ଦ୍ରଷ୍ଟବ୍ୟ:—ଗ୍ରନ୍ଥକାର ଏହି ଅଧ୍ୟାୟରେ ପ୍ରତିପାଦନ କରିଛନ୍ତି ଯେ, ଭଗବାନ୍ ମହାବୀର ଓ ଆଦ୍ୟ କାଳୀନ ଜୈନ ଶ୍ରମଣମାନେ ଭିକ୍ଷାଲବ୍ଧ ମାଂସାହାର କରୁଥିଲେ । କିନ୍ତୁ ବହୁ ଜୈନ ପଣ୍ଡିତ ଏ ମତର ଅମୂଳକତା ଦର୍ଶାଉଛନ୍ତି । ସେମାନଙ୍କ ମତରେ ଗ୍ରନ୍ଥକାର ଜୈନ ଗ୍ରନ୍ଥମାନଙ୍କର ଯେଉଁ ବ୍ୟାଖ୍ୟା କରିଛନ୍ତି, ତାହା ଏକାନ୍ତ ଭ୍ରମାତ୍ମକ । ଟୀକାଗ୍ରନ୍ଥ ଓ କୋଷଗ୍ରନ୍ଥର ପ୍ରମାଣ ବଳରେ ସେମାନେ ଦର୍ଶାଉ ଛନ୍ତି ଯେ, ଏହି ଅଧ୍ୟାୟରେ ଯେଉଁ

ଧର୍ମଗ୍ରନ୍ଥମାନଙ୍କରୁ ଅଂଶୋଦ୍ଧାର କରାଯାଇଛି, ତହିଁରେ ଥିବା "କପୋତ" ଶବ୍ଦର ଅର୍ଥ ପାରା ବା କାବତା ନୁହେ—କିନ୍ତୁ ଏହି ଶବ୍ଦ "କୁଷ୍ମାଣ୍ଡ" ଫଳକୁ ବୁଝାଏ (ଯାହାର ବର୍ଣ୍ଣ କାବତାର ବର୍ଣ୍ଣ ତୁଲ୍ୟ) ସେହିପରି "କୁକ୍କୁଟ"ର ଅର୍ଥ କୁକୁଡ଼ା ନୁହେ—କିନ୍ତୁ ତାହା "ବିଜୌରା" ନାମକ ଏକ ଫଳକୁ ବୁଝାଏ । ସେମାନେ ପୁଣି କହନ୍ତି, "ମାଂସ" ଶବ୍ଦ ଫଳର ରସ ଅର୍ଥରେ ବ୍ୟବହୃତ । 'ଅସ୍ଥି'ର ଅର୍ଥ 'ହାଡ଼' ନୁହେ—ଫଳମଧ୍ୟସ୍ଥ କଠିନ ଅଂଶ ବା ଟାକୁଆ ପ୍ରଭୃତି ମଧ୍ୟ ଅସ୍ଥି ରୂପେ ଅଭିହିତ । ସେହିପରି "ମାର୍ଜାର"ର ଅର୍ଥ 'ବିରାଡ଼ି' ନୁହେ—ଏହା ହେଉଛି ଏକ ପ୍ରକାର "ବାୟୁ", ଯାହାକି 'କୁକ୍କୁଟ' ଫଳ ଦ୍ୱାରା ଉପଶାନ୍ତ ହୁଏ ।

ଏହି ବାଦ ବିବାଦ ସମ୍ପର୍କରେ ସାହିତ୍ୟ ଏକାଡେମୀର କିଛି କହିବାର ନାହିଁ; କିନ୍ତୁ ସେ ଏ କଥାକୁ ଯୁକ୍ତିସଙ୍ଗତ ମନେ କରେ ଯେ, ଗ୍ରନ୍ଥକାରଙ୍କ ମତ ଅବିକୃତ ରଖି, ତହିଁ ସଙ୍ଗେ (ତାହାର ଅନୁପୂରକ ରୂପେ) ଅନ୍ୟ ବ୍ୟାଖ୍ୟାନର ମଧ୍ୟ ସମାବେଶ କରାଯିବା ବିଧେୟ । ମୂଳ ମରାଠୀ ଗ୍ରନ୍ଥର ପ୍ରକାଶକ ଧର୍ମାନନ୍ଦ ସ୍ମାରକ ଟ୍ରଷ୍ଟ (ଗ୍ରନ୍ଥରେ) ଏହି ଅଂଶଟିର ସମାବେଶକୁ ସ୍ୱୀକାର କରିଥିବାରୁ ସାହିତ୍ୟ ଏକାଡେମୀ ବିଶେଷ ଆନନ୍ଦିତ । ସଂ. ସା: ଏ. ]

## ଦ୍ୱାଦଶ ଅଧ୍ୟାୟ

# ଦିନ ଚର୍ଯ୍ୟା

## ପ୍ରସନ୍ନ ମୁଖକାନ୍ତି

ଏହି ପୂର୍ବେ ୫ମ ଅଧ୍ୟାୟରେ ଗୌତମଙ୍କର ବୋଧିସତ୍ତ୍ୱାବସ୍ଥା, ଅର୍ଥାତ୍ ତାଙ୍କର ଗୃହବାସ ଏବଂ ତପସ୍ୟାକାଳ ସମ୍ପର୍କରେ ଆଲୋଚନା କରାଯାଇଛି । ବର୍ତ୍ତମାନ ଏହି ଅଧ୍ୟାୟରେ ବୁଦ୍ଧତ୍ୱ ପ୍ରାପ୍ତିଠାରୁ ପରିନିର୍ବାଣ ପର୍ଯ୍ୟନ୍ତ ତାଙ୍କର ଦିନଚର୍ଯ୍ୟା ସମ୍ପର୍କରେ ସାଧାରଣ ଧାରଣା ଦେବାର ପ୍ରୟାସ କରାଯାଉଛି ।

ତତ୍ତ୍ୱବୋଧ ହେବା ପରେ ଭଗବାନ ବୁଦ୍ଧ, ବୋଧିବୃକ୍ଷ ତଳେ ବସି ନିଜର ଭବିଷ୍ୟତ କାର୍ଯ୍ୟକ୍ରମ ସ୍ଥିର କରି ଥିଲେ । ତପଶ୍ଚରଣ ତ ସେ ଛାଡ଼ି ଦେଇଥିଲେ, ପୁଣି ତାଙ୍କର କାମୋପଭୋଗର ବାସନା ନଥିଲା । ତେଣୁ ଶରୀର ଆଚ୍ଛାଦନ ପାଇଁ ପର୍ଯ୍ୟାପ୍ତ ବସ୍ତ୍ର ଏବଂ କ୍ଷୁଧା ନିବାରଣ ପର୍ଯ୍ୟାପ୍ତ ଅନ୍ନ ଗ୍ରହଣ କରି ଶେଷ ଜୀବନକୁ ବହୁ ଜନହିତ ପାଇଁ ନିଯୋଜିତ କରିବାକୁ ସେ ସ୍ଥିର କରିଥିଲେ । ଏହି ସ୍ଥିତି କରିଣରୁ ପରିଣାମରେ ତାଙ୍କର ମୁଖକାନ୍ତି କିଭଳି ହୋଇ ଉଠିଥିଲା, ତାହା ମଜ୍‌ଝିମ ନିକାୟର ଅରିୟ ପରିୟେସନ ସୁତ୍ତ ଏବଂ 'ବିନୟ'ର ମହାବଗ୍‌ଗରେ ବର୍ଣ୍ଣିତ ହୋଇଅଛି ।

ପଞ୍ଚବର୍ଗୀୟ ଭିକ୍ଷୁମାନଙ୍କୁ ଉପଦେବା ଉଦ୍ଦେଶ୍ୟରେ ଭଗବାନ୍ ବୁଦ୍ଧ, ଗୟାଠାରୁ ବାରାଣସୀ ଯିବାବେଳେ ବାଟରେ ଉପକ ନାମକ ଜଣେ ଆଜୀବକ ପନ୍ଥାର ଶ୍ରମଣଙ୍କୁ ଭେଟିଥିଲେ । ସେହି ଶ୍ରମଣ ତାଙ୍କୁ କହିଲେ, ହେ ଆୟୁଷ୍ମାନ୍ ଗୌତମ ! ତୁମର ଚେହେରା ପ୍ରସନ୍ନ ଦେଖା ଯାଉଛି ଓ ଅଙ୍ଗ କାନ୍ତି ବଡ଼ ତେଜୀୟାନ ଦେଖାଯାଉଛି । ତୁମେ କେଉଁ ଆଚାର୍ଯ୍ୟଙ୍କର ଶିଷ୍ୟ ।

ଭଗବାନ—ମୁଁ ନିଜେ ମୋ ଧର୍ମମାର୍ଗ ଖୋଜି ବାହାର କରିଚି ।

ଉପକ—କଣ ତୁମେ 'ଅରହନ୍ତ' ହୋଇଗଲ ? କଣ ତୁମକୁ 'ଜିନ' ବୋଲି କୁହାଯାଇ ପାରିବ ?

ଭଗବାନ—ହେ ଉପକ ! ମୁଁ ସବୁ ପାପକାରକ ବୃତ୍ତି-ମାନଙ୍କୁ ଜିଣିଛି । ତେଣୁ ମୁଁ ହେଉଛି ଜିନ ।

ବୁଦ୍ଧଙ୍କ ବଦନରେ ଉପକ ଯେଉଁ ପ୍ରସନ୍ନତା ଦେଖିଥିଲେ, ତାହା ଶେଷ ପର୍ଯ୍ୟନ୍ତ ଅମ୍ଳାନ ରହିଥିଲା ବୋଲି ଆମେ କହିପାରୁ ।

## ସାଧାରଣ ଦିନଚର୍ଯ୍ୟା

ଭଗବାନ୍ ବୁଦ୍ଧ ଅତି ପାହାନ୍ତିଆରୁ ନିଦରୁ ଉଠୁଥିଲେ । ସେହି ସମୟରୁ ସେ ଧ୍ୟାନ କରୁଥିଲେ ବା ନିଜ ବାସ ସ୍ଥାନର ଆଖ ପାଖରେ ଭ୍ରମଣ କରୁଥିଲେ । ପ୍ରାତଃକାଳରେ ଭିକ୍ଷା ନିମନ୍ତେ ନିକଟବର୍ତ୍ତୀ ଗ୍ରାମମାନଙ୍କୁ ଯାଉଥିଲେ । ଭିକ୍ଷା ପାଇଁରେ, ସବୁ ଜାତିର ଲୋକଙ୍କ-ଠାରୁ ( ରନ୍ଧା ଯାଇଥିବା ) ଅନ୍ନ ଗ୍ରହଣ କରି ଗାଁ ବାହାରକୁ ଚାଲି ଯାଉଥିଲେ । ସେଠାରେ ଭୋଜନକରି ଟିକଏ ବିଶ୍ରାମ ନେବାପରେ ଧ୍ୟାନରେ ବସୁଥିଲେ । ସନ୍ଧ୍ୟାବେଳେ ପୁନର୍ବାର ଭିକ୍ଷାଟନ

ଉଦ୍ଦେଶ୍ୟରେ ବାହାରୁଥିଲେ ଓ ରାତ୍ରରେ କୌଣସି ମନ୍ଦିର ବା ଧର୍ମଶାଳାରେ ଗଛମୂଳେ ରହି ଯାଉଥିଲେ ।

ରାତ୍ରର ତିନ ଯାମରୁ ପ୍ରଥମ ଯାମରେ ଭଗବାନ ଧ୍ୟାନାବସ୍ଥିତ ହେଉଥିଲେ କମ୍ବା ଚଙ୍କ୍ରମଣ କରୁଥିଲେ । ମଧ୍ୟମ ଯାମରେ ସେ ନିଜର ଦୁଇଟି ଲୁଗା ଯୋଡ଼ି ବିଛାଇ ଦେଉଥିଲେ ଓ ହାତକୁ ମାଣ୍ଡି ରୂପେ ମୁଣ୍ଡତଳେ ଦେଇ ଡାହାଣ କଡ଼ରେ, ଡାହାଣ ପାଦ ଉପରେ ବାମ ପାଦ ରଖି ବଡ଼ ସାବଧାନରେ ଶୋଇ ଯାଉଥିଲେ ।

## ସିଂହ ଶଯ୍ୟା

ବୁଦ୍ଧଙ୍କର ଏହି ପ୍ରକାର ଶୋଇବାକୁ 'ସିଂହଶଯ୍ୟା' କୁହାଯାଏ । ଅଙ୍ଗୁତ୍ତର ନିକାୟର ଚତୁକ୍କନିପାତ ( ସୁତ୍ତ ୨୪୪ ) ରେ ଚାରି ପ୍ରକାର ଶଯ୍ୟା କଥା କୁହାଯାଇଛି । ୧—ପ୍ରେତଶଯ୍ୟା, ଚିତ ହୋଇ ଶୋଇବା ଲୋକର । ୨—କାମଭୋଗିଶଯ୍ୟା—କାମୋପଭୋଗ ସୁଖ ଲୋଡ଼ୁଥିବା ଲୋକେ ବହୁବାର ବାମପାର୍ଶ୍ୱରେ ଶୁଅନ୍ତି; ତେଣୁ ଏହି ଶଯ୍ୟାକୁ କାମଭୋଗି ଶଯ୍ୟା କୁହାଯାଏ । ୩—ସିଂହ ଶଯ୍ୟା, ଦକ୍ଷିଣ ପାଦ ଉପରେ ବାମ ପାଦକୁ ଧୀରେ ଥୋଇ ଓ ମୁଁ ଅମୁକ ସମୟରେ ଉଠିବି, ଏପରି ଧାରଣାରଖି ଦକ୍ଷିଣ ପାର୍ଶ୍ୱରେ ଶୋଇବାର ନାମ ହେଉଛି ସିଂହଶଯ୍ୟା । ୪—ତଥାଗତ ଶଯ୍ୟା—ଅର୍ଥାତ୍ ଚାରି ଧ୍ୟାନର ସମାଧି ।

ଏମାନଙ୍କ ମଧ୍ୟରୁ ଶେଷ ଦୁଇପ୍ରକାର ଶଯ୍ୟା ଭଗବାନ ବୁଦ୍ଧଙ୍କୁ ଭଲ ଲାଗୁଥିଲା । ତେଣୁ ରାତ୍ରରେ, ଧ୍ୟାନରେ ଲାଗିବା ସମୟରେ ବା ମଧ୍ୟମ ଯାମରେ ସେ ସିଂହ ଶଯ୍ୟାର ଆଶ୍ରୟ ନେଉଥିଲେ । ପୁଣି ରାତ୍ରର ଅନ୍ତିମ ଯାମରେ ସେ ଚଙ୍କ୍ରମଣ କରୁଥିଲେ ବା ଧ୍ୟାନରେ ଲାଗୁଥିଲେ ।

## ମିତାହାର

ଭଗବାନ୍ ବୁଦ୍ଧଙ୍କ ଆହାର ଅତ୍ୟନ୍ତ ପରମିତ ଥିଲା । ଖାଇବା ପିଇବାରେ ସେ କେବେହେଲେ ମାତ୍ରାଧିକ୍ୟ କରୁ ନଥିଲେ ଓ ଭିକ୍ଷୁମାନଙ୍କୁ ବାରଂବାର ଏହି ଉପଦେଶ ଦେଉଥିଲେ । ମଜ୍‌ଝିମ ନିକାୟର କୀଟାଗିରିସୁତ୍ତ (ସଂ. ୭୦) ରୁ ପ୍ରଣାତ ହୁଏ ଯେ, ଭଗବାନ ପ୍ରଥମେ ରାତିରେ ଭୋଜନ କରୁଥିଲେ । ତହିଁରେ ଭଗବାନ କହିଛନ୍ତି, "ହେ ଭିକ୍ଷୁଗଣ ! ମୁଁ ରାତିରେ ଖାଇବା ଛାଡ଼ିଦେଲି । ତାହା ଫଳରେ ମୋ ଶରୀରରୁ ରୋଗ କମିଗଲା, ଜଡ଼ତା କମିଗଲା, ଦେହରେ ବଳ ସଞ୍ଚାର ହେଲା ଓ ଚିତ୍ତକୁ ଶାନ୍ତି ମିଳିଲା । ହେ ଭିକ୍ଷୁ ! ତୁମେମାନେ ମଧ୍ୟ ଏହିପରି ଆଚରଣ କର । ଯଦି ତୁମେ ରାତିରେ ଖାଇବା ଛାଡ଼ିଦେବ, ତେବେ ତୁମ ଦେହର ବ୍ୟାଧି କମିଯିବ, ଜଡ଼ତା କମିଯିବ, ଦେହରେ ବଳ ସଞ୍ଚାର ହେବ ଓ ଚିତ୍ତକୁ ଶାନ୍ତି ମିଳିବ ।"

ସେହିଦିନଠାରୁ ଭିକ୍ଷୁମାନଙ୍କ ମଧ୍ୟରେ ମଧ୍ୟାହ୍ନ ୧୨ଟା ପୂର୍ବରୁ ଭୋଜନ କରିବା ପ୍ରଥା ଆରମ୍ଭ ହେଲା ଓ ବାରଟା ବାଜିବା ପରେ ଖାଇବା ନିଷିଦ୍ଧ ବୋଲି ଧରାଗଲା ।

## ଚାରିକା

"ଚାରିକା" ହେଉଛି ଯାତ୍ରା ବା ଭ୍ରମଣ । ଏହା ଦୁଇପ୍ରକାର— ଶୀଘ୍ର ଚାରିକା ଓ ଧୀମୀ ( ରହି ରହି ) ଚାରିକା । ଏ ସମ୍ପର୍କରେ ଅଙ୍ଗୁତ୍ତର ନିକାୟର ପଞ୍ଚକ ନିପାତର ଭୂଣପୂ ବର୍ଗର ମୂଳରେ ଏହି ସୂତ୍ରଟି ଅଛି—

ଭଗବାନ କହୁଛନ୍ତି, "ହେ ଭିକ୍ଷୁଗଣ ! ଶୀଘ୍ର ଚାରିକାରେ ଏହି ପାଞ୍ଚଟି ଦୋଷଅଛି । କଣ କଣ ? ପ୍ରଥମେ ଯେ ଧର୍ମବାକ୍ୟ

ଶୁଣି ନାହିଁ, ସେ ଶୁଣା ଯାଇ ପାରବ ନାହିଁ । ଯାହା ସେ ଶୁଣିଛି, ତାହାର ସଂଶୋଧନ ହୋଇ ପାରବ ନାହିଁ । କେତେକ କଥାର ପୂର୍ଣ୍ଣଜ୍ଞାନ ଜନ୍ମେ ନାହିଁ । କେବେ କେବେ ତାକୁ ଭୟଙ୍କର ରୋଗ ହୋଇଯାଏ ଏବଂ ତାକୁ ମିତ୍ର ମିଳନ୍ତି ନାହିଁ । ଭିକ୍ଷୁ ଗଣ ! ଶୀଘ୍ର ଗୃହକାରେ ଏହି ପାଞ୍ଚଟି ଦୋଷ ଅଛି ।

"ଭିକ୍ଷୁଗଣ ! ଧୀମୀ ଗୃହକାରେ ଏହି ପାଞ୍ଚଟି ଗୁଣ ଅଛି । କଣ କଣ ? ପ୍ରଥମେ ସେ ଧର୍ମବାକ୍ୟ ଶୁଣିନାହିଁ, ସେ ଶୁଣାଯାଇପାରେ ଏବଂ ସେ ଶୁଣିଅଛି, ତାହାର ସଂଶୋଧନ ହୋଇ ଯାଇପାରେ । କେତେକ କଥାର ପୂର୍ଣ୍ଣଜ୍ଞାନ ମିଳେ । ତାକୁ ଭୟଙ୍କର ରୋଗ ହୁଏ ନାହିଁ ଓ ମିତ୍ର ମିଳନ୍ତି । ଭିକ୍ଷୁଗଣ ! ଧୀମୀ ଗୃହକାରେ ଏହି ପାଞ୍ଚଟି ଗୁଣ ଅଛି ।"

ଭଗବାନ ବୁଦ୍ଧ ନିଜ ବୋଧିସତ୍ତ୍ୱାବସ୍ଥାର ଅନୁଭବ ବୁଝାଇ ଦେଇଥିଲେ । ଏହା ତାଙ୍କର ନିଜର ଅନୁଭୂତି ଯେ, ଶୀଘ୍ର ଯାତ୍ରା କରିବା ଦ୍ୱାରା ନୁହେଁ, କିନ୍ତୁ ଧୀରେ ଧୀରେ ଯାତ୍ରା କରିବା ଦ୍ୱାରା ଲାଭ ହୁଏ । ଏହିପରି ଧୀରେ ଧୀରେ ଯାତ୍ରାକରି ସେ ଅନ୍ୟ ଶ୍ରମଣ ମାନଙ୍କ ଠାରୁ ଜ୍ଞାନଲାଭ କରିଥିଲେ ଏବଂ ଶେଷରେ ନିଜର ନୂତନ ମଧ୍ୟମ ମାର୍ଗ ଖୋଜି ବାହାର କରିଥିଲେ ।

## ଭିକ୍ଷୁ ସଂଘ ସହିତ ଗୃହକା

ବୁଦ୍ଧତ୍ୱ ପ୍ରାପ୍ତ ହେବାପରେ ଭଗବାନ ବୁଦ୍ଧଗୟାରୁ କାଶୀ ପର୍ଯ୍ୟନ୍ତ ଯାତ୍ରା କରିଥିଲେ । ସେଠାରେ ସେ ପଞ୍ଚବର୍ଗୀୟ ଭିକ୍ଷୁଙ୍କୁ ଉପଦେଶ ଦେଇ ସେମାନଙ୍କର ସଂଘ ସୃଷ୍ଟି କଲେ । ସେମାନଙ୍କୁ କାଶୀରେ ଛାଡ଼ି ସେ ଏକୁଟିଆ ରାଜଗୃହକୁ ପ୍ରତ୍ୟାବର୍ତ୍ତନ କରିଥିଲେ, ଏକଥା ମହାବଗ୍‌ଗରେ କୁହାଯାଇଛି । କିନ୍ତୁ ସେହି ପାଞ୍ଚଜଣ ଭିକ୍ଷୁ

ଚତୁର୍ମାସ୍ୟ ପରେ ଭଗବାନ ବୁଦ୍ଧଙ୍କ ଜୀବିତ ଥିଲେ ବୋଲି ମାନିବା ପାଇଁ ପ୍ରବଳ ପ୍ରମାଣ ମିଳୁଅଛି । ରାଜଗୃହରେ ସାରିପୁତ୍ର ଓ ମୋଗ୍‌ଗଲ୍ଲାନ, ଏହି ଦୁଇ ପ୍ରସିଦ୍ଧ ପରିବ୍ରାଜକ ଭଗବାନ ବୁଦ୍ଧଙ୍କର ଶିଷ୍ୟ ହୋଇଯାଇଥିଲେ ଏବଂ ପୁନର୍ବାର ବୌଦ୍ଧ ସଂଘର ଉନ୍ନତି ସଂଗଠିତ ହୋଇଥିଲା । ସେହିଦିନ ଠାରୁ ଭଗବାନ୍ ବୁଦ୍ଧଙ୍କ ସହିତ ବହୁସମୟରେ ଶ୍ରେଷ୍ଠ କିମ୍ବା ବଡ଼ ଭିକ୍ଷୁସଂଘ ରହୁଥିଲେ ଓ ସେହି ସଂଘ ସହିତ ବୁଦ୍ଧଙ୍କର ଚାରିକା ହେଉଥିଲା । ଭିକ୍ଷୁ ସଂଘକୁ ଛାଡ଼ି ବୁଦ୍ଧ ଏକୁଟିଆ ରହୁଥିବାର ପ୍ରସଙ୍ଗ ଅତ୍ୟଳ୍ପ ମାତ୍ର ଦେଖିବାକୁ ମିଳେ ।

## ଜଙ୍ଗମ ଗୁରୁକୁଳ

ବୁଦ୍ଧ ଦେବଙ୍କ ସମୟରେ ସମସ୍ତ ଶ୍ରମଣ ସଂଘ ଓ ସଂଘର ନେତାମାନେ ଏହିପରି ବରାବର ବୁଲୁଥିଲେ । ବୁଦ୍ଧଙ୍କ ଆଗରୁ ଏବଂ ବୁଦ୍ଧଙ୍କ ସମୟରେ ମଧ୍ୟ ବ୍ରାହ୍ମଣମାନଙ୍କର ଗୁରୁକୁଳ ଥିଲା । ଉଚ୍ଚ ଜାତିର ଯୁବକ ମାନେ ସେଠାକୁ ଯାଇ ଅଧ୍ୟୟନ କରୁଥିଲେ । କିନ୍ତୁ ସେହି ଗୁରୁକୁଳ ଗୁଡ଼ିକରୁ ବହୁଜନ ସମାଜ ନ୍ୟୂନାଧିକ ପରିମାଣରେ ଉପକାର ପାଉଥିଲା । ବ୍ରାହ୍ମଣ ବେଦାଧ୍ୟୟନ କରି ବହୁ ଭାବରେ ରାଜାଶ୍ରୟ ଲାଭ କରୁଥିଲା । କ୍ଷତ୍ରିୟ ଧନୁର୍ବିଦ୍ୟା ଶିକ୍ଷା କରି ରାଜାଙ୍କର ଯଥା ଯୋଗ୍ୟ କର୍ମଚାରୀ ରୂପେ ଯୋଗ ଦେଉଥିଲେ । ଆହୁରି ମଧ୍ୟ ଜୀବକ କୌମାରଭୃତ୍ୟଙ୍କ ପରି ଯୁବକମାନେ ଆୟୁର୍ବେଦ ଶିକ୍ଷା କରି ଉଚ୍ଚ ଜାତୀୟ ବ୍ୟକ୍ତିଙ୍କର ସେବାକରୁଥିଲେ ଓ ଶେଷରେ ରାଜାଶ୍ରୟ ଲାଭକରିବାକୁ ଚେଷ୍ଟା କରୁଥିଲେ । କିନ୍ତୁ ଶ୍ରମଣମାନଙ୍କର ଗୁରୁକୁଳ ଆଦୌ ନଥିଲା । ଏମାନେ ବୁଲି ବୁଲି ଶିକ୍ଷାଲାଭ କରୁଥିଲେ ଓ ସାଧାରଣ ଲୋକଙ୍କ ସଙ୍ଗେ ମିଳିମିଶି ସେମାନଙ୍କୁ ଧର୍ମୋପଦେଶ ଦେଉଥିଲେ । ଏହା

ଦ୍ୱାରା ଜନସମାଜ ମଧ୍ୟରେ ସମ୍ଭ୍ରାନ୍ତ ଭଦ୍ରମାନଙ୍କରେ ସେମାନଙ୍କର ପ୍ରଭାବ ପଡ଼ିଥିଲା ।

# ଭିକ୍ଷୁ ସଂଘରେ ଅନୁଶାସନ

ଭଗବାନ୍ ବୁଦ୍ଧଙ୍କ ଭିକ୍ଷୁସଂଘରେ ଉତ୍ତମ ଅନୁଶାସନ ଥିଲା । ଭିକ୍ଷୁମାନେ ଅବ୍ୟବସ୍ଥିତ ଭାବରେ ରହିବା ଆଦୌ ଉଚିତ ନୁହେଁ ବୋଲି ସେ ଭାବୁଥିଲେ । ଏହି ବିଷୟରେ ଚାତୁମ ସୁତ୍ତ(୧)ରେ ବର୍ଣ୍ଣିତ ହୋଇଥିବା କଥା ଏଠାରେ ସଂକ୍ଷେପରେ ଉପସ୍ଥାପନ କରିବା ଉଚିତ ମନେହୁଏ ।

ଭଗବାନ୍ ବୁଦ୍ଧ ଚାତୁମା ନାମକ ଶାକ୍ୟଙ୍କ ଗ୍ରାମରେ ଆମଲକୀ ବନରେ ରହୁଥିଲେ । ସେହି ସମୟରେ ସାରିପୁତ୍ର ଓ ମୋଗ୍‌ଗଲ୍ଲାନ ପାଞ୍ଚଶତ ଭିକ୍ଷୁଙ୍କୁ ସଙ୍ଗରେ ନେଇ ଚାତୁମାରେ ଉପସ୍ଥିତ ହେଲେ । ଚାତୁମାର ସ୍ଥାନୀୟ ଭିକ୍ଷୁ ଓ ସାରିପୁତ୍ର, ମୋଗ୍‌ଗଲ୍ଲାନଙ୍କ ସାଙ୍ଗରେ ଯାଇଥିବା ଭିକ୍ଷୁମାନଙ୍କର ସ୍ୱାଗତ ପ୍ରଭୃତି ସମ୍ଭାଷଣ ହେଲା । କେଉଁଠି ବସାଉଠା କରିବାକୁ ହେବ, କେଉଁଠି ପାତ୍ର ଓ ଚୀବର ରଖିବାକୁ ହେବ ପ୍ରଭୃତି କଥା ପଚରା ପଚରି କଲାବେଳେ କୋଳାହଳ ହେଲା । ସେତେବେଳେ ଆନନ୍ଦଙ୍କୁ ଭଗବାନ କହିଲେ—ଏହି ପାଖେ ହୋ ହା କାହିଁକି ହେଉଛି, ଯେପରିକି ମାଛ ଧରିବା ବେଳେ କେଉଟମାନେ ହୁଅନ୍ତି ।"

ଆନନ୍ଦ କହିଲେ—"ଭଦନ୍ତ ! ସାରିପୁତ୍ର ଓ ମୋଗ୍‌ଗଲ୍ଲାନଙ୍କ ସହିତ ଆସିଥିବା ଭିକ୍ଷୁମାନେ କଥାବାର୍ତ୍ତା କରୁଛନ୍ତି । ରହିବାସ୍ଥାନ ଓ ପାତ୍ର, ଚୀବର ରଖିବା ସ୍ଥାନ ବିଷୟରେ ପାଟିତୁଣ୍ଡ ହେଉଛି ।

---

(୧) ମଜ୍‌ଝିମ ନିକାୟ ସୁ.୬୭

ଭଗବାନ ଆନନ୍ଦଙ୍କୁ ପଠାଇ ସାରିପୁତ୍ର-ମୋଗ୍‌ଗଲ୍ଲାନ ଏବଂ ସେହି ଭିକ୍ଷୁମାନଙ୍କୁ ଡକାଇନେଲେ ଓ ସେମାନେ ତାଙ୍କ ପାଖରେ ନରହି ସେଠାରୁ ଚାଲିଯାଆନ୍ତୁ ବୋଲି ସେମାନଙ୍କୁ ଦଣ୍ଡଦେଲେ । ସେ ସମସ୍ତେ ଲଜ୍ଜିତ ହେଲେ । ବୁଦ୍ଧଙ୍କୁ ନମସ୍କାର କରି ସେଠାରୁ ଚାଲିଯିବାକୁ ବାହାରିପଡ଼ିଲେ । ଚାତୁମାର ଶାକ୍ୟମାନେ ସେତେବେଳେ କୌଣସି କାମପାଇଁ ନିଜର ସଂସ୍ଥାଗାରରେ ରୁଣ୍ଡ ହୋଇଥିଲେ । ସେହିଦିନ ଆସିଥିବା ଭିକ୍ଷୁମାନେ ଫେରିଯାଉଥିବା ଦେଖି ସେମାନଙ୍କୁ ଆଶ୍ଚର୍ଯ୍ୟ ଲାଗିଲା । ତେଣୁ ସେମାନେ ତାହାଁର କାରଣ ପଚାରିଲେ । ଭିକ୍ଷୁମାନେ କହିଲେ—"ଭଗବାନ ବୁଦ୍ଧ ଆମକୁ ଦଣ୍ଡ ଦେଲେ । ତେଣୁ ଆମେମାନେ ଏଠାରୁ ଚାଲିଯାଉଛୁ ।" ତାହାପରେ ଶାକ୍ୟମାନେ ସେହି ଭିକ୍ଷୁମାନଙ୍କୁ ସେଠାରେ ରହିବାକୁ ଅନୁରୋଧ କଲେ ଓ ପୁଣି ଭଗବାନ୍ ବୁଦ୍ଧଙ୍କୁ ପ୍ରାର୍ଥନା କରି ସେମାନଙ୍କୁ କ୍ଷମା ଦିଆଇଦେଲେ ।

## ଧାର୍ମିକ ସଂବାଦ ବା ଆର୍ଯ୍ୟମୌନ

ସର୍ବଦା ମୌନ ରହୁଥିବା ମୁନି ବୁଦ୍ଧଦେବଙ୍କ ସମୟରେ ଅନେକ ଥିଲେ । ମୁନି ଶବ୍ଦରୁ ହିଁ ମୌନ ଶବ୍ଦ ନିଷ୍ପନ୍ନ । ଏ ପ୍ରକାର ତପଶ୍ଚର୍ଯ୍ୟା ବୁଦ୍ଧଦେବଙ୍କୁ ଭଲଲାଗୁନଥିଲା । ଅବିଦ୍ୱାନ, ଦୁଷ୍ଟ ଲୋକ ମୌନ ଆଚରଣ କଲେ ମଧ୍ୟ ମୁନି ହୋଇ ନ ପାରେ । (୧) ତଥାପି ଭଗବାନ୍ ବୁଦ୍ଧ, କେତେକ ସମୟରେ ମୌନ ରହିବା ଉଚିତ ବୋଲି କହିଅଛନ୍ତି । ଅରିୟ ପରିୟେସନ ସୁତ୍ତରେ ଭଗବାନ କହିଅଛନ୍ତି—ହେ ଭିକ୍ଷୁଗଣ ! ତୁମେ ଏକେତ ଧର୍ମ ଚର୍ଚ୍ଚା କର ନତୁବା ଆର୍ଯ୍ୟ ମୌନ ଧାରଣ କର ।

(୧) ନ ମୋନେନ ମୁନି ହୋତି ମୂଳହରୂପୋ ଅବିଦସୁ ଧର୍ମପଦ ୨୬୮ ।

## ଶାନ୍ତିର ଉଦାହରଣ

ଭଗବାନ୍ ବୁଦ୍ଧ ଭିକ୍ଷୁସଙ୍ଘକୁ ଉପଦେଶ ନଦେଉଥିବା ବେଳେ ମଧ୍ୟ ସମଗ୍ର ଭିକ୍ଷୁସଙ୍ଘ ଅତ୍ୟନ୍ତ ଶାନ୍ତିରେ ଚଳୁଥିଲେ ; କୌଣସି ପ୍ରକାର ଗଣ୍ଡଗୋଳ ନଥିଲା । ଦୀଘ ନିକାୟର ସାମଞ୍ଞଫଳ ସୁତ୍ତରେ ଏଥିର ଏକ ପ୍ରକୃଷ୍ଟ ଉଦାହରଣ ମିଳେ । ତାହା ହେଉଛି—

ଭଗବାନ୍ ବୁଦ୍ଧ ରାଜଗୃହରେ ଜୀବକ କୌମାରଭୃତ୍ୟଙ୍କ ଆମ୍ରବନରେ ପ୍ରକାଣ୍ଡ ଭିକ୍ଷୁସଙ୍ଘ ସହିତ ଅବସ୍ଥାନ କରୁଥିଲେ । ସେ ସମୟରେ କାର୍ତ୍ତିକ ପୂର୍ଣ୍ଣିମା ରାତିରେ ରାଜା ଅଜାତଶତ୍ରୁ ନିଜର ମନ୍ତ୍ରୀମାନଙ୍କ ସହିତ ପ୍ରାସାଦ ଉପରେ ଉପବେଶନ କରିଥିଲେ । ସେ କହିଲେ—'ଏ ରାତିଟି କେଡ଼େ ସୁନ୍ଦର ! କଣ ଏଠାରେ ଏପରି କୌଣସି ଶ୍ରମଣ ବା ବ୍ରାହ୍ମଣ ଅଛନ୍ତି କି, ଯେ ଉପଦେଶ ଦେଇ ମୋ ମନକୁ ପ୍ରସନ୍ନ କରାଇପାରିବ ।' ସେତେବେଳେ ପୂରଣକସ୍‌ସପ, ମକ୍‌ଖଲିଗୋସାଲ ଅଜିତକେସକମ୍ବଲ, ପକୁଧକ- ଚ୍ଚାୟନ, ସଞ୍ଜୟ ବେଲଟ୍‌ଠ ପୁତ୍ତ ଓ ନିଗଣ୍ଠନାଥପୁତ୍ତ—ଏହି ପ୍ରସିଦ୍ଧ ଶ୍ରମଣମାନେ ନିଜ ନିଜର ସଙ୍ଘ ସହିତ ରାଜଗୃହର ଆଖପାଖରେ ଅବସ୍ଥାନ କରୁଥିଲେ । ଅଜାତଶତ୍ରୁଙ୍କ ମନ୍ତ୍ରୀମାନେ କ୍ରମେ କ୍ରମେ ସେମାନଙ୍କର ପ୍ରଶଂସାକରି ସେମାନଙ୍କ ସହିତ ସାକ୍ଷାତ କରିବା ପାଇଁ ରାଜାଙ୍କୁ ସ୍ୱୀକୃତ କରାଇବା ପାଇଁ ଚେଷ୍ଟା କଲେ । କିନ୍ତୁ ଅଜାତଶତ୍ରୁ କିଛି ଉତ୍ତର ନଦେଇ ତୁନି ହୋଇ ରହିଲେ ।

ସେତେବେଳେ ଜୀବକ କୌମାର ଭୃତ୍ୟ ସେଠାରେ ଥିଲେ । ଅଜାତଶତ୍ରୁ ତାଙ୍କୁ କହିଲେ, 'ତୁମେ କାହିଁକି ନୀରବ ରହିଲ ?'

ଏଥିରେ ଜୀବକ କହିଲେ—"ଭଗବାନ୍ ବୁଦ୍ଧ ଆମର ଆମ୍ର ବନରେ ପ୍ରକାଣ୍ଡ ଭିକ୍ଷୁସଙ୍ଘ ସହିତ ଅବସ୍ଥାନ କରୁଅଛନ୍ତି । ମହାରାଜ

ଆଜି ତାଙ୍କୁ ଦର୍ଶନ କରନ୍ତୁ; ଆପଣଙ୍କର ମନ ତାଙ୍କ ଦ୍ୱାରା ହିଁ ପ୍ରସନ୍ନ ହେବ ।

ଅଜାତଶତ୍ରୁ ଯାନାଦି ଠିକ୍ କରିବାପାଇଁ ଜୀବକଙ୍କୁ ଆଦେଶ ଦେଲେ । ଆଦେଶ ଅନୁସାରେ ଜୀବକ ସବୁ ପ୍ରସ୍ତୁତ କରିସାରିବା ପରେ ରାଜା ଅଜାତଶତ୍ରୁ ନିଜ ହାତୀ ଉପରେ, ଅମାତ୍ୟ ଉପରେ ବସିଲେ ଓ ଅନ୍ତଃପୁରର ନାରୀମାନେ ଭିନ୍ନ ଭିନ୍ନ ହାତୁଣୀମାନଙ୍କ ଉପରେ ବସିବାପରେ ଦଳବଳ ସହିତ ବୁଦ୍ଧଙ୍କଦର୍ଶନ ପାଇଁ ବାହାରିଲେ ।

ଜୀବକଙ୍କ ଆମ୍ରବନ ନିକଟରେ ପହଞ୍ଚିବା ପରେ ଅଜାତଶତ୍ରୁ ଭୟଭୀତ ହୋଇ ଜୀବକଙ୍କୁ କହିଲେ "ହେ ଜୀବକ ! ତୁମେ ମୋତେ ପ୍ରତାରଣା କରି ନାହିଁତ ? ତୁମେ ମୋତେ ମୋ ଶତ୍ରୁମାନଙ୍କ କବଳରେ ପକାଇ ଦେଉନାହିଁ ତ ? ତୁମେ କହୁଛ ଯେ, ଏଠାରେ ଗୋଟାଏ ପ୍ରକାଣ୍ଡ ଭିକ୍ଷୁସଂଘ ଅଛି । କିନ୍ତୁ ଏଠାରେ ତ ଛିଙ୍କ କି କାଶ କି ଅନ୍ୟ କି ପ୍ରକାର ଶବ୍ଦ ଶୁଣାଯାଉନାହିଁ !"

ଜୀବକ କହିଲେ—"ମହାରାଜ ! ଭୟ କରନ୍ତୁ ନାହିଁ, ଭୟ କରନ୍ତୁ ନାହିଁ । ମୁଁ ଆପଣଙ୍କୁ ପ୍ରତାରଣା କରୁନାହିଁ କିମ୍ବା ଶତ୍ରୁମାନଙ୍କ କବଳରେ ପକାଇ ଦେଉନାହିଁ । ଆଗକୁ ଆସନ୍ତୁ, ଆଗନ୍ତୁ ଆସନ୍ତୁ । ଆଗରେ ମଣ୍ଡଳ ମାଳାରେ (୧) ଦୀପଜଳୁଛି । (ଅର୍ଥାତ୍ ଅଜାତଶତ୍ରୁଙ୍କ ଶତ୍ରୁମାନେ ଯେ ଆଲୁଅ ଜଳାଇ ବସିଛନ୍ତି ଏହା ସମ୍ଭବପର ନୁହେଁ । )

ଯେଉଁ ପର୍ଯ୍ୟନ୍ତ ହାତୀରେ ବସିଯିବା ସମ୍ଭବପର ଥିଲା, ସେ ପର୍ଯ୍ୟନ୍ତ ଯାଇ ଅଜାତଶତ୍ରୁ ତଳକୁ ଓହ୍ଲାଇ ପଡ଼ିଲେ ଏବଂ ଜୀବକଙ୍କର ଆମ୍ରବନରେ ମଣ୍ଡଳ ମାଳାର ଦ୍ୱାରଦେଶ ପର୍ଯ୍ୟନ୍ତ ପାଦରେ ଚାଲିଗଲେ । ସେଠାରେ ଠିଆ ହୋଇ "ଭଗବାନ କେଉଁଠି

(୧) ମଣ୍ଡଳ ମାଳା ହେଉଛି, ଏକ ତମ୍ବୁ ଆକାରର ମଣ୍ଡପ ।

ଅଛନ୍ତି" ବୋଲି ଜୀବକଙ୍କୁ ପଚାରିଲେ । ଜୀବକ କହିଲେ— "ମହାରାଜ ! ମଣ୍ଡଳମାଳାର ମଝିରେ ଖମ୍ବପାଖେ ପୂର୍ବଦିଗକୁ ମୁହଁକରି ଭଗବାନ ବସିଅଛନ୍ତି ।

ଅଜାତ ଶତ୍ରୁ ଭଗବାନଙ୍କ ନିକଟକୁ ଯାଇ ଠିଆ ହେଲେ ଏବଂ ମୌନ ଧାରଣ କରି ଶାନ୍ତିରେ ବସିଥିବା ଭିକ୍ଷୁସଙ୍ଘକୁ ଦେଖି କହିଲେ—"ଏହି ସଙ୍ଘରେ ଯେଉଁ ଶାନ୍ତି ଅଛି ତହିଁରେ, (ମୋର) ଉଦୟଭଦ୍ର କୁମାର ସମନ୍ୱିତ ହୋଇଅଛି । ଏହି ପ୍ରକାର ଶାନ୍ତି ଉଦୟଭଦ୍ରକୁ ମିଳୁଛି ।

ଭଗବାନ କହିଲେ—"ଆପଣ ନିଜର ପ୍ରେମ ଅନୁସାରେ ହିଁ କହୁଛନ୍ତି ।

ଏହାପରେ ଅଜାତଶତ୍ରୁ ଓ ଭଗବାନଙ୍କ ମଧ୍ୟରେ ବହୁକଥାବାର୍ତ୍ତା ହେଲା । କିନ୍ତୁ ସେ ସବୁ ଏଠାରେ ଉପସ୍ଥାପନ କରିବା ଅପ୍ରାସଙ୍ଗିକ ହେବ । ଭଗବାନ ସଙ୍ଘ ସହିତ ରହୁଥିଲେ ଓ ଭିକ୍ଷୁସଙ୍ଘରେ କୌଣସି ପ୍ରକାରର ପାଟିତୁଣ୍ଡ ହେଉନଥିଲା । ଏକଥା ଦେଖାଇବା ପାଇଁ ଏହି ପ୍ରସଙ୍ଗର ଅବତାରଣା କରାଯାଇଛି ।

## ଭିକ୍ଷୁ ସଂଘର ଅନୁଶାସନର ପ୍ରଭାବ

ପ୍ରାତଃକାଳରେ ଭିକ୍ଷାପାଇଁ ଯିବା ବେଳେ ଭଗବାନ କେବେକେବେ ବିଭିନ୍ନ ପରିବ୍ରାଜକଙ୍କ ଆଶ୍ରମକୁ ଯାଉଥିଲେ । ତାଙ୍କୁ ଦେଖି ଆଶ୍ରମର ମୁଖ୍ୟ ପରିବ୍ରାଜକ ନିଜ ଶିଷ୍ୟମାନଙ୍କୁ କହୁଥିଲେ—"ଏଇ ଶ୍ରମଣ ଗୌତମ ଆସୁଛନ୍ତି । ତାଙ୍କୁ ପାଟିତୁଣ୍ଡ ଭଲ ଲାଗେ ନାହିଁ ; ତେଣୁ ତୁମ୍ଭେମାନେ ବଡ଼ପାଟିରେ କଥାବାର୍ତ୍ତା ନକରି ତୁନିରହ ।" ଏହି ପ୍ରକାର ଏକ ଘଟଣା ମଜ୍‌ଝିମ ନିକାୟର

ମହାସକୁଳୁଦାୟିସୁତ୍ତରେ ( ମ. ୭୭ ) ବର୍ଣ୍ଣିତ ହୋଇଅଛି । ବୁଦ୍ଧ-ଦେବଙ୍କର ବନଚର୍ଯ୍ୟା ବିଷୟରେ ଅନ୍ୟାନ୍ୟ କେତୋଟି କଥା ମଧ୍ୟ ତହିଁରୁ ସ୍ପଷ୍ଟ ପ୍ରକାଶ ପାଉଛି । ତେଣୁ ସଂକ୍ଷେପରେ ତହିଁର ସାରକଥା ଏଠାରେ କୁହାଯାଉଛି ।

ଭଗବାନ ରାଜଗୃହରେ ବେଣୁବନରେ କଲନ୍ଦକ ନିବାପରେ ରହୁଥିଲେ । ସେତିକବେଳେ କେତେକ ପ୍ରସିଦ୍ଧ ପରିବ୍ରାଜକ୍ୟ ମୋରନିବାପରେ ପରିବ୍ରାଜକଙ୍କ ଆରାମରେ ରହୁଥିଲେ । ଦିନେ ସକାଳୁ ଭଗବାନ ଭିକ୍ଷା ନିମନ୍ତେ ରାଜଗୃହ ଅଭିମୁଖରେ ବାହାରିଲେ । ଭିକ୍ଷାଟନର ସମୟ ସେତେବେଳକୁ ହୋଇନଥିବାରୁ ଭଗବାନ, ମାର୍ଗରେ ସେହି ପରିବ୍ରାଜକଙ୍କ ଆଶ୍ରମରେ ଉପସ୍ଥିତ ହେଲେ । ସେଠାରେ ସକୁଳୁଦାୟି (୧) ନିଜର ବିଶାଳ ପରିବ୍ରାଜକ ସଭାରେ ଉପବେଶନ କରିଥିଲେ ; ପୁଣି ସେହି ପରିବ୍ରାଜକ ରାଜକଥା ଚୋରକଥା, ମହାମାତ୍ୟକଥା, ସେନାକଥା, ଭୟକଥା, ଯୁଦ୍ଧକଥା ପ୍ରଭୃତି କେତେଗୁଡ଼ିଏ ନିରର୍ଥକ କଥା ଖୁବ୍ ବେଗରେ, ପାଟିକରି କହୁଥିଲେ । ସକୁଳୁଦାୟି, ଆଶ୍ରମର କିଛି ଦୂରରେ ଭଗବାନଙ୍କୁ ଦେଖି ନିଜର ଶିଷ୍ୟମାନଙ୍କୁ କହିଲେ—"ଦେଖ, ଭାଇମାନେ ବଡ଼ପାଟିରେ କହନାହିଁ; ପାଟିତୁଣ୍ଡ ବନ୍ଦକର । ହେଇଟି, ଶ୍ରମଣ ଗୌତମ ଆସୁଛନ୍ତି । ତୁନି ତୁନି କଥାହେବା ତାଙ୍କୁ ଭଲଲାଗେ ଓ ସେ ଧୀର ଭାଷଣକୁ ଭଲପାଆନ୍ତି । ଯଦି ଆମେ ପାଟିତୁଣ୍ଡ ନକରିବା ତେବେ ଆମ ସଭା ତାଙ୍କ ମନକୁ ପାଇବ ।"

ସେହି ପରିବ୍ରାଜକମାନେ ଶାନ୍ତ ହୋଇଗଲେ । ଭଗବାନ୍ ଯାଇ ସକୁଳୁଦାୟି ପରିବ୍ରାଜକଙ୍କ ନିକଟରେ ପହଞ୍ଚିଗଲେ । ତାଙ୍କୁ ଦେଖି ସକୁଳୁଦାୟି କହିଲେ—"ଭଗବାନ ! ଆସନ୍ତୁ ।

( ୧ ) ସକୁଳ+ଉଦାୟି ଅର୍ଥାତ୍ କୁଳୀନ ଉଦାୟି ।

ଭଗବାନଙ୍କୁ ସ୍ୱାଗତ ଜଣାଉଛୁ । ଭଗବାନ ବହୁକାଳ ପରେ ଆମ ସଭାକୁ ଆସିଛନ୍ତି । ଆପଣଙ୍କ ନିମନ୍ତେ ଏହି ଆସନ ରଖାଯାଇଛି । ଏହାର ଉପରେ ବିରାଜମାନ କରନ୍ତୁ ।"

ଭଗବାନ୍ ସେହି ଆସନ ଉପରେ ଉପବେଶନ କଲେ । ନିଜ ପାଖରେ ବସିଥିବା ପରିବ୍ରାଜକ ସକୁଳୁଦାୟୀଙ୍କୁ କହିଲେ— "ଉଦାୟି ! ଏଠି ଆପଣମାନଙ୍କର କି କଥା ପଡ଼ିଥିଲା ।"

ଉଦାୟି କହିଲେ—"ଭଗବାନ ଆମକଥା ଛାଡ଼ନ୍ତୁ । ସେ କଥା ସେପରି କିଛି ଦୁର୍ଲ୍ଲଭ ନୁହେ । ତେବେ ମୋର ଗୋଟିଏ କଥା ମନେ ପଡ଼ୁଛି । କିଛି ସମୟ ପୂର୍ବେ ବିଭିନ୍ନ ସମ୍ପ୍ରଦାୟର ଶ୍ରମଣ ବ୍ରାହ୍ମଣମାନେ ଏକ କୌତୂହଳଶାଳା (ବାଦବିବାଦସ୍ଥାନ)ରେ ଜୁଣ୍ଡ ହୋଇଥିଲେ । ସେଠାରେ ଏହିକଥା ପଡ଼ିଲା ଯେ ପୂରଣକସ୍ସପ ମକ୍ଖଲି ଗୋସାଲ, ଅଜିତକେସକମ୍ବଲ, ପକୁଧକଚାୟନ, ସଞ୍ଜୟ-ବେଲଟ୍ଠପୁତ୍ର ଓ ନିଗଣ୍ଠନାଥପୁତ୍ର ଓ ଶ୍ରମଣ ଗୌତମଙ୍କ ଭଳି ବଡ଼ ବଡ଼ ସଙ୍ଘନାୟକମାନେ ଏବେ ରାଜଗୃହ ନିକଟରେ ବର୍ଷା କାଳକୁ ସ୍ଥିତ କରିଅଛନ୍ତି । ଏହା ଅଙ୍ଗ ମଗଧର ଲୋକଙ୍କ ପକ୍ଷରେ ବଡ଼ ଭାଗ୍ୟର କଥାବୋଲି ବୁଝିବା ଉଚିତ । କିନ୍ତୁ ସେହି ନେତାମାନଙ୍କ ମଧ୍ୟରେ ଏପରି କିଏ ଅଛି, ଶ୍ରାବକମାନେ ଯାହାଙ୍କର ସମ୍ମାନ ରକ୍ଷାକରନ୍ତି ଏବଂ ତାଙ୍କର ଆଶ୍ରୟରେ ଶ୍ରାବକମାନେ କିପରି ରହନ୍ତି ?"

ଏହି କଥାରେ କେତେଜଣ କହିଲେ, ପୂରଣକସ୍ସପ ହେଉଛନ୍ତି ଖ୍ୟାତନାମା ନେତା । କିନ୍ତୁ ଶ୍ରାବକମାନେ ତାଙ୍କର ସମ୍ମାନରକ୍ଷା କରନ୍ତି ନାହିଁ ; ତାଙ୍କ ଆଶ୍ରମରେ ରହିବା ଉଚିତ ନୁହେ ; ସେମାନଙ୍କ ମଧ୍ୟରେ ସର୍ବଦା କଳକଳି ଲାଗିଥାଏ ।

ଅନ୍ୟ କେହି କେହି କହିଲେ ଯେ ମକ୍‌ଖଳିଗୋସାଳ ପ୍ରଭୃତି ନେତାମାନଙ୍କର ଶ୍ରାବକମାନଙ୍କ ସହିତ କଳହ ହେଉଛି । ଶେଷରେ କେତେକ ଲୋକ କହିଲେ, ଏହି ଶ୍ରମଣ ଗୌତମ ହିଁ ପ୍ରସିଦ୍ଧ ନେତା । ଶ୍ରାବକମାନେ ତାଙ୍କର ସମ୍ମାନରକ୍ଷା କରୁଅଛନ୍ତି ଓ ତାଙ୍କର ଆଶ୍ରୟରେ ରହନ୍ତି । ଥରେ ଗୌତମ ଏକ ବଡ଼ ସଭାରେ ଧର୍ମ ଉପଦେଶ ଦେଉଥିଲେ । ସେତିକିବେଳେ ତାଙ୍କର ଜଣେ ଶ୍ରାବକଙ୍କୁ କାଶ ଲାଗିଲା । ତାକୁ ଦବେଇ ଦେଇ ଅନ୍ୟ ଜଣେ ତୁନିକରି କହିଲା—"ଗୋଳମାଳ କରନା ; ଆମର ଶାସ୍ତା ( ଗୁରୁ ) ଧର୍ମ ଉପଦେଶ ଦେଉଛନ୍ତି । ଶ୍ରମଣ ଗୌତମ ଯେତେବେଳେ ଶହଶହ ଲୋକଙ୍କ ସଭାରେ ଧର୍ମୋପଦେଶ ଦେଉଥାଆନ୍ତି, ସେତେବେଳେ ତାଙ୍କ ଶ୍ରାବକମାନଙ୍କର ଛିଙ୍କ, କାଶ ମଧ୍ୟ ଶୁଣାଯାଉନଥିଲା । ଲୋକେ ବଡ଼ ଆଦରରେ ତାଙ୍କ ଧର୍ମୋପଦେଶ ଶୁଣୁଥିଲେ ।"

ଭଗବାନ —"ହେ ଉଦାୟି ! ମୋର ଶ୍ରାବକମାନେ ମୋ ସହିତ ସାଦର ବ୍ୟବହାର କରନ୍ତି ଓ ମୋ ଆଶ୍ରୟରେ ରହନ୍ତି । ଏହାର କାରଣ କ'ଣ ହୋଇପାରେ ବୋଲି ତୁମେ ଭାବୁଛ ?"

ଉଦାୟି—"ମତେ ଲାଗୁଛି, ଏହାର ପାଞ୍ଚୋଟି କାରଣ ଥାଇପାରେ । ୧. ଭଗବାନ ଅଳ୍ପାହାର କରନ୍ତି ଓ ଅଳ୍ପାହାରର ଉପାଦେୟତା ବୁଝାଇ ଦିଅନ୍ତି । ୨. ସେ ଯେ କୌଣସି ଚୀବରରେ ସନ୍ତୁଷ୍ଟ ହେଉଛନ୍ତି ଓ ସେହି ସନ୍ତୋଷର ଉପାଦେୟତା ବୁଝାଇ ଦେଉଅଛନ୍ତି । ୩. ଯେଉଁ ଭିକ୍ଷା ମିଳେ, ତହିଁରେ ସନ୍ତୁଷ୍ଟ ରହୁଅଛନ୍ତି ଓ ସେ ପ୍ରକାର ସନ୍ତୋଷର ଉପାଦେୟତା ବୁଝାଇ ଦେଉଅଛନ୍ତି । ୪. ନିବାସ ନିମନ୍ତେ ଯେଉଁ ସ୍ଥାନ ମିଳେ ତହିଁରେ ସନ୍ତୁଷ୍ଟ ହୁଅନ୍ତି ଓ ତାହାର ଉପାଦେୟତା ବୁଝାଇ ଦିଅନ୍ତି । ୫. ଏକାନ୍ତରେ ରହନ୍ତି ଓ ତାହାର ଉପାଦେୟତା ବୁଝାଇ ଦିଅନ୍ତି । ଏହି ପାଞ୍ଚୋଟି

କାରଣରୁ ଭଗବାନଙ୍କ ଶ୍ରାବକମାନେ ଭଗବାନଙ୍କ ସମ୍ମାନ ରକ୍ଷା କରନ୍ତି ଓ ଆଶ୍ରୟରେ ରହନ୍ତି ବୋଲି ମତେ ଲାଗୁଛି ।"

ଭଗବାନ—"ହେ ଉଦାୟି ! ଶ୍ରମଣ ଗୌତମ ଅଳ୍ପାହାରର ଉପାଦେୟତା ବୁଝାଇ ଦିଅନ୍ତି । ତେଣୁ ଶ୍ରାବକମାନେ ମୋର ସମ୍ମାନ ରକ୍ଷାକରନ୍ତି ଓ ମୋର ଆଶ୍ରୟରେ ରହନ୍ତି । ଯଦି କେବଳ ଏତିକ ହୋଇଥାନ୍ତା, ତାହାହେଲେ ମୋଠାରୁ ଅଧିକ ଅଳ୍ପାହାରୀ ଶ୍ରାବକମାନେ ମୋର ସମ୍ମାନ କରନ୍ତେ ନାହିଁ ବା ମୋର ଆଶ୍ରୟରେ ରହନ୍ତେ ନାହିଁ ।

"ହେ ଉଦାୟି ! ଯେ କୌଣସି ଚୀବର ମିଳିଲେ ମୁଁ ସନ୍ତୁଷ୍ଟ ରହେ ଓ ତାହାର ଉପାଦେୟତା ବୁଝାଇ ଦିଏ, ଏଣୁ ମୋର ଶ୍ରମଣମାନେ ମତେ ସମ୍ମାନ କରନ୍ତି ଏବଂ ମୋର ଆଶ୍ରୟରେ ରହନ୍ତି— ଯଦି ଏହାହିଁ ହୁଏ, ତାହାହେଲେ ଯେଉଁ ଶ୍ରାବକମାନେ ମଶାଣିରୁ, ଖତଗଦାରୁ, ବା ବଜାରରୁ ଛିଣ୍ଡାକନା ସଂଗ୍ରହ କରି, ତହିଁରେ ଚୀବର ତିଆରି କରି ପିନ୍ଧନ୍ତି, ସେମାନେ ମତେ ସମ୍ମାନ କରନ୍ତେ ନାହିଁ କିମ୍ବା ମୋର ଆଶ୍ରୟରେ ରହନ୍ତେ ନାହିଁ ; କାରଣ କେବଳ ଗୃହସ୍ଥମାନଙ୍କ ଦ୍ୱାରା ପ୍ରଦତ୍ତ ବସ୍ତ୍ରମାନଙ୍କୁ ମୁଁ ପିନ୍ଧେ ବା କାନ୍ଧରେ ପକାଏ ।

"ହେ ଉଦାୟି ! ଯଥାଲବ୍ଧ ଭିକ୍ଷାରେ ଶ୍ରମଣ ଗୌତମ ସନ୍ତୁଷ୍ଟ ରହେ ଏବଂ ସେହି ସନ୍ତୋଷର ଉପାଦେୟତା ବୁଝାଇଦିଏ ; ତେଣୁ ଶ୍ରାବକମାନେ ମୋର ସମ୍ମାନ ରକ୍ଷା କରନ୍ତି ଓ ମୋର ଆଶ୍ରୟରେ ରହନ୍ତି—ଯଦି ଏହାହିଁ ହୁଏ ତାହାହେଲେ ସେମାନଙ୍କ ମଧ୍ୟରୁ ଯେଉଁମାନେ କେବଳ ଭିକ୍ଷା ଉପରେ ନିର୍ଭର କରନ୍ତି, ଶ୍ରେଷ୍ଠ ବା ବଡ଼ ଘର ନିର୍ବିଶେଷରେ ଭିକ୍ଷାଗ୍ରହଣ କରନ୍ତି ଓ ତଦ୍ୱାରା

ହିଁ ଚଳନ୍ତି, ସେମାନେ ମତେ ସମ୍ମାନ ଦେଖାନ୍ତେ ନାହିଁ କମ୍ବା ମୋ ଆଶ୍ରୟରେ ରହନ୍ତେ ନାହିଁ; କାହିଁକ ନା ବେଳେ ବେଳେ ମୁଁ ଗୃହସ୍ଥଙ୍କ ନିମନ୍ତ୍ରଣ ରକ୍ଷାକରେ ଓ ଭଲ ପଦାର୍ଥ ଖାଇବାକୁ ପାଏ ।

"ହେ ଉଦାୟି ! ଯଥାଲବ୍ଧ ବାସସ୍ଥାନରେ ଶ୍ରମଣ ଗୌତମ ସନ୍ତୁଷ୍ଟ ରହେ ଓ ତାହାର ଉପାଦେୟତା ବୁଝାଇ ଦଏ ; ତେଣୁ ଶ୍ରାବକମାନେ ମତେ ସମ୍ମାନ ଦେଖନ୍ତି ଓ ମୋର ଆଶ୍ରୟରେ ରହନ୍ତି—ଯଦ ଏହାହିଁ ହୁଏ, ତାହାହେଲେ ସେମାନଙ୍କ ମଧ୍ୟରୁ ଯେଉଁମାନେ ଗଛତଳେ ବା ଖୋଲା ଜାଗାରେ ରହନ୍ତି ଓ ଆଠମାସ ପର୍ଯ୍ୟନ୍ତ ମୂଳ ପ୍ରଭୃତ ତଳେ ରହନ୍ତି ନାହିଁ, ସେମାନେ ମତେ ସମ୍ମାନ ଦେଖାଇ ମୋ ଆଶ୍ରୟରେ ରହନ୍ତେ ନାହିଁ କାରଣ ମୁଁ ବେଳେବେଳେ ବଡ଼ ବଡ଼ ବହାରରେ ମଧ୍ୟ ଅବସ୍ଥାନ କରେ ।

"ହେ ଉଦାୟି ! ଶ୍ରମଣ ଗୌତମ ଏକାନ୍ତରେ ରହ ତାହାର ଉପାଦେୟତା ବୁଝାଇବାରୁ ଯଦ ଶ୍ରାବକମାନେ ତାଙ୍କୁ ସମ୍ମାନ କର ତାଙ୍କ ଆଶ୍ରୟରେ ରହୁଥାଆନ୍ତେ ତାହାହେଲେ ସେମାନଙ୍କ ମଧ୍ୟରେ ଯେଉଁମାନେ କେବଳ ଅରଣ୍ୟରେ ରହନ୍ତି ଓ ପ୍ରାତିମୋକ୍ଷ୍ୟଲାଗି ପକ୍ଷରେ ଦନେ ମାତ୍ର ସଙ୍ଘକୁ ଆସନ୍ତି ମତେ ସମ୍ମାନ କରନ୍ତେ ନାହିଁ ଓ ମୋ ଆଶ୍ରୟରେ ରହନ୍ତେ ନାହିଁ । କାରଣ ମୁଁ ବେଳେ ବେଳେ ଭକ୍ଷୁ ଭକ୍ଷୁଣୀ, ଉପାସକ ଓ ଉପାସିକା, ରାଜା ଓ ମନ୍ତ୍ରୀ, ଅନ୍ୟ ସଙ୍ଘର ନେତା ଓ ସେମାନଙ୍କ ଶ୍ରାବକଙ୍କ ସହତ ମିଳତ ହୁଏ ।

"କନ୍ତୁ, ହେ ଉଦାୟି ! ଏହ ପାଞ୍ଚୋଟି ଗୁଣ ହେତୁ ଶ୍ରାବକମାନେ ମତେ ସମ୍ମାନ ଦେଖାନ୍ତି ଓ ମୋ ଆଶ୍ରୟରେ ରହନ୍ତି ୧. ଶ୍ରମଣ ଗୌତମ ଶୀଳବାନ ଅଟନ୍ତି, ୨. ସେ ଯଥାର୍ଥ ଭାବରେ ଧର୍ମୋପଦେଶ ଦଅନ୍ତି, ୩. ସେ ପ୍ରଜ୍ଞାବାନ ଅଟନ୍ତି, ସେଥିପାଇଁ

ଶ୍ରାବକମାନେ ସମ୍ମାନ ଦେଖାନ୍ତି ଓ ମୋ ଆଶ୍ରୟରେ ରହନ୍ତି । ୪. ଏହାଛଡ଼ା ମୁଁ ମୋର ଶ୍ରାବକ ମାନଙ୍କୁ ଗୃହେଟି ଆର୍ଯ୍ୟସତ୍ୟର ଉପଦେଶ ଦେଇଛି । ୫. ଆଧ୍ୟାତ୍ମିକ ଉନ୍ନତିର ବିଭିନ୍ନ ମାର୍ଗ ବୁଝାଇ ଦେଇଛି । ଏଇ ପାଞ୍ଚୋଟି ଗୁଣହେତୁ ମୋ ଶ୍ରାବକମାନେ ମୋର ସମ୍ମାନ ରକ୍ଷା କରନ୍ତି ଓ ମୋର ଆଶ୍ରୟରେ ରହନ୍ତି ।

## ଭିକ୍ଷୁ ସଂଘ ସହିତ ରହିବା ବେଳେ ଭଗବାନଙ୍କ ଦିନଚର୍ଯ୍ୟା

ବୁଦ୍ଧଦେବ ନିଜ ସଂଘର ଅନୁଶାସନ କିପରି କରୁଥିଲେ ତାହା ସମସ୍ତ ପରିବ୍ରାଜକ ଜାଣି ଯାଇ ଥିଲେ । ଏହି ସୂତ୍ରରୁ ଏକଥା ସ୍ପଷ୍ଟ ଜଣାଯିବ ଯେ, ସେ ଯେତେବେଳେ ଅନ୍ୟ ପରିବ୍ରାଜକଙ୍କ ସଙ୍ଘକୁ ଯାଉଥିଲେ, ସେଠାରେ ମଧ୍ୟ ବଡ଼ ଶାନ୍ତିରେ ରହୁଥିଲେ । ବେଳେବେଳେ ସେ ଗୃହସ୍ଥମାନଙ୍କର ଆମନ୍ତ୍ରଣ ରକ୍ଷା କରୁଥିଲେ ଓ ସେମାନଙ୍କର ଦ୍ୱାରା ପ୍ରଦତ୍ତ ବସ୍ତ୍ର ଗ୍ରହଣ କରୁଥିଲେ । ତଥାପି ଅଳ୍ପାହାର, ବସ୍ତ୍ରାଦିରେ ଆଡ଼ମ୍ବର ଶୂନ୍ୟତା ଓ ଏକାନ୍ତବାସ ପ୍ରିୟତା ବିଷୟରେ ସେ ଥିଲେ ବେଶ୍ ଜଣାଶୁଣା । ଭିକ୍ଷୁସଂଘ ସହିତ ଯାତ୍ରା କରିବାବେଳେ ସେ ଗ୍ରାମ ବାହାରେ, ଉପବନରେ ବା ସେଭଳି ଅନ୍ୟ କୌଣସି ସୁବିଧା ଜନକ ସ୍ଥାନରେ ରହୁଥିଲେ । ରାତିରେ ଧ୍ୟାନ-ସମାଧି ସମାପ୍ତ କରି ମଧ୍ୟମ ପ୍ରହରରେ ଉପରି କଥିତ ପ୍ରକାରେ ସିଂହଶଯ୍ୟା କରୁଥିଲେ । ପୁଣି ମୁହଁ ଅନ୍ଧାରରୁ ଉଠି ବୁଲିବୁଲି ( ଚଙ୍କ୍ରମଣ ) କରୁଥିଲେ କିମ୍ବା ଧ୍ୟାନ-ସମାଧିରେ ନିମଗ୍ନ ରହୁଥିଲେ ।

ପ୍ରାତଃକାଳରେ ସେହି ଗ୍ରାମ ବା ସହରକୁ ଭିକ୍ଷା ନିମନ୍ତେ ନିଜେ ଏକୁଟିଆ ଅନେକଥର ଯାଉଥିଲେ ଓ ମାର୍ଗରେ ଭିକ୍ଷାଟନ

ସମୟରେ ପ୍ରସଙ୍ଗକ୍ରମେ ଗୃହସ୍ଥ ମାନଙ୍କୁ ଉପଦେଶ ଦେଉଥିଲେ । ସିଗାଲୋବାଦସୁତ୍ତଟି ସେ ବାଟରେ ହିଁ କହିଥିଲେ । ପୁଣି ସେହି ଭିକ୍ଷାଟନ ସମୟରେ ସେ କସିଭରଦ୍ୱାଜସୁତ୍ତ ଓ ସେଭଳି ଅନ୍ୟସୁତ୍ତରେ ସମାବେଶିତ ଉପଦେଶ ଗୁଡ଼ିକ ଦେଇଥିଲେ ।

ଉଦର ପୂରଣ ନିମନ୍ତେ ପର୍ଯ୍ୟାପ୍ତ ଭିକ୍ଷା ମିଳିବାପରେ, ଭଗବାନ ଗ୍ରାମର ବାହାରକୁ ଯାଇ ଗଛତଳେ ବା ସେପରି ଅନ୍ୟକୌଣସି ସ୍ଥାନରେ ବସି ଭୋଜନ କରୁଥିଲେ । ତାପରେ ବିହାରକୁ ଆସି କିଛି ସମୟ ବିଶ୍ରାମକରି ଧ୍ୟାନସମାଧିରେ ଅଳ୍ପ ସମୟ ପାଇଁ ନିମଗ୍ନ ରହୁଥିଲେ । ସାୟଂକାଳରେ ଯଦି କେହି ତାଙ୍କ ସହିତ ସାକ୍ଷାତ କରିବା ପାଇଁ ଆସନ୍ତି ତେବେ ସେ ସେମାନଙ୍କ ସହିତ ଧାର୍ମିକ ଆଲୋଚନା କରୁଥିଲେ । ସେ କିପରି ସେହିଭଳି ଅବସରରେ ସୋଣଦଣ୍ଡ, କୂଟଦଣ୍ଡ ପ୍ରଭୃତି ବ୍ରାହ୍ମଣମାନଙ୍କ ଦ୍ୱାରା ଗଠିତ ବିଶାଳ ବ୍ରାହ୍ମଣ ଗୋଷ୍ଠୀ ସହିତ ଧାର୍ମିକ ଆଲୋଚନା କରିଥିଲେ, ଦିଘନିକାୟରୁ ତାହାର ପ୍ରମାଣ ମିଳେ । ଯେଉଁଦିନ କୌଣସି ଗୃହସ୍ଥ ଆସୁନଥିଲେ, ସେଦିନ ଭଗବାନ ନିଜର ସଙ୍ଘରେ ଥିବା ଭିକ୍ଷୁମାନଙ୍କୁ ନାନା ପ୍ରକାର ଧର୍ମୋପଦେଶ ଦେଉଥିଲେ ।

ପୁଣି ଦିନେ ଦୁଇଦିନ ପରେ ସେ ଅନ୍ୟସ୍ଥାନ ଲକ୍ଷ୍ୟରେ ଯାତ୍ରାରମ୍ଭକରି ଦେଉଥିଲେ । ଏହିଭଳି ଭାବରେ ପୂର୍ବରେ ଭାଗଲ୍‌ପୁର ପଶ୍ଚିମରେ କଲ୍ମାଷଦମ୍ୟ ନାମକ ସହର, ଉତ୍ତରରେ ହିମାଳୟ ଓ ଦକ୍ଷିଣରେ ବିନ୍ଧ୍ୟ —ଏହି ମଧ୍ୟବର୍ତ୍ତୀ ପ୍ରଦେଶରେ ଆଠମାସ ପର୍ଯ୍ୟନ୍ତ ଭିକ୍ଷୁ ସଙ୍ଘ ସହିତ ବୁଲୁଥିଲେ ।

# ବର୍ଷାବାସ

ଭଗବାନ୍ ବୁଦ୍ଧ ଯେତେବେଳେ ଉପଦେଶ ଦେବାକୁ ଆରମ୍ଭକଲେ, ସେହିସମୟରେ ତାଙ୍କର ଭିକ୍ଷୁମାନେ କୌଣସି ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ବର୍ଷାକାଳ ଯାପନ କରୁନଥିଲେ । ସେ ଚତୁର୍ଦ୍ଦିଗରେ ବୁଲି ଧର୍ମୋପଦେଶ ଦେଉଥିଲେ । ଅନ୍ୟ ସମ୍ପ୍ରଦାୟର ଶ୍ରମଣମାନେ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ବର୍ଷାକାଳ ଯାପନ କରୁଥିଲେ । ଏହିହେତୁ ବୁଦ୍ଧ-ଭିକ୍ଷୁମାନଙ୍କର ଏ ଆଚରଣ ଜନ ସାଧାରଣଙ୍କୁ ଭଲଲାଗିଲା ନାହିଁ । ସେମାନେ ଏହି ଭିକ୍ଷୁଙ୍କର ନାନା ସମାଲୋଚନା କଲେ । ଏହା ଫଳରେ, ଲୋକଙ୍କୁ ସନ୍ତୁଷ୍ଟ କରିବା ପାଇଁ ଭଗବାନ୍ ନିୟମ କରିଦେଲେ ଯେ ଭିକ୍ଷୁମାନେ ବର୍ଷାକାଳରେ ଅନ୍ତତଃ ତିନିମାସ ଏକତ୍ର ଅବସ୍ଥାନ କରିବେ । (୧)

ବର୍ଷାବାସ ସମ୍ପର୍କରେ ମହାବଗ୍‌ଗରେ ଯାହା ବର୍ଣ୍ଣିତ ଏହା ହେଉଛି ତାର ସାରକଥା । କିନ୍ତୁ ଏସବୁ ପୂରାପୂରି ସତ୍ୟବୋଲି ମନେ ହେଉନାହିଁ । ପ୍ରଥମ କଥା—ସବୁ ଶ୍ରମଣ ବର୍ଷାକାଳରେ ଏକସ୍ଥାନରେ ରହୁଥିଲା ପରି ଲାଗୁନାହିଁ । ଦ୍ୱିତୀୟରେ—ଭଗବାନଙ୍କ ପ୍ରଣୀତ ଏହି ନିୟମର କେତେକ ବ୍ୟତିକ୍ରମ ଦେଖାଯାଏ । ଗୋଟିଏ କିମ୍ବା ଏପରି କିଛି ଦୁଃଖ ଉପସ୍ଥିତ ହେଲେ ବର୍ଷାକାଳରେ ଭିକ୍ଷୁମାନେ ଅନ୍ୟତ୍ର ଯାଇ ପାରୁଥିଲେ । ପ୍ରଥମେ ପ୍ରଥମେ ଉପଦେଶ ପ୍ରଦାନ ଆରମ୍ଭ କରିବା ବେଳେ ସେ ବିଶେଷ ଖ୍ୟାତି ଲାଭକରି ନଥିଲେ । ସେହି ହେତୁରୁ ସେ କିମ୍ବା ତାଙ୍କର କ୍ଷୁଦ୍ର ଭିକ୍ଷୁସଂଘ ଏକ ସ୍ଥାନରେ ବର୍ଷାବାସ କରିପାରୁ ନଥିଲେ । ଯେତେବେଳେ ଚତୁର୍ଦ୍ଦିଗରେ ତାଙ୍କର ଖ୍ୟାତି ବ୍ୟାପିଗଲା, ପ୍ରଥମେ ଶ୍ରେଷ୍ଠୀ ଅନାଥ ପିଣ୍ଡିକ ଶ୍ରାବସ୍ତୀ ନିକଟବର୍ତ୍ତୀ ଜେତବନରେ

(୧) ଦେଖନ୍ତୁ, ବୌଦ୍ଧ ସଙ୍ଘର ପରିଚୟ ପୃଷ୍ଠା ୨୪ ।

ତାଙ୍କ ପାଇଁ ଏକ ବିହାର ନିର୍ମାଣ କରିଥିଲେ । କେତେଦିନ ପରେ ଉପାସିକା ବିଶାଖା ସେହି ନଗର ନିକଟରେ ପୂର୍ବାରାମ ନାମକ ପ୍ରାସାଦ ନିର୍ମାଣକରି ବୌଦ୍ଧସଂଘକୁ ସମର୍ପଣ କରିଦେଇଥିଲେ । ଭଗବାନ୍ ବୁଦ୍ଧ ନିଜର ବୃଦ୍ଧାବସ୍ଥାରେ ଏ ଦୁଇ ସ୍ଥାନରେ ବହୁବାର ବର୍ଷାକାଳ ଯାପନ କରିଥିଲେ । ଅନ୍ୟସ୍ଥାନର ଉପାସକମାନଙ୍କ ଦ୍ୱାରା ନିମନ୍ତ୍ରିତ ହୋଇ ସେହି ସ୍ଥାନ ମାନଙ୍କୁ ବର୍ଷାକାଳ ଲକ୍ଷ୍ୟରେ ଯାଉଥିଲେ । ବର୍ଷାଦିନ ମାନଙ୍କ ପାଇଁ ଲୋକେ ଭିକ୍ଷୁମାନଙ୍କ ଲାଗି କୁଟୀର ନିର୍ମାଣ କରି ଦେଉଥିଲେ । ଭଗବାନଙ୍କ ନିମନ୍ତେ ଏକ ସ୍ୱତନ୍ତ୍ର କୁଟୀର ନିର୍ମିତ ହେଉଥିଲା ଏବଂ ଗନ୍ଧକୁଟୀ ନାମରେ ତାହା ଅଭିହିତ ହେଉଥିଲା ।

ବର୍ଷାକାଳରେ ନିକଟବର୍ତ୍ତୀ ଅଞ୍ଚଳର ଉପାସକମାନେ ବୁଦ୍ଧଙ୍କୁ ଦର୍ଶନ କରିବାକୁ ତାଙ୍କ ପାଖକୁ ଆସୁଥିଲେ ଓ ଉପଦେଶ ଶୁଣୁଥିଲେ, କିନ୍ତୁ ସେମାନେ ପ୍ରତିଦିନ ବିହାରକୁ ଆସି ଭିକ୍ଷାଦେଉନଥିଲେ । ନିର୍ଦ୍ଦିଷ୍ଟ ରୀତିରେ ଭିକ୍ଷୁମାନଙ୍କୁ ଓ ଭଗବାନ୍ ବୁଦ୍ଧଙ୍କୁ ଭିକ୍ଷାଟନ କରିବାକୁ ପଡ଼ୁଥିଲା । ବେଳେବେଳେ ଗୃହସ୍ଥମାନଙ୍କ ଠାରୁ ନିମନ୍ତ୍ରଣ ମଧ୍ୟ ମିଳୁଥିଲା ।

## ଅସୁସ୍ଥ ଭିକ୍ଷୁଙ୍କୁ ପରିଚର୍ଯ୍ୟା

ଭିକ୍ଷୁମାନଙ୍କ ମଧ୍ୟରୁ ଯଦି କେହି ଅସୁସ୍ଥ ହେଉଥିଲେ ତେବେ ଭଗବାନ୍ ବୁଦ୍ଧ ଦ୍ୱି ପ୍ରହର ସମୟରେ ଧ୍ୟାନ ସମାଧି ପୂର୍ତ୍ତିକରି ସେହି ରୋଗୀମାନଙ୍କ ସମ୍ପର୍କରେ ଖବର ଅନ୍ତର ନେବାକୁ ଯାଉଥିଲେ । ଥରେ ମହାକାଶ୍ୟପ ରାଜଗୃହରେ ପିପ୍ପଳୀ ଗୁହାରେ ଅସୁସ୍ଥ ହୋଇ ପଡ଼ିଥିଲେ । ସେତିକବେଳେ ଭଗବାନ ବେଣୁ ବନରେ ରହିଥିଲେ । ସନ୍ଧ୍ୟା ସମୟରେ ମହାକାଶ୍ୟପଙ୍କର ସ୍ୱାସ୍ଥ୍ୟ

ସଂପର୍କରେ ଖବର ନେବାପାଇଁ ଭଗବାନ ଯାଇଥିବା କଥା ବୋଜ୍‌ଝଙ୍ଗସୂତ୍ରର ଚତୁର୍ଦ୍ଦଶ ସୂତ୍ରରେ କୁହାଯାଇଛି । ପୁଣି ମହାମୋଗ୍‌ଗଲ୍ଲାନଙ୍କ ଖବର ନେବାପାଇଁ ଭଗବାନ ଯାଇଥିବା କଥା ପଞ୍ଚଦଶ ସୂତ୍ରରେ ବର୍ଣ୍ଣିତ ଅଛି । ସେଇ ଦୁଇଜଣ ରୋଗୀଙ୍କୁ ଭଗବାନ ସପ୍ତ ବୋଧଙ୍ଗ ସ୍ମରଣ କରାଇ ଥିଲେ ଏବଂ ତାହା ଫଳରେ ସେ ଦୁହିଁଙ୍କର ଅସୁସ୍ଥତା ଦୂର ହୋଇ ଯାଇଥିଲା ।

## କିଛି ଦିନର ଏକାନ୍ତ ବାସ

ଏଥିପୂର୍ବରୁ କୁହାଯାଇଛି ଯେ, ଯେତେବେଳେ ଭଗବାନ୍ ଯାତ୍ରା କରୁଥିଲେ କମ୍ବା ବର୍ଷା କାଳରେ ଏକ ସ୍ଥାନରେ ରହୁଥିଲେ, ସେହି ସମୟରେ ଖରାବେଳେ ଘଣ୍ଟାଏ ଦୁଇଘଣ୍ଟା ଓ ରାତିର ପ୍ରଥମ ଏବଂ ଶେଷ ପ୍ରହରରେ ବହୁ ସମୟ ଧ୍ୟାନ ସମାଧିରେ ମଗ୍ନ ରହୁଥିଲେ । ଏହାଛଡ଼ା 'ଆନାପାନ ସ୍ମୃତି ସଂଯୁତ୍ତ'ର ନବମ ସୂତ୍ରରେ କୁହାଯାଇଛି ଯେ, ଥରେ ଭଗବାନ୍ ବୈଶାଳୀ ନିକଟବର୍ତ୍ତୀ ମହାବନର କୂଟାଗାର ଶାଳାରେ ଅବସ୍ଥାନ କରୁଥିବା ବେଳେ ପନ୍ଦରଦିନ ପର୍ଯ୍ୟନ୍ତ ଏକାନ୍ତ ବାସ କରିଥିଲେ । କେବଳ ଭିକ୍ଷାଅନରୁ ଫେରିଥିବା ଜଣେମାତ୍ର ଭିକ୍ଷୁ ତାଙ୍କନିକଟକୁ ଯିବା ପାଇଁ ସେ ଅନୁମତି ଦେଇଥିଲେ । ଏହି ସୁତ୍ତର ଏକାଦଶ ସୂତ୍ରରେ ତଳଲିଖିତ ବିଷୟ ବର୍ଣ୍ଣିତ ହୋଇଛି ।

ଥରେ ଭଗବାନ ଇଚ୍ଛାନଙ୍ଗଲ ବନରେ ରହୁଥିଲେ । ସେଠାରେ ଭଗବାନ ଭିକ୍ଷୁମାନଙ୍କୁ କହିଲେ, "ହେ ଭିକ୍ଷୁଗଣ, ମୁଁ ତିନିମାସ ଯାଏ ଏକାନ୍ତ ବାସ କରିବାକୁ ଇଚ୍ଛା କରେ । ମୋ ପାଖକୁ ଭିକ୍ଷାନେଇ ଆସିଥିବା ଜଣେ ଭିକ୍ଷୁକ ଛଡ଼ା ଅନ୍ୟ କେହି ଆସି ପାରିବେ ନାହିଁ ।" ତିନିମାସ ପୂର୍ଣ୍ଣ ହେବାପରେ ଭଗବାନ ଏକାନ୍ତ

ବାସରୁ ବାହାରକୁ ଆସିଲେ ଏବଂ ଭିକ୍ଷୁମାନଙ୍କୁ କହିଲେ,— ଯଦି ଅନ୍ୟ ସମ୍ପ୍ରଦାୟର କୌଣସି ପରିବ୍ରାଜକ ତୁମମାନଙ୍କୁ ପଚାରନ୍ତି ଯେ, "ଭଗବାନ ବର୍ଷାକାଳ କି ପ୍ରକାର ଧ୍ୟାନ ସମାଧିରେ ରହୁଥିଲେ" ତାହାହେଲେ ତୁମେମାନେ କହିବ, "ଭଗବାନ ଆନାପାନ ସ୍ମୃତି ସମାଧି କରି ରହୁଥିଲେ ।

ଉଲ୍ଲିଖିତ ସୂତ୍ରରେ କୁହାଯାଇଛି ଯେ, ଭଗବାନ ପନ୍ଦରଦିନ ପର୍ଯ୍ୟନ୍ତ ଆନାପାନ ସ୍ମୃତି ସମାଧି କରି ରହୁଥିଲେ । ଏହାର ତାତ୍ପର୍ଯ୍ୟ ଏହିଯେ, ଲୋକେ ଏହି ସମାଧିର ମହତ୍ତ୍ୱ ବୁଝିଯାଆନ୍ତୁ । ପନ୍ଦର ଦିନ ବା ତିନିମାସ ଯାଏ ଏହି ସମାଧି କରିବା ଦ୍ୱାରା ମନ ବିରକ୍ତ ହୁଏ ନାହିଁ ପୁଣି ଶରୀର ସୁସ୍ଥରହେ ।

ଅନ୍ୟ ଏକ ପ୍ରସଙ୍ଗରେ, ଷଷ୍ଠ ଅଧ୍ୟାୟରେ କୁହାଯାଇଛି ଯେ, ଭଗବାନ ଭିକ୍ଷୁ ସଂଘକୁ ଛାଡ଼ି ଏକାକୀ ପାରିଲେୟ୍ୟକ ବନରେ ରହୁଥିଲେ । ଏଥିରୁ ଏହା ପ୍ରତୀତ ହେଉଅଛି ଯେ, ଭଗବାନ ବେଳେବେଳେ ଏହି ଭଳି ସ୍ଥାନ ମାନଙ୍କରେ ଏକାନ୍ତ ବାସ କରୁଥିଲେ, ଯେଉଁଠାରେ ତାଙ୍କୁ କେହି ଚିହ୍ନି ପାରୁନଥିଲେ । କିନ୍ତୁ ଯେତେବେଳେ ସବୁଆଡ଼େ ତାଙ୍କର ପ୍ରସିଦ୍ଧି ବ୍ୟାପିଗଲା ଏବଂ ଲୋକେ ତାଙ୍କର ପରିଚୟ ଲାଭକଲେ, ସେତେବେଳେ ସଂଘରେ ରହୁଥିବା ସମୟରେ ହିଁ ସଂଘଠାରେ ଅଲିପ୍ତ ରହିବାର ଉପକ୍ରମ ସେ କରିଥାଇ ପାରନ୍ତି । କିନ୍ତୁ ତାଙ୍କର ୪୫ ବର୍ଷ କାର୍ଯ୍ୟକାଳରେ ଏହି ପ୍ରକାର ପ୍ରସଙ୍ଗ ବିଶେଷ ଭାବରେ ବର୍ଣ୍ଣିତ ହୋଇନାହିଁ ।

ଆଜକାଲି କାୟା—କଳ୍ପ ବିଷୟରେ ନାନା କଥା ଶୁଣା-ଯାଉଛି । ମନୁଷ୍ୟକୁ ମାସେ ବା ଦେଢ଼ମାସ ପର୍ଯ୍ୟନ୍ତ ଗୋଟିଏ ଘରେ ବନ୍ଦ କରି ରଖାଯାଏ ଏବଂ ପଥ୍ୟ ସହିତ ଔଷଧ—ଉପଚାର

କରାଯାଏ । ଏହା ଫଳରେ ମନୁଷ୍ୟ ଯୌବନ ଲାଭକରେ ବୋଲି ଅନେକଙ୍କର ଧାରଣା ଅଛି । ଏହି ପ୍ରକାର କାୟାକଳ୍ପ ସହିତ ଭଗବାନଙ୍କର ଏକାନ୍ତ ବାସର କୌଣସି ସମ୍ପର୍କ ନାହିଁ; କାରଣ ସେତେବେଳେ ଭଗବାନ କୌଣସି ଔଷଧୋପଚାର କରୁନଥିଲେ । ସେ କେବଳ ଆନାପାନ ସ୍ମୃତି ଭାବନା କରି ରହୁଥିଲେ । ବହୁକାଳ ପର୍ଯ୍ୟନ୍ତ ଏହିପରି ଏକାନ୍ତ ବାସ କରିବାର ପ୍ରଥା ସିଂହଳ, ବ୍ରହ୍ମଦେଶ ଓ ଶ୍ୟାମରେ ସ୍ଥଳବିଶେଷରେ ପ୍ରଚଳିତ ଥିଲା । କିନ୍ତୁ ତିବ୍ବତରେ ତାହା ପ୍ରଚଳିତ ଅଛି । କେବଳ ସେତିକି ନୁହେଁ କୌଣସି କୌଣସି ସ୍ଥଳରେ ଏପ୍ରଥାର ପ୍ରଚଳନ ଅତ୍ୟଧିକ ଭାବରେ ଦେଖିବାକୁ ମିଳେ । କୌଣସି କୌଣସି ଭିକ୍ଷୁ ଲମ୍ବା ବର୍ଷେ ପର୍ଯ୍ୟନ୍ତ କୌଣସି ଗୁମ୍ଫା ବା ସେଭଳି ଅନ୍ୟ କୌଣସି ସ୍ଥଳରେ ନିଜ ନିଜକୁ ବନ୍ଦ କରି ରଖନ୍ତି ଓ ସମସ୍ତ ସିଦ୍ଧି ପାଇବା ପାଇଁ ଚେଷ୍ଟା କରନ୍ତି ।

## ଅସୁସ୍ଥତା

ଖୁବ୍ ଅଳ୍ପ ସ୍ଥଳରେ ଭଗବାନ୍ ବୁଦ୍ଧ ଅସୁସ୍ଥ ହୋଇଥିବା କଥା ଲେଖାଅଛି । ଥରେ ରାଜଗୃହ ନିକଟବର୍ତ୍ତୀ ବେଣୁବନରେ ସେ ଅସୁସ୍ଥ ଥିଲେ । ବୋଜ୍‌ଝଙ୍ଗସଂଯୁତ୍ତସୁତ୍ତରେ ଏକଥା ଲିଖିତ ଅଛି ଯେ, ସେହି ସମୟରେ ମହାଚୁନ୍ଦ ତାଙ୍କ କହିବା ପ୍ରକାରେ ବୁଦ୍ଧଙ୍କୁ ସାତ ବୋଧ୍ୟଙ୍ଗ କହି ଶୁଣାଇଥିଲେ ଓ ତାହାପରେ ସେ ଆରୋଗ୍ୟ ହୋଇ ଯାଇଥିଲେ ।

ବିନୟ ପିଟକର ମହାବଗ୍‌ଗରେ ଏହା ଲେଖାଅଛି ଯେ, ଭଗବାନ ଟିକିଏ ଅସୁସ୍ଥ ଥିଲେ ଓ ଜୀବକ କୌମାର ଭୃତ୍ୟ ତାଙ୍କୁ ବିରେଚନ ଔଷଧ ଦେଇଥିଲେ । ଚୁଲ୍ଲବଗ୍‌ଗରେ ଦେବଦତ୍ତଙ୍କ କଥା

କୁହାଯାଇଛି । ଗୃଧ୍ରକୂଟ ପର୍ବତ ଶିଖରରୁ ଭଗବାନଙ୍କ ଉପରକୁ ଗୋଟାଏ ବଡ଼ ପଥର ସେ ଫିଙ୍ଗି ଦେଇଥିଲେ । ପଥରଟି ଖଣ୍ଡ ଖଣ୍ଡ ହୋଇଗଲା ଓ ତହିଁରୁ ଖଣ୍ଡେଯାଇ ଭଗବାନଙ୍କ ପାଦରେ ବାଜିଲା । ତହିଁରେ ସେ ଅସୁସ୍ଥ ହୋଇ ପଡ଼ିଥିଲେ । କାଳେ ସେ ଭଗବାନଙ୍କୁ ହତ୍ୟା କରିଦେଇ ପାରେ—ଏହି ଡରରେ କେତେକ ଭିକ୍ଷୁ ଭଗବାନଙ୍କ ନିବାସ ସ୍ଥଳର ଚତୁର୍ଦ୍ଦିଗରେ ଜଗିରହିଲେ । ସେମାନେ ଏପଟ ସେପଟ ହେବାର ଦେଖି, ଭଗବାନ ଆନନ୍ଦଙ୍କୁ ପଚାରିଲେ—"ଭିକ୍ଷୁମାନେ କାହିଁକି ଏପରି ବୁଲୁଛନ୍ତି ।" ଆନନ୍ଦ କହିଲେ—"ଭଦନ୍ତ ! ଆପଣଙ୍କ ଶରୀରକୁ କୌଣସି ଲୋକ ପୀଡ଼ା ଦେଇପାରେ ବା କିଛି କ୍ଷତି କରି ଦେଇପାରେ, ଏ ଆଶଂକାରେ ସେମାନେ ପହରା ଦେଉଛନ୍ତି ।"

ଭଗବାନ ଆନନ୍ଦଙ୍କ ଦ୍ୱାରା ଭିକ୍ଷୁମାନଙ୍କୁ ନିଜ ନିକଟକୁ ଡକାଇଲେ ଏବଂ ସେମାନଙ୍କୁ କହିଲେ—"ମୋର ଦେହଲାଗି ଚିନ୍ତା କରିବାର କିଛି କାରଣ ନାହିଁ । ମୋର ଶିଷ୍ୟମାନଙ୍କ ଦ୍ୱାରା ଦେହ ରକ୍ଷାକରିବାକୁ ମୋର କୌଣସି ଅପେକ୍ଷା ନାହିଁ । ତେଣୁ ତୁମେସବୁ ଏଠାରେ ପହରା ନଦେଇ ନିଜ ନିଜ କାର୍ଯ୍ୟକୁ ଚାଲିଯାଅ ।" ବିନୟ ପିଟକର ଏହି କଥାଗୁଡ଼ିକ, ସୂତ୍ରପିଟକ ଦ୍ୱାରା ସମର୍ଥିତ ହେଉନାହିଁ । ବିରେଚନ ଔଷଧ କଥା ତ ଅତି ସାଧାରଣ । ପୁଣି ଦେବଦତ୍ତଙ୍କୁ ଅତ୍ୟନ୍ତ ଅପଦାର୍ଥ ରୂପେ ଦେଖାଇବାପାଇଁ ସେହିକଥା କଳ୍ପିତ ହୋଇଥାଇପାରେ । ତାହା ସତ୍ୟ ହେଲେ ମଧ୍ୟ, ସେହି ଆଘାତରେ ଭଗବାନ ବହୁଦିନ ପର୍ଯ୍ୟନ୍ତ ଅସୁସ୍ଥ ହୋଇପଡ଼ିଥିଲେ ବୋଲି ପ୍ରତୀତ ହେଉନାହିଁ । ଏହି ଭଳି ଛୋଟ ଛୋଟ ଅସୁସ୍ଥତା ଛାଡ଼ିଦେଲେ ବୁଦ୍ଧ ହେବା ପରଠାରୁ ଭଗବାନଙ୍କ ସ୍ୱାସ୍ଥ୍ୟ ମୋଟାମୋଟି ଭଲଥିଲା ବୋଲି ଆମେ କହିପାରୁ ।

## ଆରୋଗ୍ୟର କାରଣ

ଭଗବାନ୍ ବୁଦ୍ଧ ଓ ତାଙ୍କର ଶିଷ୍ୟମାନେ ସବୁ ଜାତିର ଲୋକଙ୍କ ପ୍ରଦତ୍ତ ଭିକ୍ଷା ଗ୍ରହଣ କରୁଥିଲେ ଓ ଦିନରେ ଥରେ ମାତ୍ର ଭୋଜନ କରୁଥିଲେ । ଏଭଳି ହୋଇ ସୁଦ୍ଧା ତାଙ୍କ ସ୍ୱାସ୍ଥ୍ୟ ଭଲ ରହୁଥିଲା ଓ ମୁଖ ପ୍ରସନ୍ନ ଦିଶୁଥିଲା । ତଳଲିଖିତ କାଲ୍ପନିକ ସମ୍ବାଦରେ ଏଥିର ପ୍ରମାଣ ମିଳେ ।

ଅରଞ୍ଞେ ବିଚରନ୍ତାନଂ ସନ୍ତାନଂ ବ୍ରହ୍ମଚାରିନଂ ।
ଏକ ଭତ୍ତଂ ଭୁଞ୍ଜମାନାନଂ କେନ ବଣ୍ଣୋ ପସୀଦତି ॥

ଅର୍ଥାତ୍ ବଣରେ ରହନ୍ତି, ବ୍ରହ୍ମଚର୍ଯ୍ୟ ପାଳନ୍ତି ଓ ଥରେ ମାତ୍ର ଖାଆନ୍ତି, ଏପରି ହେଲେ ସୁଦ୍ଧା ସାଧୁମାନଙ୍କର କାନ୍ତି କପରି ରହୁଛି ?

ଅତୀତଂ ନାନୁ ସୋଚନ୍ତି ନପ୍ପଜପ୍ପନ୍ତି ନାଗତଂ ।
ପଚ୍ଚୁପ୍ପନ୍ନେନ ଯାପେନ୍ତି ତେନ ବଣ୍ଣୋ ପସୀଦତି ॥

ଅର୍ଥାତ୍ ସେମାନେ ଗତର ଶୋଚନା କରନ୍ତି ନାହିଁ ; ଅନାଗତ ବିଷୟରେ ବୃଥା ଭଡ଼ଭଡ଼ ହୁଅନ୍ତି ନାହିଁ ଓ ବର୍ତ୍ତମାନରେ ସନ୍ତୁଷ୍ଟ ରହନ୍ତି । ତେଣୁ ସେମାନଙ୍କର ମୁଖକାନ୍ତି ପ୍ରସନ୍ନ ରହୁଛି ।

## ଅନ୍ତିମ ଅସୁସ୍ଥତା

ଭଗବାନ୍ ବୁଦ୍ଧଙ୍କର ଅନ୍ତିମ ଅସୁସ୍ଥତାର ବର୍ଣ୍ଣନା ମହାପରିନିବ୍ବାନସୁତ୍ତରେ ଦେଖିବାକୁ ମିଳେ । ସେହି ବର୍ଷ ବର୍ଷାଦିନ ପୂର୍ବରୁ ଭଗବାନ ରାଜଗୃହରେ ରହୁଥିଲେ । ସେଠାରୁ ବିଶାଳ ଭିକ୍ଷୁସଂଘ ସହିତ ଯାତ୍ରାକରି ସେ ବୈଶାଳୀରେ ଉପସ୍ଥିତ ହେଲେ ଓ ନିକଟବର୍ତ୍ତୀ

ବେଳୁବ ନାମକ ଗ୍ରାମରେ ନିଜେ ବର୍ଷାବାସ ପାଇଁ ରହିଲେ । ନିଜ ନିଜର ସୁବିଧା ଅନୁସାରେ ବୈଶାଳି ନିକଟରେ ରହିବାକୁ ଭିକ୍ଷୁମାନଙ୍କୁ ଅନୁମତି ଦେଲେ । ସେହି ବର୍ଷାକାଳରେ ଭଗବାନ ଅତ୍ୟନ୍ତ ରୁଗ୍‌ଣ ହୋଇପଡ଼ିଲେ । କିନ୍ତୁ ଭିକ୍ଷୁସଂଘକୁ ନଦେଖି ପରିନିର୍ବାଣ ପ୍ରାପ୍ତ ହେବାକୁ ସେ ଉଚିତ ମନେ କଲେ ନାହିଁ । ତେଣୁ ସେ ସେହି ବ୍ୟାଧିକୁ ସହ୍ୟକରି ନିଜର ଆୟୁଷ କିଛି ଦିନ ବଢ଼ାଇ ଦେଲେ । ସେହି ଅସୁସ୍ଥତାରୁ ସେ ମୁକ୍ତ ହେବାପରେ ଆନନ୍ଦ ତାଙ୍କୁ ଦେଖି କହିଲେ, "ଭଦନ୍ତ ! ଆପଣ ସୁସ୍ଥ ହୋଇଥିବାର ଦେଖି ମତେ ବଡ଼ ସନ୍ତୋଷ ଲାଗୁଛି । ଆପଣଙ୍କ ଏହି ଅସୁସ୍ଥତାରେ ମୋ ମନ ବଡ଼ ଦୁର୍ବଳ ହୋଇପଡ଼ିଥିଲା । ମତେ କିଛି ଭଲ ଲାଗୁ ନ ଥିଲା; ପୁଣି ଧର୍ମୋପଦେଶ ଗୁଡ଼ିକ ବିସ୍ମୃତ ହେବାକୁ ବସିଥିଲା । ତଥାପି ମୋର ଏହି ଆଶା ଥିଲା ଯେ, ଭିକ୍ଷୁସଂଘକୁ ଅନ୍ତିମ ଉପଦେଶ ନଦେଇ ଭଗବାନ ପରିନିର୍ବାଣ ପ୍ରାପ୍ତ ହେବେ ନାହିଁ ।"

ଭଗବାନ—"ହେ ଆନନ୍ଦ ! ଭିକ୍ଷୁସଂଘ ମୋଠାରୁ କିଭଳି କଥା ଶୁଣିବାକୁ ଇଚ୍ଛା କରନ୍ତି ? ମୁଁ ମୋ ଧର୍ମ ସ୍ପଷ୍ଟ ଭାବରେ ବୁଝାଇ ଦେଇଛି; ସେଥିରେ କୌଣସି କଥା ଲୁଚାଇ ରଖିନାହିଁ । ତେବେ ଏପରି ବୋଧ ହୋଇ ପାରେ—ସେ ତ ଭିକ୍ଷୁ ସଂଘର ନାୟକ ଓ ଭିକ୍ଷୁସଂଘ ତାଙ୍କଠାରେ ଆଶ୍ରିତ; ସେ ଭିକ୍ଷୁସଂଘକୁ କିଛି ଶେଷକଥା କହିବେ । କିନ୍ତୁ ହେ ଆନନ୍ଦ ! ତଥାଗତଙ୍କର ଇଚ୍ଛା ନାହିଁ ଯେ, ସେ ଭିକ୍ଷୁସଂଘର ନେତା ହେବେ ଓ ତାଙ୍କୁ ଭିକ୍ଷୁସଂଘ ଆଶାକରି ରହିବେ । ତାହାହେଲେ ତଥାଗତ ଭିକ୍ଷୁସଂଘକୁ ଶେଷରେ କଣ କହିବେ ? ହେ ଆନନ୍ଦ ! ମୁଁ ବର୍ତ୍ତମାନ ଜୀର୍ଣ୍ଣ ଓ ବୃଦ୍ଧ ହୋଇଗଲେଣି, ଅଶି ବର୍ଷ ହୋଇଗଲାଣି । ଭଙ୍ଗାରୁଜା ଶଗଡ଼ ଯେପରି ଖଣ୍ଡେ ବାଉଁଶରେ

ଯୋଡ଼ାଯୋଡ଼ ହୋଇ କଷ୍ଟେମଷ୍ଟେ ଗ୍ଭଲେ, ମୁ ସେହିପରି ମୋ ଶରୀରକୁ ନେଇ କଷ୍ଟେମଷ୍ଟେ ଗ୍ଭଲୁଛି । ମୁଁ ଯେତେବେଳେ ନିରୋଧ ସମାଧିର ଭାବନା କରୁଛି, ସେତେବେଳେ ମୋତେ ଟିକିଏ ଭଲ ଲାଗୁଛି । ଏହି ହେତୁରୁ, ହେ ଆନନ୍ଦ ଏବେ ତୁମେ ସ୍ୱାବଲମ୍ବୀ ହୁଅ, ଆତ୍ମ ନିର୍ଭରଶୀଳ ହୁଅ । ଆତ୍ମାକୁ ଦୀପ କର, ଧର୍ମକୁ ଦୀପକର । ଆତ୍ମାଠାରେ ଶରଣ ପଶ, ଧର୍ମଠାରେ ଶରଣ ପଶ ।

ଏହିପରି ଅବସ୍ଥାରେ ଭଗବାନ ବେଳୁବ ଗ୍ରାମରୁ ବୈଶାଳି ଫେରି ଯାଇଥିଲେ । ସେଠାରୁ ଆନନ୍ଦଙ୍କୁ ପଠାଇ ମହାବନର କୂଟାଗାର ଶାଳାରେ ଭିକ୍ଷୁସଂଘକୁ ରୁଣ୍ଡ କରାଇଲେ ଓ ସେମାନଙ୍କୁ ବହୁ ଉପଦେଶ ଦେଲେ । ତାହାପରେ ସେ ଭିକ୍ଷୁସଂଘ ସହିତ ଭଣ୍ଡଗ୍ରାମ, ହସ୍ତିଗ୍ରାମ, ଆମ୍ରଗ୍ରାମ, ଜମ୍ବୁଗ୍ରାମ ଭୋଗନଗର ପ୍ରଭୃତି ସ୍ଥାନ ଭ୍ରମଣ କରି ପାବା ନାମକ ନଗରୀରେ ଲୋହାର ଚୁନ୍ଦଙ୍କ ଆମ୍ରବନରେ ଯାଇ ଅବସ୍ଥାନ କଲେ । ଚୁନ୍ଦ ନିଜ ଘରକୁ ଭଗବାନଙ୍କୁ ଓ ଭିକ୍ଷୁସଂଘକୁ ନିମନ୍ତ୍ରଣ କରିଥିଲେ । ସେ ସେମାନଙ୍କୁ ଯେଉଁ ପକ୍ୱାନ୍ନ ଦେଇଥିଲେ ତହିଁରେ "ସୂକର ମଦ୍ଦବ" ନାମକ ଏକ ପଦାର୍ଥ ଥିଲା । ତାହା ଭୋଜନ କରି ଭଗବାନ ଅତିସାର ରୋଗ ପୀଡ଼ିତ ହୋଇପଡ଼ିଲେ । ତଥାପି ସେ ସେହି ପୀଡ଼ା ସହ୍ୟକରି କୁକୁତ୍‌ଥା ଏବଂ ହିରଣ୍ୟବତୀ ନାମକ ଦୁଇଟି ନଦୀପାରି ହୋଇ କୁସିନାରା ପର୍ଯ୍ୟନ୍ତ ଯାତ୍ରାକଲେ । ସେଠାରେ ମଲ୍ଲମାନଙ୍କର ଶାଳବନରେ, ସେହି ରାତିର ଅନ୍ତିମଯାମରେ ସେ ପରିନିର୍ବାଣ ଲାଭକଲେ । ଏହିଭଳି ଭାବରେ ଭଗବାନଙ୍କ ଅତ୍ୟନ୍ତ ବୋଧପ୍ରଦ ଓ କଲ୍ୟାଣପ୍ରଦ ଜୀବନର ଅବସାନ ହୋଇଗଲା ।

---

# ପରିଶିଷ୍ଟ

## ଗୌତମ ବୁଦ୍ଧଙ୍କ ଜୀବନୀ ବିଷୟକ ମହାପଦାନ ସୁତ୍ତର ଅଂଶ

'ଅପଦାନ' (ସଂସ୍କୃତ, ଅବଦାନ)ର ଅର୍ଥ ହେଉଛି ସଚ୍ଚରିତ୍ର ଅର୍ଥାତ 'ମହାପଦାନ'ର ଅର୍ଥ ହେଉଛି, ମହାପୁରୁଷମାନଙ୍କର ସଚ୍ଚରିତ୍ର । ମହାପଦାନ ସୂତ୍ତରେ ଗୌତମ ବୁଦ୍ଧଙ୍କ ପୂର୍ବବର୍ତ୍ତୀ ୬ଜଣ ବୁଦ୍ଧ ଓ ଗୌତମ ବୁଦ୍ଧଙ୍କ ଚରିତ୍ର ସଂକ୍ଷେପ ଭାବରେ ଦିଆଯାଇଛି । ଗୌତମ ବୁଦ୍ଧଙ୍କ ଆଗରୁ ସିଖୀ, ବିପସ୍‌ସୀ, ବେସ୍‌ସଭୁ, କକୁସନ୍ଧ, କୋଣାଗମନ ଓ କସ୍‌ସପ ଏହି ଛଅଜଣ ବୁଦ୍ଧ ହୋଇଥିଲେ । ଏମାନଙ୍କ ମଧ୍ୟରୁ ପ୍ରଥମ ତିନିଜଣ କ୍ଷତ୍ରିୟ ଓ ଶେଷ ଜଣଙ୍କ ହେଉଛନ୍ତି ବ୍ରାହ୍ମଣ । ସେମାନଙ୍କର ଗୋତ୍ର, ଆୟୁ ସେହି ବୃକ୍ଷର ନାମ (ଯାହାତଳେ ବସି ସେମାନେ ବୁଦ୍ଧ ହୋଇଥିଲେ)

ସେମାନଙ୍କ ଦୁଇଜଣ ମୁଖ୍ୟ ଶିଷ୍ୟ, ସେମାନଙ୍କ ସଂଘର ଭିକ୍ଷୁ ସଂଖ୍ୟା, ସେମାନଙ୍କର ଉପସ୍ଥାପକ (ସେବକ ଭିକ୍ଷୁ) ପିତାମାତା, ସେ ସମୟର ରାଜା ଏବଂ ରାଜଧାନୀ ପ୍ରଭୃତିର ନାମ, ଇତ୍ୟାଦି ବିଷୟରେ ବହୁ କଥା ସେଇ ସୂତ୍ର ପ୍ରାରମ୍ଭରେ ଦିଆଯାଇଛି । ପୁଣି ବିପସ୍‌ସୀ ବୁଦ୍ଧଙ୍କ କଥା ବିସ୍ତୃତ ଭାବରେ କୁହାଯାଇଛି । ଏହି ପୌରାଣିକ ଚରିତର ଯେଉଁ ଅଂଶ ଗୌତମ ବୁଦ୍ଧଙ୍କ ଜୀବନରେ ଯୋଡ଼ି ଦିଆଯାଇଛି ତାହାର ସାରାଂଶ ଏଠାରେ ଦିଆଯାଉଛି । (୧)

(୧)

ଭଗବାନ କହିଲେ—"ହେ ଭିକ୍ଷୁଗଣ ଏଥି ପୂର୍ବରୁ ଏକାନବେ କଳ୍ପରେ ଅର୍ହତ ସମ୍ୟକ୍ ସଂବୁଦ୍ଧ ବିପସ୍‌ସୀ ଭଗବାନ ଏହି ଲୋକରେ ଜନ୍ମଗ୍ରହଣ କରିଥିଲେ । ଜାତିରେ ସେ ଥିଲେ କ୍ଷତ୍ରିୟ ଓ ତାଙ୍କର ଗୋତ୍ରଥିଲା କୌଣ୍ଡିନ୍ୟ । ତାଙ୍କର ଆୟୁଷ ୮୦ ହଜାର ବର୍ଷ । ସେ ପାଟଲୀ ବୃକ୍ଷତଳେ ଅଭିସଂବୁଦ୍ଧ ହୋଇଥିଲେ । ଖଣ୍ଡ ଏବଂ ତିସ୍‌ସ ନାମରେ ତାଙ୍କର ଦୁଇଜଣ ମୁଖ୍ୟ ଶ୍ରାବକ ଥିଲେ ଓ ତାଙ୍କ ଶିଷ୍ୟମାନଙ୍କର ତିନୋଟି ସଙ୍ଘ ଥିଲା । ପ୍ରଥମଟିରେ ଅଠଷଠି ଲକ୍ଷ ଦ୍ୱିତୀୟଟିରେ ଏକ ଲକ୍ଷ ଏବଂ ତୃତୀୟଟିରେ (୧) ଅଶି ଲକ୍ଷ ଶିଷ୍ୟ ଥିଲେ । ଏ ସମସ୍ତେ ଥିଲେ କ୍ଷୀଣାଶ୍ରବ । ଅଶୋକ ନାମକ ଭିକ୍ଷୁ ସେମାନଙ୍କର ମୁଖ୍ୟ ଉପସ୍ଥାପକ ଥିଲେ, ବନ୍ଧୁମା ନାମକ ରାଜା ଥିଲେ ତାଙ୍କର ପିତା ଓ ରାଣୀ ବନ୍ଧୁମତୀ ଥିଲେ ମାତା । ପୁଣି ବନ୍ଧୁମା ରାଜାଙ୍କ ରାଜଧାନୀ ଥିଲା ବନ୍ଧୁମତୀ ।

(୧) ସମଗ୍ର ସୂତ୍ରର ମରାଠୀ ଅନୁବାଦ ହୋଇଛି ଦେଖନ୍ତୁ—ରାଜବାଡ଼େ କୃତ 'ଦୀଘନିକାୟ' ଅନୁବାଦ—(ପ୍ରକାଶକ ମଣ୍ଡଳୀ ନଂ ୩୮୦, ଠାକୁର ଦ୍ୱାର ରୋଡ଼, ବୋମ୍ବେ)

(୨)

(୧) ଭିକ୍ଷୁଗଣ ! ତପସ୍ୱୀ ବୋଧିସତ୍ତ୍ୱ ତୁଷିତ ଦେବଲୋକରୁ ଚ୍ୟୁତ ହୋଇ ସ୍ମୃତିମାନ ହୋଇ ମାତୃ ଗର୍ଭରେ ପ୍ରବେଶ କଲେ । ଏହାତ ଏଠାର ସ୍ୱାଭାବିକ ନିୟମ ।

(୨) ଭିକ୍ଷୁଗଣ ! ଯେତେବେଳେ ବୋଧିସତ୍ତ୍ୱ ତୁଷିତ ଦେବଲୋକରୁ ଚ୍ୟୁତ ହୋଇ ମାତୃ ଗର୍ଭରେ ପ୍ରବେଶ କଲେ ସେତେବେଳେ ଦେବ, ମାର, ବ୍ରହ୍ମା, ଶ୍ରମଣ, ବ୍ରାହ୍ମଣ ଏବଂ ମନୁଷ୍ୟପୂର୍ଣ୍ଣ ଏହି ସଂସାରରେ ଦେବତା ମାନଙ୍କର ପ୍ରଭାବରୁ ମଧ ଅଧିକ ଅପ୍ରମାଣ ଏବଂ ବିପୁଳ ଆଲୋକର ପ୍ରାଦୁର୍ଭାବ ହେଲା । ବିଭିନ୍ନ ଜଗତମାନଙ୍କ ମଧ୍ୟରେ ଯେଉଁ ଦେଶ ସର୍ବଦା ଅନ୍ଧକାର-ମୟ ଓ ଘୋର ତମିସ୍ରାଛନ୍ନ, ଯେଉଁଠାରେ ପ୍ରବଳ ପ୍ରତାପୀ ଓ ମହାନୁଭାବ ଚନ୍ଦ୍ର ସୂର୍ଯ୍ୟଙ୍କର ପ୍ରଭାବ ଅନୁଭୂତ ହୁଏନାହିଁ, ସେଠାରେ ମଧ ଦେବତାମାନଙ୍କ ପ୍ରଭାବରୁ ଅଧିକ ଅପ୍ରମାଣ ଏବଂ ବିପୁଳ ପ୍ରଭା ପ୍ରକାଶ ଲାଭକଲା । ସେହି ପ୍ରଦେଶରେ ଜାତ ପ୍ରାଣୀମାନେ ସେହି ଆଲୋକରେ ପରସ୍ପରକୁ ଦେଖିପାରି ଜାଣିଲେ ଯେ, ତାଙ୍କ ଛଡ଼ା ଅନ୍ୟ ପ୍ରାଣୀ ମଧ ଅଛନ୍ତି । ସେଠାରେ ଦଶ ସହସ୍ର ସଂସାରର ସମଷ୍ଟି ଦୋଲାୟମାନ ହେଲପରି ବୋଧହୁଏ ଏବଂ ସେହି ସଂସାରରେ ଦେବତାମାନଙ୍କର ପ୍ରଭାବକୁ ବଳି ପଡ଼ୁଥିବା ବିପୁଳ କାନ୍ତି ପ୍ରକାଶ ଲାଭ କରେ । ଏହା ସ୍ୱଭାବ ନିୟମ ।

( ୩ ) ଭିକ୍ଷୁଗଣ ! ଏହା ସ୍ୱଭାବ ନିୟମ ଯେ, ଯେତେବେଳେ ବୋଧିସତ୍ତ୍ୱ ମାତୃ ଗର୍ଭରେ ପ୍ରବେଶ କରନ୍ତି ସେତେବେଳେ ତାଙ୍କୁ ଓ ତାଙ୍କ ମାତାଙ୍କୁ ମନୁଷ୍ୟ କିମ୍ବା ମନୁଷ୍ୟେତର ପ୍ରାଣୀଠାରୁ ଯେପରି

କୌଣସି ବାଧା ନଲାଗେ ସେ ସେଥିନିମନ୍ତେ ଚାରିଦିଗରେ ଚାରିଜଣ ଦେବପୁତ୍ର ରହନ୍ତି । ଏହା ହେଉଛି ସ୍ୱଭାବ ନିୟମ ।

(୪) ଭିକ୍ଷୁଗଣ ! ଯେତେବେଳେ ବୋଧିସତ୍ତ୍ୱ ମାତୃ ଗର୍ଭରେ ପ୍ରବେଶ କରନ୍ତି ସେତେବେଳେ ତାଙ୍କ ମାତା ସ୍ୱାଭାବିକ ଭାବରେ ଶୀଳବତୀ ହୁଅନ୍ତି ଓ ସେ ପ୍ରାଣଘାତ, ଚୋରି ବ୍ୟଭିଚାର ଅସତ୍ୟ ଭାଷଣ ଓ ମଦ୍ୟପାନରୁ ମୁକ୍ତ ରହନ୍ତି । ଏହା ହେଉଛି ସ୍ୱଭାବ ନିୟମ ।

(୫) ଭିକ୍ଷୁଗଣ ! ବୋଧିସତ୍ତ୍ୱ ଯେତେବେଳେ ମାତୃଗର୍ଭରେ ପ୍ରବେଶ କରନ୍ତି ସେତେବେଳେ ତାଙ୍କ ମାତାଙ୍କ ଅନ୍ତଃକରଣରେ ପୁରୁଷଙ୍କ ପ୍ରତି କାମାସକ୍ତି ଜାତ ହୁଏନାହିଁ ଏବଂ କୌଣସି ପୁରୁଷ କାମ ବିକାର ଯୁକ୍ତ ଚିତ୍ତରେ ବୋଧିସତ୍ତ୍ୱଙ୍କ ମାତାଙ୍କୁ ଅତିକ୍ରମଣ କରନ୍ତି ନାହିଁ । ଏହା ହେଉଛି ସ୍ୱଭାବ ନିୟମ ।

(୬) ଭିକ୍ଷୁଗଣ ! ଯେତେବେଳେ ବୋଧିସତ୍ତ୍ୱ ମାତୃ ଗର୍ଭରେ ପ୍ରବେଶ କରନ୍ତି । ସେତେବେଳେ ତାଙ୍କର ଜନନୀ ପାଞ୍ଚଟି ସୁଖୋପଭୋଗ ଲାଭକରନ୍ତି । ସେଇ ପାଞ୍ଚଟିରେ ସମ୍ପନ୍ନ ହୋଇ ସେ ତାହା ଉପଭୋଗ କରନ୍ତି, ଏହା ହେଉଛି ସ୍ୱାଭାବିକ ନିୟମ ।

(୭) ଭିକ୍ଷୁଗଣ ! ଯେତେବେଳେ ବୋଧିସତ୍ତ୍ୱ ମାତୃ ଗର୍ଭରେ ପ୍ରବେଶ କରନ୍ତି ସେତେବେଳେ ତାଙ୍କ ମାତାଙ୍କୁ କୌଣସି ହେଲେ ବ୍ୟାଧି ହୁଏ ନାହିଁ । ସେ ସୁଖରେ ଓ ନିରୁପଦ୍ରବ ଭାବରେ ରହନ୍ତି ପୁଣି ନିଜ ଗର୍ଭରେ ରହିଥିବା ସର୍ବେନ୍ଦ୍ରିୟ ସମ୍ପୂର୍ଣ୍ଣ ବୋଧିସତ୍ତ୍ୱଙ୍କୁ ଦେଖି ପାରନ୍ତି । ଯେପରିକି କୌଣସି ଅଷ୍ଟକୋଣ ହୋଇ ଘସାହୋଇ ତିଆରି କରାଯାଇଥିବା ସ୍ୱଚ୍ଛ, ଶୁଦ୍ଧ ସର୍ବାକାର

ପରିପୂର୍ଣ୍ଣ ବୈଦୁର୍ଯ୍ୟମଣିରେ ନୀଳ, ପୀତ, ରକ୍ତ ବା ଶୁକ୍ଳ ବର୍ଣ୍ଣର ରେଖା ନଜରାଇ ଦିଆ ଗଲେ ଯେପରି ମଣି ଏବଂ ତାର ଗୁନ୍ଥକ ଚକ୍ଷୁଷ୍ମାନ ମନୁଷ୍ୟକୁ ଦେଖାଯାଏ ସେହିପରି ବୋଧିସତ୍ତ୍ୱଙ୍କ ମାତା ଗର୍ଭସ୍ଥ ବୋଧିସତ୍ତ୍ୱଙ୍କୁ ସ୍ପଷ୍ଟ ଦେଖି ପାରନ୍ତି, ଏହା ହେଉଛି ସ୍ୱଭାବ ନିୟମ ।

(୮) ଭିକ୍ଷୁଗଣ ! ବୋଧିସତ୍ତ୍ୱ ଜନ୍ମ ହେବାର ସାତ ଦିନପରେ ତାଙ୍କ ମାତାଙ୍କର ମୃତ୍ୟୁ ହୁଏ ଓ ସେ ତୁଷିତ ଦେବଲୋକରେ ଜନ୍ମ ହୁଅନ୍ତି । ଏହା ହେଉଛି ସ୍ୱଭାବ ନିୟମ ।

(୯) ଭିକ୍ଷୁଗଣ ! ସାଧାରଣ ସ୍ତ୍ରୀମାନେ ଯେଉଁପରି ନବମ ବା ଦଶମ ମାସରେ ସନ୍ତାନ ପ୍ରସବ କରନ୍ତି, ବୋଧିସତ୍ତ୍ୱଙ୍କ ମାତା ସେପରି କରନ୍ତି ନାହିଁ । ଦଶମାସ ସମ୍ପୂର୍ଣ୍ଣ ହେବା ପରେ ହିଁ ସେ ବୋଧିସତ୍ତ୍ୱଙ୍କୁ ପ୍ରସବ କରନ୍ତି । ଏହା ହେଉଛି ସ୍ୱଭାବ ନିୟମ ।

(୧୦) ଭିକ୍ଷୁଗଣ ! ଅନ୍ୟସ୍ତ୍ରୀମାନେ ଯେପରି ବସି ବା ଶୋଇକରି ସନ୍ତାନ ପ୍ରସବ କରନ୍ତି, ବୋଧିସତ୍ତ୍ୱଙ୍କ ମାତା ସେପରି କରନ୍ତି ନାହିଁ । ସେ ଠିଆ ଠିଆରେ ସନ୍ତାନ ପ୍ରସବ କରନ୍ତି । ଏହା ହେଉଛି ସ୍ୱଭାବ ନିୟମ ।

(୧୧) ଭିକ୍ଷୁଗଣ ! ମାତୃ ଗର୍ଭରୁ ଯେତେବେଳେ ବୋଧିସତ୍ତ୍ୱ ବାହାରି ଆସନ୍ତି, ତାଙ୍କୁ ପ୍ରଥମେ ଦେବତା ମାନେ ନେଇଯାଆନ୍ତି ଓ ପରେ ମନୁଷ୍ୟମାନେ ଉଠାଇ ଦିଅନ୍ତି, ଏହା ହେଉଛି ସ୍ୱଭାବ ନିୟମ ।

(୧୨) ଭିକ୍ଷୁଗଣ ! ଯେତେବେଳେ ବୋଧିସତ୍ତ୍ୱ ମାତୃ ଗର୍ଭରୁ ବାହାରକୁ ଆସନ୍ତି ସେତେବେଳେ ସେ ଭୂମିଷ୍ଠ ହେବା ଆଗରୁ

ଗୃହଜଣ ଦେବପୁତ୍ର ତାଙ୍କୁ ନେଇ ମାତାଙ୍କ ଆଗରେ ରଖି ଦେଇ କହନ୍ତି, "ଆନନ୍ଦମନା ଦେବୀ ! ତୁମର ମହାନୁଭବ ପୁତ୍ର ହୋଇଛି ।" ଏହା ହେଉଛି ସ୍ୱଭାବ ନିୟମ ।

(୧୩) ଭିକ୍ଷୁଗଣ ! ବୋଧିସତ୍ତ୍ୱ ଯେତେବେଳେ ମାତୃ ଗର୍ଭରୁ ବାହାର ଆସନ୍ତି ସେତେବେଳେ ସେ ଉଦକୋଦକ, ଶ୍ଳେଷ୍ମା, ରକ୍ତ, ବା ଅନ୍ୟ କଦର୍ଯ୍ୟ ପଦାର୍ଥରେ ଲିପ୍ତ ହୁଅନ୍ତି ନାହିଁ—ସେ ଶୁଦ୍ଧ ଓ ସ୍ୱଚ୍ଛ ରୂପରେ ବାହାର ଆସନ୍ତି । ଭିକ୍ଷୁଗଣ, ରେଶମୀଲୁଗା ଉପରେ ବହୁ ମୂଲ୍ୟ ରତ୍ନ ଖଣ୍ଡ ରଖିଦେଲେ ସେହି ରତ୍ନ ଲୁଗାକୁ ଅପରିଷ୍କାର କରେ ନାହିଁ କିମ୍ବା ବସ୍ତ୍ର ରତ୍ନକୁ ମଳିନ କରେନାହିଁ, କାରଣ ଉଭୟ ପଦାର୍ଥ ହେଉଛି ଶୁଦ୍ଧ । ସେଇପରି ବୋଧିସତ୍ତ୍ୱ ଯେତେବେଳେ ବାହାରକୁ ଆସନ୍ତି ସେତେବେଳେ ସେ ଶୁଦ୍ଧ ରହିଥାନ୍ତି ଏହା ହେଉଛି ସ୍ୱଭାବ ନିୟମ ।

(୧୪) ଭିକ୍ଷୁଗଣ ! ବୋଧିସତ୍ତ୍ୱ ଯେତେବେଳେ ମାତୃ ଗର୍ଭରୁ ବାହାର ଆସନ୍ତି ସେତେବେଳେ ଆକାଶରୁ ଦୁଇଟି ଜଳଧାର ତଳକୁ ଖସି ଆସେ ତହିଁରୁ ଗୋଟିଏ ହେଉଛି ଶୀତଳ ଓ ଅନ୍ୟଟି ଉଷ୍ଣ । ଏହି ଧାର ଦୁଇଟି ବୋଧିସତ୍ତ୍ୱ ଏବଂ ତାଙ୍କ ମାତାଙ୍କୁ ଧୋଇ ଦିଅନ୍ତି । ଏହା ହେଉଛି ସ୍ୱଭାବ ନିୟମ ।

(୧୫) ଭିକ୍ଷୁଗଣ ! ବୋଧିସତ୍ତ୍ୱ ଜନ୍ମହେବା ପରେ ସିଧାସଳଖେ ଗୋଡ଼ରେ ଠିଆ ହୋଇ ଉତ୍ତର ଆଡ଼କୁ ସାତ ପାଦ ଚାଲନ୍ତି । ସେହି ସମୟରେ ତାଙ୍କର ମୁଣ୍ଡ ଉପରେ ଶ୍ୱେତ ଛତ୍ର ଉତ୍ତୋଳିତ ହୋଇଥାଏ । ଚାରିଆଡ଼କୁ ଚାହିଁ ସେ ଉଚ୍ଚରେ କହନ୍ତି, ଏବଂ କହନ୍ତି ମୁଁ ସଂସାରରେ ଅଗ୍ରଗାମୀ, ମୁଁ ଶ୍ରେଷ୍ଠ । ଏ ହେଉଛି ମୋର ଶେଷ

ଜନ୍ମ । ଏଣିକ ଆଉ ପୁନର୍ଜନ୍ମ ନାହିଁ ।" ଏହା ହେଉଛି ସ୍ୱଭାବ ନିୟମ ।

(୧୬) ଭିକ୍ଷୁଗଣ ! ଯେତେବେଳେ ବୋଧିସତ୍ତ୍ୱ ମାତୃ ଗର୍ଭରୁ ବାହାରି ଆସନ୍ତି ସେତେବେଳେ ଦେବ, ମାର, ବ୍ରହ୍ମା ( ପ୍ରଭୃତି କଥା ଦ୍ୱିତୀୟ ବିଭାଗ ଅନୁସାରେ )·········

( ୩ )

ଭିକ୍ଷୁଗଣ ! ରାଜକୁମାର ବିପସ୍ସୀ ଜନ୍ମ ହେବାକ୍ଷଣି ବନ୍ଧୁମା ରାଜାଙ୍କୁ, "ମହାରାଜ ! ଆପଣଙ୍କର ପୁଅ ହୋଇଛି । ତାଙ୍କୁ ଆପଣ ଦେଖନ୍ତୁ" ବୋଲି ସମ୍ବାଦ ଦିଆଗଲା । ଭିକ୍ଷୁଗଣ ! ରାଜା ବନ୍ଧୁମା ବିପସ୍ସୀକୁମାରଙ୍କୁ ଦେଖିଲେ ଏବଂ ଜ୍ୟୋତିଷୀ ବ୍ରାହ୍ମଣଙ୍କୁ ଡକାଇ ତାଙ୍କର ଲକ୍ଷଣ ଦେଖିବାକୁ କହିଲେ ।

ଜ୍ୟୋତିଷୀ କହିଲେ, "ମହାରାଜ ! ଆନନ୍ଦ ଉତ୍ସବ କରନ୍ତୁ । ଆପଣଙ୍କର ମହାନୁଭାବ ପୁତ୍ର ହୋଇଛି । ଆପଣଙ୍କର ପରମ ସୌଭାଗ୍ୟ ଯେ ଆପଣଙ୍କ ବଂଶରେ ଏଭଳି ପୁତ୍ର ଜନ୍ମ ହୋଇଛି । ଏଇପୁତ୍ର ବତିଶ ମହାଲକ୍ଷଣ ଯୁକ୍ତ ହୋଇଛି । ଏହି ମହାପୁରୁଷ ମାନଙ୍କର ଦ୍ୱିବିଧ ଗତି ହୁଏ, ତୃତୀୟ ନାସ୍ତି । ଏ ଯଦି ଗୃହସ୍ଥାଶ୍ରମରେ ରହିବେ, ତେବେ ଧାର୍ମିକ, ଧର୍ମରାଜ, ଚାରି ସମୁଦ୍ର ବେଷ୍ଟିତ ଧରଣୀର ଅଧିପତି, ରାଜ୍ୟରେ ଶାନ୍ତି ସ୍ଥାପକ, ସପ୍ତରତ୍ନ ସମନ୍ୱିତ ରାଜଚକ୍ରବର୍ତ୍ତୀ ହେବେ । ସେହି ସାତରତ୍ନ ହେଉଛି—ଚକ୍ରରତ୍ନ, ହସ୍ତିରତ୍ନ, ଅଶ୍ୱରତ୍ନ, ମଣିରତ୍ନ, ସ୍ତ୍ରୀ ରତ୍ନ, ଗୃହପତି ରତ୍ନ ଓ ସପ୍ତମ ହେଉଛି ପରିଣାୟକ ରତ୍ନ (୧) । ତାଙ୍କର ସହସ୍ରାଧିକ ବୀର, ଶତ୍ରୁସେନା ମର୍ଦ୍ଦନକାରୀ ପୁତ୍ର ହୁଅନ୍ତି ।

(୧) ପରିଣାୟକର ଅର୍ଥ ହେଉଛି ପ୍ରଧାନମନ୍ତ୍ରୀ ।

ସେ ଆସମୁଦ୍ର ପ୍ରସାରିତ ପୃଥ୍ୱୀକୁ ବିନା ଦଣ୍ଡ ଓ ଶସ୍ତ୍ରରେ, ଧର୍ମଦ୍ୱାରା ଜିଣି ଶାସନ କରନ୍ତି । କିନ୍ତୁ ସେ ଯଦି ପ୍ରବ୍ରଜ୍ୟା ଗ୍ରହଣ କରନ୍ତି, ତେବେ ସେ ଅର୍ହତ ସମ୍ୟକ୍ ସମ୍ବୁଦ୍ଧ ହୁଅନ୍ତି ଓ ଅବିଦ୍ୟାବରଣ ଦୂର କରନ୍ତି ।

ମହାରାଜ ! ବତିଶ ଲକ୍ଷଣ କଣ, ଶୁଣନ୍ତୁ । ୧ । ଏହି କୁମାର ସୁପ୍ରତିଷ୍ଠିତ ପାଦ ଅଟନ୍ତି । ୨ । ଏହାଙ୍କ ତଳପାରେ ସହସ୍ର ଅର, ନେମି ଓ ନାଭି ଯୁକ୍ତ ଏବଂ ସବାକାର ପରିପୂର୍ଣ୍ଣ ଚକ୍ରଅଛି । ୩ । ଏହାଙ୍କ ଗୋଇଠି ଲମ୍ବା । ୪ । ଏହାଙ୍କ ଆଙ୍ଗୁଠି ଲମ୍ବା । ୫ । ଏହାଙ୍କ ହାତ ତଥା ପାଦ ମୃଦୁ ଓ କୋମଳ । ୬ । ଯୋଗ ସୁନ୍ଦର । ୭ । ନଳଗଣ୍ଠି ଶଙ୍ଖପରି ଗୋଲକାର । ୮ । ଜଙ୍ଘ ହରିଣୀର ଜଙ୍ଘ ପରି । ୯ । ଠିଆହୋଇ ନ ଲଇଁ ଏ ନିଜ ପାପୁଲିରେ ଆଣ୍ଠୁର ଗଣ୍ଠିକୁ ସ୍ପର୍ଶ କରି ପାରନ୍ତି । ୧୦ । ଏହାଙ୍କ ବସ୍ତ୍ର ଗୁହ୍ୟ-କୋଷ ଆଚ୍ଛାଦନ କରେ । ୧୧ । ଏହାଙ୍କ କାନ୍ତି କନକ ତୁଲ୍ୟ । ୧୨ । ଚମ ପତଳା ହେତୁ ଏହାଙ୍କ ଦେହରେ ଧୂଳି ଲାଗେ ନାହିଁ । । ୧୩ । ଏହାଙ୍କ ଲୋମକୂପରୁ ଗୋଟିଏ ଗୋଟିଏ ବାଳ ଉଠିଛି । ୧୪ । ଏହାଙ୍କ ବାଳ ଠିଆ ଠିଆ, ନୀଳ, କଜ୍ଜଳ ବର୍ଣ୍ଣ, ଘଞ୍ଚ ଏବଂ ଡାହାଣ ପଟକୁ ଢଳ ପଡ଼ିଛି । ୧୫ । ଏହାଙ୍କ ଦେହ ସଳଖ । ୧୬ । ଏହାଙ୍କ ଦେହର ସାତ ଭାଗ ଟାଣୁଆ । ୧୭ । ଏହାଙ୍କ ଦେହର ଅନ୍ୟ ଅଧାଭାଗ ସିଂହର ଆଗୁଆ ଭାଗ ସଙ୍ଗେ ସମାନ । ୧୮ । ଏହାଙ୍କ କାନ୍ଧର ଉପର ଭାଗ ଟାଣୁଆ । ୧୯ । ବଟ ବୃକ୍ଷ ପରି ଏ ଗୋଲକାର ଅଟନ୍ତି, ଏ ଯେତିକ ଉଚ୍ଚ ସେତିକ ଯୁାଙ୍କର ପରିଧି ; ପୁଣି ଯେମିତି ପରିଧି ସେମିତି ଉଚ୍ଚ । ୨୦ । ଏହାଙ୍କ କାନ୍ଧ ସମ ଭାବରେ ଗଡ଼ାଣିଆ । ୨୧ । ଏହାଙ୍କ ଜିହ୍ୱା ଉତ୍ତମ । ୨୨ । ଥୋଡ଼ି ସିଂହ ଥୋଡ଼ି ଭଳି । ୨୩ । ଏହାଙ୍କର ୪୦ଟି ଦାନ୍ତ ।

୨୪ । ସେଗୁଡ଼ିକ ସିଧା ସଳଖ । ୨୫ । ସେଗୁଡ଼ିକ ଅତି ଲଗାଲଗି । ୨୬ । ସେଗୁଡ଼ିକ ଶୁଭ୍ର । ୨୭ । ଏହାଙ୍କ ଜିଭ ଲମ୍ୱା । ୨୮ । ଏ ହେଉଛନ୍ତି ବ୍ରହ୍ମସ୍ୱର, ପକ୍ଷୀର ସ୍ୱରପରି ଏହାଙ୍କ ସ୍ୱର ମଧୁର । ୨୯ । ଏହାଙ୍କ ଆଖିର ଡୋଳା ନୀଳବର୍ଣ୍ଣ । ୩୦ । ଏହାଙ୍କ ପଲକ ଗାଈର ପଲକ ପରି । ୩୧ । ଏହାଙ୍କ ଭ୍ରୂଲତାରେ କୋମଳ ତୁଳାର ଅଂଶପରି ଶ୍ୱେତ ବର୍ଣ୍ଣର ରୋମ ଉଠିଛି । ୩୨ । ଏହାଙ୍କ ମସ୍ତକ ଉଷ୍ଣୀଷ ପରି (ଅର୍ଥାତ୍ ମଝିରେ ଟିକିଏ ଉଚ୍ଚ ) ।

( ୪ )

ପୁଣି ହେ ଭିକ୍ଷୁଗଣ ! ଶତ-ସହସ୍ର ବର୍ଷପରେ ରାଜା ବନ୍ଧୁମା ବିପସ୍ସୀକୁମାରଙ୍କ ପାଇଁ ତିନୋଟି ପ୍ରାସାଦ ନିର୍ମାଣ କଲେ । ଗୋଟିଏ ବର୍ଷା ଋତୁ ପାଇଁ, ଗୋଟିଏ ଶୀତ ଋତୁପାଇଁ ଓ ଗୋଟିଏ ଖରାଦିନ ପାଇଁ । ଏହି ପ୍ରାସାଦଗୁଡ଼ିକରେ ପଞ୍ଚେନ୍ଦ୍ରିୟର ସୁଖଲାଗି ସମସ୍ତ ପଦାର୍ଥ ରଖିଦିଆଗଲା । ଭିକ୍ଷୁଗଣ ! ବର୍ଷାକାଳ ପାଇଁ ନିର୍ମିତ ପ୍ରାସାଦରେ ବିପସ୍ସୀ, ବର୍ଷା ଚାରିମାସ କେବଳ ସ୍ତ୍ରୀମାନଙ୍କ ଦ୍ୱାରା ବାଦିତ ବାଦ୍ୟରେ ମୁଗ୍ଧ ହୋଇ ରହୁଥିଲେ ଓ ତଳକୁ ଖସୁ ନଥିଲେ ।

( ୫ )

ପୁଣି, ହେ ଭିକ୍ଷୁଗଣ ! ଶତ-ସହସ୍ର ବର୍ଷପରେ ବିପସ୍ସୀ, ସାରଥିଙ୍କୁ ଡକାଇ କହିଲେ—"ହେ ବନ୍ଧୁ ସାରଥି ! ଭଲ ଭଲ ଯାନ ପ୍ରସ୍ତୁତ କରିରଖ, ପ୍ରକୃତିର ଶୋଭା ଦେଖିବାପାଇଁ ଆମେ ଉଦ୍ୟାନକୁ ଯିବୁ ।" ସାରଥି ଯାନ ନିର୍ମାଣ କଲେ ଓ ବିପସ୍ସୀ ତହିଁରେ ବସି ଉଦ୍ୟାନ ଆଡ଼କୁ ଯିବାପାଇଁ ବାହାରି ପଡ଼ିଲେ । ବାଟରେ ଜଣେ

ଲଙ୍ଗ ଲଙ୍ଗ ଚାଲୁଥିବା, ଭଗ୍ନଶରୀର, ବାଡ଼ିଧରି ଠକ ଠକ ଚାଲୁଥିବା ରୋଗୀ ବୁଢ଼ାକୁ ଦେଖି ସାରଥିକୁ ପଚାରିଲେ—ଏ ଲୋକର ଅବସ୍ଥା ଏପରି କାହିଁକି ହୋଇଛି ? ଏହାର ବାଳ ଓ ଦେହତ ଅନ୍ୟମାନଙ୍କ ପରି ନୁହେଁ ।

ସାରଥି—"ମହାରାଜ ଏ ଜଣେ ବୁଢ଼ା ଲୋକ ।

ତପସ୍ୱୀ—"ବନ୍ଧୁ ସାରଥି ! ବୁଢ଼ାର ଅର୍ଥ କଣ ?

ସାରଥି—"ବୁଢ଼ାର ଅର୍ଥ ହେଉଛି, ଏ ଆଉ ବେଶୀଦିନ ବଞ୍ଚିବ ନାହିଁ ।

ତପସ୍ୱୀ—"କଣ, ମୁଁ ମଧ୍ୟ ଏପରି ଜରାଧର୍ମୀ ।"

ସାରଥି—"ମହାରାଜ, ଆମେ ସମସ୍ତେ ଜରାଧର୍ମୀ ।

ତପସ୍ୱୀ—ତାହା ହେଲେ, ସାରଥି ! ଏବେ ଆଉ ଉଦ୍ୟାନ ଆଡ଼କୁ ଯିବାନାହିଁ, ପ୍ରାସାଦକୁ ଫେରିଯିବା ।

ସାରଥି—"ଭଲ କଥା ମହାରାଜ ।"

ଏତିକି ମାତ୍ର କହି ସାରଥି ରଥ ନେଇ ଅନ୍ତଃପୁରକୁ ଚାଲିଗଲା । ସେଠାରେ କୁମାର ତପସ୍ୱି ଦୁଃଖିତ ଓ ଉଦ୍‌ଭଗ୍ନ ହୋଇ ଭାବିଲେ—ଯେଉଁ ଜନ୍ମ ଫଳରେ ଜରାର ଉତ୍ପତ୍ତି, ସେହି ଜନ୍ମକୁ ଧିକ୍ ।

ରାଜା ବନ୍ଧୁମା ସାରଥିଙ୍କୁ ଡକାଇ ପଚାରିଲେ, "ସାରଥି, କ'ଣ କୁମାରଙ୍କ ମନ ଉଦ୍ୟାନରେ ପ୍ରସନ୍ନ ହେଲା । ଉଦ୍ୟାନରେ ସେ କ'ଣ ଆନନ୍ଦ ଲାଭକଲେ ।

ସାରଥି—"ନୁହେଁ ମହାରାଜ ।"

ରାଜା—କାହିଁକି ? ଉଦ୍ୟାନକୁ ଯିବାବେଳେ ବାଟରେ ସେ କ'ଣ ଦେଖିଲେକି ?

ସାରଥି ସମସ୍ତ ଘଟଣା କହିଗଲା । ସେହି ସମୟରୁ ରାଜା ବନ୍ଧୁମା ତପସ୍ୱୀଙ୍କର ପଞ୍ଚେନ୍ଦ୍ରିୟର ସୁଖର ମାତ୍ରା ଆହୁରି ବଢ଼ାଇ ଦେଲେ, ଯାହା ଫଳରେ ସେ ପରିବ୍ରାଜକ ହେବେ ନାହିଁ । ତପସ୍ୱି ପୁନର୍ବାର ସେହି ସୁଖରେ ମଗ୍ନ ହୋଇ ଗଲେ ।

ଭିକ୍ଷୁଗଣ ! ପୁଣି ହଜାର ହଜାର ବର୍ଷପରେ ତପସ୍ୱୀ କୁମାର ଉଦ୍ୟାନକୁ ଯିବାକୁ ବାହାରିଲେ । ବାଟରେ ସେ ଜଣେ ଲୋକ ଦେଖିଲେ । ସେ ହେଉଛି ରୋଗୀ, ପୀଡ଼ିତ, ବିଶେଷ ଅସୁସ୍ଥ । ନିଜର ମଳ ମୂତ୍ରରେ ଗଡ଼ି ଯାଉଛି, ଅନ୍ୟ ଲୋକ ନଉଠାଇଲେ ଉଠି ନାହିଁ, ପୁଣି ତାହାର ଲୁଗା ଅନ୍ୟ ଲୋକ ଠିକ୍ ଠାକ୍ କରିବା ଛଡ଼ା ଉପାୟ ନଥିଲା । ତାକୁ ଦେଖି କୁମାର ସାରଥିକୁ ପଚାରିଲେ, ଏ ଲୋକଟି କିଏ ? ଏହାର ଆଖି ଓ ସ୍ୱର ଅନ୍ୟମାନଙ୍କ ପରି ନୁହେଁ ।

ସାରଥି—ଏ ଜଣେ ରୋଗୀ ।

ତପସ୍ୱୀ—ରୋଗୀର ଅର୍ଥ କ'ଣ ?

ସାରଥି—ରୋଗୀର ଅର୍ଥ ହେଉଛି, ଏ ଅବସ୍ଥାରେ ଏ ଲୋକ ଆଉ ପୂର୍ବ ଭଳି ଆଚରଣ କରିପାରିବ ନାହିଁ ।

ତପସ୍ୱୀ—ବନ୍ଧୁ ସାରଥି ! କ'ଣ ମୁଁ ମଧ୍ୟ ଏହାପରି ବ୍ୟାଧି ଧର୍ମୀ ?

ସାରଥି—ମହାରାଜ, ଆମେ ସମସ୍ତେ ବ୍ୟାଧି ଧର୍ମୀ ।

ତପସ୍ୱୀ—ତାହାହେଲେ ଏବେ ଆଉ ଉଦ୍ୟାନକୁ ଯିବା ନାହିଁ । ଅନ୍ତଃପୁରଆଡ଼କୁ ରଥ ଫେରାଇ ନିଅ ।

ତାଙ୍କର ଏହି ଆଦେଶ ଅନୁସାରେ ସାରଥି ଅନ୍ତଃପୁର ଆଡ଼କୁ ରଥ ଚଳାଇଲା । ସେଠାରେ ତପସ୍ୱୀ ଦୁଃଖିତ ଓ

ଉଦ୍‌ବିଗ୍ନ ହୋଇ ଏଇ ଚିନ୍ତାରେ ନିମଗ୍ନ ହେଲେ—"ଯେଉଁ ଜନ୍ମ ହେତୁ ଲୋକ ବ୍ୟାଧି ଗ୍ରସ୍ତ ହୁଏ, ସେହି ଜନ୍ମକୁ ଧିକ୍ ।

ସାରଥି ମୁଖରୁ ରାଜା ବନ୍ଧୁମା ଏକଥା ଜାଣିବାପରେ ବିପସ୍‌ସୀ ରାଜକୁମାରଙ୍କର ସୁଖ ସାଧନ ଆହୁରି ବଢ଼ାଇ ଦେଲେ । ଲକ୍ଷ୍ୟ ହେଉଛି କୁମାର ରାଜ୍ୟ ତ୍ୟାଗ କରି ପ୍ରବ୍ରଜ୍ୟା ଗ୍ରହଣ ନ କରନ୍ତୁ ।

ପୁଣି, ହେ ଭିକ୍ଷୁଗଣ, ହଜାର ହଜାର ବର୍ଷ ପରେ ବିପସ୍‌ସୀକୁମାର ପ୍ରଥମ ଥର ପରି ଉଦ୍ୟାନକୁ ଯିବାକୁ ବାହାରିଲେ । ବାଟରେ ଦେଖିଲେ ଯେ, ଦଳେ ବିଶିଷ୍ଟ ଲୋକ ନାନା ରଙ୍ଗ ଢ଼ଙ୍ଗର ବସ୍ତ୍ରରେ ପାଲିଙ୍କି ତିଆରି କରୁଛନ୍ତି । ତେଣୁ ସେ ସାରଥିକୁ ପଚାରିଲେ—ଏ ଲୋକେ ରଙ୍ଗ ଢ଼ଙ୍ଗ ଲୁଗାରେ ପାଲିଙ୍କି ତିଆରି କରୁଛନ୍ତି କାହିଁକି ?

ସାରଥି—ମହାରାଜ, ଏହା ଉପରେ ଜଣେ ମଲା ମଣିଷ ଅଛି ।

ବିପସ୍‌ସୀ—ତେବେ ସେହି ମୃତ ବ୍ୟକ୍ତି ପାଖକୁ ରଥ ନେଇ ଚାଲ ।

ସେ ଅନୁସାରେ ସାରଥି ସେ ଆଡ଼କୁ ରଥ ନେଇଗଲା । ମୃତ ଲୋକକୁ ଦେଖି ବିପସ୍‌ସୀ ପଚାରିଲେ, ବନ୍ଧୁ ସାରଥି, ମୃତର ଅର୍ଥ କଣ ?

ସାରଥି—ଏବେ ସେ ନିଜର ମାତା ପିତା ବା ସମ୍ପର୍କୀୟ ଅନ୍ୟ ଲୋକଙ୍କୁ ଦେଖା ଦେବନାହିଁ, କିମ୍ବା ସେ ସେମାନଙ୍କୁ ଦେଖି ପାରିବ ନାହିଁ ।

ତପସ୍ୱୀ—ବନ୍ଧୁ ସାରଥି, କଣ ମୁଁ ମଧ୍ୟ ମରଣ ଧର୍ମୀ । ମୁଁ କ'ଣ ରାଜା ରାଣୀ ଓ ସ୍ୱଜନମାନଙ୍କୁ ଅନ୍ୟ ଲୋକଙ୍କୁ ଦେଖା ଦେବନାହିଁ ପୁଣି ମୁଁ କଣ ସେମାନଙ୍କୁ ଦେଖି ପାରିବ ନାହିଁ ।

ସାରଥି—ନାଁ, ମହାରାଜ ।

ତପସ୍ୱୀ—ତେବେ, ଏବେ ଆଉ ଉଦ୍ୟାନକୁ ଯିବାନାହିଁ । ଅନ୍ତଃପୁର ଆଡ଼କୁ ରଥ ନେଇ ଚାଲ ।

ସେଇ ଅନୁସାରେ ସାରଥି ରଥ ଘେନି ଅନ୍ତଃପୁରକୁ ଚାଲିଲେ । ସେଠାରେ କୁମାର ତପସ୍ୱୀ ଦୁଃଖିତ ଓ ଉଦ୍‌ବିଗ୍ନ ହୋଇ ବିଚାର କଲେ—ସେଇ ଜନ୍ମକୁ ଧିକ୍, ଯାହାଦ୍ୱାରା ଜରା, ବ୍ୟାଧି ଓ ମରଣ ପ୍ରାପ୍ତି ହୁଏ ।

ସାରଥିଠାରୁ ରାଜା ବନ୍ଧୁମା ଏହିସବୁ କଥା ଶୁଣିବା ପରେ କୁମାରଙ୍କର ସୁଖସାଧନ ସେ ଆହୁରି ବେଶୀ ବଢ଼ାଇ ଦେଲେ······ ଇତ୍ୟାଦି ।

ଭିକ୍ଷୁଗଣ, ପୁଣି ଶତ ସହସ୍ର ବର୍ଷ ପରେ ସମସ୍ତ ଆୟୋଜନ କରି ତପସ୍ୱୀ କୁମାର ସାରଥି ସହିତ ଉଦ୍ୟାନକୁ ଯିବାକୁ ବାହାରିଲେ । ବାଟରେ ଜଣେ ପରିବ୍ରାଜକକୁ ଦେଖି ସେ ସାରଥିଙ୍କି ପଚାରିଲେ, "ଏଇ ଲୋକଟି କିଏ ?" ଏହାଙ୍କର ମସ୍ତକ ଓ ବସ୍ତ୍ର ଅନ୍ୟ ଲୋକଙ୍କ ପରି କାହିଁକି ହୋଇନାହିଁ ?

ସାରଥି—ମହାରାଜ ଏଜଣେ ପ୍ରବ୍ରଜିତ ।

ତପସ୍ୱୀ—'ପ୍ରବ୍ରଜିତ'ର ଅର୍ଥ କଣ ?

ସାରଥି—ସେ ହେଉଛି, ପ୍ରବ୍ରଜିତ ଯେ ଭାବେ, ଧର୍ମଚର୍ଯ୍ୟା ଭଲ । ସମଚର୍ଯ୍ୟା ଭଲ । କୁଶଳ କ୍ରିୟା ଭଲ, ପୁଣ୍ୟ କ୍ରିୟା ଭଲ, ଅହିଂସା ଭଲ, ଭୂତଦୟା ଭଲ ।

ତପସ୍ୱୀ—ତେବେ ରଥ ନେଇ ତାଙ୍କ ପାଖକୁ ଚାଲ !

ସେ ଅନୁସାରେ ସାରଥି ରଥ ନେଇ ପ୍ରବ୍ରଜିତଙ୍କ ପାଖକୁ ଗଲେ । ବିପସ୍‌ସୀ କୁମାର ତାଙ୍କୁ ପଚାରିଲେ, ତୁମେ କିଏ ହେ ? ତୁମର ମୁଣ୍ଡ ଓ ବସ୍ତ୍ର ତ ଅନ୍ୟ ମାନଙ୍କ ପରି ନୁହେ ।

ପ୍ରବ୍ରଜିତ—ମହାରାଜ, ମୁଁ ଜଣେ ପ୍ରବ୍ରଜିତ । ମୁଁ ଭାବୁଛି ଯେ ଧର୍ମଚର୍ଯ୍ୟା, ସମଚର୍ଯ୍ୟା, କୁଶଳକ୍ରିୟା, ପୁଣ୍ୟକ୍ରିୟା, ଅବିହିଂସା ଓ ଭୂତାନୁକମ୍ପା ହେଉଛି ଉତ୍ତମ ।

"ଠିକ୍ କଥା"—କହି ବିପସ୍‌ସୀ, ସାରଥିକୁ କହିଲେ, 'ବନ୍ଧୁ ତୁମେ ରଥ ନେଇ ଅନ୍ତଃପୁର ଆଡ଼କୁ ଚାଲ । ମୁଁ ବାଳ ଓ ଦାଢ଼ି କାଟି କଷାୟ ବସ୍ତ୍ର ପରିଧାନ କରି ଅନାଗାରିକ (ଗୃହ—ବିଯୁକ୍ତ) ପ୍ରବ୍ରଜ୍ୟା ଗ୍ରହଣ କରିବି ।

ସାରଥି ରଥ ନେଇ ଅନ୍ତଃପୁର ଆଡ଼କୁ ଚାଲିଗଲେ । କିନ୍ତୁ ବିପସ୍‌ସୀ ସେଠାରୁହିଁ ପ୍ରବ୍ରଜ୍ୟା ଗ୍ରହଣ କଲେ ।

( ୬ )

ଭିକ୍ଷୁଗଣ ! ବିପସ୍‌ସୀ ବୋଧିସତ୍ତ୍ୱ ଯେତେବେଳେ ଏକାନ୍ତରେ ବସି ଚିନ୍ତା କରୁଥିଲେ ସେତେବେଳେ, ଲୋକଙ୍କର ଅବସ୍ଥା ଅତ୍ୟନ୍ତ ଶୋଚନୀୟ ବୋଲି ତାଙ୍କର ଭାବନା ଜାତ ହେଲା । ସେମାନେ ଜନ୍ମ ହୁଅନ୍ତି, ବୁଢ଼ା ହୁଅନ୍ତି, ତଥାପି ଏ ଦୁଃଖରୁ କିପରି ରକ୍ଷା ପାଇବାକୁ ହେବ ସେମାନେ ଜାଣିପାରୁ ନାହାନ୍ତି । ଏକଥା ସେମାନେ ଆଉ କେବେ ଜାଣିବେ ?

ଭିକ୍ଷୁଗଣ ! ଜରା—ମରଣ କେଉଁଠାରୁ ଉତ୍ପନ୍ନ ହୁଅନ୍ତି, ବିପସ୍‌ସୀ ବୋଧିସତ୍ତ୍ୱ ସେଇକଥା ବିଚାର କରିବାକୁ ଲାଗିଲେ । ତାଙ୍କର ପ୍ରଜ୍ଞା ଲାଭ ହେବାରୁ ସେ ଜାଣିପାରିଲେ ଯେ, ଜନ୍ମରୁହିଁ ଜରା-ମରଣର ଉତ୍ପତ୍ତି । ପୁଣି ଜନ୍ମ ହୁଏ କାହିଁକି ? ଭବ ହେତୁରୁ ଜନ୍ମ

ହୁଏ । ଭବ ଆସେ କେଉଁଠାରୁ ? ଉପାଦାନ ହେଉଛୁ । ତୃଷ୍ଣାରୁ ଉପାଦାନ, ବେଦନାରୁ ତୃଷ୍ଣା । ସ୍ପର୍ଶରୁ ବେଦନା, ଷଡ଼ାୟତନରୁ ସ୍ପର୍ଶ । ନାମରୂପରୁ ଷଡ଼ାୟତନ ଓ ବିଜ୍ଞାନରୁ ନାମରୂପ ଉତ୍ପନ୍ନ ହୁଏ । ବିପସ୍ସୀ ବୋଧିସତ୍ତ୍ୱ ଏହି କାରଣ ପରମ୍ପରା ଯଥାକ୍ରମରେ ଜାଣିପାରିଲେ । ଏହିଭଳି ଭାବରେ ସେ ଏହା ମଧ୍ୟ ଜାଣିପାରିଲେ ଯେ, ଜନ୍ମରୁ ଜରା ମରଣ ହୁଏ ନାହିଁ—ଭବ ନଥିଲେ ଜନ୍ମ ନଥାନ୍ତା, ବିଜ୍ଞାନ ନଥିଲେ ନାମରୂପ ନଥାନ୍ତା । ଏହାଫଳରେ ତାଙ୍କ ମନରେ ଧର୍ମ ଚକ୍ଷୁ, ପ୍ରଜ୍ଞା ବିଦ୍ୟା ଓ ଆଲୋକ ଉତ୍ପନ୍ନ ହୋଇଗଲା ।

( ୬ )

ଆହୁରି ମଧ୍ୟ, ହେ ଭିକ୍ଷୁଗଣ ! ଅର୍ହତ, ସମ୍ୟକ୍ ସମ୍ବୁଦ୍ଧ ବିପସ୍ସୀ ଭଗବାନଙ୍କ ମନରେ ଧର୍ମୋପଦେଶ ଦେବାର ବାସନା ଜାତ ହେଲା । ସେ ଭାବିଲେ ଯେ, ଏହି ଗମ୍ଭୀର, ଦୁର୍ଦର୍ଶ, କଷ୍ଟବୋଧ, ଶାନ୍ତ, ଶ୍ରେଷ୍ଠ, ତର୍କର ଅଗମ୍ୟ ଭଲ ଓ ବଡ଼ ବଡ଼ ପଣ୍ଡିତମାନଙ୍କର ବୋଧ ଧର୍ମ ସେ ପାଇଗଲେ । କିନ୍ତୁ, ଲୋକେ ଭୋଗ ବିଳାସରେ ବୁଡ଼ିରହିଛନ୍ତି ଓ ବିଳାସରେ ଆନନ୍ଦ ମିଳେ ବୋଲି ଭାବୁଛନ୍ତି । ସେମାନଙ୍କ ପାଇଁ କାରଣ ପରଂପରା, ପ୍ରତୀତ୍ୟ ସମୁତ୍ପାଦ, ଉପାଧିଗୁଡ଼ିକର ତ୍ୟାଗ, ତୃଷ୍ଣାର କ୍ଷୟ, ବିରାଗ, ନିରୋଧ ଓ ନିର୍ବାଣ ସେମାନଙ୍କ ପକ୍ଷରେ ଦୁର୍ଗମ । ମୁଁ ଯଦି ଧର୍ମୋପଦେଶ ଦିଏ ଏବଂ ସେମାନେ ଯଦି ତାହା ନ ବୁଝନ୍ତି, ତେବେ ମତେ ବଡ଼ କଷ୍ଟ ହେବ, ବଡ଼ କ୍ଳେଶ ବୋଧ ହେବ ।

ପୁଣି, ହେ ଭିକ୍ଷୁଗଣ, ବିପସ୍ସୀ ଭଗବାନଙ୍କ ମନରେ, ପୂର୍ବରୁ ଯେ କେବେ ଶୁଣିନଥିଲେ ମଧ୍ୟ ନିମ୍ନଲିଖିତ ଗାଥାଗୁଡ଼ିକ ସ୍ୱତଃ ଉଦିତ ହେଲା ।

ମୁଁ ଯାହା ପ୍ରୟାସ ଦ୍ୱାରା ଲାଭ କରିଅଛି, ତାହା ଅନ୍ୟକୁ ବତାଇ ଦେବା ଅନୁଚିତ ।

ରାଗ-ଦ୍ୱେଷ-ପୂର୍ଣ୍ଣ ଲୋକଙ୍କୁ ଏ ଧର୍ମ ସହଜରେ ବୋଧଗମ୍ୟ ହେବ ନାହିଁ । ଏହା ଧର୍ମପ୍ରବାହର ବିପରୀତଗାମୀ, ନିପୁଣ, ଗମ୍ଭୀର, ଦୁର୍ଦର୍ଶ ଓ ଅଣୁରୂପ ଅଟେ । ଅନ୍ଧକାରାଚ୍ଛନ୍ନ କାମାସକ୍ତ ଲୋକଙ୍କୁ ଏହା ଦେଖାଯିବ ନାହିଁ ।

ହେ ଭିକ୍ଷୁଗଣ, ଏହି ବିଚାରରେ ଅର୍ହତ, ସମ୍ୟକ୍ ସମ୍ବୁଦ୍ଧ ତପସ୍ୱୀ ଭଗବାନ ଧର୍ମୋପଦେଶ ନଦେଇ, ଏକାକୀ ରହିବାକୁ ଇଚ୍ଛା କଲେ । ତାଙ୍କର ଏହି ବିଚାର ଜାଣି ମହାବ୍ରହ୍ମା ମନେ ମନେ କହିଲେ—"ଆରେ, ଆରେ, ସଂସାର ନାଶ ହେବା ଉପରେ, କାରଣ ଅର୍ହତ ସମ୍ୟକ୍ ସମ୍ବୁଦ୍ଧ ତପସ୍ୱୀ ଭଗବାନଙ୍କର ମନ, ଧର୍ମୋପଦେଶ ଦିଗରେ ନଯାଇ ଏକାକୀ ରହିବା ଆଡ଼କୁ ଢଳି ପଡ଼ୁଛି ।

ହେ ଭିକ୍ଷୁଗଣ, ଯେପରି କୌଣସି ବଳବାନ୍ ଲୋକ ଚିପା ଯାଇଥିବା ହାତକୁ ଓସାରିଦିଏ ବା ବିସ୍ତାରିତ ହସ୍ତକୁ ଚିପି ଦିଏ, ସେହି ପରି, ଅତିଶୀଘ୍ର, ମହାବ୍ରହ୍ମା ବ୍ରହ୍ମଲୋକରେ ଅନ୍ତର୍ଦ୍ଧାନ ହୋଇ ତପସ୍ୱୀଙ୍କ ନିକଟରେ ଆବିର୍ଭୂତ ହେଲେ । କାନ୍ଧରେ ଉପବସ୍ତ୍ର ରଖି ଓ ଡାହାଣ ପେଣ୍ଡା ଭୂମି ଉପରେ ରଖି, ହାତ ଯୋଡ଼ି ସେ କହିଲେ, "ଭଗବନ୍ ! ଧର୍ମ-ଦେଶନା କର । ସୁଗତ, ଧର୍ମ ଦେଶନା କର ଏପରି କେତେ ପ୍ରାଣୀ ଅଛନ୍ତି, ଯେଉଁମାନଙ୍କର ଆଖି ଧୂଳିରେ ଭର୍ତ୍ତି ହୋଇନାହିଁ । ଧର୍ମୋପଦେଶ ଶୁଣିବାର ସୁବିଧା ନ ପାଇ ସେମାନେନଷ୍ଟ ହେବାକୁ ବସିଲେଣି । ଏଭଳି ଧର୍ମ ଜାଣୁଥିବା ଲୋକ ତୁମକୁ ମିଳିବେ ।"

ଭଗବାନ୍ ବିପସ୍‌ସୀ ନିଜ ମନର ବିଚାର ତିନଥର ପ୍ରକାଶ କଲେ । ତାପରେ ବ୍ରହ୍ମଦେବଙ୍କ ପ୍ରାର୍ଥନା ଜାଣିପାରି ଭଗବାନ୍ ପ୍ରାଣୀମାନଙ୍କ ପ୍ରତି ଦୟାହେତୁରୁ ବୁଦ୍ଧନେତ୍ରରେ ଜଗତକୁ ଅବଲୋକନ କଲେ ଏବଂ ଦେଖିଲେ ଯେ, କେତେକଙ୍କ ଆଖିରେ ବେଶୀ ଧୂଳି ପଡ଼ିନାହିଁ, କେତେକଙ୍କ ଆଖି ଧୂଳିରେ ପୂର୍ଣ୍ଣ । ସେ ଏଭଳି ପ୍ରାଣୀ ଦେଖିଲେ, ଯେଉଁମାନେ ତୀକ୍ଷ୍ଣ ଇନ୍ଦ୍ରିୟର ବା ମୃଦୁ ଇନ୍ଦ୍ରିୟର ଦାସ, ଯେଉଁମାନେ ସୁନ୍ଦର ଆକୃତି ବିଶିଷ୍ଟ, ଯେଉଁମାନେ ଦେଖିବାକୁ ଅସୁନ୍ଦର, ଯେଉଁମାନଙ୍କୁ ସହଜରେ ବୁଝାଇ ହେବ ଓ ଯେଉଁମାନଙ୍କୁ ବୁଝାଇବା କଠିନ । ପୁଣି ଏଭଳି କେତେକ ଅଛନ୍ତି ଯେଉଁମାନେ ପରଲୋକ ଓ ଅସତ୍‌କଥାକୁ ଡ଼ରନ୍ତି । ଯେଉଁପରି ପଦ୍ମପୂର୍ଣ୍ଣ ସରୋବରରେ କେତେକ ପଦ୍ମ ପାଣିରେ ବୁଡ଼ି ଯାଇ ଥାଏ, କେତେକ ପାଣି ସମାନ ଥାଏ ଓ କେତେକ ପାଣିରୁ ଉପରକୁ ଉଠି ଯାଇଥାଏ, ଫଳରେ ତାହାଁରେ ପାଣି ଲାଗେ ନାହିଁ ସେହି ପରି ବିଭିନ୍ନ ପ୍ରକାରର ପ୍ରାଣୀ ଭଗବାନ୍ ବିପସ୍‌ସୀ ଦେଖିଲେ ।

ହେ ଭିକ୍ଷୁଗଣ ! ଭଗବାନ୍ ବିପସ୍‌ସୀଙ୍କ ମନକଥା ଜାଣି ପାରି ବ୍ରହ୍ମଦେବ ନିମ୍ନଲିଖିତ କଥାଗୁଡ଼ିକ ତାଙ୍କୁ କହିଲେ ।

"ପର୍ବତ ଉପରେ ଠିଆହେଲେ ଯେପରି ଆଖପାଖର ଲୋକଙ୍କୁ ଦେଖିହୁଏ, ସେହିପରି ଧର୍ମମୟ ପ୍ରାସାଦ ଉପରେ ଠିଆ ହୋଇ, ହେ ସୁମେଧ ! ତୁମେ ଶୋକ ରହିତ ହୋଇ ଜନ୍ମ-ଜରା-ପୀଡ଼ିତ ଲୋକମାନଙ୍କୁ ଦେଖ ।

"ହେ ବୀର ! ଉଠ ! ଯୁଦ୍ଧରେ ତୁମେ ବିଜୟୀ ହୋଇଛ । ତୁମେ ଋଣମୁକ୍ତ ସାର୍ଥବାହ, ତେଣୁ ଜଗତରେ ଭ୍ରମଣ କର ।"

"ହେ ଭଗବନ୍! ଧର୍ମୋପଦେଶ ଦିଅନ୍ତୁ । ବୁଝିବାଲୋକ ନିଶ୍ଚୟ ମିଳିବେ ।"

ପୁଣି, ହେ ଭିକ୍ଷୁଗଣ ! ଅର୍ହନ୍ ସମ୍ୟକ୍ ସମ୍ବୁଦ୍ଧ ଭଗବାନ୍ ବିପସ୍‌ସୀ ଭଗବାନଙ୍କୁ ଗାଥାମାନଙ୍କରେ ଉତ୍ତର ଦେଲେ:—

"ସେମାନଙ୍କ ପାଇଁ ଅମରତ୍ୱର ଦ୍ୱାର ଖୋଲିଗଲା । ଯେଉଁମାନଙ୍କର ଶୁଣିବାକୁ ଇଚ୍ଛାଅଛି, ସେମାନେ ଧ୍ୟାନ ଦିଅନ୍ତୁ ।

"ହେ ବ୍ରହ୍ମଦେବ, ମୁଁ କଷ୍ଟ ହେବା ଆଶଙ୍କାରେ ଲୋକମାନଙ୍କୁ 'ଶ୍ରେଷ୍ଠ ପ୍ରଣୀତ' ଧର୍ମୋପଦେଶ ଦେଲି ନାହିଁ ।"

ହେ ଭିକ୍ଷୁଗଣ ! ବୋଧହୁଏ ଏହାଜାଣି ଭଗବାନ ବିପସ୍‌ସୀ ଧର୍ମୋପଦେଶ ଦେବେ ବୋଲି କହିଲେ । ମହାବ୍ରହ୍ମା ଭଗବାନଙ୍କୁ ଅଭିବାଦନ ଓ ପ୍ରଦକ୍ଷିଣ କରି ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ ।

ଏହି ସାତଖଣ୍ଡ ମଧ୍ୟରୁ ପ୍ରଥମେ ବୋଧହୁଏ ତୃତୀୟ ଖଣ୍ଡର ରଚନା କରି ଯାଇଛି, କାରଣ ତାହା ନିର୍ଦ୍ଦିଷ୍ଟକରି ପ୍ରାଚୀନତମ "ସୁତ୍ତନିପାତ"ର ଷୋଡ଼ଶ ସୁତ୍ତରେ ଦେଖିବାକୁ ମିଳେ । ଏହି ସୁତ୍ତ 'ମଜ୍‌ଝିମନିକାୟ' (ସୂ. ୯୨) ରେ ଅଛି । ଏହା ପୂର୍ବର (ସୂ. ୯୧) 'ବ୍ରହ୍ମାୟୁ ସୁତ୍ତ' ଓ 'ଦୀଘନିକାୟ'ର 'ଅମ୍ବଟ୍‌ଠ ସୁତ୍ତରେ ମଧ୍ୟ ଏଥିର ଉଲ୍ଲେଖ ଅଛି । ବୁଦ୍ଧକାଳୀନ ବ୍ରାହ୍ମଣମାନଙ୍କ ମଧ୍ୟରେ ଏହି ଲକ୍ଷଣ ଗୁଡ଼ିକର ମହତ୍ତ୍ୱ ବିଶେଷ ଭାବରେ ସ୍ୱୀକୃତ ହୋଇଥିଲା । ତେଣୁ, ବୁଦ୍ଧଙ୍କ ଦେହରେ ଏହି ସମସ୍ତ ଲକ୍ଷଣ ଥିଲା ବୋଲି ଦେଖାଇବାକୁ ବୁଦ୍ଧଙ୍କର, ଶହେ ଦୁଇଶହେ ପରେ ଏହି ସୁତ୍ତ ଗୁଡ଼ିକୁ ରଚନା କରି ଯାଇଥିବ ଓ 'ମହାପଦାନ' ସୁତ୍ତରେ ଭରିତ କରି ଦିଆ ଯାଇଥିବ । ଗୌତମ ବୋଧିସତ୍ତ୍ୱ ବୁଦ୍ଧ ହୋଇ ଯିବାପରେ ବ୍ରାହ୍ମଣ ପଣ୍ଡିତମାନେ ତାଙ୍କର ଲକ୍ଷଣ ଦେଖୁଥିଲେ ।

କିନ୍ତୁ ଏହି ସୁତ୍ତରେ ଏହା କୁହାଯାଇଛି ଯେ, କୁମାର ବିପସ୍‌ସୀଙ୍କ ଲକ୍ଷଣ ତାଙ୍କର ଜନ୍ମ ପରେ ପରେ ଦେଖା ଯାଇଥିଲା । ଏଥିରୁ ବଡ଼ ଅସଙ୍ଗତି ପ୍ରକାଶ ପାଉଛି । ତାଙ୍କର ୪୦ଟି ଦାନ୍ତ, ସେଗୁଡ଼ିକ ସଲଖ ମିରନ୍ଧ୍ର ଓ ଶୁଭ୍ର ଥିଲା, ଏହି ଗୁଡ଼ିକେଟି ଲକ୍ଷଣ ସେପରି ରଖା ଯାଇଛି । ଏହି ସୁତ୍ତକାର ଏତିକ ମନେ ପକାଇଲେ ନାହିଁ ଯେ ପିଲାର ଜନ୍ମହେବା ସଙ୍ଗେ ସଙ୍ଗେ ଦାନ୍ତ ଉଠି ନଥାଏ ।

ଏହା ପରେ ୨ୟ ଖଣ୍ଡ ରଚନା କରାଯାଇ ଥିବ । ଏଥିରେ ଯେଉଁ 'ସ୍ୱଭାବନିୟମ' କଥା କୁହାଯାଇଛି ସେ ସବୁ ମଜ୍‌ଝିମ ନିକାୟର ଅଚ୍ଛରିୟଅବ୍‌ଭୁତଧମ୍ମସୁତ୍ତ ( ସଂଖ୍ୟା—୧୨୩ ) ରେ ଦେଖିବାକୁ ମିଳେ । ବୋଧିସତ୍ତ୍ୱଙ୍କର ମହତ୍ତ୍ୱ ବଢ଼ାଇବା ପାଇଁ ଏହା ରଚନା କରାଯାଇଛି । ଏଥିରୁ କେବଳ ଦୁଇଟି କଥା ବାସ୍ତବ ଓ ଅନ୍ୟସବୁ କଥା କବିର କଳ୍ପନା ମାତ୍ର । ସେ ଦୁଇଟି କଥା ହେଉଛି, ଠିଆ ଠିଆରେ ସେ ଜନ୍ମ ହୋଇଥିବା ଓ ସାତପଦ ଚାଲିବା ... ସେ ଚାଲବୁଲ କରିବା ।

ଏହାପରେ ବା ଏଥି ପୂର୍ବରୁ କେତେକ କାଳ ପରେ ସପ୍ତମ ଖଣ୍ଡ ଲିଖିତ ହୋଇଥିଲା । ଏହା ମଜ୍‌ଝିମନିକାୟର ଅରିୟପରିଯେସନସୁତ୍ତରେ, ନିଦାନବଗ୍‌ଗ ସଂଯୁତ୍ତରେ(୬।୧) ଓ ମହାବଗ୍‌ଗର ମୂଳରେ ଦେଖିବାକୁ ମିଳେ । ବ୍ରହ୍ମଦେବଙ୍କର ପ୍ରାର୍ଥନା ପରେ ବୁଦ୍ଧ ଧର୍ମୋପଦେଶ ଦେବାକୁ ଆରମ୍ଭ କରିଥିଲେ, ଏହା ଦେଖାଇବା ପାଇଁ ଏହି ଖଣ୍ଡ ରଚିତ ହୋଇଥିଲା । ମୁଁ ମୋର "ବୁଦ୍ଧଧର୍ମ ଆଣି ସଂଘ"ରେ, ପ୍ରଥମ ଭାଷଣରେ, ଏହା ଦେଖାଇ ଦେଇଛି ଯେ, ମୈତ୍ରୀ, କରୁଣା, ମୁଦିତା ଓ ଉପେକ୍ଷା—ଏହି ଗୁଡ଼ିକେଟି ଉଦାତ୍ତ ମନୋବୃତ୍ତି ବିଷୟରେ ଏହା ଏକ ରୂପକ ।

ଏହା ପରେ ୪ର୍ଥ ଖଣ୍ଡ, ତିନୋଟି ପ୍ରାସାଦ ବିଷୟକ ଅଂଶ । ଅଙ୍ଗୁତ୍ତରନିକାୟର ତିକନିପାତରେ (ସୁତ୍ତ ୩୮) ଓ ମଜ୍‌ଝିମ ନିକାୟର ମାଗନ୍ଦିୟ ସୁତ୍ତରେ (ସ-୭୫) ଏଥିର ଉଲ୍ଲେଖ ଅଛି । ଏଥିର ପ୍ରଥମ ସୁତ୍ତରେ ଏଭଳି ଲେଖା ଅଛି ଯେ—'ଯେତେବେଳେ ମୁଁ ବାପାଙ୍କ ଘରେ ଥିଲି, ମୋ ରହିବା ପାଇଁ ତିନୋଟି ପ୍ରାସାଦ ଥିଲି ।' କିନ୍ତୁ ଅନ୍ୟ ସୁତ୍ତରେ କେବଳ ଏତିକି କୁହାଯାଇଛି ଯେ— "ଯୁବାବସ୍ଥାରେ ମୁଁ ତିନୋଟି ପ୍ରାସାଦରେ ରହୁଥିଲି ।" ତହିଁରେ ପିତାଙ୍କର ଉଲ୍ଲେଖ ନାହିଁ । ଶାକ୍ୟଙ୍କ ରାଜା ବଜ୍ଜୀମାନଙ୍କ ତୁଲ୍ୟ ସମୃଦ୍ଧ ନଥିଲେ ଏବଂ ବଜ୍ଜୀମାନଙ୍କର ତରୁଣ କୁମାର ମଧ୍ୟ ସେପରି ବିଳାସବ୍ୟସନରେ ରହୁଥିଲେ ବୋଲି କୌଣସି ପ୍ରମାଣ ମିଳେନାହିଁ । ବରଂ ଏହାର ବୈପରୀତ୍ୟରେ,ଓପମ୍ମସଂଯୁତ୍ତ (ବଗ୍‌ଗ-୧,ସୁତ୍ତ ୫)ରେ ଏଭଳି ବର୍ଣ୍ଣନା ଅଛି ଯେ—ସେମାନେ ଅତ୍ୟନ୍ତ ସରଳ ଜୀବନ ଯାପନ କରୁଥିଲେ ଏବଂ ଭୋଗବିଳାସଠାରୁ ପୂରାପୂରି ଦୂରରେ ଥିଲେ । ଭଗବାନ କହୁଛନ୍ତି—"ହେ ଭିକ୍ଷୁଗଣ ! ଏହି ସମୟରେ କାଠର ପିଡ଼ାକୁ ତକିଆ କରି ଲିଚ୍ଛବୀମାନେ ରହୁଥିଲେ ଓ ସତର୍କ ଭାବରେ ତଥା ଉତ୍ସାହିହୋଇ ଜୀବନଯୁଦ୍ଧ ଶିଖୁଥିଲେ । ଏହା ଫଳରେ ମଗଧର ରାଜା ଅଜାତଶତ୍ରୁ ସେମାନଙ୍କୁ ଆକ୍ରମଣ କରିପାରୁ ନଥିଲେ । କିନ୍ତୁ ଭବିଷ୍ୟତରେ, ଲିଚ୍ଛବିମାନେ ସୁଖମାରିଆ ହୋଇଯିବେ, ତାହାଙ୍କର ହାତପାଦ କୋମଳ ହୋଇଯିବ, ସେମାନେ କୋମଳ ଶଯ୍ୟାରେତୁଳା ତକିଆ ଦେଇ ଶୋଇବେ ଓ ସେତେବେଳେ ରାଜା ଅଜାତଶତ୍ରୁ ଆକ୍ରମଣ କରିବାକୁ ସମର୍ଥ ହେବେ । ବଜ୍‌ଜୀ-ମାନଙ୍କପରି ସଂଗଠିତ ସଂପନ୍ନ ଗଣରାଜାମାନେ ଯଦି ଏତେଦୂର ସାବଧାନ ହୋଇ ଚଳୁଥିଲେ, ତାହାହେଲେ ସେମାନଙ୍କ ଅପେକ୍ଷା ଗରିବ ଶାକ୍ୟ ରାଜା ବଡ଼ବଡ଼ ପ୍ରାସାଦରେ ଭୋଗ ବିଳାସରେ ରହୁଥିବା

ସମ୍ଭବପର ନୁହେ । ସ୍ୱୟଂ ଶୁଦ୍ଧୋଧନଙ୍କୁ ଯେଉଁଠାରେ ଜମି ଚୃଷ କରିବାକୁ ପଡ଼ୁଥିଲା, ସେଠାରେ ନିଜ ପୁଅପାଇଁ ସେ ତିନୋଟି ପ୍ରାସାଦ ନିର୍ମାଣ କରିପାରିଥିବେ କିପରି ? ତେଣୁ ଏଥିରେ କୌଣସି ସନ୍ଦେହ ନାହିଁ ଯେ, ପ୍ରାସାଦର କଳ୍ପନା ବୁଦ୍ଧଙ୍କ ଜୀବନରେ ପରେ ଯୋଡ ଦିଆଯାଇଛି । ମହାପଦାନ ସୁତ୍ତରୁ ତାହା ନିଆଯାଇଛି ବୋଲି କୁହାଯାଇ ପାରିବ ନାହିଁ ।

ଉପରୋକ୍ତ ଷଷ୍ଠ ଖଣ୍ଡ ଓ ନିଦାନ ବଗ୍‌ଗସଂଯୁତ୍ତର ୪ର୍ଥ ଠାରୁ ୭ଷ୍ଠ ପର୍ଯ୍ୟନ୍ତ ସୁତ୍ତ ପୂର୍ବାପୂର୍ବ ଅଭିନ୍ନ । ଏଥିରୁ ସ୍ପଷ୍ଟ ଜଣାପାଉଛି ଯେ ମହାପଦାନସୁତ୍ତରୁ ହିଁ ଏହି ସୁତ୍ତ ନିଆଯାଇଥିବ । ନିଦାନବଗ୍‌ଗ ସଂଯୁତ୍ତର ୧୦ମ ସୁତ୍ତରେ କୁହା ଯାଇଛି ଯେ, ଗୌତମବୁଦ୍ଧଙ୍କ ପୂର୍ବବର୍ତ୍ତୀ ଛଅ ଜଣ ବୁଦ୍ଧଙ୍କ ବିଚ୍ଚାର ସମୟରେ ଯେଉଁ ପରି ଏହି ପ୍ରତୀତ୍ୟସମୁତ୍ପାଦର କାରଣ ପରଂପରା ମିଳିଯାଇ ଥିଲା, ସେହିପରି ଗୌତମଙ୍କର ବୋଧିସତ୍ତ୍ୱାବସ୍ଥାରେ ହିଁ ତାହା ତାଙ୍କୁ ମିଳିଯାଇଥିଲା । କିନ୍ତୁ ବୁଦ୍ଧ ହୋଇସାରିବା ପରେ ହିଁ ଗୌତମ ଏହି କାରଣ ପରଂପରା ଉପଲବ୍‌ଧି କରିଥିଲେ ବୋଲି ମହାବଗ୍‌ଗରେ ପ୍ରାରମ୍ଭରେ କଥିତ ହୋଇଅଛି । ଏହି ପ୍ରତୀତ୍ୟସମୁତ୍ପାଦ, ଗୌତମ ବୁଦ୍ଧଙ୍କ ପରିନିର୍ବାଣର ଶହେ ଦୁଇଶ ବର୍ଷ ପରେ ଲେଖା ଯାଇଥିଲା ଏବଂ ତାହାର ଗୁରୁତ୍ୱ ବଢାଇବା ପାଇଁ ବୁଦ୍ଧଙ୍କଚରିତରେ ପ୍ରଥମରୁ ହିଁ ସନ୍ନିବିଷ୍ଟ କରିଦିଆଗଲା ବୋଲି ଅନୁମିତ ହୁଏ । କ୍ରମେ କ୍ରମେ ସ୍ୱୟଂ ବୁଦ୍ଧଙ୍କ ଚରିତରେ ମଧ୍ୟ ଏହାକୁ ବିଶେଷ ଗୁରୁତ୍ୱ ଦିଆଗଲା । ପରିଣାମରେ ଏତିକ ହେଲା ଯେ, ଚୃରୋଟି ଆର୍ଯ୍ୟ ସତ୍ୟମୂଳକ ସହଜ ଦର୍ଶନ ଗୌଣ ବିବେଚିତ ହେଲା ଏବଂ ଏହି ଗହନ ଦର୍ଶନ ଅକାରଣରେ ମହତ୍ତ୍ୱ ଲାଭକଲା ।

ଉଦ୍ୟାନ ଯାତ୍ରା ବିଷୟକ ୭ମ ଖଣ୍ଡ ତ୍ରିପିଟକ ସାହିତ୍ୟରେ ଗୌତମ ବୁଦ୍ଧଙ୍କ ଜୀବନଚରିତ ସହିତ ଆଦୌ ଯୋଡ଼ାଯାଇନାହିଁ । ତାହା 'ଲଳିତ ବିସ୍ତର','ବୁଦ୍ଧଚରିତ ଓ ଯାତକର ନିଦାନକଥାରେ ଯଥାତଥା ବା ଉଣା ଅଧିକେ ଅତିଶୟୋକ୍ତିପୂର୍ଣ୍ଣ ଭାବରେ ଗ୍ରହଣ କରାଯାଇଛି । ଏମାନଙ୍କ ମଧ୍ୟରୁ ଶେଷୋକ୍ତ ଗ୍ରନ୍ଥରେ "ତତୋ ବୋଧିସତ୍ତୋ ସାରଥି ସମ୍ମ କୋ ନାମ ଏସୋ ପୁରିସୋ କେସା ପିସ୍ୱନ ଯଥା ଅଞ୍ଜେଫଣ୍ଡ ମହାପଦାନେ ଆଗତନୟେନ ପୁଚ୍ଛିତ୍ୱା" କୁହାଯାଇଛି । ଏଥିରୁ ପ୍ରମାଣିତ ହୋଇ ଯାଇଛି ଯେ, ସମସ୍ତ ଗ୍ରନ୍ଥକାର ମହାପଦାନସୁତ୍ତରୁ ଏହି ପ୍ରସଙ୍ଗଟି ଗ୍ରହଣ କରିଛନ୍ତି ।

ପ୍ରଥମ ଖଣ୍ଡରେ କୁହା ଯାଇଛି, ଗୌତମ ବୁଦ୍ଧଙ୍କର ଅଗ୍ରଶ୍ରାବକମାନଙ୍କ ନାମ ଏହି ସୁତ୍ତର ପ୍ରସ୍ତାବନାରେ ହିଁ ଦିଆଯାଇଛି । ତହିଁରେ କୁହାଯାଇଛି ଯେ ଗୌତମ ବୁଦ୍ଧଥିଲେ କ୍ଷତ୍ରିୟ ଏବଂ ତାଙ୍କ ପିତାଙ୍କ ରାଜଧାନୀ ଥିଲା କପିଳବସ୍ତୁ । ପୁଣି ତାଙ୍କ ଗୋତ୍ରର ନାମ ଗୌତମ ଥିଲା ବୋଲି କୁହାଯାଇଛି । ଆମେ ଏଥିର ବିଚାର ଏ ଗ୍ରନ୍ଥର ୪ର୍ଥ ଅଧ୍ୟାୟରେ କରିଅଛୁ ଏବଂ ଏହା ସପ୍ରମାଣ ଦେଖାଇଦେଇଛୁ ଯେ ଶାକ୍ୟ ଶୁଦ୍ଧୋଧନ କପିଳବସ୍ତୁରେ କେବେହେଲେ ରହୁନଥିଲେ । ଶାକ୍ୟମାନଙ୍କର ଗୋତ୍ରଥିଲା ଆଦିତ୍ୟ ଗୋତ୍ର ଏବଂ ସେମାନେ ଶାକ୍ୟ ନାମରେ ହିଁ ବିଶେଷ ଭାବରେ ପରିଚିତ ଥିଲେ । ତାହା ନ ହୋଇଥିଲେ, ବୁଦ୍ଧ-ଭିକ୍ଷୁମାନଙ୍କୁ ଶାକ୍ୟପୁତ୍ରୀୟ ଶ୍ରମଣ ବୋଲି ନାମ ମିଳି ନଥାନ୍ତା । ବୁଦ୍ଧଙ୍କ ଗୋତ୍ର ଯଦି ଗୋତମ ହୋଇଥାଆନ୍ତା, ତେବେ ସେମାନଙ୍କୁ ଗୋତମ ବା ଗୋତମକ ଶ୍ରମଣ ବୋଲି କୁହାଯାଉଥାନ୍ତା ।

## ୨ୟ ପରିଶିଷ୍ଟ

### ବଜ୍ଜୀମାନଙ୍କ ଅଭ୍ୟୁନ୍ନତର ସାତୋଟି ନିୟମ

ଭଗବାନ ରାଜଗୃହରେ, ଗୃଧ୍ରକୂଟ ପର୍ବତରେ ରହୁଥିଲେ । ସେହି ସମୟରେ ରାଜା ଅଜାତଶତ୍ରୁ ବଜ୍ଜୀମାନଙ୍କ ଉପରେ ଆକ୍ରମଣ କରିବାକୁ ଚାହୁଁଥିଲେ । ସେ ବିଷୟରେ ଭଗବାନ୍ ବୁଦ୍ଧଙ୍କ ମତାମତ ଜାଣିବା ପାଇଁ ସେ ବସ୍ସକାର ନାମକ ନିଜର ଜଣେ ବ୍ରାହ୍ମଣ ମନ୍ତ୍ରୀଙ୍କୁ ତାଙ୍କ ପାଖକୁ ପଠାଇଥିଲେ । ସେହି ମନ୍ତ୍ରୀ ଭଗବାନଙ୍କୁ ଅଜାତଶତ୍ରୁଙ୍କ ଅଭିପ୍ରାୟ ଜଣାଇଥିଲେ । ସେତେବେଳେ ଆନନ୍ଦ ଭଗବାନଙ୍କ ନିକଟରେ ବ୍ୟଜନ ଚାଳନ କରୁଥିଲେ । ତାଙ୍କ ଆଡ଼କୁ ଚାହିଁ ଭଗବାନ କହିଲେ—"ଆନନ୍ଦ, ବଜ୍ଜୀମାନେ ଏକାଠି ହୋଇ ଥରକୁଥର ସଭା କରୁଛନ୍ତି ବୋଲି ତୁମେ କଣ ଶୁଣୁଛ ?"

ଆନନ୍ଦ—"ହଁ ଭଦନ୍ତ ! ମୁଁ ଶୁଣୁଛି ଯେ ବଜ୍ଜୀମାନେ ଥରକୁଥର ସଭାକରୁଛନ୍ତି ଓ ଏକାଠି ହେଉଛନ୍ତି ।"

ଭଗବାନ—"କଣ ସମସ୍ତ ବଜ୍ଜୀମାନେ ଏକାଠି ହେଉଛନ୍ତି, ଉଠୁଛନ୍ତି ଓ ନିଜେ ନିଜର ସମଗ୍ରକାମ କରୁଛନ୍ତି ?"

ଆନନ୍ଦ—"ହଁ ଭଦନ୍ତ ! ମୁଁ ଏହିପରି ଶୁଣୁଛି ।"

ଭଗବାନ—"ନିଜେ ଗଢ଼ିଥିବା ନିୟମାବଳୀ ବଜ୍ଜୀମାନେ କଦାପି ଅନ୍ୟଥା କରୁନାହାନ୍ତି ତ ?"

ଆନନ୍ଦ—"ହଁ ଭଦନ୍ତ ! ବଜ୍ଜୀମାନେ ନିୟମ ମାନି ଚଳୁଛନ୍ତି ବୋଲି ମୁଁ ଶୁଣୁଛି ।"

ଭଗବାନ—"ବଜ୍ଜୀମାନେ କଣ ବୃଦ୍ଧ ରାଜମାଣ୍ଡଳିକମାନଙ୍କୁ ସମ୍ମାନ କରନ୍ତି ଓ ସେମାନଙ୍କର ପରାମର୍ଶ କରନ୍ତି ?"

ଆନନ୍ଦ—"ହଁ ଭଦନ୍ତ ! ବଜ୍ଜୀମାନେ ବୃଦ୍ଧ ରାଜମାଣ୍ଡଳିକମାନଙ୍କୁ ସମ୍ମାନ ଦେଖାନ୍ତି ଓ ସେମାନଙ୍କର ପରାମର୍ଶ ମାନି ଚଳନ୍ତି ।"

ଭଗବାନ—"ସେମାନେ ରାଜ୍ୟର ବିବାହିତା ବା ଅବିବାହିତା ସ୍ତ୍ରୀମାନଙ୍କ ଉପରେ ଅତ୍ୟାଚାର କରନ୍ତି ନାହିଁ ତ ?"

ଆନନ୍ଦ—"ଭଦନ୍ତ ! ମୁଁ ଶୁଣୁଛି ଯେ ବଜ୍ଜୀମାନଙ୍କ ରାଜ୍ୟରେ ସ୍ତ୍ରୀମାନଙ୍କ ଉପରେ ଅତ୍ୟାଚାର ହେଉନାହିଁ ।"

ଭଗବାନ—"ବଜ୍ଜୀମାନେ ନିଜର ନଗର ଓ ନଗର ବାହାରେ ଥିବା ଦେବସ୍ଥାନଗୁଡ଼ିକର ଯଥୋଚିତ ଭାବରେ ସଂରକ୍ଷଣ କରୁଛନ୍ତି ତ ?"

ଆନନ୍ଦ—ମୁଁ ଶୁଣୁଛି, ସେମାନେ ନିଜର ଦେବସ୍ଥାନଗୁଡ଼ିକ ପ୍ରତି ଯଥୋଚିତ ଦୃଷ୍ଟି ଦେଇଥାନ୍ତି ।"

ଭଦନ୍ତ—"ନିଜ ରାଜ୍ୟକୁ ଆସୁଥିବା ଅର୍‌ହତମାନେ ସୁଖରେ ରହିବା ପାଇଁ ଓ ବାହାରୁ ଆସୁଥିବା ଅର୍‌ହତମାନଙ୍କୁ ପ୍ରୋତ୍ସାହିତ କରିବାପାଇଁ ବଜ୍ଜୀମାନେ ଏପରି କିଛି ନିୟମ କରିଛନ୍ତି କି ଯାହାଦ୍ୱାରା ସେମାନଙ୍କର କୌଣସି ପ୍ରକାର କଷ୍ଟ ହେବନାହିଁ ?"

ତାପରେ ମନ୍ତ୍ରୀ ବସ୍‌ସକାରଙ୍କୁ ଭଗବାନ କହିଲେ—"ହେ ବ୍ରାହ୍ମଣ ! ମୁଁ ଥରେ ବୈଶାଳୀରେ ରହୁଥିବା ବେଳେ ଅଭ୍ୟନ୍ତର ଏହି ସାତୋଟି ନିୟମ ବଜ୍ଜୀମାନଙ୍କୁ ଉପଦେଶ ଦେଇଥିଲି ।

ଯେତେଦିନ ପର୍ଯ୍ୟନ୍ତ ବଜ୍ଜୀମାନେ ସେହି ନିୟମ ଅନୁସାରେ କାର୍ଯ୍ୟ କରୁଥିବେ, ସେ ପର୍ଯ୍ୟନ୍ତ ସେମାନଙ୍କର ଉନ୍ନତି ଅବଶ୍ୟ ଘଟିବ—ଅବନତି ଘଟିବ ନାହିଁ ।

ବସ୍‌ସକାର କହିଲେ—"ହେ ଗୌତମ ! ଏହି ନିୟମଗୁଡ଼ିକରୁ କେବଳ ଗୋଟିଏ ସୁଦ୍ଧା ନିୟମର ପାଳନ କଲେ ସେମାନଙ୍କର ଉନ୍ନତି ଘଟିବ—ଅବନତି ଘଟିବ ନାହିଁ—ଏପରି ସ୍ଥଳେ ସାତୋଟି ଯାକ ନିୟମ ପାଳିଲେ ଯେ ଅବଶ୍ୟ ଉନ୍ନତି ଘଟିବ—କହିବା ଅନାବଶ୍ୟକ ।

## ସାତୋଟି ନିୟମର ବ୍ୟାଖ୍ୟାନ

ସେହି ସାତୋଟି ନିୟମ ଉପରେ ବୁଦ୍ଧ ଘୋଷାଚାର୍ଯ୍ୟ ଯେଉଁ ଅଟ୍‌ଠ କଥା ଲେଖିଛନ୍ତି, ତାହାର ସାରାଂଶ ତଳେ ଦିଆଯାଉଛି ।

୧ । **ଥରକୁଥର ଏକାଠି ହୋଇଯାଆନ୍ତି**—ଏହା ନ କହି କାଲି ଏକାଠି ଆସିଥିଲେ, ପରଦିନ ମଧ୍ୟ ଆସିଥିଲେ ତେଣୁ ଆଜି ପୁଣି କାହିଁକି ଏକାଠି ହେବେ, ସେମାନେ ଏକାଠି ହୋଇଯିବେ ଯଦି ସେମାନେ ଏକାଠି ନ ହେବେ ତେବେ ଚାରିଆଡ଼ୁ ଆସୁଥିବା ସମ୍ବାଦ ସେମାନେ ଜାଣିପାରିବେ ନାହିଁ । କୌଣସି ଏକ ଗ୍ରାମ ବା ନଗରରେ ସୀମା ସମ୍ପର୍କରେ ବିବାଦ ଉପସ୍ଥିତ ହୋଇଛି କିମ୍ବା କେଉଁଠାରେ କିଛି ଚୋରିହାରି ହେଉଛି ଇତ୍ୟାଦି ସମ୍ବାଦ ସେମାନଙ୍କୁ ଜଣାପଡ଼ିବ ନାହିଁ । ଶାସକମାନଙ୍କର ଅସାବଧାନତା ଜାଣି ଚୋରମାନେ ଲୁଟ୍‌ପାଟ୍ କରନ୍ତି । ଏହାଦ୍ୱାରା ଶାସକର ଅବନତି ଘଟେ । ବାରମ୍ବାର ଏକତ୍ରିତ ହେଲେ ଖବର-ଅନ୍ତର ଜଣାପଡ଼ିଯାଏ ଓ ସୈନ୍ୟ ପଠାଇ ଶୃଙ୍ଖଳା ରକ୍ଷା କରିଯାଇପାରେ । ଶାସକ ସତର୍କ

ଥିବାର ଜାଣିପାରି ଚୋରମାନେ ଦଳବଦ୍ଧ ହୋଇ ରହନ୍ତି ନାହିଁ ଓ ଦଳଭଙ୍ଗି ପଳାନ୍ତି । ଏହିଭଳି ଶାସକଙ୍କର ଉନ୍ନତି ଘଟେ ।

୨ । **ସମସ୍ତେ ଏକାଠି ହେବା ପ୍ରଭୃତି**—ଆଜି କିଛି କାମ ଅଛି କିମ୍ବା କୌଣସି ମଙ୍ଗଳ କାର୍ଯ୍ୟରେ ଯୋଗଦେବାକୁ ହେବ ଇତ୍ୟାଦି ଛଳନା ନକରି କାନରେ ଡାକରା ବାଜିବା ମାତ୍ରେ ସମସ୍ତେ ଏକାଠି ହୋଇଯାଆନ୍ତି । ଏକାଠି ହେଲା ପରେ ଯଦି ବିଚାରପୂର୍ବକ ସମସ୍ତ କାର୍ଯ୍ୟ ପୂର୍ଣ୍ଣମାତ୍ରାରେ ସାଧନ ନକରି ଚାଲିଯାଆନ୍ତି, ତେବେ ବୁଝିବାକୁ ହେବ ଯେ ସେମାନଙ୍କ ମଧ୍ୟରେ ପୂର୍ଣ୍ଣ ଜାଗରଣ ଆସିନାହିଁ । ସେପରି ନକରି, ସମସ୍ତ କାର୍ଯ୍ୟ ସମାପ୍ତ କରି ଏକଷ ଉଠନ୍ତି, ସମଗ୍ର ଭାବରେ ନିଜର କାମ କରନ୍ତି ଅର୍ଥାତ୍ କୌଣସି ରାଜାଙ୍କର କିଛି କାର୍ଯ୍ୟ ପଡ଼ିଲେ ଅନ୍ୟାନ୍ୟ ସମସ୍ତ ରାଜା ତାଙ୍କୁ ସାହାଯ୍ୟ କରନ୍ତି କିମ୍ବା ଅନ୍ୟରାଜ୍ୟରୁ କୌଣସି ଅତିଥି ଆସିଲେ ତାଙ୍କର ଆଦର ଅଭ୍ୟର୍ଥନା ପାଇଁ ସମସ୍ତେ ଉପସ୍ଥିତ ହୁଅନ୍ତି ।

୩ । **ଗଠିତ ନହୋଇଥିବା ନିୟମ ପ୍ରଭୃତି**—ଅର୍ଥାତ୍ ପ୍ରଥମେ ଗଠିତ ହୋଇନଥିବା କୌଣସି ନିୟମକୁ କାର୍ଯ୍ୟକାରୀ ନକରିବା କଥା । ପ୍ରଥମେ ନିର୍ଣ୍ଣୀତ ହୋଇଥିବା ନିୟମ କାର୍ଯ୍ୟକାରୀ କରାଯାଏ । ଗଢ଼ାଯାଇଥିବା ନିୟମକୁ ଭଙ୍ଗି ଦିଆଯାଏ ନାହିଁ, ନିୟମ ଅନୁସାରେ ହିଁ ଚଳନ୍ତି । ଅର୍ଥାତ୍, ଚୋର ବୋଲି ଅନୁମାନ କରି ଯଦି କୌଣସି ଲୋକକୁ ଧରାଯାଏ, ତେବେ ସେ ସମ୍ପର୍କରେ ପୂର୍ଣ୍ଣ ଅନୁସନ୍ଧାନ ନକରି ତାକୁ ଦଣ୍ଡଦିଆଯାଏ ନାହିଁ । ଏହି ଭଳି ଲୋକମାନେ ଉପଦ୍ରୁତ ହୁଅନ୍ତି, ଯାହାଫଳରେ ସେମାନେ ସୀମାନ୍ତ ପ୍ରଦେଶକୁ ଯାଇ ନିଜେ ବିଦ୍ରୋହୀ ହୁଅନ୍ତି ଓ ବିଦ୍ରୋହୀମାନଙ୍କ ଦଳରେ ଯୋଗଦେଇ ଉପଦ୍ରବ ସୃଷ୍ଟି କରନ୍ତି । ଏହିଭଳି

ଶାସକମାନଙ୍କର 'ଅବନତି ଘଟେ । ନିୟମାନୁସାରେ ଚଳିଲେ ରାଜସ୍ୱ ଯଥା ସମୟରେ ମିଳେ, ଆୟ ବଢ଼େ ଓ ସୈନ୍ୟ ତଥା ଅନ୍ୟାନ୍ୟ ବାବଦରେ ବ୍ୟୟ ସୁବିଧାରେ ନିର୍ବାହ ହୁଏ ।

ବଜ୍ଜୀମାନଙ୍କର ଏଇଭଳି ନିୟମ ଥିଲା ଯେ ଯଦି କାହାକୁ ଚୋର ବୋଲି ଧରାଯାଉଥିଲା ତେବେ ବଜ୍ଜୀରାଜ୍ୟ ତାକୁ ଦଣ୍ଡ ନଦେଇ ତାକୁ ବିନିଶ୍ଚୟ ମହାମାତ୍ୟଙ୍କୁ ଦେଇଦେଉଥିଲା । ସେ ତାହାଁର ଯଥୋଚିତ ଅନୁସନ୍ଧାନ କରି, ସେ ପ୍ରକୃତରେ ଚୋର କି ନୁହେ ତାହା ବିଚାର କରନ୍ତି ଓ ଚୋର ନହୋଇଥିଲେ ତାକୁ ଛାଡ଼ି ଦିଅନ୍ତି । ଯଦି ସେ ଚୋର ବୋଲି ସ୍ଥିର ହୁଏ ତେବେ ସେ ନିଜର କୌଣସି ମତ ନଦେଇ ତାକୁ ବ୍ୟାବହାରିକଙ୍କୁ ଦେଇଦିଅନ୍ତି । ସେ ମଧ୍ୟ ତାହାଁର ତନ୍ନ ତନ୍ନ ଅନୁସନ୍ଧାନ କରି ଚୋର ନହୋଇଥିଲେ ଛାଡ଼ି ଦିଅନ୍ତି । ଚୋର ବୋଲି ଜଣାଗଲେ ଅନ୍ତଃକାରିକ ନାମକ ଅଧିକାରୀଙ୍କ ମୂଳେ ତାକୁ ଛାଡ଼ିଦିଅନ୍ତି । ସେ ମଧ୍ୟ ତାକୁ ପରୀକ୍ଷା କରନ୍ତି । ଚୋର ନହୋଇଥିଲେ ତାକୁ ଛାଡ଼ି ଦିଅନ୍ତି । ଚୋର ହୋଇ ଥିଲେ ଅଷ୍ଟକୁଲକଙ୍କ ଜିମା ଛାଡ଼ିଦିଅନ୍ତି । ସେ ମଧ୍ୟ ସେହିପରି ଭାବରେ ପରୀକ୍ଷା କରନ୍ତି । ଚୋର ହୋଇଥିଲେ ତାକୁ ସେନାପତିଙ୍କୁ ଦେଇ ଦିଅନ୍ତି । ସେନାପତି ଉପରାଜାଙ୍କୁ ଓ ଉପରାଜା ରାଜାଙ୍କ ଜିମାଦିଅନ୍ତି । ଚୋର ନ ହୋଇଥିଲେ ରାଜା ତାକୁ ଦଣ୍ଡ ବିଧାନ ଗ୍ରନ୍ଥ ପଢ଼ିବାକୁ କହନ୍ତି । ସେହି ଗ୍ରନ୍ଥରେ ଅମୁକ ପ୍ରକାର ଦୋଷ ପାଇଁ ଅମୁକ ପ୍ରକାର ଦଣ୍ଡ ପ୍ରଭୃତି ଲେଖାଥାଏ । ସେ ଅନୁସାରେ ରାଜା ଚୋରକୁ ଦଣ୍ଡ ଦିଅନ୍ତି । ପ୍ରାଚୀନ ବଜ୍ଜୀମାନଙ୍କର ଶାସନ ପ୍ରଣାଳୀ ଏହିଭଳି ଥିଲା ।

୪ । ଯଦି ବୃଦ୍ଧ ରାଜନୀତିଜ୍ଞମାନଙ୍କର ସମ୍ମାନ ରକ୍ଷା କରା ନଯାଏ ଏବଂ ବାରମ୍ବାର ସେମାନଙ୍କୁ ଏକତ୍ର କରାନଯାଏ

ନେତେବ ସେମାନଙ୍କଠାରୁ ପରାମର୍ଶ ମିଳିବା ସମ୍ଭବପର ନୁହେଁ । ଏହାଫଳରେ ଶାସକଙ୍କର ଅବନତି ଘଟିବ । କିନ୍ତୁ ଯେଉଁ ଲୋକ ଜାଣିବା ଶୁଣିବା ଲୋକଙ୍କର ପରାମର୍ଶ ନିଏ, କି ପରିସ୍ଥିତିରେ କି କାର୍ଯ୍ୟ କରିବାକୁ ହେବ ତାହା ଜାଣିପାରେ ଓ ତଦ୍ଵାରା ତାହାର ଉନ୍ନତି ଘଟେ ।

୫ । ବିବାହିତ କିମ୍ବା ଅବିବାହିତ ସ୍ତ୍ରୀମାନଙ୍କ ଉପରେ ବଳ ପ୍ରୟୋଗ କରିବା ଦ୍ଵାରା ରାଜ୍ୟର ଲୋକେ ଅସନ୍ତୁଷ୍ଟ ହୁଅନ୍ତି । ଲୋକେ କହନ୍ତି "ଆମେ ଯେଉଁ ସ୍ତ୍ରୀମାନଙ୍କୁ ଲାଳନ କରି ବଢ଼ାଇ ଥାଉ, ସେମାନଙ୍କୁ ରାଜ୍ୟର ଶାସକ ବଳପୂର୍ବକ ଧରି ନେଇ ନିଜ ଘରେ ରଖନ୍ତି । ଆହୁରି ମଧ୍ୟ ସେହି ଲୋକମାନେ ସେହିଭଳି ବ୍ୟବହାର ଦ୍ଵାରା ଉତ୍ତ୍ୟକ୍ତ ହୋଇ ସୀମାନ୍ତ ଅଞ୍ଚଳରେ ବିଦ୍ରୋହ କରନ୍ତି । ବିଦ୍ରୋହୀ-ମାନଙ୍କ ସହିତ ଯୋଗଦିଅନ୍ତି ଓ ରାଜ୍ୟର କ୍ଷତି ଘଟାନ୍ତି । ଯେଉଁଠାରେ ସ୍ତ୍ରୀମାନଙ୍କ ଉପରେ ଅତ୍ୟାଚାର ହୁଏ ନାହିଁ ସେ ଦେଶର ଲୋକେ ମନ ଶାନ୍ତିରେ ନିଜ ନିଜର କାର୍ଯ୍ୟ କରନ୍ତି ଓ ତାହାଫଳରେ ରାଜ୍ୟର ଶ୍ରୀବୃଦ୍ଧି ଘଟେ ।

୬ । ଦେବସ୍ଥାନ ପ୍ରତି ଦୃଷ୍ଟି ରଖିଲେ ଦେବତାମାନେ ରାଜ୍ୟ ରକ୍ଷାକରନ୍ତି ।

୭ । ଅର୍ହତମାନଙ୍କୁ କୌଣସି ପ୍ରକାର କଷ୍ଟ ନ ଦେବାର ଅର୍ଥ ହେଉଛି, ସେମାନଙ୍କର ବାସସ୍ଥାନ ନିକଟରେ ଥିବା ଗଛ କାଟି ନଦେବା, ନିକଟବର୍ତ୍ତୀ ଜଙ୍ଗଲରେ ଶୀକାର କରିବା, ପୋଖରୀରୁ ମାଛ ନ ଧରିବା ପ୍ରଭୃତି କଥାପ୍ରତି ସାବଧାନ ରହିବ ।

ଅଟ୍‌ଠ କଥାରେ ବଜ୍‌ଜୀମାନଙ୍କର ନିୟମାବଳୀ ସମ୍ପର୍କରେ ବିସ୍ତୃତ ଟୀକା କରାଯାଇଛି । ରୋଗର ଧରାପିବାପରେ ତାର ବିସ୍ଥର

ପାଇଁ ବିନଶ୍ଚୟ ମହାମାତ୍ୟ, ବ୍ୟାବହାରିକ, ଅନ୍ତଃ କାରିକ, ଅଷ୍ଟକୁଳକ, ସେନାପତି, ଉପରାଜା ଓ ରାଜା ଏହିପରି ସାତ ପ୍ରକାର ଅଧିକାରୀ ଥିଲେ । ସେ ମଧ୍ୟରୁ ଅଷ୍ଟକୁଳକ ଆଜିକାଲିର "ଜୁରି" ପରି କି ଅନ୍ୟ କିଛି, କହିବା କଷ୍ଟକର । ଅନ୍ୟ ଅଧିକାରୀ-ମାନଙ୍କର କ୍ଷମତାର ସ୍ୱରୂପ ସମ୍ପର୍କରେ ବିଶେଷ କିଛି ଜଣାଯାଏ ନାହିଁ । ଗଣରାଜାମାନଙ୍କର ଅଧ୍ୟକ୍ଷ ଥିଲେ ରାଜା । ଏରାଜା କେତେ ବର୍ଷ ପର୍ଯ୍ୟନ୍ତ ଅଧିକ୍ଷ ରୂପେ ରହୁଥିଲେ ତାହା ମଧ୍ୟ କୌଣସିଥିରୁ ଜାଣି ହେଉନାହିଁ । ବଜ୍ଜୀମାନଙ୍କର ଶାସନ ସମ୍ପର୍କରେ ଏକ ଗ୍ରନ୍ଥ ଲେଖାହୋଇ ଥିଲା କିନ୍ତୁ ଏହା ଗମ୍ଭୀର ଦୁଃଖର କଥା ଯେ ଗ୍ରନ୍ଥଟି ସମ୍ପୂର୍ଣ୍ଣ ବିନଷ୍ଟ ହୋଇ ଯାଇଛି । ଗ୍ରୀକମାନଙ୍କପରି ଆମର ପୂର୍ବପୁରୁଷ ମାନଙ୍କର ଯଦି ରାଜ୍ୟ-ବ୍ୟବସ୍ଥା ବା ଶାସନ ଶୃଙ୍ଖଳା-ପ୍ରତି ମମତା ଥାଆନ୍ତା, ତେବେ ଗଣରାଜାମାନଙ୍କର ଇତିହାସ ଲୁପ୍ତପ୍ରାୟ ହୋଇ ଯାଇନଥାନ୍ତା ।

ଏକଥା ବିଶେଷ ଗୁରୁତ୍ୱପୂର୍ଣ୍ଣ ଯେ ସ୍ତ୍ରୀମାନଙ୍କ ଉପରେ ଅତ୍ୟାଚାର ନହେବାର ସମୁଚିତ ବ୍ୟବସ୍ଥା ବଜ୍ଜୀଲୋକଙ୍କର ଥିଲା । ଅନୁମାନ କରାଯାଇ ପାରେ ଯେ, ଯେତେବେଳେ କୌଣସି ଗଣରାଜା ଅବ୍ୟବସ୍ଥ ଭାବରେ ଚାଲୁଥିଲେ ସେତେବେଳେ ଦରିଦ୍ରଲୋକଙ୍କର ସ୍ତ୍ରୀମାନଙ୍କ ଉପରେ ଅତ୍ୟାଚାର ହେଉଥିଲା । ଏହାଫଳରେ ଲୋକମାନଙ୍କୁ ଏକଛତ୍ର ଶାସନ ପ୍ରଣାଳୀ ଅଧିକତର ଶ୍ରେୟସ୍କର ବୋଧହେଲା । ମହାରାଜା ଅତିବେଶୀ ହେଲେ ନିଜ ନଗରର କେତେକ ସ୍ତ୍ରୀଙ୍କୁ ଅନ୍ତଃପୁରକୁ ନେଇ ଯାଉଥିଲେ, କିନ୍ତୁ ଗଣରାଜାମାନେ ସମଗ୍ର ଦେଶରେ ବିସ୍ତୃତ ଭାବେ ରହିଥିବାରୁ ଯେକୌଣସି ଗ୍ରାମର ସ୍ତ୍ରୀ ସେମାନଙ୍କର ଅତ୍ୟାଚାରରୁ ରକ୍ଷା ପାଇପାରୁ

ନଥିଲେ । ଏହି ହେତୁ ଲୋକେ ନିଜ ଇଚ୍ଛାରେ ଏକଛତ୍ର ଶାସନ ପ୍ରଣାଳୀ ମାନିନେଲେ ।

ଯେତେବେଳେ ଏହି ରାଜାମାନେ ଅବ୍ୟବସ୍ଥିତ ଭାବରେ ଶାସନ କଲେ, ସେତେବେଳେ ସେମାନଙ୍କ ମଧ୍ୟରେ ଏକତା ରହିଲା ନାହିଁ ଓ ସେତିକି ବେଳେ ଅଜାତଶତ୍ରୁ ସେମାନଙ୍କୁ ସହଜରେ ପରାଜିତ କରି ପାରିଥିଲେ । ବଜ୍ଜୀମାନଙ୍କର ଗଣରାଜ୍ୟର ବିଲୋପ ହେବାପରେ ମଲ୍ଲମାନଙ୍କର ଗଣ ରାଜ୍ୟ ମଧ୍ୟ ବିନଷ୍ଟ ହୋଇଗଲା ।

ଏହାପରେ, ପୁରାତନ ଗଣଶକ୍ତି ଚାଳିତ ରାଜ୍ୟଗୁଡ଼ିକ ନଷ୍ଟ ହୋଇଗଲା । ସେଗୁଡ଼ିକର ସଂଗଠନ ତଥା ଶାସନ ପ୍ରଣାଳୀ ସାଧାରଣ ଭାବରେ ବୌଦ୍ଧ ସାହିତ୍ୟରେ ଉଲ୍ଲିଖିତ ହୋଇ ରହିଲା ।

ବୌଦ୍ଧ ସଂଘମାନେ ଏକତ୍ର ହୋଇ ସଂଘର କାର୍ଯ୍ୟ କରିବାର ପ୍ରଣାଳୀ ବିନୟ ପିଟକରେ ଉଲ୍ଲିଖିତ ହୋଇଅଛି । ବଜ୍ଜୀ-ପ୍ରଭୃତିର ଗଣରାଜାମାନେ କିପରି ଏକତ୍ର ହୋଇ ନିଜର ସଭା କାର୍ଯ୍ୟ ଚଳାଉଥିଲେ ବୋଲି ତହିଁରୁ ଅନୁମାନ କରାଯାଇ ପାରେ ।

---

# ୩ୟ ପରିଶିଷ୍ଟ

## ଅଶୋକଙ୍କ ଭାବରୁ ଶିଳାଲେଖ ଓ ତାହାଁର ବିଷୟ

ଭାବରୂ ସ୍ଥାନଟି ଜୟପୁର ରାଜ୍ୟର ପାର୍ବତ୍ୟ ପ୍ରଦେଶରେ ଅବସ୍ଥିତ । ସେଠାରେ ରହୁଥିବା ଭିକ୍ଷୁ ସଙ୍ଘ ମହାରାଜା ଅଶୋକଙ୍କୁ ସନ୍ଦେଶମାଗିବାରୁ ସେ ଏହି ସନ୍ଦେଶ ପଠାଇଥିବା ସମ୍ଭବପର । ସେ ସନ୍ଦେଶଟିକୁ ପଥର ଉପରେ ଖୋଦିତ କରାଇଥିଲେ । ଏ ପ୍ରକାର ସନ୍ଦେଶ ବୋଧହୁଏ ଅଶୋକ ବାରମ୍ବାର ପଠାଉଥିଲେ । ସେ ମଧ୍ୟରୁ ଯେଉଁଗୁଡ଼ିକ ମହତ୍ତ୍ୱ ପୂର୍ଣ୍ଣ, ସେଗୁଡ଼ିକୁ ପଥର ବା ଶିଳା-ସ୍ତମ୍ଭରେ ଖୋଦିତ କରାଉଥିଲେ । ଅଶୋକ ମୌଖିକ ବା ଲିଖିତ ଭାବରେ ଏହି ଭଳି ବାର୍ତ୍ତା ପଠାଉଥିଲେ ଯେ,ଏହି ଶିଳା ଲେଖରେ ନିର୍ଦ୍ଦେଶିତ ସୂତ୍ରଗୁଡ଼ିକୁ ମଗଧଦେଶର ବୌଦ୍ଧମାନେ ମଧ୍ୟ ପଢ଼ିବା ଉଚିତ । କିନ୍ତୁ ତାହାଁରେ ଏହା ଖୋଦିତ ହୋଇ ନଥିଲା । କାରଣ ଆଖପାଖର ଲୋକେ କଣ କରୁଥିଲେ ବା ପଢୁଥିଲେ, ସେସବୁର ସମ୍ବାଦ ସେ ସବୁବେଳେ ପାଉଥିଲେ । ସେଥି ନିମନ୍ତେ ସେ ସ୍ୱତନ୍ତ୍ର କର୍ମଚାରୀଙ୍କୁ ନିଯୁକ୍ତ କରୁଥିଲେ । କିନ୍ତୁ ରାଜପୁତାନା ପରି ଦୂର ପ୍ରଦେଶରୁ ସମ୍ବାଦ ଆସିବାରେ ବିଳମ୍ବ ହେବାରୁ ସେଠାରେ ଗୋଟିଏ ଶିଳାଲେଖ

ରଖିବାକୁ ଆବଶ୍ୟକ ବୋଲି ଅଶୋକ ମନା କଲେ । ମୁଁ ଯେପରି ବୁଝିଲି, ସେହିପରି ଭାବରେ ଶିଳାଲେଖର ଅନୁବାଦ ଏଠାରେ ଦେଉଛି ।

## ଭାବରୁ ଶିଳାଲେଖର ଅନୁବାଦ

ପ୍ରିୟଦର୍ଶୀ ମଗଧ ରାଜା ସଂଘକୁ ଅଭିବାଦନ କରି ସଂଘର ସ୍ୱାସ୍ଥ୍ୟ ଏବଂ ସୁଖର ବ୍ୟବସ୍ଥା କରୁଥିଲେ । ଭଦନ୍ତ ! ବୁଦ୍ଧ, ଧର୍ମ ଓ ସଂଘ ପ୍ରତି ମୋର କେତେ ଆଦର ଓ ଭକ୍ତି ଅଛି, ଆପଣ ଜାଣନ୍ତି । ଭଗବାନ୍ ବୁଦ୍ଧଙ୍କର ସମସ୍ତ କଥା ସୁଭାଷିତ; କିନ୍ତୁ, ଭଦନ୍ତ, ମୁଁ ଏଠାରେ ଯାହାକୁ ନିର୍ଦ୍ଦେଶ କରୁଅଛି, ତାହା କେବଳ ଏଥିପାଇଁ ଯେ, ସତ୍-ଧର୍ମ ଚିରସ୍ଥାୟୀ ହେଉ । ଭଦନ୍ତ, ଏହି ଧର୍ମ ପର୍ଯ୍ୟାୟ ହେଉଛି—ବିନୟସମୁକସେ, ଅଲୟବସାନି, ଅନାଗତ ଭୟାନି, ମୁନିଗାଥା, ମୋନେୟସୂତେ, ଉପତିସ ପସିନେ ଓ ଭଗବାନ୍‌ବୁଦ୍ଧଙ୍କର ଏହି ଭାଷଣ, ଯାହାକି ସେ ରାହୁଲଙ୍କୁ ଅସତ୍ୟ ଭାଷଣ ବିଷୟରେ ଉପଦେଶ ଦେଇ କହିଥିଲେ—ଏହି ପର୍ଯ୍ୟାୟଗୁଡ଼ିକ ସମ୍ବନ୍ଧରେ ମୋର ଇଚ୍ଛା ଏହି ଯେ, ବହୁ ସଂଖ୍ୟାରେ ଭିକ୍ଷୁ ଓ ଭିକ୍ଷୁଣୀମାନେ ସେଗୁଡ଼ିକୁ ବାରମ୍ବାର ଶୁଣନ୍ତୁ ଓ କଣ୍ଠସ୍ଥ କରନ୍ତୁ । ଉପାସକ ଏବଂ ଉପାସିକା-ମାନେ ମଧ୍ୟ ସେହିଭଳି କରନ୍ତୁ । ଭଦନ୍ତ, ଏହି ଲେଖ ମୁଁ ଖୋଦିତ କରୁଅଛି, ଉଦ୍ଦେଶ୍ୟ ହେଉଛି ମୋର ଅଭିହିତ ( ସନ୍ଦେଶ ) ସମସ୍ତେ ଜାଣନ୍ତୁ ।

ଏହି ସାତୋଟି ପର୍ଯ୍ୟାୟ ବା ସୂତ୍ର ମଧ୍ୟରେ ପ୍ରଥମ ହେଉଛି, ବିନୟସମୁତ୍କର୍ଷ ବା ଧର୍ମଚକ୍ର ପ୍ରବର୍ତ୍ତନ । ପଞ୍ଚମ ଅଧ୍ୟାୟରେ ଏହି ବିଷୟରେ କୁହାଯାଇଛି । ଅନ୍ୟ ସୂତ୍ର ଗୁଡ଼ିକର କଥା ବର୍ତ୍ତମାନ ଯଥାକ୍ରମରେ ଦିଆ ଯାଉଛି ।

## ଅଳମ୍ଭବସାନ ବା ଅରସ୍ଥବଂସସୁତ୍ତ

ଏହି ସୁତ୍ତ ଅଙ୍ଗୁତ୍ତରନିକାୟର ଚତୁକ୍କନିପାତରେ ଅଛି । ଏଥିର ଅନୁବାଦ ଏଠାରେ ଦିଆଯାଉଛି ।

ଭିକ୍ଷୁଗଣ, ଏହି ଚାରେଟି ଆର୍ଯ୍ୟବଂଶ ପ୍ରଥମ ତଥା ବହୁଦିନର ବଂଶ ଅଟନ୍ତି । ସେମାନେ ପ୍ରାଚୀନ ଓ ଅସଙ୍କୀର୍ଣ୍ଣ । ସେମାନେ କଦାପି ସଙ୍କୀର୍ଣ୍ଣ ହୋଇ ନଥିଲେ, ସଙ୍କୀର୍ଣ୍ଣ ହୋଇ ନାହାନ୍ତି ଓ ସଙ୍କୀର୍ଣ୍ଣ ହେବେନାହିଁ । ସେମାନଙ୍କୁ କୌଣସି ଶ୍ରମଣ ବା ବ୍ରାହ୍ମଣ ଦୋଷ ଦେଇନାହାନ୍ତି । ସେଇ ଚାରେଟି କଣ କଣ ;—ଏଠାରେ ଭିକ୍ଷୁମାନେ ସହଜରେ ମିଳୁଥିବା ଚୀବରରେ ସନ୍ତୁଷ୍ଟ ହୁଅନ୍ତି ଓ ଏହି ସନ୍ତୋଷକୁ ପ୍ରଶଂସା କରନ୍ତି । ଚୀବର ନିମନ୍ତେ ଅଯୋଗ୍ୟ ଆଚରଣ କରନ୍ତି ନାହିଁ, ଚୀବର ନମିଳିଲେ ବ୍ୟସ୍ତ ହୁଅନ୍ତି ନାହିଁ ମିଳିଲେ, ଲୋଭୀ ନହୋଇ, ଉନ୍ମତ୍ତ ନହୋଇ, ଆସକ୍ତ ନହୋଇ, ଚୀବରରେ ଦୋଷ ଥିବାର ଜାଣି କେବଳ ମୁକ୍ତିପାଇଁ ତାହାର ବ୍ୟବହାର କରନ୍ତି । ନିଜର ଏହିପରି ସନ୍ତୋଷରେ ଆତ୍ମସ୍ତୁତି ଓ ପରନିନ୍ଦା କରନ୍ତି ନାହିଁ । ଏହିପରି ସନ୍ତୋଷରେ ଯେଉଁମାନେ ଦକ୍ଷ, ସାବଧାନ, ସଚେତ ଓ ସ୍ମୃତିମାନ୍ ହୁଅନ୍ତି, ହେ ଭିକ୍ଷୁଗଣ, ତାଙ୍କୁ ପ୍ରାଚୀନ ଉଗ୍ର ଆର୍ଯ୍ୟବଂଶ ଅନୁସାରେ ଆଚରଣ କରୁଥିବା ଲୋକ ଭିକ୍ଷୁ କହନ୍ତି ।

ପୁଣି, ହେ ଭିକ୍ଷୁଗଣ—ଭିକ୍ଷୁ ସହଜଲଭ୍ୟ ଭିକ୍ଷାରେ ସନ୍ତୁଷ୍ଟ ହୁଏ, ଏହିଭଳି ସନ୍ତୋଷର ପ୍ରଶଂସା କରେ, ଭିକ୍ଷା ନିମନ୍ତେ ଅନୁଚିତ ଆଚରଣ କରେନାହିଁ, ଭିକ୍ଷା ନମିଳିଲେ ବ୍ୟସ୍ତ ହୁଏ ନାହିଁ, ମିଳିଲେ ଲୋଭୀ, ଉନ୍ମତ୍ତ ବା ଆସକ୍ତ ନହୋଇ କେବଳ

ମୁକ୍ତି ପାଇ ତାହା ଗ୍ରହଣ କରେ, ଅନ୍ନରେ ଦୋଷଥିବା ଜାଣି କେବଳ ମୁକ୍ତି ନିମନ୍ତେ ଅନ୍ନ ଗ୍ରହଣ କରେ, ଆହୁରି ମଧ୍ୟ ଏହି ସନ୍ତୋଷରେ ସେ ଆତ୍ମସ୍ତୁତି ବା ପରନିନ୍ଦା କରେନାହିଁ । ଏହିପ୍ରକାର ସନ୍ତୋଷରେ ଯେ ଦକ୍ଷ ସାବଧାନ, ସଚେତ ଓ ସ୍ମୃତିବାନ ହୁଏ, ହେ ଭିକ୍ଷୁଗଣେ ! ତାଙ୍କୁ ପ୍ରାଚୀନ, ପ୍ରଥମ ଆର୍ଯ୍ୟବଂଶ ଅନୁସାରେ ଆଚରଣ କରୁଥିବା ଲୋକ ଭିକ୍ଷୁ କହନ୍ତି ।

ପୁନଶ୍ଚ ହେ ଭିକ୍ଷୁଗଣ ! ଭିକ୍ଷୁ ଯେ କୌଣସି ପ୍ରକାର ସ୍ଥାନରେ ବାସକଲେ ମଧ୍ୟ ସନ୍ତୁଷ୍ଟ ରହେ ଓ ସେ ପ୍ରକାର ସନ୍ତୋଷର ପ୍ରଶଂସା କରେ, ନିବାସ ସ୍ଥାନ ପାଇଁ ଅଯୋଗ୍ୟ ଆଚରଣ କରେ ନାହିଁ, ନିବାସସ୍ଥାନ ନମିଳିଲେ ଭିକ୍ଷୁ ବ୍ୟସ୍ତ ହୁଏ ନାହିଁ କିମ୍ବା ମିଳିଲେ ଲୋଭୀ ନହୋଇ, ମତ୍ତ ନହୋଇ, ଆସକ୍ତ ନହୋଇ ନିବାସ ସ୍ଥାନରେ ଦୋଷଥିବା ଜାଣି, କେବଳ ମୁକ୍ତି ନିମନ୍ତେ ତାହା ବ୍ୟବହାର କରେ । ନିଜର ଏପ୍ରକାର ସନ୍ତୋଷରେ ଆତ୍ମସ୍ତୁତି ବା ପରନିନ୍ଦା କରେନାହିଁ । ଯେଉଁମାନେ ଏହିଭଳି ସନ୍ତୋଷରେ ଦକ୍ଷ, ସାବଧାନ, ସଚେତ ଏବଂ ସ୍ମୃତିବାନ ତାଙ୍କୁ ପ୍ରାଚୀନ ପ୍ରଥମ ଆର୍ଯ୍ୟ ବଂଶ ଅନୁସାରେ ଆଚରଣ କରିବା ଲୋକ ଭିକ୍ଷୁ କହନ୍ତି । ପୁଣି ହେ ଭିକ୍ଷୁଗଣ; ଭିକ୍ଷୁ ସମାଧି ଭାବନାରେ ଆନନ୍ଦିତ ହୁଏ । ଭାବନା ରତ ହୁଏ । କ୍ଲେଶ ନଷ୍ଟ କରିବାରେ ଆନନ୍ଦ ଉପଭୋଗ କରେ । ପୁଣି ଏପ୍ରକାର ଭାବନାରେ ସେ ଆତ୍ମସ୍ତୁତି ବା ପରନିନ୍ଦା କରେ ନାହିଁ । ଯେଉଁ ଭିକ୍ଷୁ ଏ ଆନନ୍ଦରେ ଦକ୍ଷ, ସାବଧାନ, ସଚେତ ଏବଂ ସ୍ମୃତିବାନ୍ ତାଙ୍କୁ ପ୍ରାଚୀନ ଆର୍ଯ୍ୟବଂଶ ଅନୁସାରେ ଆଚରଣ କରିବା ଲୋକ ଭିକ୍ଷୁ କହନ୍ତି ।

ଭିକ୍ଷୁଗଣ ! ଏହି ହେଉଛି ଚାରୋଟି ଆର୍ଯ୍ୟ ବଂଶ ଯାହାକୁ କୌଣସି ଶ୍ରମଣ ବା ବ୍ରାହ୍ମଣ ଦୋଷ ଦେଇ ନାହାନ୍ତି । (୧)

ଭିକ୍ଷୁଗଣ, ଏହି ଚାରି ଆର୍ଯ୍ୟବଂଶ ସମନ୍ୱିତ ଭିକ୍ଷୁ ଯଦି ପୂର୍ବ ଦିଗକୁ ଯାଏ ତାହାହେଲେ ଅରତି ତାକୁ ଜୟ କରିପାରିବ ନାହିଁ । ପଶ୍ଚିମ, ଉତ୍ତର ବା ଦକ୍ଷିଣ ଦିଗକୁ ସେ ଗଲେ ମଧ ସେ ଅରତିକୁ ଜୟ କରିବ, ଅରତି ତାକୁ ଜୟ କରି ପାରିବ ନାହିଁ କାହିଁକି ନା ; ତାର କାରଣ ହେଉଛି, ଧୀର ପୁରୁଷ ଅରତି ଓ ବିଜୟ ଲାଭ କରେ ।

ଅରତି ଧୀରକୁ ଜୟକରିପାରେ ନା, ଅରତି ଧୀରଠାରେ ବିଜୟ ଲାଭକରିପାରେ ନାହିଁ । ଧୀର ଅରତିକୁ ଜୟକରେ ଓ ତାହାଠାରେ ବିଜୟ ଲାଭକରେ ।

ସବୁକାର୍ଯ୍ୟ ତ୍ୟାଗ କରିଥିବା ଓ ରାଗଦ୍ୱେଷ ପ୍ରଭୃତିକୁ ଦୂର କରିଥିବା ଧୀର ପୁରୁଷର ମାର୍ଗରେ ଠିଆହୋଇ ପାରିବ କିଏ ? ବିଶୁଦ୍ଧ ସ୍ୱର୍ଣ୍ଣ ମୁଦ୍ରା ପରି ବ୍ୟକ୍ତିଙ୍କଠାରେ ଦୋଷାରୋପ କରିପାରିବ କିଏ ? ଦେବତାମାନେ ମଧ ତାହାର ପ୍ରଶଂସା କରନ୍ତି ଓ ବ୍ରହ୍ମଦେବ ମଧ ତାହାର ପ୍ରଶଂସା କରନ୍ତି ।

## ଅନାଗତ ଭୟ

ଏହି ସୂତ୍ର, ଅଙ୍ଗୁତ୍ତର ନିକାୟର ପଞ୍ଚକ ନିପାତରେ ଅଛି । ତଳେ ତାହାର ଅନୁବାଦ ଦିଆଯାଉଛି ।

ହେ ଭିକ୍ଷୁଗଣ; ଅପ୍ରାପ୍ତ ପଦର ପ୍ରାପ୍ତି ନିମନ୍ତେ, ନଜାଣିବା

(୧) ପ୍ରାଚୀନ ବଂଶ ପରମ୍ପରାକୁ ବ୍ରାହ୍ମଣ ଉଚ୍ଚକୁହନ୍ତି । କିନ୍ତୁ ତହିଁରେ ମହତ୍ତ୍ୱ ନାହିଁ । ଏହି ସୂତ୍ର ବର୍ଣ୍ଣିତ ଆର୍ଯ୍ୟବଂଶ ପରମ୍ପରା ହିଁ ମହତ୍ତ୍ୱପୂର୍ଣ୍ଣ ଏପରି ଅର୍ଥ ହେଉଛି ।

ପଦାର୍ଥକୁ ଜାଣିବା ନିମନ୍ତେ, ଯାହାର ସାକ୍ଷାତ୍କାର ହୋଇନାହିଁ ତାହାର ସାକ୍ଷାତ୍କାର ନିମନ୍ତେ,ଅପ୍ରମତ୍ତତା ଓ ଉଦ୍ୟମଶୀଳତା ଲାଗି ଓ ମନଯୋଗ ପୂର୍ବକ ଆଚରଣ କରିବା ନିମନ୍ତେ ସାଧାରଣ ଭିକ୍ଷୁଙ୍କ ପକ୍ଷରେ ଏହି ପାଞ୍ଚୋଟି ଅନାଗତ ଭୟ ଯଥେଷ୍ଟ । ସେହି ପାଞ୍ଚୋଟି କଣ ?

ଏହାପରେ, ହେ ଭିକ୍ଷୁଗଣ, ଭିକ୍ଷୁ ଏହିଭଳି ବିଚାର କରେ ଯେ, ମୁଁ ବର୍ତ୍ତମାନ ତରୁଣ ଓ ଯୌବନ ସମ୍ପନ୍ନ; ପୁଣି ଏହିପରି ଏକ ସମୟ ଆସିବ ଯେତେବେଳେ ଶରୀର ଜରାକ୍ରାନ୍ତ ହେବ । ବୃଦ୍ଧଙ୍କ ପାଇଁ ଜରାଜୀର୍ଣ୍ଣଙ୍କ ପାଇଁ ବୌଦ୍ଧଧର୍ମର କୌଣସି ସୁବ୍ୟବସ୍ଥା ନାହିଁ । ଅରଣ୍ୟରେ ଏକାନ୍ତ ବାସକରି ରହିବାକୁ ମଧ୍ୟ ସୁବିଧା ନାହିଁ । ସେହି ଅନିଷ୍ଟ ଓ ଅପ୍ରିୟ ଦଶା ଆସିବା ପୂର୍ବରୁ ଅପ୍ରାପ୍ତ ପଦର ପ୍ରାପ୍ତି ନିମନ୍ତେ, ଅଜଣା ବିଷୟକୁ ଜାଣିବା ନିମନ୍ତେ, ଯାହାର ସାକ୍ଷାତକାର ହୋଇନାହିଁ ତାହାର ସାକ୍ଷାତକାର ନିମନ୍ତେ ପ୍ରଯତ୍ନଶୀଳ ହୋଇ ରହିବା ବିଧେୟ । ଏହି ପ୍ରଥମ ଅନାଗତ ଭୟ ମନଲଗାଇ ଆଚରଣ କରିବା ନିମନ୍ତେ ସାଧାରଣ ଭିକ୍ଷୁ ପକ୍ଷରେ ଯଥେଷ୍ଟ ।

ପୁଣି ଭିକ୍ଷୁଗଣ ! ଭିକ୍ଷୁ ଏହିପରି ବିଚାର କରେ—ଏବେ ମୁଁ ନିରୋଗ, ମୋର ଜଠରାଗ୍ନି ପ୍ରବଳ ଅଛି ଏବଂ ପ୍ରଚେଷ୍ଟା ନିମନ୍ତେ ଅନୁକୂଳ ଅଟେ । କିନ୍ତୁ ସମୟ ଆସିବ, ଯେତେବେଳେ ଏହି ଶରୀର ବ୍ୟାଧିଗ୍ରସ୍ତ ହୋଇଯିବ । ବ୍ୟାଧିଗ୍ରସ୍ତ ଲୋକଙ୍କ ନିମନ୍ତେ ବୌଦ୍ଧଧର୍ମରେ କୌଣସି ସୁବ୍ୟବସ୍ଥା ନାହିଁ । ଅରଣ୍ୟରେ ଏକାନ୍ତ ବାସମଧ୍ୟ ସମ୍ଭବପର ନୁହେ । ସେହି ଅନିଷ୍ଟ ଓ ଅପ୍ରିୟ ପରିସ୍ଥିତି

ଉପୁଜିବା ଆଗରୁ ମୁଁ ପ୍ରଯତ୍ନଶୀଳ ହେବା ଉଚିତ, ଯାହା ଫଳରେ ରୁଗ୍ଣାବସ୍ଥାରେ ମଧ୍ୟ ମୁଁ ସୁଖରେ ରହିପାରିବ । ଏହା ଦ୍ୱିତୀୟ ଅନାଗତ ଭୟ ।

ପୁନଶ୍ଚ, ଭିକ୍ଷୁଗଣ ! ଭିକ୍ଷୁ ଏପରି ଚିନ୍ତାର କରେ ଯେ, ବର୍ତ୍ତମାନ ତ ସୁଭିକ୍ଷ ହୋଇଛି, ଭିକ୍ଷା ସହଜରେ ମିଳୁଛି, ଅକ୍ଲେଶରେ ଭିକ୍ଷା ଉପରେ ନିର୍ଭର କରି ଚଳିହେବ । ତେବେ ଏପରି ସମୟ ଆସିବ ଯେତେବେଳେ ଦୁର୍ଭିକ୍ଷ ହେବ, ଫସଲ ହେବନାହିଁ, ଭିକ୍ଷା ମିଳିବା କଠିନ ହେବ ଓ ଭିକ୍ଷା ଉପରେ ନିର୍ଭର କରି ଆଉ ଚଳି ହେବନାହିଁ । ଏହିଭଳି ଦୁର୍ଭିକ୍ଷ ସମୟରେ, ଲୋକେ ସୁଭିକ୍ଷ ଅଞ୍ଚଳକୁ ଚାଲିଯିବେ ପୁଣି ସେଠାରେ ବଡ଼ ଭିଡ଼ ହେବ; ସେହିପରି ସ୍ଥଳରେ ବୌଦ୍ଧଧର୍ମର କୌଣସି ସୁବ୍ୟବସ୍ଥା ହୋଇ ପାରିନାହିଁ, ଅରଣ୍ୟରେ ଏକାନ୍ତବାସରେ ରହିବା ସୁବିଧା ହେବନାହିଁ; ଯେହି ଅନିଷ୍ଟ ଓ ଅପ୍ରିୟ ପରିସ୍ଥିତି ଉପୁଜିବା ଆଗରୁ ଯତ୍ନଶୀଳ ହେବା ଉଚିତ ଯଦ୍ଦ୍ୱାରା ଭିକ୍ଷୁ, ଦୁର୍ଭିକ୍ଷରେ ମଧ୍ୟ ସୁଖରେ ରହି ପାରିବ । ଏହା ହେଉଛି ତୃତୀୟ ଅନାଗତ ଭୟ ।

ପୁଣି, ଭିକ୍ଷୁଗଣ ! ଭିକ୍ଷୁ ବିଚାର କରେ ଯେ, ଆଜି ଲୋକେ ଆନନ୍ଦ ମନରେ ଅଛନ୍ତି; ଦୁଧ ଓ ପାଣିପରି ପରସ୍ପର ପ୍ରତି ସଖ୍ୟଭାବ ହେତୁ ପ୍ରେମଦୃଷ୍ଟି ରଖିଛନ୍ତି । ତେବେ ଏପରି ଏକ ସମୟ ଆସିବ, ଯେତେବେଳେ କୌଣସି ଭୟାବହ ବିଦ୍ରୋହ ଉପସ୍ଥିତ ହେବ । ଲୋକେ ନିଜ ନିଜର ଜିନିଷପତ୍ର ଧରି ଏଣେତେଣେ ଦୌଡ଼ିବେ । ଏହିଭଳି ସଙ୍କଟମୟ ସମୟରେ ସୁରକ୍ଷିତ ସ୍ଥାନରେ ଲୋକେ ଜମା ହୁଅନ୍ତି ପୁଣି ସେଠାରେ ମଧ୍ୟ ଜନଗହଳି ହୁଏ । ସେହି ସ୍ଥାନରେ ବୌଦ୍ଧଧର୍ମର କୌଣସି ସୁବ୍ୟବସ୍ଥା ନାହିଁ, ଅରଣ୍ୟରେ ଏକାନ୍ତ

ବାସ କରିବା ସହଜ ବ୍ୟାପାର ନୁହେ । ସେହି ଅନିଷ୍ଟ ଓ ଅପ୍ରିୟ ପରିସ୍ଥିତି ଉପୁଜିବା ପୂର୍ବରୁ ଚେଷ୍ଟା କରିବା ଉଚିତ ଯଦ୍ଦ୍ୱାରା ସେହି ସଙ୍କଟରେ ମଧ୍ୟ ସୁଖରେ ରହିହେବ ।

ପୁଣି, ଭିକ୍ଷୁଗଣ ! ଭିକ୍ଷୁ ଏପରି ବିଚାର କରେ ଯେ ଆଜି ସଂଘ ସମଗ୍ର ସମ୍ମିଳିତ ଓ ବିବାଦହୀନ ଭାବରେ ଗୋଟିଏ ଧ୍ୟେୟବସ୍ତୁର ଅନୁସରଣ କରୁଛି; କିନ୍ତୁ ଏପରି ସମୟ ଆସିବ,ଯେତେବେଳେ ସଂଘରେ ଭେଦଭାବ ଦେଖାଯିବ । ସଂଘରେ ଭେଦ ଦେଖା ଯିବାବେଳେ ବୌଦ୍ଧଧର୍ମରେ ଭିକ୍ଷୁଙ୍କ ପାଇଁ କୌଣସି ସୁବ୍ୟବସ୍ଥା ନାହିଁ, ଅରଣ୍ୟରେ ଏକାନ୍ତ ବାସରେ ରହିବା ସହଜ ନୁହେ । ସେହି ଅନିଷ୍ଟ ଓ ଅପ୍ରିୟ ପରିସ୍ଥିତି ଉପୁଜିବା ପୂର୍ବରୁ ଚେଷ୍ଟା କରିବା ଉଚିତ, ଯାହାଫଳରେ ସେହି ପ୍ରତିକୂଳ ପରିସ୍ଥିତିରେ ମଧ୍ୟ ସୁଖରେ ରହିହେବ । ଏହା ହେଉଛି ପଞ୍ଚମ ଅନାଗତ ଭୟ ।

ଭିକ୍ଷୁଗଣ ! ଭିକ୍ଷୁ ଏହି ପାଞ୍ଚୋଟି ଅନାଗତ ଭୟକୁ, ଅପ୍ରାପ୍ତପଦର ପ୍ରାପ୍ତି ନିମନ୍ତେ, ଅଜଣା ବସ୍ତୁକୁ ଜାଣିବା ନିମନ୍ତେ, ଯାହାର ସାକ୍ଷାତ୍କାର ହୋଇନାହିଁ ତାହାର ସାକ୍ଷାତ୍କାର ନିମନ୍ତେ, ଅପ୍ରମତ୍ତତା ଓ ଉଦ୍ୟମ ଶୀଳତା ଲାଗି ଓ ମନଯୋଗ ପୂର୍ବକ ଆଚରଣ କରିବା ନିମନ୍ତେ ଯଥେଷ୍ଟ ।

## ମୁନିଗାଥା

ଏହି ସୂତ୍ର 'ମୁନିସୁତ୍ତ' ନାମରେ ସୁତ୍ତନିପାତରେ ଅଛି । ତାହାର ଅନୁବାଦ ତଳେ ଦିଆ ଯାଉଛି ।

ସ୍ନେହରୁ ଭୟ ଓ ଗୃହରୁ ଦୁର୍ଗନ୍ଧ ଜାତହୁଏ; ତେଣୁ ଅନାଗରିକତା ଓ ନିଃସ୍ନେହତା ମୁନିଙ୍କର ଆଦର୍ଶ ।

ଯେଉଁ ଲୋକ ଉଦ୍‌ଭୂତ ମନୋଦୋଷକୁ ଉଚ୍ଛେଦ କରି ପୁଣି ତାକୁ ବଢ଼ାଇ ନଦିଏ ଓ ତାହାପ୍ରତି ସ୍ନେହଭାବ ପୋଷଣ କରେନାହିଁ ଏକାକୀ ରହୁଥିବା ସେହି ବ୍ୟକ୍ତିଙ୍କୁ ମୁନି କୁହାଯାଏ । ଶାନ୍ତପଦ ସେ ପାଆନ୍ତି ।

ପଦାର୍ଥ ଓ ତାହାର ବୀଜ (୧) ଜାଣିପାରି ଯେଉଁଲୋକ ତାହାପ୍ରତି ଆସକ୍ତ ହୁଏନାହିଁ, ସେ ହେଉଛି ପ୍ରକୃତରେ ଜନ୍ମକ୍ଷୟାନ୍ତଦର୍ଶୀ ମୁନି । ତାହାର ପୁନର୍ଜନ୍ମ ହୁଏନାହିଁ । ୩ ।

ଯେଉଁଲୋକ ସବୁ ଅଭିନିବେଶ ଜାଣି ଗୋଟିକୁ ସୁଦ୍ଧା ଇଚ୍ଛା କରେନାହିଁ ସେହି ତୃଷ୍ଣାରହିତ ନିର୍ଲୋଭ ମୁନି ଅସ୍ଥିର ହୁଏ ନାହିଁ; କାରଣ ସେ ତା'ର ପରପାରକୁ ଚାଲିଯାଏ । ୪ ।

ଯେ ସମସ୍ତଙ୍କୁ ଜିଣେ, ସବୁକଥା ଜାଣେ, ସୁବୁଦ୍ଧି, ସମସ୍ତ ପଦାର୍ଥରେ ଅଲିପ୍ତ, ସର୍ବତ୍ୟାଗୀ ଓ ତୃଷ୍ଣାର କ୍ଷୟରୁ ମୁକ୍ତହୋଇଛି, ସୁଜ୍ଞଲୋକମାନେ ତାଙ୍କୁ ମୁନି ବୋଲି କହନ୍ତି ।୫।

ପ୍ରଜ୍ଞା ଯାହାର ବଳ, ଯେ ଶୀଳ ଏବଂ ବ୍ରତସମ୍ପନ୍ନ, ସମାହିତ, ଧ୍ୟାନରତ, ସ୍ମୃତିମାନ୍, ସଙ୍ଗମୁକ୍ତ, କାଠିନ୍ୟ ରହିତ ଓ ଅନାଶ୍ରବ, ସୁଜ୍ଞଲୋକେ ତାଙ୍କୁହିଁ ମୁନି ବୋଲି କହନ୍ତି ।୬।

ଯେ ଏକୁଟିଆ ରହେ, ଅପ୍ରମତ୍ତ, ମୁନି, ନିନ୍ଦା ଓ ସ୍ତୁତିରେ ବିଚଳିତ ହୁଏ ନାହିଁ, ସିଂହ ଗର୍ଜନପରି ଶବ୍ଦକୁ ମଧ୍ୟ ଡରେ ନାହିଁ, ବାୟୁପରି ଅଲିପ୍ତ, ଯେ ଅନ୍ୟମାନଙ୍କର ନେତା ଓ ଯାହାଙ୍କର ନେତା କେହି ନୁହନ୍ତି, ଏହିପରି ବ୍ୟକ୍ତିଙ୍କୁ ସୁଜ୍ଞ ଲୋକେ ମୁନିବୋଲି କହନ୍ତି ।୭।

---

(୧) ପାଲିରେ ଅଛି ପମାୟ । ଟୀକାରେ ଅଛି 'ହିଂସିବା, ବଧିବା' କିନ୍ତୁ 'ପ୍ର' ପୂର୍ବକ 'ମା' ଧାତୁର ଅର୍ଥ, 'ମାପିବା, ଜାଣିବା' ହେବା ଠିକ୍ ପରିଲାଗେ ।

ଯାହାଙ୍କ ବିଷୟରେ ଲୋକେ ମନଇଚ୍ଛା କହିଲେ ମଧ୍ୟ ଯେ ସ୍ନାନଘାଟର ଶିଳାସ୍ତମ୍ଭ (୧) ସଦୃଶ ଦୃଢ଼, ଯେ ବୀତରାଗ ଓ ସୁସମାହିତେନ୍ଦ୍ରିୟ, ତାଙ୍କୁ ଲୋକେ ମୁନି ବୋଲି କହନ୍ତି ।୮ ।

ଯେଉଁ ସ୍ଥିତାତ୍ମା 'ତରଙ୍ଗ' ସଦୃଶ ସରଳଗାମୀ, ଯେ ପାପ-କର୍ମକୁ ତିରସ୍କାର କରନ୍ତି, ସମ ଓ ବିଷମକୁ ପରୀକ୍ଷା କରନ୍ତି, ତାଙ୍କୁ ସୁଜ୍ଞଲୋକେ ମୁନି କହନ୍ତି ।୯।

ଶ୍ରେଷ୍ଠ ହୁଅନ୍ତୁ ବା ମଧ୍ୟମ ବୟସ୍କ ହୁଅନ୍ତୁ ଯେଉଁ ସଂଯତାତ୍ମା ମୁନି ପାପ କରନ୍ତି ନାହିଁ, ଯେଉଁ ସଂଯତାତ୍ମା କ୍ରୋଧ ହୁଅନ୍ତି ନାହିଁ କିମ୍ବା ଅନ୍ୟକୁ କ୍ରୁଦ୍ଧ କରାନ୍ତି ନାହିଁ, ସୁଜ୍ଞ ଲୋକେ ତାଙ୍କୁ ମୁନି କହନ୍ତି ।୧୦।

ଯେଉଁ ଲୋକ ପରଦତ୍ତ ଅନ୍ନରେ ଉପଜୀବିକା ନିର୍ବାହ କରନ୍ତି, ଯେ ଆଦ୍ୟ,ମଧ୍ୟ ବା ଅନ୍ତରେ ମିଳିବା ଭିକ୍ଷାକୁ ପ୍ରଶଂସା ବା ନିନ୍ଦା ନକରି ସନ୍ତୁଷ୍ଟ ହୁଅନ୍ତି, ତାଙ୍କୁ ସୁଜ୍ଞଲୋକେ ମୁନି କହନ୍ତି ।୧୧।

ଯେଉଁ ମୁନି ସ୍ତ୍ରୀ ସଙ୍ଗରୁ ବିରତ, ତରୁଣ ହୋଇଲେ ମଧ୍ୟ କୌଣସିଠାରେ ଆବଦ୍ଧ ହୁଅନ୍ତି ନାହିଁ, ଆମୋଦ ପ୍ରମୋଦରୁ ବିରତ ବା ମୁକ୍ତ ହୁଅନ୍ତି, ତାଙ୍କୁ ସୁଜ୍ଞ ଲୋକେ ମୁନିବୋଲି କହନ୍ତି ।୧୨।

ଯେ ଇହଲୋକକୁ ଜାଣିକରି ପରମାର୍ଥର ଅନ୍ୱେଷଣ କରନ୍ତି, ପ୍ରବାହ ଓ ସମୁଦ୍ର ମଧ୍ୟରେ ଯେ ତାଦୃଗ୍‌ଭାବ ଉପଲବ୍‌ଧି କରିପାରନ୍ତି, ଯାହାଙ୍କର ବନ୍ଧନ ଛିନ୍ନ ହୋଇଅଛି, ଯେ ଅନାଶ୍ରିତ ଓ ଅନାସ୍ରବ ହୋଇଛନ୍ତି, ତାଙ୍କୁ ମୁନି ବୋଲି କହନ୍ତି ।୧୩।

---

(୧) ଗାଧୁଆ ତୋଠରେ ପିଠି ପ୍ରଭୃତି ସ୍ନାନାର୍ଥୀମାନେ ଘଷିବା ପାଇଁ ଚତୁଷ୍କୋଣ ବା ଅଷ୍ଟକୋଣ ସ୍ତମ୍ଭ ନିର୍ମିତ ଥାଏ ।

ପତ୍ନୀକୁ ପାଳନ ପୋଷଣ କରୁଥିବା ଗୃହସ୍ଥ ଓ ମମତାଶୂନ୍ୟ ମୁନି, ଏହି ଦୁହିଁଙ୍କର ଚାଲିଚଳନ ଓ ଆଚାର ବ୍ୟବହାରରେ ବହୁ ପ୍ରଭେଦ ଅଛି । କାରଣ ହେଉଛି—ପ୍ରାଣଘାତ କପର ନହେବ, ସେ ବିଷୟରେ ଗୃହସ୍ଥ ସଂଯମ ପାଳନ କରେନାହିଁ; ମାତ୍ର ମୁନି ସର୍ବଦା ପ୍ରାଣୀଙ୍କୁ ରକ୍ଷାକରିବାକୁ ଚାହେଁ ।୧୪।

ଯେଉଁପରି ଆକାଶରେ ଉଡ଼ୁଥିବା ନୀଳଗ୍ରୀବ ମୟୂର, ହଂସର ଗତିବେଗରେ ଚାଲିପାରେ ନାହିଁ, ସେହିପରି ଏକାନ୍ତରେ, ବଣରେ ଧ୍ୟାନ କରୁଥିବା ଭିକ୍ଷୁ ବା ମୁନି ତୁଲ୍ୟ ଆଚରଣ ଗୃହସ୍ଥ କରିପାରେନାହିଁ ।୧୫।

## ମୋନେୟ୍ୟ ସୁତ୍ତ

ଏହା 'ନାଳକ ସୁତ୍ତ' ନାମରେ ସୁତ୍ତନିପାତରେ ଅଛି । ଏହାର ପ୍ରାସ୍ତାବିକ ଗାଥା କୋଡ଼ିଏଟି । ସେଗୁଡ଼ିକର ଅନୁବାଦ ଏଠାରେ ଦିଆଯାଉନାହିଁ । ଜିଜ୍ଞାସୁ ବନ୍ଧୁମାନେ ମରାଠୀ ପତ୍ରିକା "ବୁଦ୍ଧିଜ୍ଞାନବିସ୍ତାର"ର ୧୯୩୨ ଜୁନ୍ ସଂଖ୍ୟା ଦେଖନ୍ତୁ । ତହିଁରେ ଏହି ସୁତ୍ତର ପ୍ରାସ୍ତାବିକ ଗାଥାମାନଙ୍କ ସହିତ ଅନୁବାଦ ଦିଆଯାଇଛି । ଅସିତ ଋଷିଙ୍କର ଭଣଜା ଥିଲେ ନାଳକ । ସେ ଅଳ୍ପବୟସ୍କ ଥିଲାବେଳେ ଗୌତମ ବୋଧିସତ୍ତ୍ୱ ଜନ୍ମହୋଇଥିଲେ । ବୋଧିସତ୍ତ୍ୱଙ୍କ ଭବିଷ୍ୟତ ସମ୍ପର୍କରେ ଅସିତ ଋଷି କହିଥିଲେ ଯେ ସେ ଶ୍ରେଷ୍ଠ ମୁନି ହେବେ ; ପୁଣି ଗୌତମ ବୁଦ୍ଧଙ୍କର ଧର୍ମ ଅନୁସରଣ କରିବାପାଇଁ ନାଳକଙ୍କୁ ସେ ଉପଦେଶ ଦେଇଥିଲେ । ନାଳକ, ନିଜ ମାମୁଁଙ୍କ କଥାରେ ଆସ୍ଥା ରଖି ଗୌତମ ବୋଧିସତ୍ତ୍ୱ ହେବା ପର୍ଯ୍ୟନ୍ତ ତପସ୍ୱୀ ହୋଇ ରହିଲେ । ଗୌତମ ବୁଦ୍ଧତ୍ୱ ପ୍ରାପ୍ତ ହେବାପରେ, ସେ ତାଙ୍କ

ନିକଟକୁ ଯାଇ ତାଙ୍କୁ 'ମୌନେୟ' ସଂପର୍କରେ ପ୍ରଶ୍ନକଲେ । ସେହି ପ୍ରଶ୍ନଗୁଡ଼ିକରୁ ଏହି ସୂତ୍ରର ଆରମ୍ଭ ହୋଇଛି ।

ମୁଁ ଅସିତଙ୍କଠାରୁ ଜାଣିଛି ଯେ, ଆପଣ ଶ୍ରେଷ୍ଠ ମୁନି ହେବେ, ଏହିକଥା ଯଥାର୍ଥ ହୋଇଛି । ତେଣୁ ବସ୍ତୁ ଜଗତକୁ ଅତିକ୍ରମ କରିଥିବା ଗୌତମଙ୍କୁ ମୁଁ ପଚାରୁଛି । ୧ ।

ହେ ମୁନେ ! ଗୃହତ୍ୟାଗକରି ଭିକ୍ଷା ଉପରେ ଜୀବନ ନିର୍ବାହ କରୁଥିବା ଲୋକ ଉତ୍ତମ ମୌନେୟ କିପରି ହେବ, ମତେ ବୁଝାଇ ଦିଅ । ୨ ।

ଭଗବାନ କହିଲେ, ମୌନେୟ କିଭଳି, ମୁଁ ତୁମକୁ ବତାଇ ଦେଉଛି । ତାହା ବଡ଼ ଦୁଷ୍କର ଓ ଦୁରଭିସମ୍ଭବ ; ତଥାପି ମୁଁ ତୁମକୁ ବତାଇ ଦେଉଛି । ତୁମେ ଧୈର୍ଯ୍ୟଧରି ଆଚରଣ କର ଓ କର୍ମକ୍ଷେତ୍ରରେ ଦୃଢ଼ହୁଅ । ୩ ।

ଗାଁରେ କେହି ନିନ୍ଦା ବା ସ୍ତୁତି କରନ୍ତୁ ପଛେ, ସମସ୍ତଙ୍କପ୍ରତି ସମାନ ଭାବରଖ । କ୍ରୋଧକୁ ସମ୍ଭାଳି ନିଅ, ଶାନ୍ତ ଓ ନିରଭିମାନ ହୁଅ । ୪ ।

ପ୍ରଜ୍ୱଳିତ ବନାଗ୍ନି ତୁଲ୍ୟ, ଗ୍ରାମରେ ସ୍ତ୍ରୀମାନେ ବିହାର କରୁଥାନ୍ତି ; ସେମାନେ ମୁନିମାନଙ୍କୁ ମୋହିତ କରନ୍ତି । ସେମାନଙ୍କ ପ୍ରତି ତୁମେ ସତର୍କ ହୁଅ ଓ ସେମାନଙ୍କ ମୋହରେ ତୁମେ ପଡ଼ିଯାଅ ନାହିଁ । ୫ ।

ଶ୍ରେଷ୍ଠ ବଡ଼ ସବୁପ୍ରକାର କାମୋପଭୋଗ ଛାଡ଼ି, ସ୍ତ୍ରୀ ସଙ୍ଗରୁ ବିରତ ହୁଅ । ସ୍ଥିରଚର ପ୍ରାଣୀଙ୍କର ବିରୋଧ ଓ ଆସକ୍ତି ଛାଡ଼ । ୬ ।

ନିଜ ଉଦାହରଣରେ ଏହା ଜାଣ ଯେ ମୁଁ ଯେପରି ଅନ୍ୟମାନେ ମଧ୍ୟ ସେହିପରି ଏବଂ ଅନ୍ୟମାନେ ଯେପରି ମୁଁ ମଧ୍ୟ ସେପରି । କାହାକୁ ମାରନାହିଁ କିମ୍ବା ମରାଅନାହିଁ । ୭ ।

ସାଧାରଣ ଲୋକ ଯେଉଁ ଇଚ୍ଛା ଓ ଲୋଭର ବନ୍ଧନରେ ପଡ଼େ, ସେଗୁଡ଼ିକୁ ଚକ୍ଷୁଷ୍ମାନ ଲୋକ ପରିତ୍ୟାଗକରି ସେହି ନରକ ପାରହୋଇଯିବା ଉଚିତ । ୮ ।

ପେଟ ପୂରାଇ ନଖାଉଥିବା ଲୋକ, ମିତାହାରୀ, ଅଲୋଭୀ ଓ ଓ ଅଲୋଲୁପ ହୁଅ । ଇଚ୍ଛା ତ୍ୟାଗକରି ତୃପ୍ତ ହୁଅ । ଅନିଚ୍ଛ ଲୋକ ହିଁ ଶାନ୍ତି ଲଭକରେ । ୯ ।

ମୁନି ପକ୍ଷରେ ଭିକ୍ଷାଟନ କରି ବନକୁ ଯିବା ଓ ସେଠାରେ ବୃକ୍ଷମୂଳେ ଆସନରେ ବସିବା ଉଚିତ । ୧୦ ।

ସେହି ଧ୍ୟାନରତ ଧୀର ପୁରୁଷ ବନରେ ଆନନ୍ଦ ଲଭକରନ୍ତି । ସେ ବୃକ୍ଷମୂଳେ ବସି ସନ୍ତୋଷମନରେ ଧ୍ୟାନରତ ହୁଅନ୍ତି । ୧୧ ।

ରାତ୍ରି ଶେଷରେ ସେ ଗ୍ରାମକୁ ଆସନ୍ତି । ସେଠାରେ ନିମନ୍ତ୍ରଣ ବା କୌଣସି ଉପହାର ମିଳିଲେ ତହିଁରେ ଉଲ୍ଲସିତ ହୁଅନ୍ତି ନାହିଁ । ୧୨ ।

ମୁନିଙ୍କ ପକ୍ଷରେ ଦରକାର ଯେ, ଗ୍ରାମର ପରିବାରମାନଙ୍କ ସହିତ ବେଶୀ ମିଳାମିଶା କରିବେ ନାହିଁ ; ଭିକ୍ଷା ସମ୍ବନ୍ଧରେ କିଛି କହିବେ ନାହିଁ କି ସୂଚନା ଦେବେ ନାହିଁ । ୧୩ ।

ଭିକ୍ଷା ମିଳିଲେ ଭଲ, ନ ମିଳିଲେ ମଧ୍ୟ ଭଲ । ଏହି ଦୁଇ କଥାରେ ସେ ସମଭାବ ରଖନ୍ତି ଓ ନିଜେ ରହୁଥିବା ଗଛ ପାଖକୁ ଆସନ୍ତି । ୧୪ ।

ହାତରେ ଭିକ୍ଷାପାତ୍ରଧରି ଯେଉଁମାନେ ବୁଲନ୍ତି ସେମାନେ ନୀରବଭାବରେ ଭିକ୍ଷାଗ୍ରହଣ କରିବା ଉଚିତ । ପୁଣି ମିଳିଥିବା ଅଳ୍ପଭିକ୍ଷାର ତିରସ୍କାର କିମ୍ବା ଦାତାର ଅନାଦର କରିବା ଉଚିତ ନୁହେ । ୧୫ ।

ହୀନ ମାର୍ଗ କେଉଁଟି ଓ ଉତ୍ତମ ମାର୍ଗ କେଉଁଟି ଏକଥା ଶ୍ରମଣ ( ବୁଦ୍ଧ ) ସ୍ପଷ୍ଟକରି କହି ଦେଇଛନ୍ତି । ସଂସାରର ପରପାରକୁ ଦୁଇଥର ଯାଇହେବ ନାହିଁ । ତଥାପି ଜ୍ଞାନ କେବେହେଲେ ଏକପ୍ରକାର ହୋଇପାରିବ ନାହିଁ । ୧୬ ।

ଯେଉଁ ଭିକ୍ଷୁଙ୍କର ଆସକ୍ତି ନାହିଁ, ଯେ ସଂସାର ଧାରାକୁ ଛାଡ଼ି ଦେଇଛନ୍ତି ଓ ଯେ କୃତ୍ୟ-ଅକୃତ୍ୟରୁ ମୁକ୍ତ, ତାଙ୍କର ପରିଦାହ ରହେନାହିଁ । ୧୭ ।

ଭଗବାନ କହିଲେ—"ମୁଁ ତୁମମାନଙ୍କୁ ମୌନେୟ କଥା ବତାଇ ଦେଉଛି । ଖଣ୍ଡାଧାର ଉପରେ ମହୁଗୃହଁଥିବା ଲୋକପରି ସାବଧାନ ରହ । ଜିଭ, ତାଳୁରେ ଲଗାଇ ମଧ୍ୟ ଭୋଜନରେ ସଂଯମୀ ହୁଅ । ୧୮ ।

ଚିତ୍ତକୁ ସାବଧାନ ରଖ ଏବଂ ତହିଁ ସଙ୍ଗେ ସଙ୍ଗେ ବହୁ-ଚିନ୍ତନ କରନାହିଁ । ହୀନ ବିତର୍କରୁ ମୁକ୍ତ, ଅନାଶ୍ରିତ ଓ ବ୍ରହ୍ମପରାୟଣ ହୁଅ । ୧୯ ।

ଏକାନ୍ତ ବାସ ତଥା ଶ୍ରମଣୋପାସନାରେ ଅଭିରୁଚି ପୋଷଣ କର । ଏକୁଟିଆ ହେବାକୁ ମୌନ କହନ୍ତି । ଏକାକୀ ରହିବାରେ ତୁମେ ଆନନ୍ଦ ପାଅ । ୨୦ ।

ସେତେବେ ଧ୍ୟାନରତ, କାମତ୍ୟାଗୀ, ଧୀରପୁରୁଷଙ୍କ ବଚନ ଶୁଣି ତୁମେ ଦଶଦିଗ ପ୍ରକାଶିତ କର, ଆହୁରି ମଧ୍ୟ (ସେହିପଦ ଲାଭକରି) ମୋର ଶ୍ରାବକ ହୁଅ; (ପାପଲଜ୍ଜା) ଓ ଶ୍ରଦ୍ଧା ବଢ଼ାଅ । ୨୧ ।

ନଦୀର ଉଦାହରଣରୁ ଏକଥା ବୁଝ । ନାଳଗୁଡ଼ିକ ପ୍ରପାତ ଏବଂ ସଙ୍କଟ ଯୋଗୁ ଯୋରରେ ଶବ୍ଦକରି ଚାଲନ୍ତି ; କିନ୍ତୁ ବଡ଼ନଦୀ-ମାନେ ଧୀରେ ଧୀରେ ପ୍ରବାହିତ ହୁଅନ୍ତି । ୨୨ ।

ଯେ ଚଞ୍ଚଳମତି, ସେ ଶବ୍ଦକରେ ; କିନ୍ତୁ ଯେ ଗମ୍ଭୀର ସେ ଧୀର ସ୍ଥିର ରହେ । ମୂଢ଼ବ୍ୟକ୍ତି ଅର୍ଦ୍ଧପୂର୍ଣ୍ଣ କୁମ୍ଭତୁଲ୍ୟ ଶବ୍ଦକରେ ; କିନ୍ତୁ ବିଜ୍ଞଲୋକ ବୃହତ୍ ସରୋବର ତୁଲ୍ୟ ଶାନ୍ତରହନ୍ତି । ୨୩ ।

ଶ୍ରମଣ (ବୁଦ୍ଧ) ଯାହା ବେଶୀକରି କହନ୍ତି, ତାହା ଉଚିତ୍ ଏବଂ ଉପଯୁକ୍ତ ବୋଲି ଜାଣିକରି କହନ୍ତି । ସେ ଜାଣିକରି ଧର୍ମୋପଦେଶ ଦିଅନ୍ତି ଏବଂ ଜାଣିକରି ବେଶୀ କରି କହନ୍ତି । ୨୪ ।

କିନ୍ତୁ ଯେଉଁ ସଂଯତାତ୍ମା ଜାଣିଲେ ମଧ୍ୟ ବେଶୀ କହନ୍ତି ନାହିଁ, ସେହି ମୁନିହିଁ ମୌନଲଗି ଯୋଗ୍ୟ । ସେ ପ୍ରକୃତ ମୌନ ବୁଝିଛନ୍ତି । ୨୫ ।

## ଉପତିସପସିନେ

ଏହା 'ସାରିପୁତ୍ର ସୁତ୍ତ' ନାମରେ ସୁତ୍ତନିପାତରେ ଅଛି । ଅଟ୍ଠ କଥାରେ ଏହାକୁ ଥେରପଞ୍ହ ମଧ୍ୟ କୁହାଯାଇଛି । ଏଥିରୁ ଅନୁମିତ ହୁଏ, ଏହାକୁ ସାରିପୁତ୍ର ପଞ୍ହ ବା ଉପତିସ୍ସପଞ୍ହ ମଧ୍ୟ କୁହାଯାଉଥିବ । ତାହାର ଅନୁବାଦ ଏଠାରେ ଦିଆଯାଉଅଛି ।

ଆୟୁଷ୍ମାନ୍ ସାରିପୁତ୍ର କହିଲେ,"ଏହିପରି ମିଷ୍ଟଭାଷୀ ସନ୍ତୁଷ୍ଟ (୧) ଏବଂ ସଂଘର ନେତା, ଶାସ୍ତା ମୁଁ ଏହା ଆଗରୁ ଦେଖି ନାହିଁ କି ଶୁଣିନାହିଁ" । ୧ ।

ସମଗ୍ର ଅନ୍ଧକାର ନାଶକରି ଶ୍ରମଣ ଧର୍ମରେ ରତ ଥିବା ଏହି ଏକମାତ୍ର ଚକ୍ଷୁଷ୍ମାନ୍‌ଙ୍କୁ ମୁଁ ଏବେ ଦେଖିଲି । ୨ ।

---

(୧) ମୂଳରେ 'ତୁସିତୋ' ଅଛି । କିନ୍ତୁ ଅଟ୍ଠ କଥାରେ 'ତୁସିତା' ଅଛି । ଅର୍ଥହୋଇଛି 'ତୁଷିତ ଦେବଲୋକରୁ ଇହଲୋକକୁ ଆସିଥିବ' ।

ବୁଦ୍ଧଦେବ ପ୍ରାପ୍ତ ଅନାଶ୍ରିତ ଏବଂ ଅଧାର୍ମିକ ସଙ୍ଘନାୟକଙ୍କ ପାଖକୁ ବହୁ ବୃଦ୍ଧ ଲୋକଙ୍କର ହିତେଚ୍ଛାରେ ପ୍ରଶ୍ନ ପଚାରିବାକୁ ମୁଁ ଆସିଛି । ୩ ।

ସଂସାର ତ୍ୟାଗକରି ବୃକ୍ଷତଳେ, ଶ୍ମଶାନରେ ବା ପର୍ବତର ଗୁହାରେ ଏକାନ୍ତବାସ କରୁଥିବା ଭିକ୍ଷୁମାନଙ୍କ ପାଇଁ । ୪ ।

ସେହି ଭଲ ମନ୍ଦ ସ୍ଥାନମାନଙ୍କରେ କୌଣସି ପ୍ରକାର ଭୟ ଅଛି କି । ସେହି ନିଃଶବ୍ଦ ପ୍ରଦେଶମାନଙ୍କରେ କୌଣସି ପ୍ରକାର ଭୟରେ ଭିକ୍ଷୁ ନଡ଼ିବା ଉଚିତ କି । ୫ ।

ଅଭୁତ ପ୍ରଦେଶକୁ ଯିବାପାଇଁ, ସୁଦୂର ପ୍ରଦେଶରେ ନିବାସ କରୁଥିବା ଭିକ୍ଷୁଙ୍କ ଲାଗି କୌଣସି ବିଘ୍ନ ସହିବାକୁ ପଡ଼େ କି । ୬ ।

ସେହି ଦୃଢ଼ ଓ ନିଷ୍ଠାପୂର୍ବକାରୀ ଭିକ୍ଷୁର ବାଣୀ କିପରି ହେବା ବିଧେୟ । ତାହାର ଗୋଚରଚଳଣି କିପରି ହେବା ଉଚିତ । ପୁଣି ତାହାର ଶୀଳ ଓ ବ୍ରତ କିପରି ହେବା ଦରକାର । ୭ ।

ଯେପରି ସୁନାରି ରୂପାକୁ ନିଆଁରେ ପୋଡ଼ି ତା' ଭିତରେ ଥିବା ମଇଳାକୁ ବାହାର କରିଦିଏ ସେହିପରି ସମାହିତ, ସାଧକ ଏବଂ ସ୍ମୃତିମାନ୍ ଭିକ୍ଷୁ କୌଣସି ଅଭ୍ୟାସକ୍ରମ ( ପାଠ୍ୟ-କ୍ରମ )ର ଆଶ୍ରୟରେ ନିଜର ମାଳିନ୍ୟ ଦଗ୍ଧ କରିଦିଏ । ୮ ।

ଭଗବାନ କହିଲେ—"ହେ ସାରିପୁତ୍ର ! ସଂସାର ତ୍ୟାଗୀ ଓ ଏକାନ୍ତବାସୀ ସମ୍ବୋଧିପରାୟଣ ଭିକ୍ଷୁର କର୍ତ୍ତବ୍ୟ ମତେ ଯେପରି ଜଣାଯାଉଛି ମୁଁ ତାହା ତୁମକୁ ବତାଇ ଦେଉଛି" । ୯ ।

ଏକାନ୍ତବାସ କରୁଥିବା ସ୍ମୃତିମାନ ଧୀର ଭିକ୍ଷୁ ପାଞ୍ଚୋଟି ଭୟକୁ ଡରିବା ଉଚିତ ନୁହେଁ—ମଶାକାମୁଡ଼ା, ସାପ, ମନୁଷ୍ୟ ହେତୁକ କଷ୍ଟ ଓ ହିଂସ୍ର ଜନ୍ତୁଙ୍କ ଉପଦ୍ରବ । ୧୦ ।

ପୁଣି ପରଧର୍ମୀଙ୍କୁ ଡରିବା ଉଚିତ ନୁହେଁ । ପରଧର୍ମୀ ଲୋକର ନାନାପ୍ରକାର ଖଣ୍ଡଣକୃତ୍ୟ ଦେଖିମଧ୍ଯ ସେ ବିଘ୍ନସହ୍ୟ କରେ । ୧୧ ।

ରୋଗ, କ୍ଷୁଧାରୁ ଉତ୍ପନ୍ନ କଷ୍ଟ ଏବଂ ଶୀତ ଓ ଗ୍ରୀଷ୍ମ ସେ ସହ୍ୟକରେ । ଏହି ବିଘ୍ନଗୁଡ଼ିକରେ ନାନାପ୍ରକାର ବାଧା ପଡ଼ୁଥିଲେ ମଧ୍ଯ ଅ-ନାଗରିକ ହୋଇ ନିଜର ଉତ୍ସାହ ଓ ପରାକ୍ରମକୁ ଦୃଢ଼ କରେ । ୧୨ ।

ସେ ଚୋରିକରେ ନାହିଁ, ମିଛ କହେ ନାହିଁ, ସ୍ଥିରଚର ପ୍ରାଣୀମାନଙ୍କ ମୈତ୍ରୀ-ଭାବନା କରେ ପୁଣି ମନର କଳୁଷକୁ ମାର ପକ୍ଷୀୟ ବୋଲି ଜାଣି ତାକୁ ଦୂରକରେ । ୧୩ ।

ସେ କ୍ରୋଧ ଏବଂ ଅଭିମାନର ବଶୀଭୂତ ହୁଏ ନାହିଁ । ତାହାର ମୂଳୋତ୍ପାଟନ କରିବା ଉଦ୍ଦେଶରେ ସେ ନିଶ୍ଚିତ ରୂପରେ ବୁଦ୍ଧିମାର୍ଗଗାମୀ ହୋଇ ପ୍ରିୟା-ପ୍ରିୟ ସହ୍ୟ କରେ । ୧୪ ।

କଲ୍ୟାଣ ପ୍ରିୟ ମନୁଷ୍ୟ ପକ୍ଷରେ ପ୍ରଜ୍ଞା ଉପରେ ଗୁରୁତ୍ୱ ଦେଇ ବିଘ୍ନକୁ ସହିନେବା ଉଚିତ । ଏକାନ୍ତ ବାସରେ ଅସନ୍ତୋଷର ପ୍ରଣୀତ ହେଲେ ମଧ୍ଯ ତାକୁ ସହେ ଓ ଚୂଟେରିଟି ଶୋକପ୍ରଦ କଥା ସହନ କରେ । ୧୫ ।

( ସେଗୁଡ଼ିକ ହେଉଛି— ) ମୁଁ ଆଜି କ'ଣ ଖାଇବି ଓ କେଉଁଠାରେ ଖାଇବି ? ଗତ ରାତିରେ ନିଦ ନ ହେବାରୁ କଷ୍ଟ ହେଲା ; ଆଜି କେଉଁଠାରେ ଶୋଇବି ? ଅ-ନାଗରିକ 'ଶୈକ୍ଷ୍ୟ' ଏହି ଚିନ୍ତାକଥା ଛାଡ଼ିବାକୁ ପଡ଼ିବ । ୧୬ ।

ସମୟ୍ର ସମୟରେ ଅନ୍ନ ତଥା ବସ୍ତ୍ର ମିଳିଲେ ସେ ତହିଁରେ ଅନୁପାତ ରଖେ ଓ ଅଳ୍ପ ସନ୍ତୁଷ୍ଟ ହୁଏ ; ପୁଣି ଲୋକ ରାଗିଗଲେ ନିଯପର କାର୍ଯ୍ୟକରେ ସେପରି କରେ ନାହିଁ ।

ଆନ୍ତର ମଧ୍ୟ ଗ୍ରାମରେ ସଂଯମ ରଖିବା ଓ କଠୋର ବଚନ ନକହିବା ଉଚିତ । ୧୭ ।

ସେ ନିଜର ଦୃଷ୍ଟି ପାଦଉପରେ ରଖିବା, ଚଞ୍ଚଳ ନ ଚାଲିବା, ଧ୍ୟାନରତ, ଜାଗ୍ରତ ରହିବା, ଉପେକ୍ଷାର ଅବଲମ୍ବନ କରି ଚିତ୍ତକୁ ଏକାଗ୍ର କରିବା, ତର୍କ ଏବଂ ଚାଞ୍ଚଲ୍ୟ ନାଶ କରିବା ଉଚିତ । ୧୮ ।

ସେହି ସ୍ମୃତିମାନ୍ ନିଜର ଦୋଷ ଦେଖାଇବା ଲୋକଙ୍କୁ ଅଭିନନ୍ଦନ କରିବା ; ସବ୍ରହ୍ମଚାରୀଙ୍କ ପ୍ରତି କଠୋରତା ନ ରଖିବା; ପ୍ରସଙ୍ଗ ଅନୁସାରେ ଉପଯୁକ୍ତ ଶବ୍ଦ ବ୍ୟବହାର କରିବା ଓ ଲୋକଙ୍କର ବାଦ ବିବାଦରେ ମନ ନଦେବା ଉଚିତ । ୧୯ ।

ତାହାପରେ ସ୍ମୃତିମାନ ଭିକ୍ଷୁ ଜଗତରେ ପାଞ୍ଚୋଟି 'ରଜ' ତ୍ୟାଗ କରିବାକୁ ଶିଖିବା ଉଚିତ । ଅର୍ଥାତ୍ ରୂପ, ଶବ୍ଦ, ଗନ୍ଧ, ରସ ଏବଂ ସ୍ପର୍ଶ—ଏଗୁଡ଼ିକରେ ସେ ଲୋଭ ନ ରଖିବା ବିଧେୟ । ୨୦ ।

ଏହି ପଦାର୍ଥଗୁଡ଼ିକର ଲୋଭ ଛାଡ଼ି ସେହି ସ୍ମୃତିମାନ୍, ସୁବିମୁକ୍ତ ଚିତ୍ତ, ସମସ୍ତ ସମୟରେ ସଦ୍ଧର୍ମ ଚିନ୍ତନକାରୀ, ଏକାଗ୍ରଚିତ୍ତଭିକ୍ଷୁ ଅନ୍ଧକାର ନାଶ କରିବାକୁ ସମର୍ଥହେବ, ଏଭଳି ଭଗବାନ କହିଲେ ।

## ରାହୁଲୋବାଦ ସୁତ୍ତ

ଏହାକୁ 'ଚୂଳରାହୁଲୋବାଦ' ବା 'ଅମ୍ବଲଟ୍ଠିକ ବାଦ' ବୋଲି ମଧ୍ୟ କହନ୍ତି । ଏହା ମଜ୍ଝିମ ନିକାୟରେ ଅଛି । ଏହାର ସାରାଂଶ ହେଉଛି—

ଥରେ ଭଗବାନ୍ ବୁଦ୍ଧ ରାଜଗୃହ ନିକଟରେ ବେଣୁବନରେ ରହୁଥିଲେ ଓ ରାହୁଲ ଅମ୍ବଲଟ୍ଠିକା (୧) ନାମକ ସ୍ଥାନରେ ରହୁ-

(୧) ଅଟ୍ଠ କଥା ଅନୁସାରେ ଏହା ଏକ ପ୍ରସାଦ, କିନ୍ତୁ ଏହା ସମ୍ଭବପର ନୁହେ । ମନେହୁଏ ଏହା ରାଜଗୃହ ନିକଟରେ ଏକ ଗ୍ରାମ ।

ଥିଲେ । ଦିନେ ସନ୍ଧ୍ୟା ସମୟରେ ଧ୍ୟାନ-ସମାଧି ସମାପ୍ତ କରି ଭଗବାନ ରାହୁଲଙ୍କ ନିବାସ ସ୍ଥାନକୁ ଗଲେ । ଭଗବାନ ଆସୁଥିବାର ଦୂରରୁ ଦେଖି, ରାହୁଲ ଆସନ ପକାଇ ଦେଲେ ଓ ପାଦ ଧୋଇବା ପାଇଁ ପାଣି ରଖିଦେଲେ । ଭଗବାନ ଆସିଲେ ଓ ସେଠାରେ ବସି ପାଦ ଧୋଇଲେ । ରାହୁଲ ଭଗବାନଙ୍କୁ ନମସ୍କାର କରି ଏକ ପାଖରେ ବସିଗଲେ ।

ଭଗବାନ ପାଦଧୋଇବା ପାତ୍ରରେ ଅଳ୍ପପାଣି ରଖିଦେଲେ ଓ ରାହୁଲଙ୍କୁ କହିଲେ—"ରାହୁଲ ! ତୁମେ କଣ ଅଳ୍ପ ପାଣି ଦେଖୁଛ ?"

"ହଁ ଭଦନ୍ତ", ରାହୁଲ ଉତ୍ତର ଦେଲେ ।

ରାହୁଲ ! ମିଛ କହିଲେ ଯେ ଲଜ୍ଜାବୋଧ କରେନାହିଁ, ସେହି ଶ୍ରାମାଣ୍ୟ ଏହି ପାଣିପରି ତ୍ୟାଜ୍ୟ ।

ପୁଣି ସେହି ପାତ୍ରକୁ ଓଲଟାଇ ଦେଇ ଭଗବାନ କହିଲେ "ରାହୁଲ ! ମିଛ କହିଲେ ଯେ ଲଜ୍ଜାବୋଧ କରେନାହିଁ ସେହି ଶ୍ରାମଣ୍ୟ ଏହି ଓଲଟା ପାତ୍ରପରି ବୋଲି ବୁଝିବାକୁ ହେବ ।

ପୁଣି ତାକୁ ସିଧାକରି ଭଗବାନ କହିଲେ—"ରାହୁଲ ! ତୁମେ କଣ ଏଇ ଖାଲି ପାତ୍ରଟି ଦେଖୁଛ ।"

"ହଁ ଭଦନ୍ତ", ରାହୁଲ ଉତ୍ତର ଦେଲେ ।

"ରାହୁଲ ! ମିଛ କହିଲେ ଯେ ଲଜ୍ଜାବୋଧ କରେ ନାହିଁ, ସେହି ଶ୍ରାମଣ୍ୟକୁ ଏହି ଶୂନ୍ୟ ପାତ୍ର ପରି ଦେଖିବାକୁ ହେବ ।

"ହେ ରାହୁଲ ! ଯୁଦ୍ଧ ପାଇଁ ସଜ ହୋଇଥିବା ରାଜାଙ୍କର ହାତୀ ପାଦରେ ଲଢ଼େ, ମସ୍ତକରେ ଲଢ଼େ, କାନରେ ଲଢ଼େ, ଦାନ୍ତରେ ଲଢ଼େ ଓ ଲାଞ୍ଜରେ ଲଢ଼େ । କିନ୍ତୁ ଶୁଣ୍ଢକୁ ସେ ଅଲଗାକରି ରଖେ । ସେତେବେଳେ ମାହୁନ୍ତ ଏପରି ଭାବୁଥାଏ ଯେ, ରାଜାଙ୍କର

ଏତେବଡ଼ ହାତୀ ସବୁ ଅବୟବରେ ଲଢ଼ୁଛି, କେବଳ ଶୁଣ୍ଢକୁ ଅଲଗା ରଖୁଛି; (୧) ସଂଗ୍ରାମ ବିଜୟ ନିମନ୍ତେ ସେ ନିଜ ଜୀବନ ସମର୍ପିତ କରିନାହିଁ । ଯଦି ସେହି ହାତୀ ଅନ୍ୟ ଅବୟବ ସହିତ ନିଜ ଶୁଣ୍ଢର ମଧ୍ୟ ପ୍ରୟୋଗ କରନ୍ତା ତେବେ ମାହୁନ୍ତ ବୁଝନ୍ତା ଯେ ସଂଗ୍ରାମରେ ବିଜୟ ନିମନ୍ତେ ହାତୀ ନିଜ ଜୀବନ ସମର୍ପିତ କରିଅଛି, ଏଥିରେ କୌଣସି ସନ୍ଦେହ ନାହିଁ । ସେହିପରି ମୁଁ କହୁଛି ଯେ, ଯେ ମିଥ୍ୟା କଥନରେ ଲଜ୍ଜାବୋଧ କରେନାହିଁ ସେ କୌଣସି ପାପ ଛାଡ଼ିପାରେ ନାହିଁ । (୨) ତେଣୁ ହେ ରାହୁଲ ! ତୁମେ ଏହିପରି ଅଭ୍ୟାସ କର ଯେ, ଥଟ୍ଟା ପରିହାସରେ ମଧ୍ୟ ମିଛ କହିବ ନାହିଁ ।

"ରାହୁଲ, ଦର୍ପଣର ଉପଯୋଗିତା କଣ ?" "ପ୍ରତ୍ୟବେକ୍ଷଣ କରିବା ଲାଗି ଭଦନ୍ତ"—ରାହୁଲ ଉତ୍ତର ଦେଲେ ।

"ଏହିପରି, ରାହୁଲ ! ବାରମ୍ବାର ପ୍ରତ୍ୟବେକ୍ଷଣକରି (ଭାବିଚିନ୍ତି) କାୟିକ, ବାଚିକ, ମାନସିକ କର୍ମ କରିବା ଉଚିତ ।

"ହେ ରାହୁଲ ! ଯେତେବେଳେ ତୁମେ କାୟିକ, ବାଚିକ ଅଥବା ମାନସିକ କର୍ମ କରିବାକୁ ଚାହିଁ, ସେତେବେଳେ ପ୍ରଥମେ ତାହାର ପ୍ରତ୍ୟବେକ୍ଷଣ କର । ତଦ୍ୱାରା ଯଦି ଆତ୍ମ-ପରହିତରେ ବାଧା ଉପୁଜୁଛି କିମ୍ବା ତାହା ପରିଣାମରେ ଦୁଃଖକାରକ ବୋଲି ତୁମେ ଅନୁଭବ କରୁଛ ତାହାହେଲେ ଆଦୌ ତହିଁର ଆଚରଣ କରନାହିଁ । କିନ୍ତୁ ଯଦି ତୁମେ ଅନୁଭବ କରୁଛ ଯେ, ତଦ୍ୱାରା ଆତ୍ମ-ପରହିତରେ ବାଧା ଉପୁଜିବ ନାହିଁ ଓ ତାହା ଶେଷରେ ସୁଖ କାରକ ହେବ, ତେବେ ତାହା କାର୍ଯ୍ୟରେ ପରିଣତ କର ।

---

(୧) ଅଟ୍ଠକଥାରେ, ହାତୀ ତାର କାନ ଓ ପୁଚ୍ଛ ବ୍ୟବହାର କରିବା କଥା ଲେଖାଅଛି ।

(୨) ଯଦି ଶ୍ରମଣ "ଅସତ୍ୟ"କୁ ରଖି ଅନ୍ୟ ପାପ ତ୍ୟାଗକରେ ତେବେ ସେ ଠିକ୍ ଯୋଦ୍ଧା ନୁହେ ।

"କାୟିକ ବାଚକ ଅଥବା ମାନସିକ କର୍ମ ଆରମ୍ଭ କରିବା ପରେ ମଧ୍ୟ ତହିଁର ପ୍ରତ୍ୟବେକ୍ଷଣ କର । ଯଦି ତୁମେ ଅନୁଭବ କରିବ ଯେ ତାହା ଆତ୍ମ-ପରହିତ ବାଧକ ଏବଂ ପରିଣାମରେ ଦୁଃଖକାରକ ତେବେ ତାକୁ ଛାଡ଼ିଦିଅ । କିନ୍ତୁ ଯଦି ତାହା ଆତ୍ମ-ପରହିତ ବାଧକ ନୁହେ ଓ ଶେଷରେ ସୁଖ କାରକ ବୋଲି ଦେଖି-ପାରୁଛ, ତେବେ ସେହି କାର୍ଯ୍ୟ ବାରମ୍ବାର କର ।"

"କାୟିକ, ବାଚକ, ମାନସିକ କର୍ମ କରିବା ପରେ ମଧ୍ୟ ତହିଁର ପ୍ରତ୍ୟବେକ୍ଷଣ କର । ଯଦି ତୁମେ ଅନୁଭବ କରିବ ଯେ ସେହି ବାଚକ ଅଥବା କାୟିକ କର୍ମ ଆତ୍ମ-ପରହିତ ବାଧକ ଓ ଶେଷରେ ଦୁଃଖ କାରକ ତେବେ ଶାସ୍ତା ବା ବିଦ୍ୱାନ୍ ବ୍ରହ୍ମଚାରୀଙ୍କ ପାଖକୁ ଯାଇ ତାଙ୍କ ନିକଟରେ ପାପ ସ୍ୱୀକାର କର । ପୁଣି ସେ କାର୍ଯ୍ୟ ତୁମେ ଯେପରି ଆଉ ଥରେ ନ କର ସେଥିପ୍ରତି ସାବଧାନ ରହ ।"

"ଯଦି ତାହା ମାନସିକ କର୍ମ ହୋଇଥାଏ, ସେଥିଲାଗି ପଶ୍ଚାତ୍ତାପ କର, ଲଜ୍ଜାବୋଧ କର ଓ ସେହି ବିଚାର ମନରେ ଆଉ ଆଣନାହିଁ; କିନ୍ତୁ ଆଚରିତ କାୟିକ, ବାଚକ ତଥା ମାନସିକ କର୍ମ ଯଦି ଆତ୍ମ-ପରହିତ ବାଧକ ନୁହେ ଓ ଶେଷରେ ସୁଖକାରକ ତାହାହେଲେ ଆନନ୍ଦ ମନରେ ସେହି କାର୍ଯ୍ୟକୁ ବାରମ୍ବାର କର ।"

"ହେ ରାହୁଲ ! ଅତୀତରେ ଯେଉଁ ଶ୍ରମଣ ବ୍ରାହ୍ମଣ ନିଜର କାୟିକ, ବାଚକ ତଥା ମାନସିକ କର୍ମକୁ ପରିଶୁଦ୍ଧ କରିଥିଲେ ସେମାନେ ପୁନଃ ପୁନଃ ପ୍ରତ୍ୟେବେକ୍ଷଣ କରି ତାକୁ ପରିଶୁଦ୍ଧ କରିଥିଲେ । ଭବିଷ୍ୟତରେ ଯେଉଁ ଶ୍ରମଣ ବ୍ରାହ୍ମଣ ସେହି କର୍ମଗୁଡ଼ିକୁ ପରିଶୁଦ୍ଧ କରିବେ ସେମାନେ ପୁନଃ ପୁନଃ ପ୍ରତ୍ୟବେକ୍ଷଣଦ୍ୱାରା ତାହା

କରିପାରିବେ । ବର୍ତ୍ତମାନ କାଳରେ ଯେଉଁ ବ୍ରାହ୍ମଣ ସେହି କର୍ମମାନଙ୍କୁ ପରିଶୁଦ୍ଧ କରୁଛନ୍ତି, ସେମାନେ ପୁନଃ ପୁନଃ ପ୍ରତ୍ୟବେକ୍ଷଣ ଦ୍ୱାରା ତାହା କରୁଛନ୍ତି । ଅତଏବ, ହେ ରାହୁଳ ! ବାରମ୍ବାର ପ୍ରତ୍ୟବେକ୍ଷଣ କରି କାୟିକ, ବାଚିକ ଓ ମାନସିକ କର୍ମଗୁଡ଼ିକୁ ପରିଶୁଦ୍ଧ କରିବାକୁ ଶିଖ ।" ଭଗବାନ ଏହା କହିଲେ; ଆନନ୍ଦିତ ମନରେ ରାହୁଳ ଭଗବାନଙ୍କର ଏହି କଥାକୁ ଅଭିନନ୍ଦନ କଲେ ।

ଏହି ସାତୋଟି ସୂତ୍ରରୁ ସୂତ୍ତନିପାତରେ ଥିବା ତିନୋଟି ସୂତ୍ର— "ମୁନିଗାଥା", "ନାଳକସୂତ୍ର" ଓ "ସାରିପୁତ୍ତ" ପଦ୍ୟରେ ଓ ଶେଷ ଚାରୋଟି ପଦ୍ୟରେ ଅଛି । ଗଦ୍ୟ ସୂତ୍ର ଗୁଡ଼ିକରେ ବହୁ ପୁନରୁକ୍ତି ଦେଖାଯାଏ । ସେହି ସମୟର ସାହିତ୍ୟରେ ସେହିରୀତି ଥିଲା । କାରଣ ଜୈନ ସୂତ୍ରମାନଙ୍କରେ ଓ ଉପନିଷଦର କେତେକ ସ୍ଥଳରେ ଏହିଭଳି ପୁନରୁକ୍ତି ଦେଖାଯାଏ; କିନ୍ତୁ ତ୍ରିପିଟକ ସାହିତ୍ୟରେ ଏହା ଏତେ ଅଧିକ ଭାବରେ ଅଛି ଯେ ପାଠକ ଅନୁଭବ କରେ ଯେପରିକି ପରବର୍ତ୍ତୀ କଥାଗୁଡ଼ିକ ପୂର୍ବବର୍ତ୍ତୀ ଉକ୍ତିମାନଙ୍କ ପରି ହେବ ଓ ସେ ଦିଗରେ ପାଠକର ମନ ଲାଗେନାହିଁ । ଉଦାହରଣ ସ୍ୱରୂପ, ଏହି'ରାହୁଲୋ ବାଦ ସୁତ୍ତ'ରେ କାୟିକ, ବାଚିକ ଓ ମାନସିକ କର୍ମର ପ୍ରତ୍ୟବେକ୍ଷଣ କଥା ବାରମ୍ବାର କୁହାଯାଇଛି । କିନ୍ତୁ କାୟିକ ତଥା ବାଚିକ ଅକୁଶଳ କର୍ମ ବିଷୟରେ କୁହା ଯାଇଅଛି ଯେ, ଯଦି କେହି ସେଗୁଡ଼ିକର ଆଚରଣ କଲା, ତାହାହେଲେ କୌଣସି ଶାସ୍ତା ବା ବିଦ୍ୱାନ୍ ବ୍ରହ୍ମଚାରୀଙ୍କ ପାଖକୁ ଯାଇ ତାହା ପ୍ରକାଶ କରିବାକୁ ହେବ, ତାହା ଯେପରି ନଘଟେ ସେଥିପ୍ରତି ଦୃଷ୍ଟି ଦେବାକୁ ହେବ । ମାନସିକ ଅକୁଶଳ କର୍ମ ବିଷୟରେ ଏହି ନିୟମ ପ୍ରଯୁଜ୍ୟ ନୁହେ । କାରଣ, ବିନୟ ପିଟକରେ କାୟିକ ଓ ବାଚିକ ଦୋଷ ବିଷୟରେ ପାପ ପ୍ରକାଶ (ପାପଦେଶନା) ପ୍ରଭୃତି ପ୍ରାୟଶ୍ଚିତ୍ତ କଥା

କୁହାଯାଇଛି; କିନ୍ତୁ ମନୋଦୋଷ ବିଷୟରେ ପ୍ରାୟଶ୍ଚିତ୍ତ ବିଧାନ କୁହାଯାଇ ନାହିଁ । ସେ ବିଷୟରେ ପ୍ରାୟଶ୍ଚିତ୍ତ ହେଉଛି, ସେ କଥାର ପଶ୍ଚାତ୍ତାପ, ଲଜ୍ଜା ଅନୁଭବ କରିବା ଓ ସେହି ଅକୁଶଳ ବିଚାରକୁ ମନରେ ସ୍ଥାନ ନଦେବା । କାୟିକ ଓ ବାଚିକ ଅକୁଶଳ କର୍ମ ଓ ମାନସିକ ଅକୁଶଳ କର୍ମ ମଧ୍ୟରେ ଥିବା ଏହି ପ୍ରଭେଦ ରାହୁଲୋବାଦ ସୂତ୍ରକୁ ଉପରଠାଉରିଆ ଭାବରେ ପଢ଼ିବା ଲୋକ ଜାଣିପାରିବ ନାହିଁ ।

ଅଶୋକଙ୍କ ସମୟରେ ଏସବୁ ସୂତ୍ର ଏହିପରି ଥିଲା କି ସଂକ୍ଷିପ୍ତ ଥିଲା, କହିବା କଠିନ । ତେବେ ସଂକ୍ଷିପ୍ତ ହୋଇଥିଲେ ମଧ୍ୟ ଏହାହିଁ ଯେ ସାରଭୂତ କଥା, ତହିଁରେ ସନ୍ଦେହ ନାହିଁ । ସୂତ୍ରପିଟକର ପ୍ରାଚୀନତମ ସୂତ୍ରମାନଙ୍କର ଅବଗତି ପାଇଁ ଏହି ସାତୋଟି ସୂତ୍ର ବିଶେଷ ଉପାଦେୟ ।



# ପରିଶିଷ୍ଟ—୪

## ସଂଦର୍ଭ ବିବରଣ

( ଏହି ପରିଶିଷ୍ଟରେ ଶ୍ରୀ ଧର୍ମାନନ୍ଦ କୋସମ୍ବୀଙ୍କର ଅନ୍ୟ ପୁସ୍ତକମାନଙ୍କର ଯେଉଁ ସୂଚନାଅଛି, ସେ ସବୁର ପୂର୍ଣ୍ଣ ବିବରଣ ଦିଆଯାଇଛି । ବାମପାର୍ଶ୍ୱରେ ମୂଳଗ୍ରନ୍ଥର ପୃଷ୍ଠା ସଂଖ୍ୟା ନିର୍ଦ୍ଦିଷ୍ଟ ହୋଇଅଛି ଏବଂ ତଳେ ବନ୍ଧନୀ ମଧ୍ୟରେ ଏହି 'ଭଗବାନ୍ ବୁଦ୍ଧ' ଗ୍ରନ୍ଥର ଏହି ସଂସ୍କରଣର ପୃଷ୍ଠା ସଂଖ୍ୟା ଦିଆଯାଇଛି )

## ବୌଦ୍ଧସଂଘାର ପରିଚୟ

୨୩୨–୨୪୫ ଖୁଜ୍ଜୁତ୍ତରା ଓ ସାମାବତୀ

( ୩୯ ) ମାଗନ୍ଦିୟ ନାମକ ଜଣେ ବ୍ରାହ୍ମଣ ଅଜ୍ଞାତରେ ଭଗବାନ୍ ବୁଦ୍ଧଙ୍କୁ ବିବାହ ଯୋଗ୍ୟ ବର ବୋଲି ଭାବି, ନିଜଝିଅ ମାଗନ୍ଦିୟାକୁ ତାଙ୍କ ପାଖକୁ ନେଇଗଲେ । ତାଙ୍କ କଥାଶୁଣି ଭଗବାନ କହିଲେ—"ହେ ବ୍ରାହ୍ମଣ ! ତୃଷ୍ଣା ଅସନ୍ତୋଷ ଓ କାମବିକାର ଦେଖି ସ୍ତ୍ରୀ ସଙ୍ଗ ମତେ ଭଲ ଲାଗୁନାହିଁ । ମତେ ଜଣାଯାଉଛି ଯେ, ଅମେଧ ପଦାର୍ଥରେ ପୂର୍ଣ୍ଣ ଏହିଶରୀର ପାଦରେ ମଧ୍ୟ ସ୍ପର୍ଶ ଯୋଗ୍ୟ ନୁହେ ।

ଭଗବାନଙ୍କ କଥାରେ ମାଗନ୍ଦିୟାର ବିଶେଷ କ୍ରୋଧ ଜାତହେଲା ଓ ସେ ତାଙ୍କର ଶତ୍ରୁ ହୋଇ ପଡ଼ିଲା । ପରେ ତାହାର ସୌନ୍ଦର୍ଯ୍ୟ ଦେଖି ରାଜା ଉଦୟନ ତାକୁ ବିବାହ କଲେ । ଉଦୟନ ରାଜାଙ୍କର ଅନ୍ୟରାଣୀ ସାମାବତୀ ଓ ତାଙ୍କରଦାସୀ ଖୁଜ୍ଜୁଉତ୍ତରା ଭଗବାନଙ୍କ ଉପାସିକା ଥିଲେ । ତେଣୁ ତାଙ୍କ ବିରୁଦ୍ଧରେ ମାଗନ୍ଦିୟା ରାଜାଙ୍କୁ ଅପତ୍ତ କରାଇବା ପାଇଁ ବହୁ ଚେଷ୍ଟା କଲେ । କିନ୍ତୁ ତାଙ୍କର ଅସୀମ ମୈତ୍ରୀ ଭାବନା ହେତୁ ରାଜାଙ୍କର ହୃଦୟ ପରିବର୍ତ୍ତନ ହେଲା । ଶେଷରେ ମାଗନ୍ଦିୟା, ସାମାବତୀଙ୍କ ନଅରରେ ନିଆଁ ଲଗାଇଦେଲା । ତାହାଫଳରେ ସାମାବତୀ ଓ ତାଙ୍କର ସଖୀ ପୋଡ଼ି ମରିଗଲେ । ରାଜା ଉଦୟନ ଯେତେବେଳେ ଏହିକଥା ଜାଣିଲେ, ସେତେବେଳେ ସେ ମାଗନ୍ଦିଆଙ୍କର ବନ୍ଧୁ ବାନ୍ଧବଙ୍କୁ ଏକାଠି କରି ସେମାନଙ୍କୁ ମରାଇଲେ ଓ ଶେଷରେ ତାଙ୍କୁ ବି ହତ୍ୟାକଲେ ।

୧୬୫-୧୬ ମହାକାତ୍ୟାୟନ—ଏଇ ଘଟଣାର ବିସ୍ତାର

( ୪୫ ) ସୋଣ, ଭଗବାନ୍ ବୁଦ୍ଧଙ୍କୁ ନମସ୍କାର କରି

୩୦-୩୧ କାତ୍ୟାୟନଙ୍କ ଦାବୀ ଉପସ୍ଥାପନ କଲେ । ସେତେ-

(୪୫) ବେଳେ ଭିକ୍ଷୁମାନଙ୍କୁ ଏକାଠି କରି ଭଗବାନ କହିଲେ, ଆଜିଠାରୁ ସବୁ ପ୍ରତ୍ୟନ୍ତ ଜନପଦରେ ପାଞ୍ଚଜଣ ଭିକ୍ଷୁଙ୍କୁ ସମୁଦାୟ ଭାବରେ ( ଛଅହିଁରେ ଜଣେ ବିନୟଧର ରହିବେ ) ଉପସମ୍ପଦା ଦେବାପାଇଁ ମୁଁ ଆଦେଶ ଦେଉଛି । ପ୍ରତ୍ୟନ୍ତ ଜନପଦ ହେଉଛି ଏହି ଭଳି—ପୂର୍ବରେ କଜଙ୍ଗଲ ସହର ଓ ମହାଶାଲ,

ତାହାପରେ ପ୍ରତ୍ୟନ୍ତ ଜନପଦ; ଦକ୍ଷିଣରେ ଶ୍ୱେତ କର୍ଣ୍ଣିକ ନାମକ ସହର ଓ ତାହାପରେ ପ୍ରତ୍ୟନ୍ତ ଜନପଦ; ପଶ୍ଚିମରେ ସ୍ଥୂଳ (ଥୂଣ) ନାମକ ବ୍ରାହ୍ମଣ ଗ୍ରାମ ଓ ତାହାପରେ ପ୍ରତ୍ୟନ୍ତ ଜନପଦ; ଉତ୍ତରରେ ଉଶୀରଧ୍ୱଜ ନାମକ ପର୍ବତ ଓ ତାପରେ ପ୍ରତ୍ୟନ୍ତ ଜନପଦ

୨୦୩ ମହାକଚ୍ଚାୟନ—ଏ ଘଟଣାର ବର୍ଣ୍ଣନା

( ୪୯ )

## ୨୧୪-୨୧୭ ଭଦ୍ଦା କୁଣ୍ଡଳ କେସା

( ୯୭ ) 'ରାଜଗୃହର ଶ୍ରେଷ୍ଠୀ କୁଳରେ ଭଦ୍ଦାର ଜନ୍ମ । ଶତ୍ତୁକ ନାମକ ରାଜପୁରୋହିତଙ୍କ ପୁତ୍ର ଚୋରି ଅପରାଧରେ ଫାଶୀ ଦିଆଯିବାଲାଗି ଯେତେବେଳେ ନଗର ବାହାରକୁ ନିଆଯାଉଥିଲା, ସେତେବେଳେ ତାକୁ ଦେଖି ଭଦ୍ଦା ଆସକ୍ତ ହୋଇ ପଡ଼ିଲା ଓ କଟୁଆଳକୁ ହଜାରେ କାହାଣ ଦେଇ ଶତ୍ତୁକକୁ ଛଡ଼ାଇ ଆଣିଲା । ତଥାପି ଚୋରିରେହିଁ 'ଶତ୍ତୁକ'ର ମନ ରହିଲା । ତେଣୁ ସେ ତାକୁନେଇ ନଗରଠାରୁ ଦୂରବର୍ତ୍ତୀ ଏକ ପାହାଡ଼ର ଶିଖରକୁ ଚାଲିଗଲା । ଭଦ୍ଦା ତାକୁ ବୁଝାଇବାକୁ ବହୁତ ଚେଷ୍ଟା କଲା ; କିନ୍ତୁ ସେ ତାହା ମାନିଲା ନାହିଁ । ଶେଷରେ ସେ ତାକୁ ଆଲିଙ୍ଗନ କରିବା ଛଳରେ ପାହାଡ଼ ଉପରୁ ତଳକୁ ଠେଲିଦେଲା । ସେତେବେଳେ ବନଦେବୀ କହିଲେ—

ନ ସୋ ସବ୍ବେସୁ ଠାନେସୁ ପୁରିସୋ ହୋତି ପଣ୍ଡିତୋ ।<br>
ଇତ୍ଥୀ ପି ପଣ୍ଡିତା ହୋତି ତତ୍ଥ ତତ୍ଥ ବିଚକ୍ଖଣା ॥

ଅର୍ଥାତ୍ ସବୁସ୍ଥାନରେ ପୁରୁଷ ଯେ ବୁଦ୍ଧିମାନ, ଏ କଥା ଠିକ୍ ନୁହେ । କେବେ କେବେ ବିଚକ୍ଷଣା ସ୍ତ୍ରୀମଧ୍ୟ ନିଜର ବୁଦ୍ଧିମତ୍ତା ଦେଖାଇଥାଏ ।

ଏହାପରେ ଭଦ୍ଦା ନିର୍ଗ୍ରନ୍ଥଙ୍କ ଆଶ୍ରମକୁ ଯାଇ ଲୁଣ୍ଡି ହୋଇଗଲା । ପୁଣି ଯେତେବେଳେ ବାଳ ଉଠିଲା ତାକୁ କୁଣ୍ଡଳାକାର କରିଦେଲା ; ଏହି ହେତୁ ତାକୁ ଲୋକେ କୁଣ୍ଡଳକେସା ବୋଲି କହିବାକୁ ଲାଗିଲେ । ବାଦବିବାଦରେ ସାରିପୁତ୍ର ଭଦ୍ଦାଙ୍କୁ ହରାଇ ଦେବାପରେ
୧୫୪ ସେ ବୌଦ୍ଧ ଭିକ୍ଷୁଣୀ ହୋଇଗଲେ ।
( ୧୦୫ ) ଏଥିର ବିସ୍ତୃତ ବର୍ଣ୍ଣନା

## ସେନାପତି ଦୁହିତା ସୁଜାତା

୨୩୬ ଆଗେ ଶରଣ ପଶିଥିବା ଉପାସିକାମାନଙ୍କ
( ୧୬୭ ) ମଧ୍ୟରେ ସେନାପତି ଦୁହିତା ସୁଜାତା ଥିଲେ ପ୍ରଥମ । ସେ ଉରୁବେଲା ପ୍ରଦେଶରେ ସେନାପତିଙ୍କ ଘରେ ଜନ୍ମ ହୋଇଥିଲେ । ଯୁବାବସ୍ଥାରେ ଏକ ବଟ ବୃକ୍ଷରେ ରହୁଥିବା ଦେବତାଙ୍କୁ ସେ ପ୍ରାର୍ଥନାକରିଥିଲେ ଯେ ଯଦି ତାଙ୍କୁ ଉପଯୁକ୍ତ ବର ମିଳେ ଓ ପ୍ରଥମେ ପୁଅ ଜନ୍ମ ହୁଏ ତେବେ ସେ ପ୍ରତିବର୍ଷ ତାଙ୍କୁ ଯଥୋଚିତ ଉପହାର ଦେବେ । ତାଙ୍କର ଇଚ୍ଛା ପୂର୍ଣ୍ଣ ହେବାରୁ ନିଜର ଅଭୀଷ୍ଟ ପୂର୍ଣ୍ଣ କରିବା ପାଇଁ ସେ କେବଳ ଦୁଧରେ କ୍ଷୀରି ତିଆରି କଲେ ; ସେହି ବର ଗଛମୂଳ ସଫା କରିବା ପାଇଁ ଦାସୀକୁ ପଠାଇଲେ । ସେଦିନ ବୋଧିସତ୍ତ୍ୱ ଗୌତମ ସେ ବୃକ୍ଷମୂଳରେ ବସିଥିଲେ । ତାଙ୍କୁ ଦେଖି ଦାସୀ

ମନେ କଲା ଯେ, ସୁଜାତାଙ୍କର ପ୍ରାର୍ଥନା ରକ୍ଷାକରି ସ୍ୱୟଂ ବୃକ୍ଷଦେବତା ଅବତୀର୍ଣ୍ଣ ହୋଇଛନ୍ତି । ସେ ଘରକୁ ଦୌଡ଼ିଯାଇ ନିଜର ମାଲିକାଣୀଙ୍କ ଆଗରେ ଏହି ଘଟଣା ବର୍ଣ୍ଣନା କଲା । ସୁଜାତା ଦୁଧ ଖୀରିଧରି ଦାସୀ ସହିତ ସେଠାରେ ପହଞ୍ଚିଲେ ଓ ଜାଣିଲେ ଯେ ବୃକ୍ଷମୂଳରେ ଯେ ବସିଛନ୍ତି ସେ ଦେବତା ନୁହନ୍ତି, ସେ ହେଉଛନ୍ତି ପରମ ତପସ୍ୱୀ ବୋଧିସତ୍ତ୍ୱ । ତାହାପରେ ସେ ଅତ୍ୟନ୍ତ ଭକ୍ତି-ଭାବରେ ବୋଧିସତ୍ତ୍ୱଙ୍କୁ ତାହା ସମର୍ପଣ କଲେ । ଏହି ଭିକ୍ଷା ଗ୍ରହଣ କରି, ବୋଧିସତ୍ତ୍ୱ ସେହି ରାତିରେ ବୌଦ୍ଧତ୍ୱ ପ୍ରାପ୍ତ ହେଲେ ।

୭—୮ ଏଥିରେ ବିସ୍ତୃତ ବର୍ଣ୍ଣନା ଅଛି ।

( ୧୯୩ )

୯୭ ଏହି ଉଲ୍ଲେଖ ଅଛି ।

( ୨୦୫ )

## ସଂଘ ସାମଗ୍ରୀ

୩୭-୪୩ ଭଗବାନ୍ ବୁଦ୍ଧଙ୍କୁ ଏହିକଥା କୁହାଯିବା ପରେ
( ୨୧୪ ) ସେ କହିଲେ, " ଏ ସମ୍ପର୍କରେ ସଂଘ ସାମଗ୍ରୀ କରିବା ଉଚିତ । ସଂଘ ସାମଗ୍ରୀ ହେଉଛି ଏହିପରି – ସମସ୍ତେ ଏକାଠି ହୋଇଯିବା ଉଚିତ । ଭିକ୍ଷୁ ରୁଗ୍ଣ ହୋଇଥିଲେ ମଧ୍ୟ ଉପସ୍ଥିତ ହେବା ବିଧେୟ । ସେତେବେଳେ ସମର୍ଥ ଭିକ୍ଷୁ ସଂଘଠାରେ ବିଜ୍ଞପ୍ତି କରିବା ଉଚିତ,—"ଭଦନ୍ତ ସଂଘ ! ମୋ କଥା ଆଡ଼କୁ ଟିକିଏ ଧ୍ୟାନ ଦିଅନ୍ତୁ । ଯେଉଁ କଥାରୁ ସଂଘରେ ଝଗଡ଼ା ହୋଇଥିଲା, ତାହା

ଭିକ୍ଷୁ ସ୍ୱୀକାର କରୁଛନ୍ତି । ଏହା ଦ୍ୱାରା ସ୍ୱକୃତ ଦୋଷର ପ୍ରାୟଶ୍ଚିତ୍ତ ସେ କରୁଛନ୍ତି । ସଂଘ ଯଦି ଉଚିତ ମନେ କରନ୍ତି ତାହାହେଲେ ସେହି କଥାକୁ ନିଃଶେଷ କରି ସଂଘ ସାମଗ୍ରୀ କରିଦେବା ଦରକାର ।" ଏହା ବିଜ୍ଞପ୍ତି ହୋଇଗଲା । ତିନିଥର କଥା ପ୍ରକଟ କରିବା ପରେ ଯଦି କେହି ଆପତ୍ତି ନଉଠାଇଲା, ତାହାହେଲେ ସଂଘ ସାମଗ୍ରୀ ହୋଇଗଲା ବୋଲି ବୁଝିବାକୁ ହେବ ।

ଉପାଲି ପଚାରିଲେ, "ସଂଘ ସାମଗ୍ରୀ କେତେ ପ୍ରକାର ହୁଏ" । ଭଗବାନ କହିଲେ, ଦୁଇପ୍ରକାର, "ଅର୍ଥ ବିଯୁକ୍ତ ଏବଂ ଅର୍ଥ ଯୁକ୍ତ । ଯେଉଁ କଥା ଲାଗି କଳି କନ୍ଦଳ ହେଲା, ତାହାର ମୂଳ ଅନ୍ୱେଷଣ ନକରି ଯେଉଁ ସାମଗ୍ରୀ ହୁଏ ତାହା ହେଉଛି ଅର୍ଥ ବିଯୁକ୍ତ; କିନ୍ତୁ ଝଗଡ଼ାର ମୂଳ ଅନ୍ୱେଷଣ କରି ଯେଉଁ ସାମଗ୍ରୀ ହୁଏ ତାକୁ ଅର୍ଥ ଯୁକ୍ତ ବୋଲି ବୁଝିବାକୁ ହେବ ।

୨୪-୨୭

## ପ୍ରବାରଣା

( ୨୧୮ ) ଭଗବାନ କହିଲେ, "ଭିକ୍ଷୁଗଣ ! ଅନ୍ୟ ପରିବ୍ରାଜକଙ୍କ ପରି ମୂକ ବ୍ରତ ଗ୍ରହଣ କରିବା ଉଚିତ ନୁହେଁ । ବର୍ଷାକାଳ ଶେଷହେବା ପରେ, ଦେଖିଥିବା, ଶୁଣିଥିବା କିମ୍ବା ପରିଶଙ୍କିତ ଦୋଷମାନଙ୍କର ପ୍ରବାରଣା କରିବା ଉଚିତ । ତାହା ତୁମ୍ଭମାନଙ୍କ ଲାଗି ସମୁଚିତ । ସେହି ପ୍ରବାରଣା ହେଉଛି, ସମର୍ଥ ଭିକ୍ଷୁ ସଂଘପାଖରେ ନିବେଦନ କରିବା ଉଚିତ, "ଭଦନ୍ତ ସଂଘ ! ମୋର କଥାପ୍ରତି ଧ୍ୟାନ

ଦିଅନ୍ତି । ଆଜି ହେଉଛି ପ୍ରବାରଣାର ଦିନ । ଯଦି ସଂଘ ଉଚିତ ମନେ କରନ୍ତି ତେବେ ଆଜି ପ୍ରବାରଣା କରାଯାଉ । ପୁଣି ସବୁଠାରୁ ବୃଦ୍ଧ ଭିକ୍ଷୁ ଏକ କାନ୍ଧରେ ଉତ୍ତରୀୟ ଧରି ଆସି ମାଡ଼ି କହିବା ଉଚିତ, "ଆୟୁଷ୍ମାନ ସଂଘକୁ ମୋର ଯେଉଁ ଦୋଷ ଦେଖାଉଛି ବା ଶୁଣାଉଛି ବା ସେ ସମ୍ପର୍କରେ ଯେଉଁ ସନ୍ଦେହ ହେଉଛି ତାହା ଦେଖାଇବା ପାଇଁ ମୁଁ ପ୍ରବାରଣା କରୁଛି । ମୋଠାରେ ଅନୁକମ୍ପା ପ୍ରକାଶ କରି, ସଂଘ ମତେ ସେ ଦୋଷ ଦେଖାଇଦେଉ । ମୁଁ ଯଦି ତାକୁ ଠିକ୍ ବୋଲି ବୁଝିବି, ତେବେ ତାହାର ଯଥୋଚିତ ପ୍ରାୟଶ୍ଚିତ୍ତ କରିବି", ଏହିପରି ସେ ତିନିବାର କହିବା ଦରକାର । ତରୁଣ ଭିକ୍ଷୁ ଆୟୁଷ୍ମାନ୍ ସଂଘକୁ "ଭଦନ୍ତ ସଂଘ" କହିବା ଉଚିତ । ସେ ବିଷୟରେ କେହି କାହାରି ଦୋଷ ଦେଖାଇ ଦେଲେ, ସେ ତାହା ସ୍ୱୀକାର କରି ସଂଘକୁ କ୍ଷମାମାଗିବା ବିଧେୟ । ବର୍ଷାକାଳ ଶେଷରେ ଏହିପରି ଭାବରେ ସଂଘରେ ଏକତା ସ୍ଥାପନ କରାଯାଇପାରେ ।

୫୨–୫୩ ଭଗବାନ କହିଲେ—ଯେଉଁ ପର୍ଯ୍ୟନ୍ତ ସଂଘର
( ୨୨୦ ) ସ୍ଥାପନାରେ ବହୁ ସମୟ ଯାଏନାହିଁ, ସଂଘର ବିସ୍ତାର ବିଶେଷ ହୋଇ ନଥାଏ, ସଂଘର ଲାଭ ବେଶୀ ହୋଇ ନଥାଏ, ସଂଘରେ ପାଣ୍ଡିତ୍ୟର ପ୍ରସାର ହୋଇନଥାଏ, ସେ ପର୍ଯ୍ୟନ୍ତ ତାହାଁରେ ପାପଧର୍ମ ପ୍ରବେଶ କରେ-ନାହିଁ । ସେହି ସମୟରେ ସଂଘ ପାପଧର୍ମରୁ ମୁକ୍ତ ଓ ଶୁଦ୍ଧ ରହେ ।

## ମାନତ୍ତ (ସଙ୍ଘର ସନ୍ତୋଷ)

ଏହାପରି ଭାବରେ ପରିବାସ ସମାପ୍ତ ହେବାପରେ ଭିକ୍ଷୁ ସେହି ସମ୍ବାଦ ସଙ୍ଘକୁ ଦେଇ ଦେବା ଉଚିତ । ପୁଣି ସଙ୍ଘ ତାଙ୍କୁ ଛଅ ରାତ୍ରର ମାନତ୍ତ ଦିଅନ୍ତି; ଅର୍ଥାତ୍ ସେହି ଭିକ୍ଷୁ ପକ୍ଷରେ, ସଙ୍ଘକୁ ସନ୍ତୁଷ୍ଟ କରିବା ପାଇଁ ଛଅ ରାତି ପର୍ଯ୍ୟନ୍ତ ( ଅନ୍ତ କମ୍‌ରେ ଅରୁଣୋଦୟ ସମୟ ପର୍ଯ୍ୟନ୍ତ ) ବିହାରରୁ ବାହାର ନହେବା ଉଚିତ ।

୨୫୩–୨୫୭ ( ୩୪୧ ) ଶ୍ୱପାକ ନିଜ ସମ୍ବନ୍ଧରେ ଯେଉଁ ଗାଥା ଲେଖିଛନ୍ତି, ତାହାଁର ବିସ୍ତୃତ ବିବରଣୀ ଦିଆଯାଇଛି ।

୧୭—୧୯ ( ୩୪୭ ) ଭିକ୍ଷୁ ପ୍ରବ୍ରଜ୍ୟାବିଧି ବିସ୍ତୃତ ଭାବରେ କୁହାଯାଇଛି ।

## ବର୍ଷାବାସ (ଚାତୁର୍ମାସ୍ୟ)

୨୪ ( ୩୯୩ ) ବର୍ଷାଦିନେ ଭିକ୍ଷୁ ଏଣେ ତେଣେ ବୁଲି ଘାସ କୁଦାକୁଦି କରୁଥିଲେ ଓ ତାହାଁରେ ଗ୍ଲେଠ ଗ୍ଲେଠ କୀଟ ବିନଷ୍ଟ ହେଉଥିଲେ । ସେ ହେତୁ ଲୋକେ ଆକ୍ଷେପ କରୁଥିଲେ । ଭଗବାନ୍ ବୁଦ୍ଧ ସେହିହେତୁ ଏହି ନିୟମ କଲେ ଯେ,ଆଷାଢ଼ ପୂର୍ଣ୍ଣିମାଠାରୁ ବର୍ଷାବାସ ଆରମ୍ଭ ହେବ । ତାହାର ମାସକ ପରେ ଦ୍ୱିତୀୟ ବର୍ଷାବାସ ଆରମ୍ଭ ହେବା ପରେ ଭିକ୍ଷୁଙ୍କୁ ତିନିମାସ ପର୍ଯ୍ୟନ୍ତ କେବଳ ଗୋଟିଏ ସ୍ଥାନରେ ରହିବାକୁ ପଡ଼ିବ ।

୩୪ ଏହି ସମୟରେ ଭଗବାନଙ୍କ ଶରୀର ରୁଗ୍ଣ
( ୩୯୭ ) ହୋଇଯାଇଥିଲା । ଜୀବକ ଏହା ଜାଣିପାରି ତାଙ୍କୁ ବିରେଚନ ଔଷଧ ଦେଇ ସ୍ୱାସ୍ଥ୍ୟ ପ୍ରଦାନ କରିଥିଲେ ଓ ପ୍ରଦ୍ୟୋତ ପଠାଇଥିବା ଯଥା ହଲକ ଭଗବାନଙ୍କୁ ପ୍ରଦାନ କରିଥିଲେ ।

## ହିନ୍ଦି ସଂସ୍କୃତ ଆଣି ଅହିଂସା

୧୭-୧୯ ଇନ୍ଦ୍ର ଓ ଦାସଙ୍କର ସମ୍ପର୍କରେ ଆଚ୍ଛା ବିସ୍ତୃତ
( ୭ ) ବର୍ଣ୍ଣନା ଦିଆଯାଇଛି ।

୧୯-୨୦
( ୧୧ ) ଋଗ୍‌ବେଦରେ ଏ ପ୍ରକାର ଉଲ୍ଲେଖ ଅଛି ।

"ତ୍ୱାଷ୍ଟ୍ରସ୍ୟ ଚିଦ୍‌ବିଶ୍ୱରୂପସ୍ୟ ଗୋ ନାମା ଚହାଣ-
ସ୍ତ୍ରୀଣି ଶୀର୍ଷା ପରା ବର୍କ ( ଋଗ୍‌ବେଦ ୧୦ । ୮ । ୮-୯)
ତେତ୍ତିରୀୟ ସଂହିତାରେ ଏ ପ୍ରକାର ଲେଖାଅଛି :—
"ବିଶ୍ୱରୂପୋ ବୈ ତ୍ୱାଷ୍ଟ୍ରଃ ପୁରୋହିତୋ
ଦେବାନାମାସୀତ୍ ସ୍ୱସ୍ରୀୟୋଃ ସୁରଣାଂ...ତସ୍ମା—
ଦିନ୍ଦ୍ରୋଃ ବିଭେଦଦ୍ରୁଙ୍ଗ୍ ବୈରାଷ୍ଟ୍ରଂ ବି ପରାବର୍ତ୍ତି
ଯତ୍ଣନ୍ତ ତସ୍ୟ ବଜ୍ରମାଦାୟ ଶୀର୍ଷାଣ୍ୟଚ୍ଛିନତ୍......
ତଂ ଭୂତାନ୍ୟଭ୍ୟ କ୍ରୋଶ ବ୍ରହ୍ମହନ୍ନିତି"

( ଅର୍ଥାତ୍ ବିଶ୍ୱରୂପ ନାମକ ତ୍ୱଷ୍ଟାଙ୍କର ପୁତ୍ର ଓ ଅସୁରଙ୍କର ଭଣଜା ଦେବତାଙ୍କର ପୁରୋହିତ ଥିଲେ । ସେ ବିଦ୍ରୋହ କରିବେ — ଏହି ଡରରେ ଇନ୍ଦ୍ର ତାହାଙ୍କର ଶିରଚ୍ଛେଦ କରିଥିଲେ । ........ ତେଣୁ ଲୋକେ

ବ୍ରହ୍ମହା ବୋଲି ଇନ୍ଦ୍ରଙ୍କୁ ନିନ୍ଦା କଲେ । ତୈ, ସଂ କାଣ୍ଡ ୨।୫।୧ )

(୬୨-୨୫) ଋଗ୍‌ବେଦର ମନ୍ତ୍ରମାନଙ୍କରେ (୮।୯୬।୧୩-୧୫)
( ୧୪ ) କୁହାଯାଇଛି ଯେ ବୃହସ୍ପତିଙ୍କ ସହାୟତାରେ ଇନ୍ଦ୍ର ଶ୍ରୀକୃଷ୍ଣଙ୍କ ସେନାମାନଙ୍କ ସମ୍ମୁଖୀନ ହେଲେ । ପୁଣି ସେମାନଙ୍କୁ ହରାଇଦେଇ କୃଷ୍ଣଙ୍କର ଗର୍ଭବତୀ ସ୍ତ୍ରୀମାନଙ୍କୁ ହତ୍ୟାକଲେ ( ଯଃ କୃଷ୍ଣ ଗର୍ଭା ନିରହନ୍ ୧।୧୦୧।୧ ) ଏହାର ବିପରୀତ କଥା ଭାଗବତରେ ( ୧୦ମ ସ୍କନ୍ଧ ) କୁହାଯାଇଛି—କୃଷ୍ଣ ଗୋବର୍ଦ୍ଧନ ପର୍ବତକୁ ଟେକିଧରି ଗୋକୁଳକୁ ଇନ୍ଦ୍ରଙ୍କ ବର୍ଷାରୁ ରକ୍ଷାକଲେ ।

୩୭-୩୮ ରାଜା ପରୀକ୍ଷିତଙ୍କ ବର୍ଣ୍ଣନା ଅଥର୍ବ ବେଦରେ
( ୧୫ ) ଏହିଭଳି ଦେଖାଯାଏ:

ରାଜ୍ଞୋବିଶ୍ବଜନୀନସ୍ୟ ଯୋ ଦେବୋମର୍ତ୍ତ୍ୟାଁ ଅତି ।
ବୈଶ୍ବାନରସ୍ୟ ସୁଷ୍ଟୁତିମା ସୁନୋତା ପରୀକ୍ଷିତଃ ॥
ପରିଚ୍ଛିନ୍ନଃ କ୍ଷେମମକରୋତ୍ତମ ଆସନମାଚରନ୍ ।
କୁଲାୟନ୍ କୃଣ୍ୱନ୍ କୌରବ୍ୟଃ ପତିର୍ବଦତି ଜାୟୟା ॥
କତରତ୍ତ ଆହରାଣି ଦଧିମନ୍ଥାଂ ପରିସ୍ରୁତମ୍ ।
ଜାୟାଃ ପତିଂ ବିପୃଚ୍ଛତି ରାଷ୍ଟ୍ରେରାଜ୍ଞଃ ପରୀକ୍ଷିତଃ ॥
ଅଭୀବସ୍ୱଃ ପ୍ରଜିହୀତେ ଯବଃ ପକ୍ୱଃ ପଥୋବିଲମ୍
ଜନଃସ ଭଦ୍ରମେଧତି ରାଷ୍ଟ୍ରେରାଜ୍ଞଃ ପରୀକ୍ଷିତଃ ।

( ଅଥର୍ବ, କାଣ୍ଡ ୨୦, ସୂକ୍ତ ୧୨୭ ) ଅର୍ଥାତ୍ ସମସ୍ତ ଲୋକର ସର୍ବଶ୍ରେଷ୍ଠ ସାର୍ବଭୌମ ବୈଶ୍ବାନର

ରାଜା ପରୀକ୍ଷିତଙ୍କର ଉତ୍ତମ ସ୍ତୁତି ମନ ଲଗାଇ ଶୁଣ । (୭) ପତ୍ନୀଙ୍କୁ ପତି କହୁଛନ୍ତି—ଯେତେବେଳେ ଏହି କୌରବ ରାଜା ସିଂହାସନ ଆରୋହଣ କଲେ ସେତେବେଳେ ସେ ଅନ୍ଧାରର ବନ୍ଧନରେ ଲୋକ ମାନଙ୍କର ଘର ସୁରକ୍ଷିତ କଲେ । (୮) ପରୀକ୍ଷିତ ରାଜାଙ୍କ ରାଷ୍ଟ୍ରରେ ପତ୍ନୀ ପତିଙ୍କୁ ପଚାରୁଛି—"ତୁମପାଇଁ ଦହି ଆଣିବି ନା ଲହୁଣୀ ?" ପରୀକ୍ଷିତ ରାଜାଙ୍କ ରାଜ୍ୟରେ ଅନେକ ଯବ ମାର୍ଗ ପାର୍ଶ୍ୱରେ ଉଠିଯାଇ ଥିଲା । (ଏହିପରି ଭାବରେ) ପରୀକ୍ଷିତଙ୍କ ରାଜ୍ୟରେ ଲୋକଙ୍କ ସୁଖର ଅଭିବୃଦ୍ଧି ଘଟିଥିଲା । (୧୦)

## ୩୯-୪୦ ବ୍ରାହ୍ମଣ ଧମ୍ମିକ ସୁତ୍ତ

( ୧୬ ) ଥରେ ଭଗବାନ ଶ୍ରାବସ୍ତୀରେ ରହୁଥିଲେ । ସେତିକବେଳେ କୋଶଳ ଦେଶର କେତେ ଜଣ ବୟୋବୃଦ୍ଧ ବ୍ରାହ୍ମଣ ତାଙ୍କ ପାଖକୁ ଯାଇ ପଚାରିଲେ— "ଆଜକାଲିର ବ୍ରାହ୍ମଣ ପ୍ରାଚୀନ ବ୍ରାହ୍ମଣ ଧର୍ମର ଅନୁସରଣ କରୁଛନ୍ତି କି ?" ଭଗବାନ କହିଲେ— "ନାହିଁ" । ତାପରେ ସେମାନେ ପ୍ରାଚୀନ ବ୍ରାହ୍ମଣ ଧର୍ମ ବିଷୟରେ କହିବା ପାଇଁ ପ୍ରାର୍ଥନା କଲେ । ତାପରେ ଭଗବାନ କହିଲେ, "ପ୍ରାଚୀନ ଋଷି ସଂଯମଶୀଳ ଓ ତପସ୍ୱୀ ଥିଲେ । ବିଳାସ ପଦାର୍ଥ ବର୍ଜନ କରି ଆତ୍ମଚିନ୍ତନ କରୁଥିଲେ । ସେହି ବ୍ରାହ୍ମଣଙ୍କ ପାଖରେ ପଶୁ ବା ଧନଧାନ୍ୟ ନଥିଲା । ସ୍ୱାଧ୍ୟାୟ ହିଁ ତାଙ୍କର ଧନଧାନ୍ୟ ଥିଲା ଓ ବ୍ରହ୍ମରୂପୀ ତତ୍ତ୍ୱକୁ ସେ ପାଳନ କରୁଥିଲେ

ସେମାନଙ୍କର ଥିଲା ଏକ ପତ୍ନୀବ୍ରତ । ସେ ସ୍ତ୍ରୀକୁ କିଣୁ ନଥିଲେ । ଯାହାଙ୍କଠାରେ ନିର୍ମଳ ପ୍ରେମଥିଲା, ତାକୁ ବିବାହ କରୁଥିଲେ । ସେ ଥିଲେ ଋତୁକାଳାଭିଗାମୀ ।

କିନ୍ତୁ ତାଙ୍କର ପ୍ରକୃତି ବଦଳିଗଲା । ରାଜ ବୈଭବ, ଅଳଂକୃତ ସ୍ତ୍ରୀ, ଉତ୍ତମ ଅଶ୍ୱଯୁକ୍ତରଥ, ଉତ୍ତମ ଭବନ ଆଦି ଉପଭୋଗ୍ୟ ବସ୍ତୁରେ ସେ ଲାଳସୀ ହେଲେ । ସେ ମନ୍ତ୍ର ରଚନାକରି ଓକ୍‌କାକ ରାଜାଙ୍କୁ ଯଜ୍ଞ କରିବାକୁ କହିଲେ ; ତେଣୁ ରାଜା ଅଶ୍ୱମେଧ, ପୁରୁଷମେଧ ଓ ବାଜପେୟ ପ୍ରଭୃତି ଯଜ୍ଞ କଲେ ।

ତାହାପରେ ବ୍ରାହ୍ମଣମାନେ ଲୋଭ ବଶରୁ ଓକ୍‌କାକ ରାଜାଙ୍କୁ ଗୋମେଧ ଯଜ୍ଞ କରିବାକୁ ବାଧ୍ୟକଲେ । ମେଣ୍ଢାଙ୍କପରି ଦୁର୍ବଳ ଗାଈର ଶିଙ୍ଗ ଉପାଡ଼ି ଯଜ୍ଞରେ ହତ୍ୟାକଲେ । ଗାଈମାନଙ୍କ ଉପରେ ଶସ୍ତ୍ରାଘାତ ହେବାରୁ ଦେବ, ପିତର, ଇନ୍ଦ୍ର, ଅସୁର ଓ ରାକ୍ଷସ ପ୍ରଭୃତି ସମସ୍ତେ କହିଦେଲେ ଯେ "ଅଧର୍ମ ହେଲା ।" ପ୍ରଥମରେ ତିନୋଟି ରୋଗଥିଲା—ଇଚ୍ଛା, କ୍ଷୁଧା ଓ ଜରା । କିନ୍ତୁ ପଶୁଯଜ୍ଞର ଆରମ୍ଭ ହେବାରୁ ରୋଗର ସଂଖ୍ୟା ଅଠାନବେ ହୋଇଗଲା ।

ଯେଉଁଠାରେ ଏସବୁ କଥା ଘଟେ ସେଠାରେ ଲୋକେ ଯାଜକଙ୍କୁ ନିନ୍ଦାକରନ୍ତି । ଏ ପ୍ରକାର ଧର୍ମର ବିପର୍ଯ୍ୟାସ ହେବା ଫଳରେ ଶୂଦ୍ର ଓ ବୈଶ୍ୟ ଭିନ୍ନ ଭିନ୍ନ ହୋଇଗଲେ । କ୍ଷତ୍ରିୟମାନେ ମଧ୍ୟ ଅଲଗା ହୋଇ ଗଲେ । ପୁଣି ପତ୍ନୀ ପତିକୁ ଅବମାନନା କଲା । କ୍ଷତ୍ରିୟ ଓ ବ୍ରାହ୍ମଣଙ୍କ ଗୋତ୍ରର ରକ୍ଷଣ ହେଉଥିଲା ।

(ସେମାନେ କୁଳଧର୍ମ ଅନୁସାରେ ଆଚରଣ କରୁଥିଲେ)
କିନ୍ତୁ ( ପଶୁବଧପରେ ) କୁଳର ଭସ୍ମଗୁଡ଼ ସେମାନେ
ଲୋଭ ପରବଶ ହେଲେ ।

୪୮-୫୦
(ଭୂମିକା ୨୨) ଏହା ବିସ୍ତୃତ ଭାବେ କୁହାଯାଇଛି ।

୧୭୦-୧୭୨ ପ୍ରାୟ ସମସ୍ତ ପାଶ୍ଚାତ୍ୟ ପଣ୍ଡିତଙ୍କ ମତ ଯେ,
(ଭୂମିକା ୨୨)ଭଗବଦ୍‌ଗୀତାର ବ୍ରାହ୍ମୀ ସ୍ଥିତି ଓ ସ୍ଥିତପ୍ରଜ୍ଞର ବର୍ଣ୍ଣନା
ମୂଳକଶ୍ଳୋକ ବୌଦ୍ଧଗ୍ରନ୍ଥର ଭିତ୍ତିଉପରେ ରଚିତ
ହୋଇଅଛି । ପୁଣି "ବ୍ରହ୍ମନିବାଣ ମୃଚ୍ଛତି"—ଶ୍ଳୋକରେ
ଏହା ସ୍ପଷ୍ଟ । ଏଥିରେ ସ୍ମୃତି ବିଭ୍ରମ, ନିର୍ବାଣର ପ୍ରକୃତ
ଶବ୍ଦର ଅର୍ଥ,ବୌଦ୍ଧ ପରିଭାଷାର ଅବଗତି ବ୍ୟତିରେକେ
ଯଥାର୍ଥରୂପେ ବୁଝି ହେବନାହିଁ ।

ପୁରଗୁପ୍ତ ଥିଲେ ବସୁବନ୍ଧୁଙ୍କର ମିତ୍ର । ସେ
ନିଜ ପୁତ୍ର ବାଳାଦିତ୍ୟ ଓ ମହାରାଣୀଙ୍କୁ ବସୁବନ୍ଧୁଙ୍କ
ଦ୍ୱାରା ବୌଦ୍ଧ ଦର୍ଶନ ଶିକ୍ଷା ଦେଇଥିଲେ । ଶେଷରେ
ବାଳାଦିତ୍ୟଙ୍କ ଯୁଦ୍ଧ କରିବାକୁ ଇଚ୍ଛା ନହେବାରୁ
କୌଣସି ବ୍ରାହ୍ମଣଙ୍କ ଦ୍ୱାରା ଭଗବଦ୍‌ଗୀତା ରଚନା
କରାଇଲେ ଓ ତାପରେ ତାହା ମହାଭାରତର ଅନ୍ତର୍ଗତ
୧୫ ହୋଇଗଲା ।

( ୩୨୧ ) ଏଥିର ବିସ୍ତୃତ ବର୍ଣ୍ଣନା ଦିଆଯାଇଛି ।

୧୬୦-୧୬୫ **ବୁଦ୍ଧ ଲୀଳା ସାର ସଂଗ୍ରହ**

( ୧୯୩ ) ଏଥିର ବିସ୍ତୃତ ବର୍ଣ୍ଣନା ଦିଆଯାଇଛି ।

୧୭୯-୧୮୮ ଏଥିର ବିସ୍ତୃତ ବର୍ଣ୍ଣନା ଦିଆଯାଇଛି ।
( ୨୧୧ )

୧୮୭-୧୮୮

## ଦେବଦତ୍ତ

( ୨୧୩ ) ଯେତେବେଳେ ଭଗବାନ୍ ବୁଦ୍ଧଙ୍କୁ ମାରିବାର ସମସ୍ତ ଚକ୍ରାନ୍ତ ବିଫଳ ହେଲା, ସେତେବେଳେ ସଂଘରେ ଭେଦଭାବ ସୃଷ୍ଟି କରିବାକୁ ଦେବଦତ୍ତ ଏକ ଯୁକ୍ତି ବାଡ଼ି ବସିଲା । ସେ ନିଜର ସଙ୍ଗୀ ସମୁଦ୍ରଦତ୍ତ ସହିତ ଭଗବାନଙ୍କ ପାଖକୁ ଗଲା ଓ ତାଙ୍କୁ ପ୍ରଣାମ କରି କହିଲା, "ଭଗବନ୍ ! ଭିକ୍ଷୁମାନଙ୍କୁ ଐହିକ ସୁଖରୁ ପୂର୍ଣ୍ଣଭାବରେ ଅଲିପ୍ତ ରଖିବା ଲାଗି ମୁଁ ଏହି ପାଞ୍ଚୋଟି ନିୟମ ଗଠନ କରିଛି । ସମସ୍ତ ଭିକ୍ଷୁ ଏହି ନିୟମ ପାଳନ କରିବା ଉଚିତ ବୋଲି ଆପଣ ଆଦେଶ ଦେଇ ଦିଅନ୍ତୁ ।

୧ । ଭିକ୍ଷୁ ସବୁବେଳେ ଅରଣ୍ୟରେ ରହିବେ ।

୨ । ସେମାନେ ଆଜନ୍ମ ଭିକ୍ଷା ଉପରେ ନିର୍ଭର କରି ଚଳିବେ, କାହାର ଆମନ୍ତ୍ରଣରେ ଭୋଜନ ପାଇଁ ଘରକୁ ଯିବେ ନାହିଁ ।

୩ । ସାରା ଜୀବନ ରାସ୍ତାରେ ପଡ଼ିଥିବା ଚିରା ଲୁଗାରୁ ବସ୍ତ୍ରତିଆରି କରିବେ, ଗୃହସ୍ଥମାନଙ୍କଠାରୁ ବସ୍ତ୍ର ନେବେ ନାହିଁ ।

୪ । ଆଜନ୍ମ ଗଛମୂଳରେ ରହିବେ, କୁଡ଼ିଆ ବା ଘରେ ରହିବେ ନାହିଁ ।

୫ । ମତ୍ସ୍ୟ ମାଂସ ଗ୍ରହଣ କରିବେ ନାହିଁ ।

ଏହି ପାଞ୍ଚୋଟି ନିୟମ ଯେଉଁମାନେ ପାଳନ କରିବେ ନାହିଁ ସେମାନଙ୍କୁ ଦୋଷୀ ବୋଲି ଧରାଯିବ ।

ଭଗବାନ୍ କହିଲେ, 'ଏହି ପାଞ୍ଚୋଟିନିୟମ ଦ୍ୱାରା ଆଧ୍ୟାତ୍ମିକ ଉନ୍ନତି ଲାଗି କୌଣସି ସହାୟତା ମିଳିବ ବୋଲି ମୁଁ ମନେ କରୁ ନାହିଁ । ତେବେ, ଯାହାର ଇଚ୍ଛା ହେଉଛି, ସେ ଏହି ନିୟମଗୁଡ଼ିକ ପାଳନ କରିପାରେ, ତହିଁରେ ମୋର କୌଣସି ଆପତ୍ତି ନାହିଁ ।

ଭଗବାନ୍ ଏଇ ନିୟମଗୁଡ଼ିକୁ ସଂଘ ଉପରେ ଜାରି କରିବାକୁ ପ୍ରସ୍ତୁତ ନୁହନ୍ତି—ଏକଥା ଦେବଦତ୍ତ ଧେଣ୍ଡୁରା ପିଟି କେତେକ ଭିକ୍ଷୁଙ୍କୁ ନିଜ ମତର ସମର୍ଥକ କରାଇ ନେଇ ଓ ସେମାନଙ୍କୁ ନେଇ ରାଜଗୃହରୁ ଚାଲିଗଲା । ତାପରେ ଭଗବାନ୍ ବୁଦ୍ଧ ସାରିପୁତ୍ର ଓ ମୋଗ୍‌ଗଲ୍ଲାନଙ୍କୁ ପଠାଇଲେ ଓ ସେମାନେ ଭିକ୍ଷୁମାନଙ୍କୁ ଉପଦେଶ ଦେଇ ଫେରାଇ ନେଲେ ।

୨୭୮-୨୮୧
( ୩୫୯ ) ଏଇ କଥା କୁହାଯାଇଛି ।

୧୬୭-୧୭୯
( ୩୯୩ ) ଅନାଥପିଣ୍ଡିକ ଓ 'ମିଗାର ମାତା'ଙ୍କ ବିଶାଖା କଥାଗୁଡ଼ିକ ବିସ୍ତୃତ ଭାବେ ଦିଆଯାଇଛି ।

ଅନାଥ ପିଣ୍ଡିକ, ଭଗବାନ୍ ବୁଦ୍ଧଙ୍କୁ ଜେତ ରାଜକୁମାରଙ୍କ ଉଦ୍ୟାନକୁ ନେବାପାଇଁ ଭୂମିକୁ ସ୍ୱର୍ଣ୍ଣ ମୁଦ୍ରାରେ ଘୋଡ଼ାଇ ଦେଇଥିଲେ । ତାଙ୍କର ଏତିକ ଭକ୍ତି ଥିଲା । ଶେଷରେ ସେହି କ୍ଷେତ ବନକୁ ସେ ଭିକ୍ଷୁସଂଘକୁ ଦାନ କରିଦେଇଥିଲେ ।

ବିଶାଖାଙ୍କର ଶ୍ୱଶୁର ନିର୍ଗ୍ରନ୍ଥମାନଙ୍କର ଉପାସକ ଥିଲେ । କିନ୍ତୁ ସେ ବୁଦ୍ଧଙ୍କର ଉପାସନା କରିବୀ

ପାଇଁ ବିଶାଖାକୁ ସ୍ୱାଧୀନତା ଦେଇଥିଲେ । ଶେଷରେ ବୁଦ୍ଧଙ୍କର ଉପଦେଶ ଶୁଣି ସେ ମଧ୍ୟ ତାଙ୍କର ଉପାସକ ପାଲଟି ଗଲେ ।

୨୯୨-୩୧୨ **ପରିନିର୍ବାଣ**

( ୩୯୯ ) ଏହା ବିସ୍ତାରିତ କରାଯାଇଛି ।

## ବୁଦ୍ଧଧର୍ମ - ଆଣିସଂଘ

୯୦-୯୧ **ପଞ୍ଚସ୍କନ୍ଧ**

( ୧୭୫ ) ରୂପ, ବେଦନା, ସଞ୍ଜ୍ଞା, ସଂସ୍କାର ଓ ବିଜ୍ଞାନ—ଏଇ ପାଞ୍ଚୋଟି ପଦାର୍ଥକୁ ପଞ୍ଚସ୍କନ୍ଧ କୁହାଯାଏ ।

ପୃଥ୍ୱୀ ଅପ୍ ତେଜ ଓ ବାୟୁ—ଏହି ଚାରି ମହାଭୂତକୁ ଓ ଏମାନଙ୍କରୁ ଉତ୍ପନ୍ନ ପଦାର୍ଥକୁ ରୂପସ୍କନ୍ଧ କୁହାଯାଏ ।

ସୁଖକାରକ ବେଦନା, ଦୁଃଖକାରକ ବେଦନା ଓ ଅପେକ୍ଷାବେଦନା—ଏହି ତିନପ୍ରକାର ବେଦନାକୁ ବେଦନାସ୍କନ୍ଧ କୁହାଯାଏ ।

ଘର, ଗଛ, ଗାଈ ପ୍ରଭୃତି ବିଷୟକ ଭାବନା-ମାନଙ୍କୁ ସଞ୍ଜ୍ଞାସ୍କନ୍ଧ କୁହାଯାଏ ।

ମାନସିକ ସଂସ୍କାର ତିନପ୍ରକାର—କୁଶଳ, ଅ-କୁଶଳ ଓ ଅବ୍ୟାକୃତ, ଅର୍ଥାତ୍ ଯାହା କୁଶଳ ନୁହେଁ, ଅକୁଶଳ ମଧ୍ୟ ନୁହେଁ, ଯାହାଦ୍ୱାରା କେତେକ ପଦାର୍ଥରେ ରୁଚି ଓ ଅନ୍ୟ କେତେକରେ ଅରୁଚି ଜନ୍ମେ ।

ବିଜ୍ଞାନର ଅର୍ଥ ଜାଣିବା । ତାହା ଛ ପ୍ରକାର ଚକ୍ଷୁ-ବିଜ୍ଞାନ, ଶ୍ରୋତ୍ର-ବିଜ୍ଞାନ, ଘ୍ରାଣ-ବିଜ୍ଞାନ, ଜିହ୍ୱା-

ବିଜ୍ଞାନ, କାର୍ଯ୍ୟ-ବିଜ୍ଞାନ ଓ ମନୋ-ବିଜ୍ଞାନ । ଏହି ସମସ୍ତ ବିଜ୍ଞାନକୁ ବିଜ୍ଞାନ ସ୍କନ୍ଧ କୁହାଯାଏ ।

ଏହି ପଞ୍ଚୋଟି ସ୍କନ୍ଧ ଯଦି ବାସନା ଯୁକ୍ତ ହୁଏ, ତେବେ ତାକୁ ଉପାଦାନ ସ୍କନ୍ଧ କୁହାଯାଏ । ସେମାନଙ୍କ ହେତୁ ପୁନର୍ଜନ୍ମ ହୁଏ । ଏହି ଜନ୍ମରେ କୁଶଳାକୁଶଳ କର୍ମ କରିବାରୁ ପାଞ୍ଚୋଟି ଉପାଦାନ ସ୍କନ୍ଧର ପ୍ରାଦୁର୍ଭାବ ହୁଏ । ଯେତେବେଳେ ସମୂଳେ ବାସନା ଗୁଡ଼ିକର ଉଚ୍ଛେଦ ହୁଏ, ସେତେବେଳେ ଏଗୁଡ଼ିକୁ ଉପାଦାନ ସ୍କନ୍ଧ ନକହି କେବଳ ସ୍କନ୍ଧ କୁହାଯାଏ । କାରଣ, ଏମାନଙ୍କ ହେତୁ ପୁନର୍ଜନ୍ମର ସମ୍ଭାବନା ନଥାଏ । ଅର୍ହତ୍ତ୍ୱ-ପଦ ପ୍ରାପ୍ତି ହେଲେ ବାସନାର ସମୂଳେ ଉଚ୍ଛେଦ ଘଟେ । ଯେଉଁ ଲୋକ ଅର୍ହତ୍ ପଦ ଲାଭକରେ, ତାହାର ମୃତ୍ୟୁ ପର୍ଯ୍ୟନ୍ତ ପଞ୍ଚସ୍କନ୍ଧ ରହେ । କିନ୍ତୁ ଅର୍ହତ୍ ପଦର ପ୍ରାପ୍ତି ସଙ୍ଗେ ଅକୁଶଳ ସଂସ୍କାର ପୂର୍ଣ୍ଣଭାବରେ ନଷ୍ଟ ହୁଏ । ମୃତ୍ୟୁ ବେଳେ ଅର୍ହତମାନଙ୍କର ପଞ୍ଚସ୍କନ୍ଧ ନିର୍ବାଣରେ ବିଲୟ ପ୍ରାପ୍ତ ହୁଏ । ଅର୍ଥାତ୍ ଆଉଥରେ ନୂଆକରି ପଞ୍ଚସ୍କନ୍ଧର ଉଦୟ ହୁଏ ନାହିଁ ।

୯୪-୯୯ ଚାରି ଆର୍ଯ୍ୟସତ୍ୟର ବିସ୍ତୃତ ବିବରଣୀ ଦିଆ
( ୧୮୩ ) ଯାଇଛି ।

## ପ୍ରବେଶ ବିଧି ବା ପ୍ରବ୍ରଜ୍ୟା

୫୬-୬୦ ପ୍ରଥମେ ସାତଜଣ ଭିକ୍ଷୁଙ୍କୁ ଭଗବାନ୍ ନିଜେ
( ୩୪୬ ) ଦୀକ୍ଷା ପ୍ରଦାନ କରିଥିଲେ । ସେହି ସମୟରେ "ଏହି

ଭିକ୍ଷୁ", ଏ ବାକ୍ୟରେ ପ୍ରବ୍ରଜ୍ୟା ବିଧି ଚଳିଯାଉ ଥିଲା । ପୁଣି ଭିକ୍ଷୁମାନଙ୍କର ସଂଖ୍ୟା ବୃଦ୍ଧି ପାଇବାରୁ, ପ୍ରାର୍ଥୀମାନଙ୍କୁ ପ୍ରବ୍ରଜ୍ୟା ଦେବା ପାଇଁ ଭଗବାନ୍ ପ୍ରବୀଣ ଭିକ୍ଷୁମାନଙ୍କୁ ଅନୁଜ୍ଞା ଦେଲେ । ସେଥିର ବିଧିଥିଲା— ପ୍ରାର୍ଥୀ ପ୍ରଥମେ ଲଣ୍ଡାହୋଇ, ତାପରେ ଆଣ୍ଠୁମାଡ଼ି ବସି, ହାତ ଯୋଡ଼ି ତିନଥର କହୁଥିଲେ, "ବୁଦ୍ଧଂ ସରଣଂ ଗଚ୍ଛାମି", "ଧମ୍ମଂ ସରଣଂ ଗଚ୍ଛାମି" "ସଂଘଂ ସରଣଂ ଗଚ୍ଛାମି ।"

ପୁଣି ଯେତେବେଳେ ଖିଆପିଆ ବା ଅନ୍ୟ ହୀନ ଲୋଭ ହେତୁ ଲୋକେ ସଂଘରେ ଭର୍ତ୍ତି ହେଲେ, ସେତେବେଳେ ସେମାନଙ୍କ ପାଇଁ ନୂଆ ନୂଆ ନିୟମ ପ୍ରଣୟନ କରାଗଲା । ସେ ଅନୁସାରେ ଜଣେ ପ୍ରାର୍ଥୀ ପ୍ରଥମେ କୌଣସି ଭିକ୍ଷୁଙ୍କୁ ନିଜର ଉପାଧ୍ୟାୟ କରିବାକୁ ହେଉଥିଲା ; ପୁଣି, ସେ କୁଷ୍ଠ, କ୍ଷୟ, ଅପସ୍ମାର, ନପୁଂସକତ୍ୱ ପ୍ରଭୃତି ରୋଗ ପୀଡ଼ିତ କି ନୁହେଁ ଜାଣିବାକୁ ହେଉଥିଲା । ଯେ ଭିକ୍ଷୁ ହେବାକୁ ଇଚ୍ଛା କରିବେ ସେ ସ୍ୱତନ୍ତ୍ର ଋଣମୁକ୍ତ ଓ ବୟସ୍କ ହେବା ଦରକାର, ନିଜର ମା ବାପାଙ୍କଠାରୁ ଅନୁମତି ପାଇବା ଉଚିତ ଓ ସେ, ରାଜାଙ୍କର ସୈନିକ ହେବା ଅନୁଚିତ ଇତ୍ୟାଦି । ସେମାନଙ୍କପାଇଁ ବଡ଼ କଠୋର ନିୟମ କରାଯାଇଥିଲା ।

## ସମାଧି ମାର୍ଗ

୬୮–୬୯ 'ଅଭିଧର୍ମ' ଅନୁସାରେ, ମୈତ୍ରୀ; କରୁଣା ଓ
( ୧୨୭ ) ମୁଦିତା, ଏହି ତିନୋଟି ଭାବନା ହେତୁ ପ୍ରଥମେ ତିନୋଟି ଧ୍ୟାନ ସାଧିହୋଇଥାଏ । ଉପେକ୍ଷା ଭାବନା

ହେତୁହିଁ ଚତୁର୍ଥ 'ଧ୍ୟାନ' ଲଭ୍ୟହୁଏ । ବୁଦ୍ଧଘୋଷାଚାର୍ଯ୍ୟ ଏକଥା ସ୍ୱୀକାର କରିଅଛନ୍ତି । ତାଙ୍କ କଥା ଅନୁସାରେ, ପ୍ରଥମ ତିନୋଟି ଭାବନାରୁ ପ୍ରଥମ ତିନୋଟି ଧ୍ୟାନ ଗୋଟିଏ ଭାବନାଦ୍ୱାରା ଲାଭ କରାଯାଏ ଓ ତାପରେ ଉପେକ୍ଷା ଭାବନାର ଆରମ୍ଭ କରାଯାଏ । ସେହିହେତୁରୁ କେବଳ ଚତୁର୍ଥ ଧ୍ୟାନ ଲାଭହୁଏ ।

ଉଲ୍ଲିଖିତ ସୂତ୍ରରୁ ସ୍ପଷ୍ଟ ଜଣାଯାଉଛି ଯେ ମୈତ୍ରୀ ଭାବନା ସହିତ ଉପେକ୍ଷା ଓ ଉପେକ୍ଷା ଭାବନା ସହିତ ପ୍ରୀତି ରହିପାରେ ।

## ପାଞ୍ଚ ନୀବାରଣ

୩୧–୩୫ (୧) କାମଚ୍ଛନ୍ଦ ( କାମ ବିକାର)
( ୧୨୭ ) (୨) ବ୍ୟାପାଦ ( କ୍ରୋଧ )
(୩) ଥୀନମିଦ୍ଧ (ଆଳସ୍ୟ)
(୪) ଉଦ୍ଧେଚ (ଭ୍ରାନ୍ତତା)
(୫) ବିଚିକିଚ୍ଛା (ସଂଶୟ ଗ୍ରସ୍ତତା)

୩୮–୪୮ ଆନାପାନ ସ୍ମୃତି ଭାବନା ବିଷୟ ବିସ୍ତୃତ ଭାବେ
(୧୭୧) କୁହା ଯାଇଛି ।

## ଅଶୁଭ ଭାବନା

ଉଦ୍ଧୁମାତକ, ଅର୍ଥାତ୍ ଫୁଲି ଯାଇଥିବା ଶବ, ବିନୀଲକ, ଅର୍ଥାତ୍ ନେଳିଆ ପଡ଼ି ଯାଇଥିବା ଶବ, ବିପୁବ୍ବକ, ଅର୍ଥାତ୍ ଏହିଭଳି ଶବ ଯହିଁରେ ପୂଯ ରହିଛି, ବିଚ୍ଛିଦ୍ଦକ, ଅର୍ଥାତ୍ ଏଭଳି ଶବ ଯହିଁରେ ଛିଦ୍ର ହୋଇ ଯାଇଛି, ବିକ୍ଖାୟିତକ ଅର୍ଥାତ୍

ବଭକ୍ତ ପ୍ରାଣୀ କଚ୍ଛ କଚ୍ଛ ଖାଇ ଦେଇଥିବା ଶବ, ବକ୍‌ଖିତ୍ତକ, ଅର୍ଥାତ୍ ଏଭଳି ଶବ ଯାହାର ଅଙ୍ଗ ପ୍ରତ୍ୟଙ୍ଗ ଏଣେତେଣେ ପଡ଼ିଛି, ହତବକ୍‌ଖିତ୍ତକ ଅର୍ଥାତ୍ ଏଭଳି ଶବ ଯାହାର ଅଙ୍ଗ ପ୍ରତ୍ୟଙ୍ଗ ପ୍ରାଣୀ ବା ଶସ୍ତ୍ରଦ୍ୱାରା ଖଣ୍ଡିତ ହୋଇ ଏଣେ ତେଣେ ଫିଙ୍ଗା ଯାଇଛି, ଲୋହିତକ, ଅର୍ଥାତ୍ ଏଭଳି ଶବ ଯହିଁରୁ ରକ୍ତ ବହି ଯାଉଛି, ପୁଲବକ, ଅର୍ଥାତ୍ ଏଭଳି ଶବ ଯହିଁରେ କୀଟ ପଡ଼ିଛନ୍ତି, ଅଠ୍ଠିକ, ହାଡର କଙ୍କାଳ ବା ତହିଁର ଏକ ଅଂଶ । ଏଭଳି ଏହି ଦଶଟି ଅଶୁଭ । ଏଥିପ୍ରତି ଧ୍ୟାନ ଦେବାହିଁ ଅଶୁଭ ଭାବନା । ଏହି ଶରୀରମାନଙ୍କ ମଧ୍ୟରୁ କୌଣସି ଶରୀର ଦେଖାଇ ଦେବାପରେ, ତାକୁ ଆଖି ଆଗରେ ରଖି ଚିନ୍ତାକଲେ, ଧ୍ୟାନ ସାଧ୍ୟହୁଏ । ସ୍ତ୍ରୀ ପୁରୁଷର ଓ ପୁରୁଷ ସ୍ତ୍ରୀର ମୃତ ଶରୀର ଦେଖିଲେ ଧ୍ୟାନ ସାଧ୍ୟ ହୁଏନାହିଁ । ସେହିପରି ଶରୀର ତ୍ୟାଜ୍ୟବୋଲି ବୁଝିବାକୁ ହେବ । ସଜାଖିପ୍ତ ଶବ ଉପରେ ଧ୍ୟାନ ରଖିଲେ ଯଦି ତାହା ଆଖି ଆଗକୁ ଆସେନାହିଁ, ତେବେ ତାହାର ଯେଉଁ ଅଂଶଟି ମୁଖ୍ୟତଃ ଆଖି ଆଗକୁ ଆସିବ, ତାହା ଉପରେ ଧ୍ୟାନ ରଖିଲେ ଏହି ସମାଧି ସାଧ୍ୟ ହୁଏ ।

ତ୍ରିପିଟକର କୌଣସି ଏକ ସ୍ଥାନରେ ବୁଦ୍ଧଙ୍କ ସମ୍ପୂର୍ଣ୍ଣ ଜୀବନ ଣୀ ମିଳେନା । ମହାଯାନ ସମ୍ପ୍ରଦାୟର ଗ୍ରନ୍ଥ- ଲଳିତ ବିସ୍ତର ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀ ବା ତାର କିଛି ପୂର୍ବେ ଲିଖିତ । ପଞ୍ଚମ ଶତାବ୍ଦୀରେ ରଚିତ ଜାତକ-ଅଟ୍‌ଠ କଥାରେ ବର୍ଣ୍ଣିତ ବୁଦ୍ଧଙ୍କ ଜୀବନ ଚରିତ ଲଳିତ ବିସ୍ତରକୁ ଭିତ୍ତିକରି ଲେଖା ହୋଇଛି । ବିଭିନ୍ନ ସମୟରେ ଏଭଳି ନାନା କାଳ୍ପନିକ କାହାଣୀ ବୁଦ୍ଧଙ୍କ ଜୀବନ କାହାଣୀରେ ଯୋଡ଼ିଦିଆ ଯାଇଛି ।

ବୁଦ୍ଧ ଚରିତ ସମ୍ବନ୍ଧରେ ବିଭିନ୍ନ କାହାଣୀରୁ ବଶ୍ୱାସ ଯୋଗ୍ୟ ବିବରଣୀ ଲିପିବଦ୍ଧକରିବା ହେଉଛି ଏଇ ଗ୍ରନ୍ଥର ଲକ୍ଷ୍ୟ । ଗବେଷଣାର ଯେଉଁ ପଦ୍ଧତି ଏଠାରେ ଅନୁସୃତ ହୋଇଛି ସେଥିରେ ବୁଦ୍ଧ ଚରିତ ସହିତ ତତ୍‌କାଳୀନ ଇତିହାସ ଉପରେ ବିଶେଷ ଆଲୋକପାତ କରା ହୋଇଛି ।

ବୁଦ୍ଧଙ୍କ ଜନ୍ମ ତାରିଖ ସମ୍ବନ୍ଧରେ ନାନା ବାଦବିବାଦ ଅଛି । ସଠିକ୍ ସମୟ ନିର୍ଦ୍ଧାରଣ କରିବା ସମ୍ଭବ ନୁହେଁ । ଏ ଗ୍ରନ୍ଥରେ ଜନ୍ମ ତାରିଖ ନିର୍ଣ୍ଣୟ କରିବା ମୁଖ୍ୟ ଉଦ୍ଦେଶ୍ୟ ନୁହେଁ, ବୁଦ୍ଧଙ୍କ ଜନ୍ମପୂର୍ବରୁ ସମାଜର ଅବସ୍ଥା କିଭଳି ଥିଲା ଏବଂ ସେହି ଅବସ୍ଥା ମଧ୍ୟରେ ସେ କି ଭାବରେ ନୂତନ ଧର୍ମ ମାର୍ଗ ଆବିଷ୍କାର କଲେ, ସେଥିପ୍ରତି ବେଶି ଦୃଷ୍ଟି ଦିଆ ଯାଇଛି । ଜନ୍ମ ତାରିଖ ନିର୍ଦ୍ଧାରଣ କରିବା ପାଇଁ ଗ୍ରନ୍ଥର ପୃଷ୍ଠା ବୃଦ୍ଧି କରା ଯାଇନି, ବରଂ ଏଥିରେ ବୁଦ୍ଧ ରରିତକୁ ଆଲୋକିତ କରିବାଭଳି ତଥ୍ୟ ଉପରେ ଗୁରୁତ୍ୱ ଦିଆ ଯାଇଛି ।

ଜନ ସମାଜରେ ପ୍ରତିଷ୍ଠା ଅର୍ଜନ କରିବା ପାଇଁ ଏଇ ପୁସ୍ତକ ଲେଖା ହୋଇନି । ସତ୍ୟ ଅନ୍ୱେଷଣ ଉଦ୍ଦେଶ୍ୟରେ ଏହା ପ୍ରଣୀତ । ପକ୍ଷପାତ ନକରି ପ୍ରାଚୀନ ଇତିହାସ ଆଲୋଚନା କରିବା ଯେଉଁ ମାନଙ୍କର ଲକ୍ଷ୍ୟ ସେହି ବିବେକୀ ପାଠକ ମାନଙ୍କ ଉଦ୍ଦେଶ୍ୟରେ ହିଁ ଧର୍ମାନନ୍ଦ କୋସମ୍ବୀଙ୍କର ଏଇ ଗ୍ରନ୍ଥ ନିବେଦିତ ।

ମୂଲ୍ୟ : ୭୫ ଟଙ୍କା ।
ISBN 81-7201-453-8